କବିସମ୍ରାଟ ୰ ଉପେନ୍ଦ୍ରଭଞ୍ଜଙ୍କ

# କୋଟିବ୍ରହ୍ମାଣ୍ଡ ସୁନ୍ଦରୀ

ଶ୍ରୀ ଅନନ୍ତ ପ୍ରସାଦ ଘୋଷଙ୍କ କୃତ

## ସୁବୋଧିନୀ ଟୀକାସହ

ଚତୁର୍ଥବାର ପ୍ରକାଶିତ
୧୯୬୩

ପଣ୍ଡିତ ଶ୍ରୀ ଶ୍ୟାମସୁନ୍ଦର ନାୟକଙ୍କ ଦ୍ୱାରା ସଂଶୋଧିତ

ପ୍ରାପ୍ତିସ୍ଥାନ :—

ଓଡ଼ିଶା ଜଗନ୍ନାଥ କମ୍ପାନି
ଶ୍ରୀ ଜଗନ୍ନାଥ ସିନ୍ଧୁ
ବାଲୁବଜାର ପୋ: ଚାନ୍ଦନୀଚୌକ
କଟକ

ମୂଲ୍ୟ—ଛ’ ଟଙ୍କା ମାତ୍ର

କବିସମ୍ରାଟ

୰ ଉପେନ୍ଦ୍ର ଭଞ୍ଜଙ୍କ

ରଚିତ ଅନ୍ୟାନ୍ୟ

ପୁସ୍ତକାବଳୀ ନିମନ୍ତେ

ନିମ୍ନଠିକଣାରେ

ଅନୁସନ୍ଧାନ କରନ୍ତୁ ।

ଓଡ଼ିଶା
ଜଗନ୍ନାଥ କୋମ୍ପାନୀ
କଟକ—୨

ବିଷୟ ପୃଷ୍ଠା



କବିସମ୍ରାଟ ୰ ଉପେନ୍ଦ୍ରଭଞ୍ଜ



# କୋଟିବ୍ରହ୍ମାଣ୍ଡ ସୁନ୍ଦରୀ

## ପ୍ରଥମ ଛାନ୍ଦ

( ମଙ୍ଗଳାଚରଣ )

ରାଗ—ମଙ୍ଗଳଗୁଜ୍ଜରୀ

ଶୁଣ କୋବିଦେ ଭରତଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣଦେହୀ ତେଣୁ ସେହି ନାମ ହେ ॥ ୧
ଗୀର୍ବାଣମତେ ନିର୍ବାଣ ସାରୂପ୍ୟକୁ ଦେଇ ।
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମାରୂପେ ଥାଇ ଯେ ॥ ୨
ଯେ ବ୍ରହ୍ମହତ୍ୟା-ପାତକ-ନିପାତକ ମହୀ ।
କପାଳମୋଚନ ବିଲୋଚନ ସାକ୍ଷୀ ଯହିଁ ଯେ ॥ ୩

---

୧—ହେ ପଣ୍ଡିତମାନେ ଭାରତବର୍ଷରେ ପୁଣ୍ୟ ସ୍ଥାନ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ବିଷୟ ଶୁଣ । ନାରାୟଣ ଦେହ ଧାରଣ କରି ସେଠାରେ ବିଜେ କରିଥିବା ତାହାଙ୍କର ପୁରୁଷୋତ୍ତମ ନାମରେ କ୍ଷେତ୍ରର ନାମ ପୁରୁଷୋତ୍ତମ ହୋଇଅଛି ।

୨—ବେଦ ମତରେ ସାରୋପ୍ୟ ମୁକ୍ତି ପ୍ରଦାନ କରନ୍ତି, କାକପକ୍ଷୀ ପ୍ରତିମାରୂପେ ତାହାର ସାକ୍ଷୀ ରହିଅଛି । ଗୀର୍ବାଣ (ଦେବତା) ନିର୍ବାଣ (ମୁକ୍ତି), ୪ପ୍ରକାର ସାରୋଷ୍ଟ୍ୟ, ସାଲୋକ୍ୟ, ସାଯୁଜ୍ୟ, ସାରୋପ୍ୟ ) କରନ୍ତି (କାକ, ଭୁଷଣ୍ଡି କାକ ରୋହିଣୀକୁଣ୍ଡରେ ଚତୁର୍ଭୁଜ ହୋଇ ଦେବତ୍ୱ ଲାଭକରି ଏହାକୁ ସାକ୍ଷୀ ଅଛି) ।

୩—ଯେଉଁ କ୍ଷେତ୍ର ବ୍ରହ୍ମହତ୍ୟା ପାପକୁ ନିପାତ କରେ, ଏ ବିଷୟରେ ଯାହାଙ୍କ ହସ୍ତରୁ କପାଳ ଖସି ପଡ଼ିଥିଲା ସେହି ମହାଦେବ ସାକ୍ଷୀ ଅଛନ୍ତି । ( ପୂର୍ବ କାଳରେ ମହାଦେବ ଏକ ବ୍ରାହ୍ମଣକୁ ଚୁପୁଡ଼ା ମାରିବାରୁ ବ୍ରାହ୍ମଣ ମରିଗଲା ଏବଂ ବ୍ରାହ୍ମଣର କପାଳ ତାଙ୍କ ହସ୍ତରେ ଲାଗିବାରୁ ସେ ଏ କ୍ଷେତ୍ରକୁ ଆସିବାରୁ ବ୍ରହ୍ମହତ୍ୟା ପାତକରୁ ମୁକ୍ତି ଲାଭକଲେ ଏବଂ ତାଙ୍କ ହାତରୁ କପାଳ ଛାଡ଼ିଗଲା ) ।

ଆସି କାଶୀଶ୍ୱର ବାସ କଲେ ଏହା ଜାଣି ।
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି ହେ ॥ ୪
ଏଣୁ କ୍ଷେତ୍ର ନରେନ୍ଦ୍ର ପଦତ ସମ୍ଭାବିତ ।
ବିନାଶେ ଭୁଜଙ୍ଗ ଦୋଷ ତାକୁ କେତେମାନ ହେ ॥ ୫
ଅବିଦ୍ୟା ବିଷମ ଅଶୀବିଷଘାତୀ ଜନେ ।
ଜ୍ଞାନାଜ୍ଞାନେ ପରାଧୀନେ ସେ ସ୍ଥାନ ଗମନେ ହେ ॥ ୬
ଶ୍ରୀମହାପ୍ରସାଦ ଗଦ ପଦ ଘଣ୍ଟଘୋଷ ।
ଭକ୍ଷଣେ ଶ୍ରବଣେ ଯେ କଲ୍‌ବିଷ ବିଷ ନାଶ ହେ ॥ ୭
ଉନ୍ନତ ପ୍ରାସାଦରାଜ ପତାକା ଉଡ଼ାଇ ।
ଏ ପ୍ରଦେଶେ ସମବର୍ତ୍ତୀପଣ ନାହିଁ ନାହିଁ ହେ ॥ ୮
ବଟରାଜା ଶାଖା ଛେନ୍ନ ନିଗମ ସାକ୍ଷାତ ।
ପାପ ତାପ ପଶୁ ନାଶ ସୁକର୍ମ ଉଦିତ ଯେ ॥ ୯

---

୪—ସମସ୍ତ କ୍ଷେତ୍ର ମାନଙ୍କର ଏ ମୁକୁଟମଣି, ଏହା ଜାଣି କାଶୀଶ୍ୱର ଆସି ଏଠାରେ ବାସ କଲେ ।

୫—ତେଣୁ ଏହାର କ୍ଷେତ୍ରରାଜ ପଦ ସମ୍ଭବିଲା । ବିଷବୈଦ୍ୟ ( ଗୁଣିଆ ) ସର୍ପ-ବିଷ ନାଶ କଲାପରି ବିଟ୍ ପୁରୁଷମାନଙ୍କର ପାପ ନାଶିବା ଏ କ୍ଷେତ୍ର ପକ୍ଷରେ କେତେ ମାନ । କ୍ଷେତ୍ରନରେନ୍ଦ୍ର ( କ୍ଷେତ୍ରରାଜ ଓ ବିଷବୈଦ୍ୟ ) ଭୁଜଙ୍ଗ ଦୋଷ ( ସର୍ପଦୋଷ, ବିଟ୍ ପୁରୁଷଦୋଷ ) ।

୬—ଅଜ୍ଞାନରୂପୀ କାଳସର୍ପକୁ ଦଳନ କରିଥିବା ଲୋକମାନେ ସେ ସ୍ଥାନ ଗମନ ମାତ୍ରେ ଜ୍ଞାନାଜ୍ଞାନର ପରାଧୀନ ହୋଇ ମୁକ୍ତି ଲଭ କରନ୍ତି । ଅଶୀବିଷ ( ସର୍ପ )

୭—ଶ୍ରୀମହାପ୍ରସାଦ ରୂପକ ଗଦ ଭକ୍ଷଣରେ ଏବଂ ଘଣ୍ଟା ଶବ୍ଦରୂପକ ମନ୍ତ୍ର-ଶ୍ରବଣରେ ପାପବିଷ ନଷ୍ଟ ହୁଏ । ପଦ ( ମନ୍ତ୍ର )

୮—ଉନ୍ନତ ବଡ଼ ଦେଉଳରେ ପତାକା ଉଡ଼ୁଥିବାରୁ "ଏ ପ୍ରଦେଶରେ ଯମର ଅଧିକାର ନାହିଁ" ଏହା ଜଣାଉ ଅଛି । ସମବର୍ତ୍ତୀପଣ ( ଯମ ଅଧିକାର ) ।

୯—ବଟରାଜ ( କଳ୍ପବଟ ) ଶାଖାଛେନ୍ନ, ସାକ୍ଷାତ ସାଙ୍ଗୋପାଙ୍ଗ ବେଦ ହୋଇ ରହିଅଛି । ବେଦବିଧିରେ ଯଜ୍ଞରେ ପଶୁ ନାଶ କଲେ ସୁକର୍ମ ଉଦୟ ହୁଏ, କଳ୍ପବଟରେ ପାପ ତାପ ରୂପକ ପଶୁ ନଷ୍ଟହୋଇ ସୁକର୍ମର ଉଦୟ ହୁଏ । ଶାଖା ( ଡାଳ ଓ ବେଦ ପ୍ରକରଣ ), ନିଗମ ( ବେଦ )

ସେ ଦୁର୍ଗ-ପରୀକ୍ଷା ତୀର୍ଥରାଜ ଗର୍ଜନରେ ।
କହେ ଅବଗାହେ ପାପବ୍ୟୂହ ଦହ ନରେ ହେ ॥ ୧୦
ଦହି ସବୁ ବାଡ଼ବରେ ଦେବ ଏ ପକାଇ ।
ଏ ଦରବଶରୁ ଦୂରୁ ଦୁରିତ ପଳାଇ ହେ ॥ ୧୧
ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ ।
ଚତୁରବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ ॥ ୧୨
ଭକ୍ତି ଦେବୀ ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ ।
ବୈଷ୍ଣବ ବିନା ଏ କେବା ଜାଣିବ ସଂସାରେ ହେ ॥ ୧୩
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ ।
ବୃଷାସନଙ୍କର ଶିର ଲଗିବାକୁ ଆଶ ହେ ॥ ୧୪
ଯାହା କଟାକ୍ଷ-କୁଠାର ପତନମାତରେ ।
ଅନେକ ଦୁଃଖ-ଅନୋକହକୁ ଛେଦ ପାରେ ହେ ॥ ୧୫

---

୧୦—ସମୁଦ୍ର ସେହିଗଡ଼ର ଗଡ଼ଖାଇ ରୂପେ ବିରାଜିତ ହୋଇ ଗର୍ଜନ ଛଳରେ କହୁଅଛି —ହେ ନରେ ଏଥିରେ ସ୍ନାନକରି ପାପ ସମୂହ ଦହନ କର । ଦୁର୍ଗ ପରିଖା ( ଗଡ଼ଖାଇ ) ତୀର୍ଥରାଜ ( ସମୁଦ୍ର ) ପାପବ୍ୟୂହ ( ପାପରାଶି ) ।

୧୧—ଏ ସବୁପ୍ରକାର ପାପକୁ ବାଡ଼ବାଗ୍ନିରେ ପୋଡ଼ି ପକାଏ । ଏହି ଭୟରେ ପାପ ଦୂରରୁ ପଳାଏ । ବାଡ଼ବ ( ସମୁଦ୍ରରେ ଥିବା ଅଗ୍ନି ) ଦୁରିତ ( ପାପ ) ।

୧୨—ସେହି କମ୍ବୁକଟକରେ ରାଜା ଜଗନ୍ନାଥ—ସେ ରାଜା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ଏହି ଚତୁରବର୍ଣ୍ଣକୁ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଦେବାକୁ ସମର୍ଥ ଅଟନ୍ତି । ( ପୁରୁଷୋତ୍ତମର ନାମ ଶଙ୍ଖ କ୍ଷେତ୍ରରେ ପ୍ରସିଦ୍ଧ) ।

୧୩—ବୈଷ୍ଣବମାନଙ୍କ ମତରେ ଜଗତ ଶବ୍ଦର ଅର୍ଥ ରାଧା ଓ ନାଥ ଶବ୍ଦର ଅର୍ଥ କୃଷ୍ଣ, ଅତଏବ ଜଗନ୍ନାଥ ଏହି ଶବ୍ଦର ଅର୍ଥ ରାଧାକୃଷ୍ଣ, ଏ କଥା ବୈଷ୍ଣବ ମାନଙ୍କ ଛଡ଼ା ଆଉ କିଏ ସଂସାରରେ ଜାଣିବ । ଅତଏବ ଭକ୍ତିଦେବୀ ( ଭକ୍ତିଦାୟିନୀ ରାଧା ) ଯୁକ୍ତାକ୍ଷରରେ ଲୁଚିଅଛି ( ଅର୍ଥାତ୍ ଜଗତ୍ ଏହି-ଶବ୍ଦର ଶେଷାକ୍ଷର "ତ"ଟି ସନ୍ଧି ଅନୁସାରେ "ନ" ହୋଇ ଯୁକ୍ତ ହୋଇ ରହିଅଛି ) ।

୧୪—ସେହି ସମ୍ରାଟଙ୍କର ପାଦରେ ବନ୍ଦୁଅଛି, ଏହା କହିଲେ ମୋହର ବିଶେଷ କିଛି ଯଶ ହେବ ନାହିଁ; ଯେ ହେତୁ ମହାଦେବ ସେହି ପାଦରେ ଶିର ଲଗାଇବାକୁ ଆଶା କରି ରହିଅଛନ୍ତି, ( ମୁଁ ବା କେଉଁମାନ ) । ବୃଷାସନ ( ମହାଦେବ )

୧୫—ଯାହାଙ୍କର କଟାକ୍ଷ-କୁଠାରପାତ ମାତ୍ରେ ନାନାବିଧ ଦୁଃଖ ଦ୍ରୁମ ଛିନ୍ନ ଯାଇ ପାରେ । ଅନୋକହ ( ବୃକ୍ଷ )

ସେହି ପାଦପଦ୍ମାସନୀ ପାଣ୍ଟ ମହାଦେବୀ ।
ଅଷ୍ଟ ଐଶ୍ୱର୍ଯ୍ୟଦାୟିନୀ ଅଷ୍ଟଶକ୍ତି ସେବି ହେ ॥ ୧୬
ଭରସା କର ଅସନ୍ତି ଦୂରଦେଶୁଁ ପ୍ରାଣୀ ।
ଆରତ ଭଞ୍ଜନ ଦୀନବନ୍ଧୁ ନାମ ଶୁଣି ହେ ॥ ୧୭
କର ଯୋଡ଼ି ସମ୍ମୁଖରେ ଜଣାଇ ପକ୍ଷିଧବ ।
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ହେ ॥ ୧୮
କୋଟି-କନ୍ଦର୍ପ-ଲାବଣ୍ୟ-ମୂର୍ତ୍ତି ଦରଶନ ।
ଦେବାକୁ ସୁବେଶେ ବିଜେ ରତ୍ନସିଂହାସନ ହେ ॥ ୧୯
ଶିରେ ହେମ-ରତନ-ମୁକୁଟ ସପ୍ତଶାଖା ।
କରୁଣା-ସିନ୍ଧୁରେ କି ବଡ଼ବାନଳ ଶିଖା ହେ ॥ ୨୦
କାହାଁଇଁ ସାର୍ଥ ନୋହିବ ଏମନ୍ତ ବିଚାର ।
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ହେ ॥ ୨୧
ପ୍ରବାଳତରଣୀ ଦୃଷ୍ଟି ରଙ୍ଗାଧରେ ଅଛି ।
ବିଶେଷ ଯହିଁ ଲାବଣ୍ୟ ଲକ୍ଷ୍ମୀ ସମ୍ଭବଛି ହେ ॥ ୨୨

---

୧୬—ସେହି ଜଗନ୍ନାଥଙ୍କର ପାଦ ପଦ୍ମରେ ରହି ଅଷ୍ଟ ଐଶ୍ୱର୍ଯ୍ୟ ଦାୟିନୀ ବିମଳା ପ୍ରଭୃତି ଅଷ୍ଟ ମହାଦେବୀମାନେ ସେବା କରୁଅଛନ୍ତି । ଅଷ୍ଟ ଐଶ୍ୱର୍ଯ୍ୟ (ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମା ବଶାୟିତା )

୧୭—ଆରତ ଭଞ୍ଜନ ଦୀନବନ୍ଧୁ ନାମ ଶୁଣି ପ୍ରାଣୀମାନେ ଦୂରଦେଶରୁ ଭରସା କରି ଆସନ୍ତି ।

୧୮—ଆର୍ତ୍ତଜନ ମାନଙ୍କର ଗୁହାରିକୁ ସାବଧାନ ହେଉ ଏହା ଗରୁଡ଼ ଶ୍ରୀସମ୍ମୁଖରେ ହାତ ଯୋଡ଼ି ଜଣାନ୍ତି । ପକ୍ଷିଧବ ( ଗରୁଡ଼ )

୧୯—କୋଟିଏ କନ୍ଦର୍ପରୁଁ ଲାବଣ୍ୟ ମର୍ତ୍ତି ଦର୍ଶନ ଦେବାପାଇଁ ରତ୍ନ ସିଂହାସନରେ ଉତ୍ତମ ବେଶରେ ବିଜେ କରିଅଛନ୍ତି ।

୨୦—ଦୟା ସାଗରଙ୍କର ମସ୍ତକରେ ବାଡ଼ବାଗ୍ନିର ଶିଖାପରି ସୁବର୍ଣ୍ଣ ମୁକୁଟ ସପ୍ତଶାଖାରେ ଶୋଭା ପାଉଅଛି, ( ଅର୍ଥାତ୍ ସମୁଦ୍ରରେ ବାଡ଼ବାଗ୍ନି ଥିବାର ପ୍ରସିଦ୍ଧ ଏବଂ ଅଗ୍ନିର ସାତଶିଖା ଥିବାରୁ ତାହାର ନାମ ସପ୍ତାଗ୍ନି ହୋଇଅଛି ) । ( ସାଗର ସହିତ ଜଗନ୍ନାଥଙ୍କର ତୁଳନା )

୨୧—ସାଗର ଶଢ ଜଗନ୍ନାଥଙ୍କଠାରେ କାହିଁକି ସାର୍ଥକ ନୋହିବ, ବିଚାରିଲେ ସେଠାରି ସୁନ୍ଦର କୁଣ୍ଡଳ ମକରାକାର ଧରିଅଛି । ମକର ( ମଗର )

୨୨—ସୁରଙ୍ଗ ଅଧର ପୋହଳାନୌକାପରି ଦିଶୁଅଛି, ପୁଣି ଯହିଁରେ ଶୋଭା-ରୂପିଣୀ ଲକ୍ଷ୍ମୀଦେବୀ ବିଶେଷ ଭାବରେ ସମ୍ଭବ ଅଛନ୍ତି । ପ୍ରବାଳ (ପୋହଳା) ତରଣୀ ( ନୌକା ) ଲକ୍ଷ୍ମୀ ( ସମୁଦ୍ରରୁ ଜାତ ) ।

ଦାଶଅବତାର ଲୀଳା ଯାତ୍ରା ବିରଚନ ।
ଜନଙ୍କୁ ଦେଖାନ୍ତି ଯୁଗାନ୍ତର କଥାମାନ ॥
ସ୍ନାନ ଗୁଣ୍ଡିଚ୍ଚ ଏ ବେନି ସ୍ୱୟଂଲୀଳା ଯାର
ପତିତ ପାବନ ଅର୍ଥେ ପ୍ରସାଦୁଁ ବାହାର ହେ ॥ ୨୪
ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବଦିନ ଅବଶେଷେ ।
ସେବକ ଉତ୍ସୁକେ ମିଳି ମହାପ୍ରଭୁ ପାଶେ ହେ ॥ ୨୫
ସେ କାଳକୁ ଅନୁସରି ଯାତ୍ରୀ ନର ନାରୀ ।
ଯେ ଯାହାର ନିତ୍ୟକର୍ମ ତ୍ୱରା ହୋଇ ସାରି ହେ ॥ ୨୬
ହରି ହରି-ଦ୍ୱାରେ ମିଳି ହରି-ଧ୍ୱନି କଲେ ।
ହରିତ ପ୍ରହିତ ତ୍ୱରିତରେ ତହିଁ ହେଲେ ହେ ॥ ୨୭
ପଡ଼ିଲା ତୂଳୀ ପାହାଡ଼ା ବିଜୟ ନିମିତ୍ତେ ।
ବାଜିଲା ମେଘା ମୃଦଙ୍ଗ ମର୍ଦ୍ଦଳ ସହିତେ ହେ ॥ ୨୮
କଂସାଳ ତାଳ କର୍ତ୍ତାଳ ପଟହ ଝର୍ଝରି ।
ମୋ ପରେ ବିଜେ କରିବେ ଭାବି ତୋଷ ଧରି ହେ ॥ ୨୯

---

୨୩—ଦଶ ଅବତାର ମାନଙ୍କର ଯାତ୍ରା ବିହିତ ହେଉ ଥିବାରୁ ଲୋକମାନଙ୍କୁ ସେହି ସେହି ଯୁଗର କଥା ମାନ ଦେଖାଉ ଅଛନ୍ତି ।

୨୪—ଯାହାଙ୍କର ସ୍ନାନ ଓ ଶ୍ରୀଗୁଣ୍ଡିଚ୍ଚ ଏହି ଯୋଡ଼ିକ ନିଜଲୀଳା ଅଟେ—ପାପୀମାନଙ୍କୁ ଉଦ୍ଧାର କରିବା ପାଇଁ ଏହି ଦୁଇ ଯାତରେ ଦେଉଳରୁ ବାହାର ହୁଅନ୍ତି ।

୨୫—ଜ୍ୟେଷ୍ଠ ପୂର୍ଣ୍ଣିମାର ପୂର୍ବଦିନ ରାତିପାହାନ୍ତାରୁ ସେବକମାନେ ଆନନ୍ଦରେ ମହାପ୍ରଭୁଙ୍କ ପାଖରେ ମିଳନ୍ତି ।

୨୬।୨୭—ସେ ସମୟକୁ ଲକ୍ଷ୍ୟକରି ନରନାରୀ ଯାତ୍ରୀମାନେ ଆପଣାର ନିତ୍ୟକର୍ମ ଶୀଘ୍ର ଶେଷକରି ଜଗନ୍ନାଥଙ୍କ ସିଂହଦ୍ୱାରେ ପହୁଞ୍ଚି ହରିଧ୍ୱନି କରନ୍ତି । ସେହି ହରିଧ୍ୱନିରେ ଦିଗନ୍ତର ଶୀଘ୍ର ପୂର୍ଣ୍ଣ ହୋଇଯାଏ । ହରି ( ଜଗନ୍ନାଥ ) ହରିଦ୍ୱାର ( ସିଂହଦ୍ୱାର ) ହରିତ ( ଦିଗ ) ।

୨୮।୨୯—ଜଗନ୍ନାଥଙ୍କର ବିଜୟ ନିମିତ୍ତ ପାଟମୁଚୁଲା ପଡ଼ିଲା । ମେଘା, ମୃଦଙ୍ଗ, ମର୍ଦ୍ଦଳ ସହିତ ଝାଞ୍ଜ, ଭେରୀ, ପଟହ, ଖଞ୍ଜଣି ପ୍ରଭୃତି ବାଦ୍ୟମାନ ବାଜିଲା । ମୋ ଉପରେ ଜଗନ୍ନାଥ ବିଜେ କରିବେ ଏହା ଭାବି ପୃଥିବୀ ଆନନ୍ଦିତା ହେଲା । ତୂଳୀ ( ପାଟ ମୁଚୁଲା ) କଂସାଳ ( ଝାଞ୍ଜ ) କର୍ତ୍ତାଳ ( ଭେରୀ ) ଝର୍ଝରି ( ଖଞ୍ଜଣି ) ଧରା ( ପୃଥିବୀ ) ।

ନୋହିବେ ସର୍ବଜ୍ଞ କପାଁ ବ୍ରହ୍ମ-ପରିବାର ।
ଜାଣିଲେ ନିଷ୍ଟପ୍ରଭୁ ଦକ୍ଷିଣ-କୁଞ୍ଜର ହେ ॥ ୩୦
ପୂର୍ବଜରେ ପୂର୍ବଗଜ ଭାବ ଜନ୍ମାଇ ।
ପହଣ୍ଡି ବିଜୟ କଲେ ଢୁଲାଇ ଢୁଲାଇ ଯେ ॥ ୩୧
ଏମନ୍ତ ନୋହିଲେ କି ପ୍ରାସାଦ-ଦରୀ ତେଜି ।
ମଣ୍ଡପ-ସର ଅବଗାହନରେ ଚିତ୍ତ ମଜ୍ଜି ହେ ॥ ୩୨
ସାର ଗନ୍ଧସାର-ପଙ୍କେ ଭୂଷିତ ହୋଇବେ ।
ଜନ-ପଙ୍କ-ପଙ୍କଜ-ବନକୁ ଉଜାଡ଼ିବେ ହେ ॥ ୩୩
ସବୁଦିନେ ଲୀଳାସ୍ଥାନ ନୀଳମହୀଧର ।
ଭକ୍ତଭାବ-ରଜ୍ଜୁରେ ବନ୍ଧନ ଅଛି ଯାର ହେ ॥ ୩୪
ଜଡ଼ ଯେତେ ଛନ୍ତି ଏତେ ଭାବ କି ଜାଣିବେ ।
ବାହୁଡ଼ିବା ବେଳେ ବେଶେ ବ୍ୟକତ ହୋଇବେ ହେ ॥ ୩୫

---

୩୦।୩୧—ଭଗବାନଙ୍କର ଗୃହକରମାନେ କାହିଁକି ସର୍ବଜ୍ଞ ନହେବେ । ସେମାନେ ଜାଣିପାରିଲେ ଯେ, ପ୍ରଭୁ ଜଗନ୍ନାଥ ନିଷ୍ଟପ୍ରୟ ଦକ୍ଷିଣ କୁଞ୍ଜର ଓ ତାହାଙ୍କର ବଡ଼ଭାଇ ବଳଦେବଙ୍କଠାରେ ଐରାବତ ଭାବ ଆଣି ଢୁଲାଇ ଢୁଲାଇ ପହଣ୍ଡି ବିଜେ କରାଇଲେ; ଅର୍ଥାତ୍ ପଣ୍ଡାମାନେ ଜଗନ୍ନାଥ ଓ ବଳଦେବଙ୍କୁ ଦାଣ୍ଡି ମଣି ଢୁଲାଇଁ ଢୁଲାଇ ବିଜେ କରାଇଲେ । ବ୍ରହ୍ମପରିକର ( ମହାପ୍ରଭୁଙ୍କର ଗୃହକର) ଦକ୍ଷିଣ କୁଞ୍ଜର (ଦକ୍ଷିଣ ଦିଗ ହସ୍ତୀ ବାମନନାମା କୃଷ୍ଣବର୍ଣ୍ଣ ହେତୁ-ଜଗନ୍ନାଥଙ୍କ ସମାନ ) ପୂର୍ବଜ ( ବଡ଼ଭାଇ ) ପୂର୍ବଗଜ ( ଐରାବତ ଶୁକ୍ଳବର୍ଣ୍ଣ ହେତୁ ବଳଦେବଙ୍କ ସମାନ )

୩୨—ହସ୍ତୀ ନୋହିଥିଲେ କାହିଁକି ଦେଉଳରୂପକ ଗୁହା ଛାଡ଼ି ମଣ୍ଡପରୂପକ ପୁଷ୍କରଣୀରେ ସ୍ନାନ କରିବାକୁ ମନ ବଳାଇଥାନ୍ତେ । ପ୍ରାସାଦ ( ଦେଉଳ ) ଦରୀ ( ଗୁହା ) ମଣ୍ଡପ ( ସ୍ନାନ ମଣ୍ଡପ ) ସର ( ପୁଷ୍କରଣୀ ) ।

୩୩—ସର୍ବଶ୍ରେଷ୍ଠ ଚନ୍ଦନରୂପ ପଙ୍କରେ ଭୂଷିତ ହୋଇବେ ଏବଂ ଲୋକମାନଙ୍କର ପାତକରୂପକ ପଦ୍ମବନକୁ ଉଜାଡ଼ିଦେବେ । ( ହସ୍ତୀମାନେ ମଧ୍ୟ ସ୍ନାନପରେ ପଙ୍କ ଲେପି ହୁଅନ୍ତି ଏବଂ ପଦ୍ମବନକୁ ଦଳି ଦିଅନ୍ତି ) ଗନ୍ଧସାର ( ଚନ୍ଦନ ) ପଙ୍କ [ ପାପ ] ।

୩୪—ନୀଳଗିରି ଯାହାଙ୍କର ସବୁଦିନେ ଲୀଳାସ୍ଥାନ ଅଟେ ଏବଂ ଯେ ଭକ୍ତମାନଙ୍କର ଭକ୍ତିରୂପ ରଜ୍ଜୁରେ ବାନ୍ଧି ହୁଅନ୍ତି । ନୀଳମହୀଧର ( ବଡ଼ଦେଉଳକୁ ) ।

୩୫—ଅଜ୍ଞଲୋକମାନେ ଏତେ କଥା କାହୁଁ ବୁଝିଲେ, କେବଳ ବଡ଼ଦେଉଳକୁ ବାହୁଡ଼ିବା ସମୟରେ ହସ୍ତୀବେଶ ଧାରଣ କରିବାକୁ ପ୍ରଭୁଙ୍କର ହସ୍ତୀଭାବ ପ୍ରକାଶ ପାଏ ( ବଡ଼ଦେଉଳକୁ ଯିବାବେଳେ ଜଗନ୍ନାଥ ହସ୍ତୀ ବେଶ ଧରନ୍ତି )

ଭବ-ସାଗର-ସୁବର୍ଣ୍ଣ ତରଣୀ ବିସ୍ତର ।
ସୁଭଦ୍ରାଙ୍କୁ ବିଜେ କରାଇଲେ ତଥା ଧରି ହେ ॥ ୩୬
ତାପ-ତ୍ରୟ-ଭାଣ୍ଡ-ଭଞ୍ଜନକୁ ଦଣ୍ଡବର ।
ସୁଦରଶନଙ୍କ ବିଜେ ସେହି ପରକାର ହେ ॥ ୩୭
ଇନ୍ଦ୍ରପଦ ଦାତା ଯେ ରାଜାଧିରାଜେଶ୍ୱର ।
ବିଜେ କରେ ଦ୍ୱିଜେ ଦେଇ ନିଜ କରଭର ହେ ॥ ୩୮
ତାଳବୃନ୍ତ ଚାମର ଶ୍ୱେତଛତ୍ର ଟେକା ତହିଁ ।
କ୍ଷୀର ସାଗର-ଲହରୀ ଭ୍ରମ ଉପୁଜାଇ ହେ ॥ ୩୯
ଗହଳ ହୋଇଣ କଳାଛତ୍ର ଶୋଭା ଦିଶି ।
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ହେ ॥ ୪୦
ପତାକା ବ୍ୟାଜରି ତେଜେ ଶୂନ୍ୟେ ନୀରଧାର ।
ସ୍ୱେଦଛଳେ କରେ ନରତନୁ ଜରଜର ହେ ॥ ୪୧
ଚଞ୍ଚଳାଖେଳା ଚଳିବା ଖଦି ପୀତବାସ ।
ତୃଷିତ ଦ୍ୱିଜ-ଗୁଡ଼ିକ ଜଳପାନେ ତୋଷ ହେ ॥ ୪୨

---

୩୬—ଯେପରି ଲୋକେ ଶ୍ରେଷ୍ଠ ନୌକାକୁ ଟେକି ନିଅନ୍ତି, ଲୋକେ ସେହିପରି ସୁଭଦ୍ରାଙ୍କୁ ସଂସାର ସାଗର ତରିବାପାଇଁ ଏହା ସୁବର୍ଣ୍ଣ ନୌକା ବିସ୍ତର ଟେକି ନେଇ ବିଜେ କରାଇଲେ । ତରଣୀ ( ନୌକା )

୩୭—ତ୍ରିତାପରୂପ ଭାଣ୍ଡ ଭାଙ୍ଗିବାକୁ ଯେଉଁ ସୁଦର୍ଶନଚକ୍ର ଦଣ୍ଡରୂପଧାରୀ ଅଛନ୍ତି, ତାହାଙ୍କୁ ଦଣ୍ଡପରି କାନ୍ଧରେ ପକାଇନେଇ ବିଜେ କରାଇଲେ । ତାପତ୍ରୟ ( ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ ) ଭାଣ୍ଡ ( ହାଣ୍ଡି ) ।

୩୮—ଇନ୍ଦ୍ରପଦ ଦାତା ସ୍ୱୟଂ ପ୍ରଭୁ ରାଜାଧିରାଜ ପରି ବ୍ରାହ୍ମଣମାନଙ୍କ ଉପରେ ହାତଭରାଦେଇ ବିଜେ କଲେ ।

୩୯—ବ୍ରାହ୍ମଣମାନେ ଚାମର ତାଳବୃନ୍ତ ଏବଂ ଶ୍ୱେତଛତ୍ର ଟେକି ଧରିଥାନ୍ତି, ଶ୍ୱେତ-ଚାମର ପକାଇଲାବେଳେ ତାହା କ୍ଷୀରସମୁଦ୍ରର ଲହରୀପରି ଜଣା ଯାଉଥାଏ ।

୪୦—ଲୋକଗହଳ ହେତୁ କଳାଛତା ଉଚ୍ଚ ପର୍ବତ ଉପରେ ମେଘ ଘୋଟି ଗଲାପରି ଶୋଭା ଦିଶେ । ତୁଙ୍ଗ ( ଉଚ୍ଚ ) ଶିଖରୀ ( ପର୍ବତ ) ।

୪୧—ପତାକା ଛଳରେ ଶୂନ୍ୟରେ ସେହି ମେଘ ଜଳଧାରା ତ୍ୟାଗ କରି ସ୍ୱେଦ ( ଝାଳ ) ଛଳରେ ଲୋକମାନଙ୍କର ଶରୀରକୁ ଓଦା କରିଦିଏ । ( ଝାଳ ବୋହି ଲୋକମାନଙ୍କର ଶରୀର ଓଦା ହୋଇଥାଏ ) ତନୁ ( ଶରୀର ) ।

୪୨।୪୩—ଜଗନ୍ନାଥ ବିଜେ କଲାବେଳେ ଲୋକେ ହଳଦିଆଲୁଗା ପିନ୍ଧିଥିବାରୁ ସେହି ହଳଦିଆଲୁଗା ହିଁ ମେଘ କୋଳରେ ବିଜୁଳି ଖେଳିଲାପରି ଜଣାପଡ଼େ ।

ଏ ପ୍ରମାଣ ବରହଣ ପୁଚ୍ଛ ଟେଣ୍ଡୁ ଚଳି ।
ନିଶାଣ ମଣ୍ଡୁକ ନାଦେ ଦଗନ୍ତ ଉଚ୍ଛୁଳି ଯେ ॥ ୪୩
ପ୍ରଭୁ ଚଳନ ଶବଦ ଜନିତ ସ୍ତନିତ ।
ପୁଷ୍ପାଞ୍ଜଳି ବଳାବଳୀ ଉଡ଼ି ଖସେ ସତ ହେ ॥ ୪୪
ଏମନ୍ତେ ସ୍ନାନମଣ୍ଡପେ ସିଂହାସନ ପର ।
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ହେ ॥ ୪୫
ନାଗ ନର କିନ୍ନର ଗନ୍ଧର୍ବ ଛନ୍ତି ରୁହିଁ ।
ଅନେକ କନକଘଟେ ପୂର୍ଣ୍ଣ କରି ତହିଁ ହେ ॥ ୪୬
ଢାଳିଲେ ଭୂସୁରେ ନୀର ଶ୍ରୀମୁଖମଣ୍ଡଳେ ।
ଧାରାମାନ ପତନ ହୋଇଲା ମହୋଜ୍ଜ୍ୱଳେ ହେ ॥ ୪୭
କି ମେରୁ-ହୀରା-ମାରଗ ହେମ-ଶୃଙ୍ଗୁ ଖସି ।
ଜାହ୍ନବୀ ଯମୁନା ହରତାଳ-ଧାରା ଆସି ଯେ ॥ ୪୮

---

ତୃଷାର୍ତ୍ତ ଚାତକପକ୍ଷୀ ମେଘ ଜଳପାନ କରି ସନ୍ତୁଷ୍ଟ ହେଲାପରି ଜଗନ୍ନାଥଙ୍କର ପାଦୋଦକ ପାନକରି ବ୍ରାହ୍ମଣମାନେ ସନ୍ତୁଷ୍ଟ ହୁଅନ୍ତି । ଏହିପ୍ରକାର ବର୍ଷାକାଳ ପ୍ରମାଣିତ ହେବାରୁ ମୟୂରମାନେ ଅଧିକ ପରମାଣରେ ପୁଚ୍ଛ ତ୍ୟାଗ କରନ୍ତି । ( ବିଜେ ହେଲବେଳେ ଲୋକେ ମୟୂରପୁଚ୍ଛ ବିଡ଼ାବାନ୍ଧି ପକାନ୍ତି ) ନିଶାଣ ଓ ମଣ୍ଡୁକ ଶବ୍ଦରେ ଦିଗନ୍ତ ଉଚ୍ଛୁଳିପଡ଼େ । ନିଶାଣ ( ବାଦ୍ୟ ବିଶେଷ ) ମଣ୍ଡୁକ ( ବେଙ୍ଗ ) ।

୪୪—ମହାପ୍ରଭୁଙ୍କ ଚଳନରେ ହେଉଥିବା ଶବ୍ଦ ମେଘଗର୍ଜ୍ଜନ ଏବଂ ପୁଷ୍ପାଞ୍ଜଳି ବକପଂକ୍ତି ମେଘ ନିକଟରେ ଉଡ଼ିଲା ପରି ଉଡ଼ିଯାଇ ପୁଣି ତଳକୁ ଖସି-ପଡ଼ୁଅଛି । ସ୍ତନିତ ( ମେଘ ଗର୍ଜନ ) ବଳାବଳୀ ( ବକଶ୍ରେଣୀ ) ।

୪୫—ସ୍ନାନ ମଣ୍ଡପରେ ଏହିପରି ମହାପ୍ରଭୁ ସଙ୍ଗରେ ଭାଇ ଭଉଣୀଙ୍କୁ ଘେନି ସିଂହାସନ ଉପରେ ବିଜେ କରିଅଛନ୍ତି । ସହୋଦର (ଭାଇ) ।

୪୬—ସେ ନାଗ, ନର, କିନ୍ନର ଓ ଗନ୍ଧର୍ବ ସମସ୍ତେ ଅନେକ ସୁବର୍ଣ୍ଣ କଳଶରେ ଜଳପୂର୍ଣ୍ଣ କରି ରୁହିଁ ରହିଅଛନ୍ତି ।

୪୭—ପଣ୍ଡିତମାନେ ଶ୍ରୀମୁଖମଣ୍ଡଳରେ ଜଳ ଢାଳିଲେ, ଅତ୍ୟନ୍ତ ଉଜ୍ଜ୍ୱଳଧାରା ସବୁ ତଳେ ପଡ଼ିଲା । ଭୂସୁର ( ବ୍ରାହ୍ମଣ )

୪୮—ବଳରାମ, ଜଗନ୍ନାଥ ଓ ସୁଭଦ୍ରାଙ୍କ ଶରୀରରୁ ଜଳଧାର ବହି ମେରୁ ପର୍ବତର ହୀରା, ମାରଗ ଓ ସୁବର୍ଣ୍ଣ ଶୃଙ୍ଗ ମାନଙ୍କରୁ କ୍ରମେ ଗଙ୍ଗା, ଯମୁନା ଓ ହରତାଳ ଧାର ଖସିଲା ପରି ଜଣାଗଲା । ଏଠାରେ ବଳରାମଙ୍କ ଶରୀର, ମେରୁର ହୀରା ଶୃଙ୍ଗ, ତହିଁରୁ ଗଙ୍ଗାଧାର, ଜଗନ୍ନାଥଙ୍କ ଦେହ, ମାରଗ ( କଳା ) ତହିଁରୁ ଯମୁନା ଧାର, ମଣି ସୁଭଦ୍ରାଙ୍କ ଦେହ, ସୁବର୍ଣ୍ଣଶୃଙ୍ଗ ତହିଁରୁ ହରତାଳ ଧାର ।

ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ ।
ସେ ଭିନ୍ନଶୃଙ୍ଗୁ କି ଜାତ ତରଳ-ରଜତ ଯେ ॥ ୪୯
ଦେଖିଲା ଅଖିରେ ଦରିଦ୍ରତା ନ ରଖିଲା ।
ମନହିଁ ଦୁଃସହ ଦୁଃଖମାନ ଉପେଷିଲା ହେ । ୫୦
ହରି ଚନ୍ଦନ ସଙ୍ଗରୁ ସେହି ବୋଲି ଘେନ ।
ଶିଘ୍ରବଲେ ହେବେ ଏତ ବାଞ୍ଛା ବରଦାତ୍ରୀ ହେ ॥ ୫୧
ସବୁରୂପେ ଏ ଉପମା ଉତ୍ତମ ସମ୍ଭବେ ।
ବିରାଜିତ ଭୁଜ-ଶାଖା ଅଧର-ପଲ୍ଲବେ ହେ ॥ ୫୨
ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି ।
ସ୍ୱଭାବରେ ବ୍ରହ୍ମ-ଦାରୁ ବ୍ୟସ୍ତପଦେ ରହି ହେ ॥ ୫୩
ସୁରଭିର ସ୍ଥାନ ସେନାପଠା ବଲକଲ ।
ଯାହା ପଦେ ସଦା ଢଳଢଳ ଗଙ୍ଗାଜଳ ହେ । ୫୪

---

୪୯—ଚନ୍ଦନ ଲେପନ ସମୟରେ ଚନ୍ଦନ ଖସି ମେରୁର ସେହି ଭିନ୍ନ ଶୃଙ୍ଗରୁ ଅଜଣା ରୂପା ଜନ୍ମିଲା ପରି ଦେଖାଗଲା । ତରଳରଜତ ( ଅଜଣା ରୂପା )

୫୦—ତାହାଙ୍କୁ ଦର୍ଶନ କରିଥିବା ଚକ୍ଷୁର ଅଭାବ ରହିଲା ( ଅର୍ଥାତ୍ ସଂସାରରେ ସେ ଅଖିରେ ଦେଖିବା ପଦାର୍ଥ ଆଉ କିଛି ବିଶେଷ ରହିଲା ନାହିଁ) ମନମଧ୍ୟ ଅସହ୍ୟ ଦୁଃଖ ସବୁ ଦୂର କଲା ।

୫୧—ହରି (ଜଗନ୍ନାଥ) ଚନ୍ଦନ ସଙ୍ଗରୁ ହରି ଚନ୍ଦନ ( କଳ୍ପତରୁ ) ହେଲେ ଏହା ଆମ୍ଭେ ମନରେ ଘେନୁଅଛୁଁ । ଅତଏବ ଶିଘ୍ର କଲେ ଏ ବାଞ୍ଛାବର ପ୍ରଦାନ କରିବେ ।

୫୨।୫୩—ଦାରୁବ୍ରହ୍ମ ଜଗନ୍ନାଥ ବିପରୀତ ପଦରେ ବ୍ରହ୍ମଦାରୁ (କଳ୍ପତରୁ) ଅଟନ୍ତି । ଏ ଉପମା ସବୁ ଅପେକ୍ଷା ଉତ୍ତମ ଜଣା ଯାଉଅଛି । ଭୁଜ ଶାଖା ରୂପେ ବିରାଜିତ, ଅଧର ନୂତନ ପତ୍ର ରୂପେ, ଭକ୍ତି ଓ ମୁକ୍ତି ଦୁଇଫଳ ଏଠାରେ ଅଛି; କିନ୍ତୁ ତାହାକୁ କେହି ଦେଖି ପାରନ୍ତି ନାହିଁ ( କଳ୍ପତରୁ ଫଳ ମଧ୍ୟ ଦେଖାଯାଏ ନାହିଁ ) । ପଲ୍ଲବ ( ପତ୍ର ) ବ୍ରହ୍ମଦାରୁ ( କଳ୍ପତରୁ ) ବ୍ୟସ୍ତପଦ ( ବିପରୀତପଦ । )

୫୪—ଯେପରି କଳ୍ପବୃକ୍ଷ ସୁରଭି ( କାମଧେନୁ )ମାନଙ୍କର ଆଶ୍ରୟ ସ୍ଥାନ, ବଲ୍କଲାବୃତ୍ତ ଏବଂ ତାହାର ପାଦ ପ୍ରଦେଶରେ ( ମୂଳରେ ) ସ୍ୱର୍ଗଙ୍ଗା ସର୍ବଦା ପ୍ରବାହିତା, ସେହି ପ୍ରଭୁ ମଧ୍ୟ ସୁରଭି ( ସୁଗନ୍ଧ )ର ଆଶ୍ରୟ ସ୍ଥାନ ସେନାପଠା ( କାଷ୍ଠ ବିଶେଷ ) ଦ୍ୱାରା ଆବୃତ ଏବଂ ଏହାଙ୍କର ନଖ କୋଣରେ ଗଙ୍ଗା ରହି ସବୁବେଳେ ଢଳ ଢଳ ହେଉ ଅଛନ୍ତି, ଅତଏବ ଏ ସ୍ୱୟଂ କଳ୍ପବୃକ୍ଷ ।

ଭାଗ୍ୟରୁ ଏ ଉପମାକାରକ ମୁଁ ଯେ ହେଲି ।
ପୁଲକିତ-ଶରୀରେ ହରିରେ ସ୍ତୁତି କଲି ହେ ॥ ୫୫
ମହିଁମା ଅନନ୍ତ ପ୍ରଭୋ ମହୀମା ଅନନ୍ତ ।
ମନୋହାରୀ ସହୋଦର ହୋଇ ଯାର ଖ୍ୟାତ ହେ ॥ ୫୬
ଅରି-ଦର-କର ବିଭୋ ଅରି-ଦର-କର ।
ଯୁଗେ ଯୁଗେ ଧରି ନାନାବିଧ ଅବତାର ହେ ॥ ୫୭
ବିଭୀଷଣ-ଅଘ ବିଭୀଷଣ-ଅଘ-ହର ।
ସ୍ଥାନ କରି ଦେଲି ଲଙ୍କା ନିଜ କଲେବର ହେ ॥ ୫୮
ଭବ-ବିରଞ୍ଚି-ପୂଜିତ ହେ ଭବ-ବିରଞ୍ଚି !
ଶୁଚି-କବଳକ ସଦାନନ୍ଦ ସଦା ଶୁଚି ହେ ॥ ୫୯
ରଚିବି "କୋଟି ବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ।
ସୁଜାତି ସୁମନାପରି ହୋଇବ ଏ ଗୀତ ହେ ॥ ୬୦

---

୫୫—ଭାଗ୍ୟ ବଳରୁ ମୁଁ ଉପମାକୁ କଲି, ରୋମାଞ୍ଚିତ ଶରୀରରେ ପ୍ରଭୁଙ୍କୁ ସ୍ତୁତି କଲି । ପୁଲକିତ (ରୋମାଞ୍ଚିତ)

୫୬—ହେ ପ୍ରଭୋ, ଆପଣଙ୍କର ମହିଁମାରେ ସୀମା ନାହିଁ, ମହୀ ( ପୃଥ୍ୱୀ ) ଏବଂ ମା ( ଲକ୍ଷ୍ମୀ ) ଏ ଦୁହେଁ ଆପଣଙ୍କର ମନୋହାରିଣୀ ଅଟନ୍ତି । ଅନନ୍ତ [ ଶେଷ-ଦେବ ] ଆପଣଙ୍କର ଭାଇ ହୋଇ ଖ୍ୟାତ ହୋଇଅଛନ୍ତି । ( ଶେଷଦେବ ବଳଭଦ୍ର ଅବତାର ହୋଇଥିବାର ପୁରାଣୋକ୍ତି )

୫୭—ହେ ପ୍ରଭୋ, ଆପଣ ଅରି ( ଚକ୍ର ) ଦର ( ଶଙ୍ଖ ) ଏ ଦୁହିଙ୍କୁ ହସ୍ତରେ ଧେନି ଅଛନ୍ତି ଏବଂ ଅରିଦର-କର ( ଶତ୍ରୁ ଭୟ କାରକ ) ଅଟନ୍ତି, ଯୁଗେ ଯୁଗେ ନାନା ପ୍ରକାର ଅବତାର ଧରନ୍ତି ।

୫୮—ବିଭୀଷଣର ପାପ ନାଶି ତାହାକୁ ଲଙ୍କାରେ ସ୍ଥାନ ଦେଲେ, ପୁଣି ଅତିଭୀଷଣ ଅଘାସୁରକୁ ବଧକରି ସାଯୁଜ୍ୟ ମୁକ୍ତି ପ୍ରଦାନ କରିବାରୁ ସେ ଆପଣଙ୍କ ଦେହରେ ମିଶିଗଲା । ବିଭୀଷଣ ( ରାବଣ ଭାଇ ଓ ଭୟଙ୍କର ) ଅଘ (ପାପ ଓ ଓ ଅଘାସୁର ) କଲେବର ( ଦେହ ) ।

୫୯—ଆପଣ ହର ଓ ବ୍ରହ୍ମାଙ୍କଦ୍ୱାରା ପୂଜିତ ଏବଂ ସଂସାରର କର୍ତ୍ତା ଅଟ, ଆପଣ ଅଗ୍ନିଙ୍କୁ ଗ୍ରାସ କରି ଅଛନ୍ତି ଏବଂ ସର୍ବ ପବିତ୍ର ଅଟନ୍ତି । ଭବବିରଞ୍ଚି ( ହର, ବ୍ରହ୍ମା ଓ ସଂସାର କର୍ତ୍ତା ) ( ଶୁଚି ) ଅଗ୍ନି କବଳକ ( ଗ୍ରାସକାରୀ ) ।

୬୦—ହେ ପ୍ରଭୁ, ମୁଁ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଚରିତ ରଚନା କରିବି; ଏ ଗୀତ ଉତ୍ତମ ଜାଇଫୁଲ ପରି ହେବ । ସୁଜାତି (ଉତ୍ତମ) ସୁମନା ( ଜାଇଫୁଲ ) ।

ସୁରଭିରେ ମୋହିତ-ମାନସ ହେବେ ବିବୁଧ ।
ଗୁଣିବନ୍ତେ ହୃଦେ ମାଳା କରିଣ ଧରିବେ ହେ ॥ ୭୧
ରସିକ-ଭ୍ରମରେ ହେବେ ରସ ଘେନି ବଶ ।
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ ହେ ॥ ୭୨
କବି ଉପେନ୍ଦ୍ର ତବ କୃପାରେ ହୋଇଛି ।
ଏତେ ମନୋରଥ ସାର୍ଥେ କି ସଂଶୟ ଅଛି ହେ ॥ ୭୩

---

## ଦ୍ୱିତୀୟ ଛାନ୍ଦ

( ଚମ୍ପାନଗରୀ ବର୍ଣ୍ଣନା ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଜନ୍ମବୃତ୍ତାନ୍ତ )

ରାଗ—ମାଳବ । ଚୋଢ଼ି ବାଣୀ ।



ରାଣ ଅଭିଧାନ ଜାଣିଥିଲେ । ଜାଣି କିସ ହେବ ବିହୃଦ ହେଲେ ।
ସାବଧାନ ହୋଇ ସୁବୁଦ୍ଧିଗଣ । ନଗରବର୍ଣ୍ଣନା ମନକୁ ଅଣ ।୧।

---

୭୧—ଏହାର ସୁଗନ୍ଧରେ ଉତ୍ତମ ଲୋକମାନଙ୍କ ମନ ମୁଗ୍ଧ ହେବ ଏବଂ ଗୁଣୀ ଲୋକମାନେ ମାଳାକରି ଏହାକୁ ହୃଦୟରେ ଧରିବେ । ସୁରଭି ( ସୁଗନ୍ଧ ) ବିବୁଧ ( ଉତ୍ତମ ଲୋକେ ) ।

୭୨—ରସିକମାନେ ଭ୍ରମରପରି ଏହି ଫୁଲର ରସ ଗ୍ରହଣ କରି ବଶୀଭୂତ ହେବେ । ମୂର୍ଖମାନେ ଆଦର କରନ୍ତୁ ବା ନ କରନ୍ତୁ ତହିଁରେ କଣ ଅଛି ।

୭୩—ଉପେନ୍ଦ୍ର ଆପଣଙ୍କ କୃପାରୁ କବି ହୋଇଅଛି । ଆପଣଙ୍କ କୃପାରୁ ତାହାର ଏହି ମନୋରଥ ପୂର୍ଣ୍ଣହେବ ଏଥିରେ ସଂଶୟ କଣ ?

---

## ଦ୍ୱିତୀୟ ଛାନ୍ଦ

୧—ଯାହାର ହୃଦୟ ନାହିଁ, ତାହାର ପୁରାଣ ବା ଅଭିଧାନ ଜାଣିବା ବ୍ୟର୍ଥ ଅଟେ । ହେ ସୁବୁଦ୍ଧି ଗଣ, ସାବଧାନ ହୋଇ ନଗର ବର୍ଣ୍ଣନାକୁ ମନକୁ ଅଣ ।

ଚମ୍ପା ସେ ରସା-ଯୋଷା ଶିରେ ବନ୍ଧ । ଶିବ ତହିଁରେ ଗୁରୁତର-ସ୍ନେହୀ ।
ଜନ-ମନୋହର ସୁବାସ ଅଛି । ଭ୍ରମର ଅବଲମ୍ବ ନାହିଁ କିଛି ॥ ୨
ଦେଖିବାରୁ ଯାହା ରୁଚିରରୁଚି । ଶଙ୍କା ଲଭି ଲଙ୍କା ଅଳକା କାଞ୍ଚୀ ।
ତରୁ ତରଣୀରେ ଶରଣ ଭଜି । କମ୍ପ ସ୍ତମ୍ଭ ଡକା ଦେବେ ନ ତେଜି ॥ ୩
ବଡ଼ଭି ବଡ଼-ଭି ଜନମ କରେ । ହରିହୟ ହରି-ହୟ ଚିତ୍ତରେ ।
ବୈଜୟନ୍ତୀକୁ ଜିଣିବ ବୋଲି । ବଇଜୟନ୍ତୀରେ ଛନ୍ଦ ନ ଭାଳି ॥ ୪
ବିତାନ ଏସନ ପ୍ରସନ୍ନ ଧରେ । ଯେସନ ଗଗନ ନିଶାକାଳରେ ।
ଚନ୍ଦ୍ରମଣ୍ଡଳ କରେ ପ୍ରକାଶିତ । ପୁଣି ତାର ତାର-ରାଜି ରାଜିତ ॥ ୫

---

୨—ଏ ନଗରୀର ନାମ ଚମ୍ପା—ଚମ୍ପା ଫୁଲକୁ ନାରୀମାନେ ମସ୍ତକରେ ଖେଳି ଥାଆନ୍ତି, ମହାଦେବ ତହିଁରେ ବିଶେଷ ସ୍ନେହ କରନ୍ତି, ତାହାର ମନୋ-ମୁଗ୍ଧକର ସୁଗନ୍ଧଥାଏ ଏବଂ ଭ୍ରମର ତହିଁରେ ବସେ ନାହିଁ । ଏହି ଚମ୍ପାନାମ୍ନୀ ନଗରୀକୁ ପୃଥିବୀରୂପା ସ୍ତ୍ରୀ ମସ୍ତକରେ ଧରି ରଖିଅଛି । ଶିବ (ମଙ୍ଗଳ) ସର୍ବଦା ଏଠାରେ ରହିଅଛି, ଅର୍ଥାତ୍ ଏ ନଗରୀରେ ଅମଙ୍ଗଳ ଶଙ୍କା ଅବଦୌ ନାହିଁ । ଲୋକମାନଙ୍କର ମନୋମୁଗ୍ଧକର ଉତ୍ତମ ଗୃହମାନ ଏଠାରେ ଅଛି । ଭ୍ରମ (ଭ୍ରାନ୍ତି)ର ଆଶଙ୍କା ନାହିଁ (ଅର୍ଥାତ୍ କାହାର କୌଣସି ବିଷୟରେ ଭ୍ରମ ନାହିଁ ) । ରସା (ପୃଥିବୀ) ଯୋଷା (ସ୍ତ୍ରୀ) ଶିବ (ମହାଦେବ ଓ ମଙ୍ଗଳ) ସୁବାସ ( ସୁଗନ୍ଧ ଓ ଉତ୍ତମ ଗୃହ ) ଭ୍ରମର ( ଭଅଁର ଓ ଭ୍ରାନ୍ତିର ) ।

୩—ଯାହାର ମନୋହର ସୌନ୍ଦର୍ଯ୍ୟ ଦେଖି ଲଙ୍କା, ଅଳକା ଓ କାଞ୍ଚୀ ନଗରୀମାନେ ବୃକ୍ଷରେ ଏବଂ ସ୍ତ୍ରୀଠାରେ ଶରଣ ପଶି ସୁଦ୍ଧା, କମ୍ପିବା, ସ୍ତମ୍ଭୀଭୂତ ହେବା ଓ ଡକା ପକାଇବାକୁ ଛାଡ଼ୁ ନାହାନ୍ତି । ଅର୍ଥାତ୍ ଲଙ୍କା ନଗରୀ ଲଙ୍କା (ଡାଳ) ରୂପରେ ବୃକ୍ଷକୁ ଆଶ୍ରୟ କରି ସୁଦ୍ଧା ଭୟରେ କମ୍ପୁଅଛି । ଅଳକା ଅର୍ଥାତ୍ ଚୂର୍ଣ୍ଣ କୁନ୍ତଳ ରୂପେ ନାରୀ ଆଶ୍ରୟ କରି ସୁଦ୍ଧା ଭୟରେ ସ୍ଥିର ହୋଇ ରହିଅଛି । କାଞ୍ଚୀ ନଗରୀ ମଧ୍ୟ କାଞ୍ଚୀ (କଟି କିଙ୍କିଣୀ) ରୂପେ ନାରୀକୁ ଆଶ୍ରୟ କରି ମଧ୍ୟ ଡକା ପକାଉ ଅଛି । ରୁଚିର ରୁଚି ( ମନୋହର କାନ୍ତି ) ।

୪—ସେ ନଗରୀର ଅଟ୍ଟାଳିକା ଇନ୍ଦ୍ରପୁରୀକୁ ଜିଣିବ ବୋଲି ଇନ୍ଦ୍ରଙ୍କ ମନରେ ଭୟ ଜନ୍ମୁଅଛି ଏବଂ ଏ ନଗରୀ ପତାକାଦ୍ୱାରା ଅମ୍ଭଙ୍କୁ ଛନ୍ଦ ପକାଇବ ଏହା ଭାବି ସୂର୍ଯ୍ୟଙ୍କର ଘୋଡାମାନେ ମନରେ ଭୟ କରନ୍ତି (ଅର୍ଥାତ୍ ଏହାର ପତାକା ଆକାଶ ସ୍ପର୍ଶ କରୁଅଛି) । ବଡ଼ଭି ( ଅଟ୍ଟାଳିକା ଓ ବହୁତ ଭୟ ) ହରିହୟ (ଇନ୍ଦ୍ର ଓ ସୂର୍ଯ୍ୟଙ୍କର ଅଶ୍ୱ) ବୈଜୟନ୍ତୀ (ଅମରାବତୀ ଓ ପତାକା) ।

୫—ଯେପରି ରାତ୍ରିକାଳରେ ଆକାଶ ନିର୍ମଳ, ସେହିପରି ଚନ୍ଦ୍ରୁଆ ନିର୍ମଳ ଆକାଶ ଚନ୍ଦ୍ରମଣ୍ଡଳକୁ ପ୍ରକାଶ କରେ । ଏ ମଧ୍ୟ ମଧ୍ୟସ୍ଥିତ ସୁବର୍ଣ୍ଣଗୁନ୍ଦକୁ ପ୍ରକାଶ କରିଅଛି, ଆକାଶ ଉଜ୍ଜ୍ୱଳ ନକ୍ଷତ୍ରମାଳରେ ମଣ୍ଡିତ, ଏହା ମଧ୍ୟ ଉଜ୍ଜ୍ୱଳ ମୁକ୍ତାମାନଙ୍କରେ

ଯେଉଁ ପର ହାଟ ଅମରାବତୀ । ଉପରେ କରୁଛି ଆକ୍ଷେପ ଅତି ।
କେତେ ରମ୍ଭା-ଉରୁ ବସି ଅଛନ୍ତି । ଐରାବତ ଗଡ଼ାଗଡ଼ି ଦିଶନ୍ତି ॥ ୬
କେତେ ଚିତ୍ର-ରଥ ଗନ୍ଧର୍ବ-ରସ୍ତୁ । ଅଳପ ଧନେ ହେଉଛନ୍ତି ବସ୍ତୁ ।
ମାଲ-ପସରିଟି ସୁଧର୍ମାସଭା । ସୁମନା-ବଲୀରେ ହୋଇଛି ଶୋଭା ॥ ୭
ତହିଁ ଭୋଗବତୀ କେତେମାତର । କଥା କେ କରି ଦେଇଛି ଇତର ।
ଅନନ୍ତ-ମଣିରେ ସେ ଜ୍ୟୋତି ନାହିଁ । ଅନନ୍ତମଣି କିଣା ବିକା ଯହିଁ ॥ ୮
ଯେଉଁ ପୁରେ ପଢ଼େ ଶୁକ-ବି ଯାକ । ଶୁକ-ବିରଚିତ ଚରିତ ଶ୍ଳୋକ ।
ସୁକବିମାନେ ତା ଅର୍ଥ କରିବା । ବିଚାର କରି କାହିଁକି ଘେନିବା ॥ ୯

---

ଖଚିତ । ବିତାନ ( ଚନ୍ଦ୍ରୁଆ ) ତାର ( ଉଜ୍ଜ୍ୱଳ ) ତାର ରାଜି ( ତାରକା ସମୂହ ଓ ମୁକ୍ତାପନ୍ତି ) ।

୬—ରମ୍ୟା ନଗରୀର ହାଟ ଅମରାବତୀ ଉପରେ ଅତ୍ୟନ୍ତ ହେୟ ଦୃଷ୍ଟି ପକାଉଅଛି । ଯେଣୁ ଅମରାବତୀରେ ରମ୍ଭା, ଉର୍ବଶୀ, ଐରାବତ ଗୋଟିଏ ଗୋଟିଏ ଅଛନ୍ତି, କିନ୍ତୁ ଏହି ହାଟରେ ଅନେକ ରମ୍ଭୋରୁ ସ୍ତ୍ରୀମାନେ ବସି ରହି ଅଛନ୍ତି, ଏବଂ ଐରାବତ ( ନାରଙ୍ଗଫଳ ) ବହୁତ ଏଣେ ତେଣେ ଗଡ଼ୁଅଛି । ଆକ୍ଷେପ ( ହେୟଦୃଷ୍ଟି ) ରମ୍ଭା ଉରୁବସି ( ରମ୍ଭାନାମ୍ନୀ ଓ ଉର୍ବଶୀ ନାମ୍ନି ସ୍ୱର୍ଗ-ବେଶ୍ୟା ) ଏବଂ ରମ୍ଭା ( କଦଳୀ ବୃକ୍ଷ ) ପରି, ଉରୁ (ଜଘନ) ଯେଉଁମାନଙ୍କର, ସେ ସ୍ତ୍ରୀମାନେ, ବସି ( ବାସକରି ) ଐରାବତ ( ଇନ୍ଦ୍ରଙ୍କ ହସ୍ତୀ ଏବଂ ନାରଙ୍ଗଫଳ ) ।

୭—ଇନ୍ଦ୍ରପୁରରେ ଚିତ୍ରରଥ ନାମକ ଗୋଟିଏ ମାତ୍ର ଗନ୍ଧର୍ବଅଛି, କିନ୍ତୁ ଏ ହାଟରେ ବିଚିତ୍ର ରଥ ଓ ଘୋଡ଼ା ସବୁ ଅଳ୍ପ ଧନରେ କିଣା ହେଉଅଛନ୍ତି । ଏଠାରେ ମାଲୁଣିର ପସରା ସୁଧର୍ମାସଭା ହେଲା, ଯେପରି ସୁଧର୍ମା-ସଭାକୁ ଦେବତାମାନେ ଶୋଭିତ କରିଥାନ୍ତି, ସେହିପରି ମାଲୁଣୀ ପସରା ପୁଷ୍ପ ସମୂହ ଦ୍ୱାରା ଶୋଭିତ ହୋଇଅଛି । ଚିତ୍ରରଥ ( ତନ୍ନାମକ ଗନ୍ଧର୍ବ ଓ ବିଚିତ୍ର ରଥ ) । ଗନ୍ଧର୍ବ (ଘୋଟକ) ସୁଧର୍ମାସଭା (ଇନ୍ଦ୍ରସଭା), ସୁମନାବଳି ( ଦେବତା ସମୂହ ଓ ପୁଷ୍ପ ସମୂହ ) ।

୮—ସେଠାରେ ପାତାଳ ପୁରୀ ଅବା କେତେ ମାତ୍ର, ଏ ପୁରୀ ଗୋଟିଏ କଥାରେ ପାତାଳ ପୁରୀକୁ ତୁଚ୍ଛ କରି ଦେଇଅଛି । ଶେଷଦେବଙ୍କର ମସ୍ତକରେ ଯେଉଁ ମଣି ଅଛି ତାହାର ସେ ଜ୍ୟୋତି କାହିଁ ? ଯେଉଁ ଅସଂଖ୍ୟ ମଣି ସବୁ ଏଠାରେ ବିକାକିଣା ହେଉଅଛି । ଭୋଗବତୀ ( ପାତାଳପୁରୀ ) ଅନନ୍ତ ( ଶେଷଦେବ ଓ ଅସଂଖ୍ୟ ) ।

୯—ଯେଉଁ ନଗରୀରେ ଶୁକଦେବଙ୍କ ବିରଚିତ ଶ୍ଳୋକ ସବୁ ଶୁକ ପକ୍ଷୀମାନେ ପଢ଼ୁଅଛନ୍ତି । ସୁକବି ଶବ୍ଦର ଉତ୍ତମ କବି ଏହି ଅର୍ଥକଲେ ମନରେ ବିଚାର ଭାବ ଆସିବ ନାହିଁ । ବି ( ପକ୍ଷୀ ) ଶୁକ ( ତନ୍ନାମକ ପକ୍ଷୀ ଓ ଶୁକଦେବ ) ସୁକବି ( ଉତ୍ତମକବି )

ବୈଦ୍ୟ ଶାର୍ଦ୍ଦୂଳେ ଅଶ୍ୱିନୀ କୁମାରେ । ମୃଗ କର ଗଣେ ବିବେକ କରେ ।
ଥିଲେ ତାଙ୍କର ଚରକ ସୁଶ୍ରୁତ । ବୁଝିଥାନ୍ତେ ଆସି ଆମ୍ଭ ପୁରତ ॥ ୧୦
ଗଣିକା-ଗଣଙ୍କ ଏମନ୍ତ ହୃଦ । ଗୁରୁ-ଗୁରୁ ହେବା ପଡ଼ିଲେ ବାଦ ।
ଧନୀ-ଜନ ମତେ ଧନଦ ଊଣା । ନ ଯିବାରୁ ତାଙ୍କ ପୁଷ୍ପକ ଗଣା ॥ ୧୧
ସୁ-ନାସୀରଙ୍କର ଏହି ଗୁମାନ । କେ କଲା ଆମ୍ଭ ପଦ ଇନ୍ଦ୍ରେ ଦାନ ।
ବହୁତ ବଳ ଭୟ ଉପୁଜାଉଁ । ବଜ୍ର-ସାର-ବାର ଭୂଷଣେ ବହୁଁ ॥ ୧୨
କଟକ ନିର୍ମାଣ ଛଟକ ଦେଖି । ବିଶ୍ୱକର୍ମା ମୟ ଦୁଜଣ ଆଖି ।
ଭଲ ଶିଳ୍ପୀ ବୋଲି ହୋଇବା କଥା । ଭଲ୍ଲ ହୋଇ କଟର ହୃଦକୁ ବ୍ୟଥା ॥ ୧୩

---

୧୦—ସେହି ନଗରୀର ପ୍ରଧାନ ବୈଦ୍ୟମାନେ ସ୍ୱର୍ଗବୈଦ୍ୟ ଅଶ୍ୱିନୀ କୁମାରଙ୍କୁ ତୁଚ୍ଛ କରି ମନରେ ଏହିପରି ବିଚାର କରନ୍ତି ଯେ ଯଦ୍ୟପି ସ୍ୱର୍ଗରେ ଚରକ ଓ ସୁଶ୍ରୁତ ଗ୍ରନ୍ଥ ଥାଆନ୍ତା, ତାହାହେଲେ ଏମାନେ ଆସି ଆମ୍ଭଠାରୁ ବୁଝନ୍ତୁ ଥାଆନ୍ତେ । ଶାର୍ଦ୍ଦୂଳ ( ଶ୍ରେଷ୍ଠ ) ମୃଗ ( ନକ୍ଷତ୍ର ) ।

୧୧—ସେଠାରେ ଗଣିକାମାନେ ଏହିପରି ହୃଦୟରେ ବିଚାର କରନ୍ତି ଯେ ବାଦ ପଡ଼ିଲେ ଅମ୍ଭେମାନେ ବୃହସ୍ପତିଙ୍କର ସୁଦ୍ଧା ଗୁରୁହେବା । ଧନୀ ଜନମାନଙ୍କର ମତରେ ମଧ୍ୟ କୁବେର ସେମାନଙ୍କଠାରୁ ଊଣା ଅଟନ୍ତି । ଯେ ହେତୁ ତାହାଙ୍କର ଗୋଟିଏ ମାତ୍ର ପୁଷ୍ପକ ( ବିମାନ ) ଅଛି । କିନ୍ତୁ ଏମାନଙ୍କର ଅସଂଖ୍ୟ ପୁଷ୍ପକ ( ରତ୍ନକଙ୍କଣ ) ଅଛି । ଗଣିକାଗଣ ( ନାୟିକା ସମୂହ ) ଗୁରୁଗୁରୁ ( ବୃହସ୍ପତିଙ୍କର ଗୁରୁ ) ଧନଦ ( କୁବେର ) ପୁଷ୍ପକ ( ଯାନ ଓ ରତ୍ନକଙ୍କଣ ) ।

୧୨—ଉତ୍ତମ ଯୋଦ୍ଧାମାନେ ମନରେ ଏହି ଚିନ୍ତା କରନ୍ତି ଯେ ଆମ୍ଭର ସୁନାସିର ପଦକୁ କିଏ ଇନ୍ଦ୍ରଙ୍କୁ ଦେଲା । ଇନ୍ଦ୍ର ଗୋଟିଏ ମାତ୍ର ବଳ ନାମକ ରାକ୍ଷସର ଭୟ ଜନ୍ମାଇ ଥିଲେ କିନ୍ତୁ ଅମ୍ଭେ ଅସଂଖ୍ୟ ଶତ୍ରୁବଳ ( ସୈନ୍ୟ ) ର ଭୟ ଜନ୍ମାଉଁ । ସେ ଗୋଟିଏ ମାତ୍ର ବଜ୍ରସାର ( ବଜ୍ରାସ୍ତ୍ର ) ଧରି ଅଛନ୍ତି । ଅମ୍ଭେମାନେ ଭୂଷଣରେ ବଜ୍ର ସାର ବାର ( ଉତ୍ତମହାର ସମୂହ ଧରି ଅଛୁ ) ସୁନାସିର ( ଉତ୍ତମ ଅଗ୍ରଗାମୀ ଯୋଦ୍ଧା ଓ ଇନ୍ଦ୍ର ) ବଳ ( ତନ୍ନାମକ ରାକ୍ଷସ ଓ ଶତ୍ରୁ ସୈନ୍ୟ ) ବଜ୍ରସାର ( ବଜ୍ରାସ୍ତ୍ର ଉତ୍ତମ ହୀରା ) । ବାର ( ସମୂହ ) ।

୧୩—ସେହି ନଗରର ନିର୍ମାଣ କୌଶଳ ଦେଖି ବିଶ୍ୱକର୍ମା ( ଦେବ ଶିଳ୍ପୀ ) ଓ ମୟ ( ଦାନବ ଶିଳ୍ପୀ ) ଏ ଦୁହେଁ ଆଖି ବୁଜି ମନରେ ଏହିପରି ଭାବୁଛନ୍ତି ଯେ ଆମ୍ଭର ଭଲ ଶିଳ୍ପୀ ବୋଲାଇବା କଥା ଭଲ୍ଲାସ୍ତ୍ର ପରି ( ଭାଲଅସ୍ତ୍ରପ ) ହୃଦୟରେ ବ୍ୟଥା ଦେଉଅଛି । କଟକ (ନଗର ) ।

ବନ୍ଧେ ସେ ବିଷ୍ଣୁ ଜାନୁ ଅନୁମାନ । ସର୍ବଦା ଲକ୍ଷ୍ମୀ କରିବାରୁ ସ୍ଥାନ ।
ନିଶାନ୍ତ-ରତନ ଜ୍ୟୋତି ପ୍ରକାଶେ । ନିଶାନ୍ତ ପ୍ରାୟ ସବୁବେଳେ ଦିଶେ ॥ ୧୪
ତୋରଣ-ହଟେ କେଳଣୀ କି ରାଜେ । କଳଶ କୁଚ କୋଣସ୍ତମ୍ଭ ଭୁଜେ ।
ଶୁଭେ ନାରୀପଦ-ନୂପୁର ବାଦ୍ୟ । ସମ୍ଭବେ ଯହିଁ ଭଲ ଭଲ ପଦ ॥ ।୧୫
ମୁଖ ଝଲପଣ ଦର୍ପଣ-ଭଙ୍ଗ । ଅକ୍ଷି ଲକ୍ଷିବା ଗବାକ୍ଷ ଅଛନ୍ତି ।
ଗୃମର ଛଡ଼ାଇ ଚିକୁର ଶଙ୍କା । ବସନ ପ୍ରସନ୍ନକୁ ଯବନିକା ॥ ୧୬
ରୂପାଜୀବା ତତ୍ସ୍ୱରୂପା ହୋଇଣ । ଯହିଁରେ ଧନ୍ୟା କନ୍ୟା-ସ୍ତମ୍ଭ-ଗଣ ।
କରାଇ ଭ୍ରମ କେତେ ରାଗ ଜାତ । ବୀଣାସ୍ୱରେ କରେ ଆଳାପ ଗୀତ ॥ ୧୭

---

୧୪—ସେ ନଗରରେ ସର୍ବଦା ଲକ୍ଷ୍ମୀ ବାସ କରିଥିବାରୁ ବିଷ୍ଣୁଙ୍କର ଜାନୁକୁ ବନ୍ଦନ କରିଥିବାର ଅନୁମାନ ହୁଏ ( ବିଷ୍ଣୁଙ୍କର ଜାନୁରେ ଲକ୍ଷ୍ମୀ ସର୍ବଦା ଥାନ୍ତି ) ଗୃହରେ ଥିବା ରତ୍ନମାନଙ୍କର ଜ୍ୟୋତି ପ୍ରକାଶ ପାଉଅଛି । ଅତଏବ ସବୁବେଳେ ପ୍ରଭାତ କାଳପରି ସୁନ୍ଦର ଦିଶୁଅଛି । ନିଶାନ୍ତ ( ଗୃହମଧ୍ୟ ପ୍ରଭାତ କାଳ )

୧୫—ସେ ନଗରେ ବହିଃଦ୍ୱାରର ଶୋଭା କେଳୁଣୀ ନାଟପରି ଦିଶୁଅଛି । କେଳୁଣୀ ମାନେ ଚିତ୍ ହୋଇ ଗୋଡ଼ତଳେ ହାତ ଲଗାଇ ବଙ୍କ ଭଙ୍ଗନ୍ତି । ବହିର୍ଦ୍ୱାର ସ୍ତମ୍ଭମାନ ହସ୍ତ ତୁଲ୍ୟ । ସୁବର୍ଣ୍ଣ କଳସ ସ୍ତନ ତୁଲ୍ୟ । ନୂପୁର ଶବ୍ଦ ବାଦ୍ୟ ତୁଲ୍ୟ । ଲୋକମାନଙ୍କର ଭଲ ଭଲ ଶବ୍ଦ କେଳାମାନଙ୍କ ଭଲ ଭଲ ଶବ୍ଦପରି । ତୋରଣହଟେ ( ଚିତ୍ ହୋଇ ନାଚିବା ବେଳେ ) କୋଣସ୍ତମ୍ଭ ( ବହିର୍ଦ୍ୱାର ସ୍ତମ୍ଭ ) ।

୧୬—କେଳୁଣୀ ମୁଖର ଉଜ୍ଜ୍ୱଳତା କାଚ କାନ୍ଥରେ, ଚକ୍ଷୁର ଶୋଭା ଗବାକ୍ଷରେ, କେଶ ପାଶ ଗୃମରରେ, ବସନର ପ୍ରସନ୍ନତା ପରଦାରେ ଲକ୍ଷିତ ହେଉଅଛି । ମୁଖଝଲ ( ମୁଖର ଉଜ୍ଜ୍ୱଳତା ) ଦର୍ପଣ ଭଙ୍ଗ ( କାଚକାନ୍ଥ ) ଗବାକ୍ଷ ( ଜଳାକବାଟି ) ଚିକୁର ( କେଶପାଶ ) ଯବନିକା (ପରଦା) ।

୧୭—ଗୃହର ସ୍ତମ୍ଭ ସବୁ ସ୍ତ୍ରୀ ଆକୃତିରେ ଗଢ଼ା ହୋଇ ଥିବାରୁ ବେଶ୍ୟା ଭ୍ରମ ଜନ୍ମାଉ ଅଛନ୍ତି । ବେଶ୍ୟାମାନେ ବୀଣା ତୁଲ୍ୟ ସ୍ୱରରେ ଆଳାପ କରି ନାନା ପ୍ରକାର ସ୍ନେହ ଜାତ କରାନ୍ତି । ଗୃହମଧ୍ୟରେ ବୀଣାବାଦ୍ୟ ସହିତ ଗାନ ହେଉଥିବାରୁ ସ୍ତମ୍ଭ ସ୍ତ୍ରୀ ଗାଉଥିବାପରି ବୋଧ ହେଉଅଛି । ସୁତରାଂ ସ୍ନେହ ଜନ୍ମୁଅଛି । ରୂପା ରୂପଜୀବା (ବେଶ୍ୟା) କନ୍ୟାସ୍ତମ୍ଭ (କନ୍ୟାକାରରେ ଗଢ଼ା ହୋଇ ଥିବା ଖୁଣ୍ଟ ) ରାଗ (ସ୍ନେହ) ।

ଦୂରଦେଶ ଜନ ଦେଲେ ଅନାଇ । ମଦନ ରସରେ ମନ ମନାଇ ।
ଧନ-ସାରଣୀ କେତେ କହିବାକୁ । ତାଙ୍କ ପ୍ରତିବିମ୍ବ ଡରାଇ ତାଙ୍କୁ ॥ ୧୮
କାଚ ଚତ୍ୱରେ ସତ୍ୱରେ ନ ପଶି । ଗଢ଼ା-କୀର ପଢ଼ାଇବାକୁ ରସି ।
ଦେଶୀ-ପରିହାସୀ ଅଗେ ଯେ ପଡ଼ି । ହ୍ରୀ ସରିତରେ ରହଇ ବୁଡ଼ି ॥ ୧୯
ଏଣୁ ସେ ପୁର ରହସ୍ୟ ନିବାସ । ତହିଁ ନରେଶ୍ୱର ଉପମା କିସ ।
ନୃପତିମାନେ ମହାଦେବ କହି । ରାଜା-ଚୂଡ଼ାମଣି ହେବାରୁ ସେହି ॥ ୨୦
ପୁଣି ତ୍ରିପୁର-ବିଜୟୀ ସ୍ୱଭାବେ । କୁମାର ଗଣ ପଦତଳେ ସେବେ ।
ମଣିମା ଡାକ ଅନୁକ୍ଷଣେ ଶୁଭେ । ବିଶ୍ୱାନନ୍ଦକ ହୋଇ ନାମ ଶୋଭେ ॥ ୨୧
ପାଟମହାଦେବୀ ବିଚିତ୍ରକଳା । ପାର୍ବତୀ କରେ କି କ୍ଷିତିରେ ଲୀଳା ।
ଗଉରୀ ହୋଇ ପ୍ରଶଂସା ଯାହାର । ଦେବୀବୃନ୍ଦରେ ତ ସହଜେ ସାର ॥ ୨୨

---

୧୮—ଦୂରଦେଶୀ ଲୋକ କେହି ଚାହିଁଦେଲେ, କାମାନ୍ଧ ହୋଇଯାଏ । ସେ ନଗରର ଧନବ୍ୟୟ କିଏ କହିପାରିବ ।

୧୯—କାଚ ଅଗଣାରେ ସେମାନଙ୍କର ପ୍ରତିବିମ୍ବ ପଡ଼ିବାରୁ ସେମାନେ ଭୟରେ ହଠାତ୍ ଭିତରକୁ ଯାଆନ୍ତି ନାହିଁ । ଗଢ଼ାଶୁକପକ୍ଷୀକୁ ପଢ଼ାଇବାକୁ ଆରମ୍ଭ କରନ୍ତି । ଯେଉଁ ଲୋକ ଦେଶୀ ପରିହାସୀ ଆଗରେ ପଡ଼େ ସେ ଲଜ୍ଜା ସାଗରରେ ବୁଡ଼ିଯାଏ । ଧନ ସାରଣି ( ଧନବ୍ୟୟ ) ଚତ୍ୱର ( ଅଗଣା ) କୀର ( ଶୁକପକ୍ଷୀ ) ହ୍ରୀ ( ଲଜ୍ଜା )

୨୦—ସେ ନଗର ଏହି ହେତୁରୁ ସମସ୍ତ ପ୍ରକାର ରହସ୍ୟର ଆଧାର ହୋଇଅଛି । ତହିଁରେ ଥିବା ନରେଶ୍ୱରଙ୍କର ( ରାଜାଙ୍କର ) କି ଉପମା ଦେବା । ସେ ରାଜା ଚୂଡ଼ାମଣି ( ରାଜାଧିରାଜ ) ହୋଇଥିବାରୁ ଅନ୍ୟ ରାଜାମାନେ ତାହାଙ୍କୁ ମହାଦେବ ବୋଲି କହନ୍ତି । ମହାଦେବ ମଧ୍ୟ ରାଜାଚୂଡ଼ାମଣି । ରାଜା (ଚନ୍ଦ୍ର) ଚୂଡ଼ାମଣି ( ଶିରୋଭୂଷଣ )

୨୧—ମହାଦେବ ତ୍ରିପୁରାସୁରକୁ ଜିଣିଥିଲେ । ଏ ରାଜା ତିନି ପୁରକୁ ଜିଣି ଅଛନ୍ତି । କୁମାର ( କାର୍ତ୍ତିକେୟ ) ଗଣ (ଭୂତ ପ୍ରେତାଦି) ମହାଦେବଙ୍କର ପଦତଳେ ସେବା କରନ୍ତି । କୁମାର ଗଣ ( ପୁତ୍ର ସମୂହ ) ଏହାଙ୍କର ପାଦ ସେବୁ ଅଛନ୍ତି । ମଣିମା ଡାକ ଦେଉଳରେ ସର୍ବଦା ଶୁଭୁ ଥାଏ । ଏଠାରେ ମଧ୍ୟ ରାଜାଙ୍କୁ ଲୋକେ ମଣିମା ବୋଲି ଡାକୁ ଅଛନ୍ତି । ମହାଦେବ ବିଶ୍ୱାନନ୍ଦନ ( ସଂସାର ଆନନ୍ଦକାରୀ ) ଏ ରାଜାଙ୍କର ନାମ ବିଶ୍ୱାନନ୍ଦକ ।

୨୨—ବିଚିତ୍ର-କଳାନାମ୍ନୀ ପାଟ ମହାଦେବୀଙ୍କୁ ଦେଖିଲେ ବୋଧହୁଏ ପାର୍ବତୀ ପୃଥିବୀରେ କ୍ରୀଡ଼ା କରୁ ଅଛନ୍ତି କି । ଗୌରୀ । ( ଗୌରାଙ୍ଗୀ ଓ ପାର୍ବତୀ ) ହେବାରୁ ଯାହାଙ୍କର ପ୍ରଶଂସା ହେଉଅଛି ସେ ପୁଣି ଦେବୀ ମାନଙ୍କ ମଧ୍ୟରେ ଶ୍ରେଷ୍ଠା ଅଟନ୍ତି । ଏ ମଧ୍ୟ ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠା ।

ରାଜା ରାଣୀଙ୍କ ନନ୍ଦନୀ ପ୍ରାପତ । ଇଚ୍ଛାକୁ ଏକା ନ ଛାଡ଼ଇ ଚିତ୍ତ ।
ସଚିବ ନାମ ଯେ ବୁଦ୍ଧିସାଗର । ସେ ବଚନେ ଜଣାଇଲା ଯୋଡ଼ି କର ॥ ୨୩
ଭୂଦେବମାନେ ଯଜ୍ଞ କରିବାରେ । ବହୁତ ସୁବର୍ଣ୍ଣ ଗଣି ଦେବାରେ ।
ଘନମୟ ପରି ସଦା ଆକାଶ । ଅତିଥି ପୂଜନେ ଧର୍ମ ପ୍ରକାଶ ॥ ୨୪
ଯାଚକ କାମନା ସଂପୂର୍ଣ୍ଣ କରି । ବଇରୀ-ବୃନ୍ଦର ଅର୍ଥକୁ ଜୁରି ।
ଉଦିତ ତ୍ରିବର୍ଗ ଅମ୍ଭପୁରେ । ସମର୍ଥ ତ୍ରିତାପ ନାଶିବାରେ ॥ ୨୫
ରାମନାମକୁ ଜପ କରୁଥାଇ । ମୋକ୍ଷରେ ଆଉ ସେ ସଂଶୟ ନାହିଁ ।
ସାକ୍ଷାତେ କରନ୍ତାଇ ଦରଶନ । ଯିବା କି ବାରେ ବଦରିକା-ବନ ॥ ୨୬
ସୁରେ ଆସିଥାନ୍ତି ସେହି ନଗରେ । ଭେଟ ହୋଇବା ତାହାଙ୍କ ସଙ୍ଗରେ ।
ଯଥେ ଅଜସ୍ର ଥିଲେ କେହି କେହି । ମହିମା ଆରମ୍ଭ କରିବା ତହିଁ ॥ ୨୭
ବିଚାର ଯୋଗାଇ ଅବଧାନକୁ । ରାଜା ବିଜେ କଲେ ସାଜି ସୈନ୍ୟକୁ ।
ପଦାତି-ପନ୍ତି ଯେ ମହାଭୈରବ । କରିବାରେ ବକଗତି ତାଣ୍ଡବ ॥ ୨୮

---

୨୩—ରାଜାରାଣୀଙ୍କର ମନ କନ୍ୟାପାଇବା ଇଚ୍ଛାକୁ ଛାଡ଼େନା । ବନେ ବୁଦ୍ଧିସାଗର ନାମକ ମନ୍ତ୍ରୀ ହାତ ଯୋଡ଼ି ଜଣାଇଲେ ।

୨୪—ବ୍ରାହ୍ମଣମାନେ ଯଜ୍ଞ କରିବାରୁ ଧୂମରେ ଆକାଶ ମେଘାଛନ୍ନ ପରି ଦେଖା ଯାଉଅଛି । ବହୁତ ସୁବର୍ଣ୍ଣ ଗଣି ଦେଇ ଅତିଥିମାନଙ୍କୁ ପୂଜା କରିବାରୁ ଧର୍ମର ପ୍ରକାଶ ହେଉଅଛି । ଭୂଦେବ ( ବ୍ରାହ୍ମଣ ) ଘନମୟ ( ମେଘପୂର୍ଣ୍ଣ ) ।

୨୫—ଯାଚକମାନଙ୍କର କାମନା ପୂରଣ କରିବାରୁ ଓ ଶତ୍ରୁମାନଙ୍କର ଧନ ଲୁଟିଆଣିବାରୁ ଅମ୍ଭର ନଗରରେ ତ୍ରିବର୍ଗ ( ଧର୍ମ, ଅର୍ଥ, କାମ ) ଉଦିତ ହୋଇଅଛି । ଏବଂ ତ୍ରିତାପ ( ଆଧ୍ୟାତ୍ମିକ, ଅଧିଦୈବିକ, ଅଧିଭୌତିକ ) ନାଶିବାକୁ ଏନଗର ସକ୍ଷମ ।

୨୬—ରାମ ନାମକୁ ଜପ କରୁଥିବାରୁ ମୋକ୍ଷରେ ସନ୍ଦେହ ନାହିଁ, ଥରେ ବଦରିକା ତୀର୍ଥକୁ ଯାଇଁ ସାକ୍ଷାତ୍ ଦର୍ଶନ କରିବାକୁ ଇଚ୍ଛା ହେଉଅଛି ।

୨୭—ଦେବତାମାନେ ସେହି ତୀର୍ଥକୁ ଆସନ୍ତି । ତାହାଙ୍କ ସହିତ ଭେଟ ହେବ । ଯଦ୍ୟପି ବାଟରେ କେହି ଶତ୍ରୁ ଥିବ ତାହାହେଲେ ତାହାକୁ (ଶତ୍ରୁକୁ)ମାରି ମହିମା ପ୍ରକାଶ କରିବା ।

୨୮—ଏ ବିଚାର ରାଜାଙ୍କର ମନକୁ ଆସିବାରୁ ସୈନ୍ୟମାନଙ୍କୁ ସଜାଇ ରାଜା ବିଜେ କଲେ । ପାଦଚାରି ସୈନ୍ୟଗଣ ବକଗତି ଏବଂ ତାଣ୍ଡବ ( ଡେଇଁ ଚାଲିବା) କରିବାରୁ ଅତ୍ୟନ୍ତ ଭୀଷଣ ହେଲେ ।

ଲସି ହୋଇ ନଦୀ ଅରଣ୍ୟ ସଙ୍ଗେ । ମଞ୍ଜୁଳ ସଫର ଖଡ଼ଗ-ରଙ୍ଗେ ।
ରାଗ-ସଂଯୁକ୍ତରୁ ଉତ୍ତମ ଗୀତ । ହୁଁ ହୁଁ କରିବାରେ ମତ୍ତକପୋତ ॥ ୨୯
ପେଚକ କରଟ କଟକେ କରି । ମହାଗିରି ପ୍ରାୟ ଉତ୍ତୁଙ୍ଗ କରୀ ।
ଦାନ-ବାରିରୁ ଘନାଘନ ପଦ । ଉଚିତ ସିନା ଦେବାର କୋବିଦ ॥ ୩୦
ହୟ ହରିନାମ ବିକ୍ରମବଶେ । ଖୁରି ମାରିବାରୁ ଜ୍ୟୋତିଷ କି ସେ ।
ଗୃନ୍ଦ ଉଦ୍ଧତ ଦ୍ୱିତୀୟାନ୍ତିଥିକି । ବାଜଣୀ ନୂପୁର ବାନ୍ଧ ନର୍ତ୍ତକୀ ॥ ୩୧
କଣ୍ଠ-ମଣି ଘେନି ଯେମନ୍ତ ରବି । ବାଜ ବହିବାରୁ ଶିକାରୀ ଛବି ।
ରଥଚୟ ମହାପୁରୁଷବତ । ଉଚ୍ଚ ଜାତକରେ ଅରି-ସେବିତ ॥ ୩୨

---

୨୯—ଏଠାରେ ସୈନ୍ୟମାନେ ନଦୀ ଅରଣ୍ୟ ସହିତ ସମାନ ହେଲେ । ନଦୀ ସଫରୀ ( ଦଣ୍ଡିକିରି ମାଛ ) ରେ ମନୋହର ହୋଇଥାଏ । ସୈନ୍ୟମାନେ ସଫରୀ ( ଫରୀ ସହିତ ) ହେବାରୁ ସୁନ୍ଦର ହୋଇ ଅଛନ୍ତି, ଅରଣ୍ୟ ଖଡ୍‌ଗ(ଗଣ୍ଡକ) ର ରଙ୍ଗରେ ସୁନ୍ଦର ହୋଇଥାଏ । ସୈନ୍ୟମାନେ ଖଡ୍‌ଗ (ଖଣ୍ଡା) ରଙ୍ଗରେ ସୁନ୍ଦର ହୋଇଅଛନ୍ତି । ସୈନ୍ୟମାନେ ସ୍ୱର ମିଳାଇ ଉତ୍ତମ ଗୀତ ଗାଉ ଅଛନ୍ତି । ଅରଣ୍ୟରେ ମତ୍ତ କପୋତ ପକ୍ଷୀ ହୁଁକାର କରି ଗୀତ ଗାଉ ଥାଏ ।

୩୦—ଉନ୍ନତ ହସ୍ତିମାନେ ମହାଗିରି ପରି, ଯେହେତୁ ମହାଗିରି ପେଚକ ( ପେଚା ) କରଟ ( କାକ ) କଟକ ( ପର୍ବତମଧ୍ୟଦେଶ ) ଏ ମାନଙ୍କରେ ଶୋଭିତ ହୋଇଥାଏ, ହସ୍ତିମାନେ ମଧ୍ୟ ପେଚକ ( ଲାଙ୍ଗୁଳ ମୂଳବାଳ ) କରଟ ( ଗଣ୍ଡଦେଶ ) କଟକ ( ଦନ୍ତବଳୟ ) ମାନଙ୍କରେ ଶୋଭିତ । ହେ ପଣ୍ଡିତମାନେ ଆଉ ମଧ୍ୟ ହସ୍ତିମାନଙ୍କର ଗଣ୍ଡସ୍ଥଳରୁ ମଦଜଳ ଅଜସ୍ର ସ୍ରବାହିତ ହେବାରୁ ସେମାନଙ୍କୁ ଘନାଘନ ( ବର୍ଷାକାରୀ ମେଘ, ଓ ମତ୍ତହସ୍ତୀ ) କହିବା ଉଚିତ ହୋଇଅଛି । ଦାନବାରି ( ମଦଜଳ ) ।

୩୧—ଘୋଡ଼ାମାନଙ୍କର ନାମ ହରି ( ଘୋଟକ ଓ ପବନ ) ଥିବାରୁ ପବନ ପରି ବେଗରେ ଖୁରା ଚଳାଉ ଅଛନ୍ତି, ଜ୍ୟୋତିଷମାନେ ଯେପରି ଖରିମାରନ୍ତି ( ଅର୍ଥାତ୍ ଜଳରେ ପଡ଼ିତ ସମୟ ନିରୂପକ ତମ୍ବାପାତ୍ର ଦ୍ୱାରା ସମୟ ଠିକ କରି ଘଣ୍ଟା ପିଟନ୍ତି ) ଘୋଡ଼ାମାନେ ଖୁରିମାରୁ ଥିବାରୁ ଜ୍ୟୋତିଷ ମାନଙ୍କ ତୁଲ୍ୟ ଦ୍ୱିତୀୟା ତିଥିରେ ଉଦିତ ଚନ୍ଦ୍ର ପରି ଘୋଡ଼ାମାନଙ୍କର ଗୋଡ଼ରେ ନୂପୁର ବନ୍ଧା ହୋଇ ବାଜୁଅଛି, ନାଚୁଆ ଗୋଡ଼ରେ ନୂପୁର ବନ୍ଧାହେଲା ପରି ଜଣା ଯାଉଅଛି । ହୟ ( ଘୋଡ଼ା ) ବିକ୍ରମ ( ପରାକ୍ରମ ) ।

୩୨—ସୂର୍ଯ୍ୟଙ୍କ କଣ୍ଠରେ ଯେପରି ମଣିଥାଏ ସେହିପରି ଘୋଡ଼ାଙ୍କ କଣ୍ଠରେ ମଣିଅଛି । ସେମାନଙ୍କ ମୁଖରୁ ବାଜ ( ଫେଣ ଓ ବାଜପକ୍ଷୀ ) ବୋହିବାରୁ ବାଜପକ୍ଷୀପରି ଶିକାରୀ ହୋଇ ଅଛନ୍ତି । ରଥସବୁ ମହାପୁରୁଷମାନଙ୍କପରି ଉନ୍ନତ ଏବଂ

ଦିବ୍ୟ ନାୟିକା ପୁଣି ଆଲିଙ୍ଗିତ । ସୁତ-କ୍ରୀଡ଼ାରେ ହୋଇଛନ୍ତି ବିଦିତ ।
ଗର୍ବ କରି ଉର୍ଦ୍ଧ୍ୱେ ବାନା ଉଡ଼ାଇ । ଏମନ୍ତେ ଚତୁରଙ୍ଗ ଚଳି ଯାଇ ॥ ୩୩
କ୍ଷୋଦବଶରେ ଭାନୁ-ତେଜ ସରେ । ତମ-ଗ୍ରସ୍ତ ଏ ଭ୍ରମ ଜ୍ୟୋତିଷରେ ।
ତମ-ଗ୍ରସ୍ତରେ ଗୃହନାରୀ ମାନ । ଦୀପ ଦୀପକ କରିବା ବଚନ ॥ ୩୪
ନିଶାଣେ ଦ୍ୱିପମାନେ ଚମକିଲେ । ଦିଗେ ଥିବା ଦ୍ୱିପମାନେ ଶଙ୍କିଲେ ।
ଶ୍ରୀନଗରୁ ଆଦ୍ୟବର୍ଣ୍ଣ ଲୁଟିଲେ । ଘୋଷବାସୀ ପ୍ରାୟ ଆସି ଭେଟିଲେ ॥ ୩୫
ଆଗ ହୋଇଲେ ସେ ମାର୍ଗ ଦେଖାଇ । ପାପହା ଗଙ୍ଗାକୂଳେ ହେଲେ ଯାଇ ।
ସହଜେ ସୀତା ପାତାଳଗାମିନୀ । ହିମବତୀ ଶଙ୍କର-ମୋହିନୀ ॥ ୩୬

---

ଚନ୍ଦ୍ରଯୁକ୍ତ ମହାପୁରୁଷମାନଙ୍କର ମଧ୍ୟ ଉଚ୍ଚ ଜାତକ (ଜନ୍ମିତ କୋଷ୍ଠି) ଅରି-ସେବିତ ( ଶତ୍ରୁସେବିତ ) ବାଜ ( ସେଣ ଓ ଛଆଣ ପକ୍ଷୀ ) ରଥଚମୂ ( ରଥ ସମୂହ ) ଅରି ( ଚକ୍ର ଓ ଶତ୍ରୁ )

୩୩—ଯେପରି ମହାପୁରୁଷମାନେ ଉତ୍ତମ ସ୍ତ୍ରୀଯୁକ୍ତ ହୋଇ ପୁତ୍ରକ୍ରୀଡ଼ାରେ ରତ ହୋଇ ଥାଆନ୍ତି, ରଥମାନେ ସେହିପରି ଉତ୍ତମ ନାୟିକାସ୍ତମ୍ଭରେ ଯୁକ୍ତ ହୋଇ ସାରଥିର କ୍ରୀଡ଼ାରେ ପ୍ରକାଶିତ ହୋଇ ଅଛନ୍ତି । ଚତୁରଙ୍ଗ ସୈନ୍ୟ ଗର୍ବରେ ଉପରେ ବାନା ଉଡ଼ାଇ ଏହିପ୍ରକାର ଚାଲି ଯାଆନ୍ତି । ନାୟିକା ( ସ୍ତ୍ରୀ ଓ ନାୟିକାକାର ସ୍ତମ୍ଭ ) ସୁତ ( ପୁତ୍ର ଓ ସାରଥି ) ଚତୁରଙ୍ଗ ( ସୈନ୍ୟ ହସ୍ତ୍ୟାରୋହୀ, ଅଶ୍ୱାରୋହୀ, ରଥାରୋହୀ, ପଦାତି )

୩୪—ସୈନ୍ୟମାନଙ୍କର ଗମନରେ ଉଠୁଥିବା ଧୂଳିରେ ସୂର୍ଯ୍ୟଙ୍କ ତେଜ ଲୁପ୍ତହେଉଅଛି । ଜ୍ୟୋତିଷରେ ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କରୁ ଅଛି ଏହା ଭ୍ରମାତ୍ମକ, ରାହୁ ସୂର୍ଯ୍ୟଙ୍କୁ ଗ୍ରାସକଲେ ଗୃହନାରୀମାନେ ଦୀପ ଜାଳନ୍ତି ନାହିଁ କିନ୍ତୁ ସୈନ୍ୟ-ଙ୍କର ପାଦ ଧୂଳିରେ ଏପରି ଅନ୍ଧକାର ଗ୍ରାସ କଲା ଯେ ଗୃହ ନାରୀମାନେ ଦୀପ ଜାଳିଲେ ଏହା ବଚନ ଅଟେ । କ୍ଷୋଦ [ ଧୂଳି ] ଭାନୁ ( ସୂର୍ଯ୍ୟ ) ତମ [ ରାହୁ, ଅନ୍ଧକାର ] ।

୩୫—ନିଶାଣ ଦେଖି ହାତୀମାନେ ଚମକିଲେ । ଦିଗ୍‌ଗଜ ମାନେ ମଧ୍ୟ ଶଙ୍କାକଲେ । ଶ୍ରୀନଗରର ଆଦ୍ୟବର୍ଣ୍ଣ ( ଶ୍ରୀ, ସମ୍ପତ୍ତି ) କୁ ଲୁଟି କଲେ ତହୁଁ ସେ ନଗର ବାସୀମାନେ ଗଉଡ଼ମାନଙ୍କପରି ଦୀନ ଭାବରେ ଆସି ସାକ୍ଷାତ କଲେ । ଦ୍ୱିପ (ହସ୍ତୀ) ଶ୍ରୀନଗର (କାଶ୍ମୀର) ଘୋଷବାସୀ (ଗଉଡ଼)

୩୬—ସେ ନଗରବାସୀମାନେ ବାଟ ଦେଖାଇବାକୁ ଆଗରେ ଚାଲିଲେ, ପାପ-ହାରିଣୀ ଗଙ୍ଗାକୂଳରେ ଯାଇ ଉପସ୍ଥିତ ହେଲେ । ସେ ଗଙ୍ଗା ସୀତାଙ୍କ ପରି ପାତାଳକୁ ଗମନ କରିଅଛନ୍ତି । ଦୁର୍ଗା ହିମାଳୟର କନ୍ୟା ଏବଂ ଶିବଙ୍କୁ ମୋହିତ କରୁ ଅଛନ୍ତି, ଏ ଗଙ୍ଗା ମଧ୍ୟ ହିମାଳୟରୁ ବାହାରି ଅଛନ୍ତି ଓ ଶିବଙ୍କୁ ମୋହିତ କରୁଅଛନ୍ତି ।

ଗୁରୁ-ଧାରା ଯେ ବୃଷା-ନନ୍ଦଦାୟୀ । ଅମୃତ-ନିଧି ବିଷ୍ଣୁ- ପଦସ୍ଥାୟୀ ।
ସିନ୍ଧୁର-ବର-ତୋଷ-ଦାନ-କାରୀ । ଭୀଷ୍ମ-ସ୍ୱରୂପେ ପତିତ ନିସ୍ତାରି ॥ ୩୭
ସ୍ମରଣ ଭରୁଁ ଦରଶନ ସାରି । ଏକ ଅସ୍ରପେ ଦିବ୍ୟ ହଂସ ଧରି ।
ଷଟ୍‌ପୁର-ମାର୍ଗେ କରି ବଦନ । ଅଜସ୍ର ହୋଇ କରୁଛି ଗମନ ॥ ୩୮
ବୋଲୁଛି ରଖ ଧାତା ବାହୁବଳେ । ପଡ଼ିଲୁ ମୋ ମୁଖେ ଅଖେଟକାଳେ ।
ସଞ୍ଚି ଥୋଇବାକୁ ମୁଁ ନୁହେ ଶଙ୍ଖ । ହେଲ ପାଦଗତ ଚତୁରମୁଖ ॥ ୩୯
ନରେଶ ଏ ବାଣୀ ଯହୁଁ ଶୁଣିଲେ । ତୁରଙ୍ଗମକୁ ଧୁଆଇଁ ହାଣିଲେ ।
ସୁରଙ୍ଗତର ହୋଇ ତରବାରି । ଦଶିଲା କିଂଶୁକ-କଳିକା ପରି ॥ ୪୦

---

୩୭—ଗଙ୍ଗା ଶଚୀଙ୍କପରି, ଶଚୀ ଦେବୀଙ୍କର ନାମ ଗୁରୁଧାରା, ଏ ସୁନ୍ଦର ପ୍ରବାହ ଯୁକ୍ତା ଶଚୀ ଇନ୍ଦ୍ରଙ୍କର ଆନନ୍ଦ ଦାୟିନୀ, ଏ ମଧ୍ୟ ଜହ୍ନୁଙ୍କ ଅନନ୍ଦଦାୟିନୀ, ଯେପରି ଚନ୍ଦ୍ର ଅମୃତ ( ସୁଧା) ନିଧି ଏ ସେପରି ଅମୃତ ( ଜଳ ) ନିଧି ଚନ୍ଦ୍ର ବିଷ୍ଣୁପଦ ( ଆକାଶ ) ସ୍ଥାୟୀ, ଗଙ୍ଗା ବିଷ୍ଣୁ ପଦ ( ବିଷ୍ଣୁଙ୍କର ପାଦ ) ସ୍ଥାୟିନୀ, ଚନ୍ଦ୍ର ସିନ୍ଧୁର ( ସମୁଦ୍ରର ) ବର ( ଶ୍ରେଷ୍ଠ ) ସନ୍ତୋଷ ଦାନକାରୀ ଗଙ୍ଗା ସିନ୍ଧୁର ବର (ଐରାବତର) ତୋଷ ଦାନ କାରିଣୀ (ସନ୍ତୋଷ ଖଣ୍ଡନ କାରିଣୀ ) । ପୁଣି ଯେପରି ଗଙ୍ଗା ଭୀଷ୍ମଙ୍କ ଜନନୀ ହୋଇ ଶାନ୍ତନଙ୍କୁ ଉଦ୍ଧାର କରିଥିଲେ ଏବେ ମଧ୍ୟ ସେହିପରି ପାପୀମାନଙ୍କୁ ଉଦ୍ଧାର କରୁ ଅଛନ୍ତି । ବୃଷା ( ଇନ୍ଦ୍ର ଓ ଶ୍ରେଷ୍ଠ ) ଭୀଷ୍ମସୂ ( ଭୀଷ୍ମଙ୍କ ଜନନୀ)

୩୮—ରାଜା ଏହିରୂପେ ଗଙ୍ଗାଙ୍କୁ ଦର୍ଶନ କରି ସ୍ନାନ କରିବାକୁ ଭାବନ୍ତେ ଗୋଟିଏ ରାକ୍ଷସ ଦିବ୍ୟ ହଂସଟିଏ ଧରି ଆକାଶକୁ ମୁଖ କରି ସର୍ବଦା ଦଉଡ଼ୁ ଅଛି । ଅସ୍ରପ (ରାକ୍ଷସ) ଷଟ୍‌ପୁରମାର୍ଗ (ଆକାଶ) ଅଜସ୍ର (ସର୍ବଦା)

୩୯—ସେହି ରାକ୍ଷସ କହୁଅଛି ଯେ ବିଧାତା ତୋତେ ବାହୁବଳରେ ରକ୍ଷାକରୁ ତୁ ପାରଧି କଲାବେଳେ ମୋ ମୁଖରେ ପଡ଼ିଅଛୁ । ଶଙ୍ଖାସୁର ବେଦ ଚୋରାଇ ନେଇ ସମୁଦ୍ର ମଧ୍ୟରେ ସଞ୍ଚୟ କରି ରଖିଥିଲା କିନ୍ତୁ ମୁଁ ସେପରି ନୁହେ ଯେ ତୋତେ ସଞ୍ଚୟ କରି ରଖିବି, ଚତୁର୍ମୁଖ ବ୍ରହ୍ମା ଅଜଠାରୁ ପାଦରେ ଗମନ କରିବ । ଅଖେଟ (ପାରିଧି) ଶଙ୍ଖ (ଶଙ୍ଖାସୁର ) ଚତୁର୍ମୁଖ (ବ୍ରହ୍ମା)

୪୦—ରାଜା ଏ କଥା ଶୁଣିଲା ମାତ୍ରେ ଘୋଡ଼ାକୁ ଦଉଡ଼ାଇ ସେହି ରାକ୍ଷସକୁ ହାଣି ପକାଇଲେ । ତରବାରି ଅତ୍ୟନ୍ତ ଲାଲ ହୋଇ ପଲାଶ କଢ଼ିପରି ଦେଖା ଗଲା । ତୁରଙ୍ଗମ (ଘୋଡ଼ା) କିଂଶୁକକଳିକା ( ପଲାଶକଢ଼ି )

ମୁଣ୍ଡ ପଡ଼େ ଖଣ୍ଡଶୈଳ ପରାୟେ । ରକ୍ତରେ ବ୍ୟକ୍ତ ଗୈରିକ ଧାରା ଏ ।
ରାଜା ପୁଚ୍ଛା କଲେ କହିଲା ହଂସ । ହେ ଲୋମପାଦ-ବଂଶ-ଅବତଂଶ ॥ ୪୧
ଅମ୍ବୁଭୂ ନାରାୟଣଙ୍କ ପୂଜନେ । ଆସିଅଛନ୍ତି ବଦରିକାବନେ ।
ମୁଁ ଯେ ବିହରୁ ଜମ୍ବୁନଦ-ସରେ । କଲି ଏ କରଗତ ଏ ହଂସାରେ ॥ ୪୨
ବଜ୍ରପୁରରେ ପୂର୍ବେ ଅମ୍ଭେ ଭେଦ । କଲାରୁ ଏହା ବଂଶ ଶିରଚ୍ଛେଦ ।
ସେ ମରାଳରାଜ ଘେନି ଚପଳେ । ଭୂପତି ମିଳିଲେ ହରିକୂଟାଚଳେ ॥ ୪୩
ସ୍ୱୟମ୍ଭୂପାଦେ ପ୍ରଣାମ ବିହିଲା । ଏ କଥାମାନ କାଦମ୍ବ କହିଲା ।
ହରଷେ ଆଜ୍ଞାଦେଲେ ହଂସ-ରଥ । ମାଗ ହେ ରାଜା ଯେ ତୋ ମନୋରଥ ॥ ୪୪
ପ୍ରଜେଶ୍ୱର କରଯୋଡ଼ି ରହିଲେ । ପ୍ରଜାପତି ମନ ଜାଣି କହିଲେ ।
ମନ୍ଦକର୍ଣ୍ଣ କଥା ଶୁଣି ପ୍ରସଙ୍ଗେ । ତପ ତେଜିଲେ ଅପସରୀ ସଙ୍ଗେ ॥ ୪୫
ପ୍ରଧାନ ସେହିତ ସ୍ୱର୍ଗ-ଭୋଗର । ଅଧିକ ସୁଖ ସେ କର ବାଗୁର ।
ଭଜୁ ହେବ ଶୋଭାବତୀ ନନ୍ଦନା । ପୂର୍ଣ୍ଣ କରିବା ତୋ ଦୁଇ କାମନା ॥ ୪୬

---

୪୧—ସେହି ରାକ୍ଷସର ମୁଣ୍ଡ ଟଣ୍ଡି ଶୈଳ ପରି ପଡ଼ିଲା । ଗୈରିକ ଧାରା ପରି ରକ୍ତ ଧାର ସବୁ ବୋହିଲା । ରାଜା ସେହି ହଂସକୁ ପଚାରନ୍ତେ ସେ କହିଲା, ହେ ଲୋମପାଦବଂଶଚୂଡ଼ାମଣି । ଖଣ୍ଡଶୈଳ ( ପର୍ବତରୁ ଖସିବା ପ୍ରସ୍ତର ଖଣ୍ଡ ) ଗୈରିକ ଧାରା ( ଗେରୁଧାର ) ଅବତଂଶ ( ମୁକୁଟମଣି )

୪୨—ବ୍ରହ୍ମା ନାରାୟଣଙ୍କ ପୂଜାପାଇଁ ବଦରିକା ଆସିଛନ୍ତି । ମୁଁ ଜମ୍ବୁନଦ ସରୋବରରେ ବୁଲୁ ବୁଲୁ ଏହି ରାକ୍ଷସ ମୋତେ ହଂସାରେ କରଗତକଲା । ଅମ୍ବୁଭୂ ( ବ୍ରହ୍ମା )

୪୩—ବ୍ରହ୍ମାଙ୍କ ହଂସ କହିଲା, ପୂର୍ବରେ ବଜ୍ର ନାଭଙ୍କ ଅସୁରପୁରରେ ଅମ୍ଭେ ଭେଦ ଘଟାଇବାରୁ ରାକ୍ଷସବଂଶର ଶିରଚ୍ଛେଦ ହୋଇ ଅଛୁ । ସେହି ହଂସାରେ ଏ ମୋତେ ଧରିଥିଲା । ସେହି ରାଜହଂସ ରାଜାଙ୍କୁ ଘେନି ଶୀଘ୍ର ହରିକୂଟାଚଳରେ ପହୁଞ୍ଚିଲେ । ମରାଳରାଜ ( ରାଜହଂସ ଶ୍ରେଷ୍ଠ )

୪୪—ହଂସ ବ୍ରହ୍ମାଙ୍କ ପାଦତଳେ ପଡ଼ି ଏ କଥାସବୁ କହିବାରୁ ବ୍ରହ୍ମା ଆନନ୍ଦରେ ଆଜ୍ଞା ଦେଲେ, ହେ ନରପତି । ତୁମ୍ଭର ଯାହା ଇଚ୍ଛା ତାହା ପ୍ରାର୍ଥନା କର । ସ୍ୱୟମ୍ଭୂ ( ବ୍ରହ୍ମା ) କାଦମ୍ବ ( ରାଜହଂସ ) ହଂସରଥ ( ବ୍ରହ୍ମା ) ।

୪୫।୪୬-ରାଜା ହାତଯୋଡ଼ି ରହିବାରୁ ବ୍ରହ୍ମା ତାହାଙ୍କର ମନ ଜାଣି କହିଲେ, ତୁମ୍ଭେ ମନ୍ଦକର୍ଣ୍ଣଋଷି ତପସ୍ୟା ଛାଡ଼ି ସରୋବର ମଧ୍ୟରେ ଅପ୍ସରାଙ୍କ ସଙ୍ଗେ ଏକାନ୍ତରେ ବିହାର କରି ସେ ସୁଖକୁ ସ୍ୱର୍ଗ ସୁଖ ଅପେକ୍ଷା ଅଧିକ ବାଗୁର କରିଥିବା ବିଷୟ ପ୍ରସଙ୍ଗକ୍ରମେ ଶୁଣି ସେହିପରି ଭୋଗ କରିବାକୁ ଏବଂ ସୁନ୍ଦରୀ କନ୍ୟା ପାଇବାକୁ ଇଚ୍ଛୁଅଛ, ତୁମ୍ଭର ଏ ଦୁଇକାମନା ପୂର୍ଣ୍ଣକରିବା । ପ୍ରଜେଶ୍ୱର ( ରାଜା ) ପ୍ରଜାପତି ( ବ୍ରହ୍ମା ) ।

ଗନ୍ଧମାଦନରେ ଅଟନ୍ତି ବସନ୍ତେ । ଗୁପ୍ତ ହୋଇଥାଇ ଖ୍ୟାତ ବସନ୍ତେ ।
ରତିମର୍ଦ୍ଦା ସେ ଅପସରାବାର । ଶକ୍ୟ କି ତାକୁ ଅପସରିବାର ॥ ୪୭
ତାକୁ କନ୍ଦର୍ପ ଭୋଗ କରିବ । ସୁତା ଜନ୍ମାଇ ପୁରକୁ ନେବ ।
ନ ଥିଲା କାହିଁ ନୋହିବ ଏ ବାଣୀ । କୁମାରୀଠାରେ ସମ୍ଭବିବ ପୁଣି ॥ ୪୮
ବୋଲିବ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ପ୍ରେମ ଅଙ୍କୁରରୁ ପ୍ରେମ ମଞ୍ଜରୀ ।
ଏ ଆଜ୍ଞା ଦେଇ ରାଜା ଅନୁଗତ । ନାରାୟଣଙ୍କୁ କରି ପ୍ରଣମିତ ॥ ୪୯
ଦେଖିଲେ ସ୍ଥାନ ମହାଗଦ ପ୍ରାୟ । କୁଣ୍ଡଳି ଗମନେ କରନ୍ତି ଭୟ ।
ସ୍ୱଭାବେ ସ୍ୱର୍ଗ ପୁରକୁ ନିଶ୍ରେଣୀ । ଅପୂର୍ବ ଫଳୀରେ ରୁଚିର ପୁଣି ॥ ୫୦
ସଉଧ ଘେନିବାରୁ ଦିବ୍ୟବାସ । ମାନସେ ବିହରେ ପରମହଂସ ।
ତପେ ସେ ଖ୍ୟାତ ଶୁଚି ଜାଣି କରେ । ପ୍ରତୀତ ହୁଅଇ ଜ୍ୟେଷ୍ଠ ପ୍ରକାରେ ॥୫୧

---

୪୭—ରତିମର୍ଦ୍ଦା ନାମରେ ଗୋଟିଏ ଅତି ସୁନ୍ଦରୀ ସ୍ତ୍ରୀ ଅଛି, ସେ ଅନ୍ୟ ସମୟରେ ଗୁପ୍ତହୋଇ ଥାଏ, ବସନ୍ତ ସମୟରେ ଅଟନ୍ତି ଗନ୍ଧମାଦନ ପର୍ବତରେ ବାସ କରନ୍ତେ ସେ ପ୍ରକାଶ ପାଏ, ଅପ୍‌ସରୀମାନେ ତାର ସୁନ୍ଦରପଣରେ ହଟି ଯିବାର ଆଶ୍ଚର୍ଯ୍ୟ ନୁହେଁ । ଅପ୍‌ସରୀ ବା ( ଅପ୍‌ସରାସମୂହ ଓ ହଟିଯିବା )

୪୮—ତୁମ୍ଭେ ତାକୁ କନ୍ଦର୍ପ ଭୋଗ କରି । ତାହାଠାରେ ଏକ କନ୍ୟା ଜନ୍ମାଇ ତାହାକୁ ନିଜପୁରକୁ ନେବ । ସେ କୁମାରୀଠାରେ ନ ଥିଲା, ନାହିଁ ନୋହିବ ଏପରି ତ୍ରିକାଳ ବାକ୍ୟସମ୍ଭବ ହେବ ।

୪୯—କୋଟିବ୍ରହ୍ମାଣ୍ଡରେ ଏକମାତ୍ର ସୁନ୍ଦରୀ ହେବାରୁ ତାହାର ନାମ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ହେବ , ପ୍ରେମ ବୃକ୍ଷରୁ ପ୍ରେମ ମଞ୍ଜରୀ ଜନ୍ମିଲାପରି ସେକନ୍ୟାକୁ ସମସ୍ତେ ଅନୁମାନ କରିବେ । ବ୍ରହ୍ମା ଏପରି ଆଜ୍ଞା ଦେବାରୁ ରାଜା ଅନୁଗତ ହୋଇ ନାରାୟଣଙ୍କୁ ପ୍ରଣାମ କଲେ ।

୫୦—ସେହି ବଦରିକା ବନର ଶୋଭା ଦେଖିଲେ, ସେ ସ୍ଥାନ ମହାଗଦପରି ହୋଇ ଥିବାରୁ ସର୍ପମାନେ ଯିବାକୁ ଡରନ୍ତି । ବଣିଆମାନେ ମଧ୍ୟ ଅଭିଶପ୍ତ ହୋଇ ଥିବାରୁ ସେଠାକୁ ଯାଆନ୍ତି ନାହିଁ । ଏକସମୟରେ କୌଣସି ବଣିଆ ସ୍ୱର୍ଣ୍ଣମଣି ନିର୍ମିତ ନାରାୟଣଙ୍କର ଅଙ୍ଗୁଠି ଭାଙ୍ଗି ଆଣିଥିବାରୁ ଅଭିଶାପ ଅଛି, ସେସ୍ଥାନ ସ୍ୱଭାବତଃ ସ୍ୱର୍ଗକୁ ଯିବାର ନିଶୁଣୀ, ଅପୂର୍ବ ଫଳୀରେ ମନୋହର ( ଏସ୍ଥାନ ଅପୂର୍ବ ବୃକ୍ଷମାନଙ୍କରେ ମନୋହର ) । କୁଣ୍ଡଳି (ସର୍ପ ଓ ବଣିଆ) ନିଶ୍ରେଣୀ (ନିଶୁଣି) ଫଳୀ (ନିଶୁଣୀଫଳୀ ଓ ବୃକ୍ଷ)

୫୧—ସେ ବନ ସୌଧ ( ମୁକ୍ତମାନଙ୍କୁ ଘେନିଥିବାରୁ ଦିବ୍ୟବାସ (ସ୍ୱର୍ଗପୁର) ପରି ହୋଇଅଛି । ସ୍ୱର୍ଗରେ ମଧ୍ୟ ସୌଧ (ଅଟ୍ଟାଳିକା) ଅଛି, ମାନସରୋବରରେ ପରମହଂସ (ରାଜହଂସ) ମାନେ ବିହାର କଲାପରି ଏ ବନରେ ପରମ-ହଂସ [ଦଣ୍ଡୀ] ମାନେ ବୁଲୁଅଛନ୍ତି । ଏ ବନ ଜ୍ୟେଷ୍ଠମାସପରି ତପ ( ସୂର୍ଯ୍ୟ

ରାଜା ଭାବି ତହିଁ ନିତ୍ୟ ଗମନ । କେଦାରେଶ୍ୱରଙ୍କ ନିକଟ ସ୍ଥାନ ।
ସ୍ୱର୍ଣ୍ଣ-ସର-ତୀର ଚନ୍ଦନ-ବନ । 'ଚ' ବାଦି ଯହିଁ 'ନ' ଘେନଇ ମନ ॥ ୫୨
ସମାନ ବନେ ଏ କନ୍ୟାକୁ ଘେନି । ବିହରି କହିଗଲେ ପଦ୍ମଯୋନି ।
ସେ ବନ ସେବନେ ସେହି ଦମ୍ପତୀ । ବିରଚନ କଲେ ଅଭେଦ ପ୍ରୀତି ॥ ୫୩
ମାଳା କରି କଲେ କେବଳ କର । ହେଳା କରିଦେଲେ ବିଷୟୁବାର ।
ପାନ କରି ମାନ୍ କଲେ ଅଧର । ଧ୍ୟାନ କରି କଲେ ଭାବବିଗ୍ରହ ॥ ୫୪
ଦାନ କରି କଲେ ସନ୍ତୁ ଚୁମ୍ବନ । ଭିନ୍ନ କରି ଦେଲେ ଛିନ୍ନବସନ ।
ଘାତ କରି ଯହିଁ ଦଶନ ନଖ । ଜାତ କରି ତହିଁ ପରମ ସୁଖ ॥ ୫୫
ପାଠ କଲେ ଘେନାଘେନି ବଚନ । ହଠ କଲେ ଜିଣିବାକୁ ମଦନ ।
ଏକାନ୍ତ ସେ କାନ୍ତ କାନ୍ତା ତରୁଣ । ଏମନ୍ତ ମତି କି ଅଧିକ ପୁଣି ॥ ୫୬
ବନୀତ ଜନିତ ଅନଙ୍ଗ କରେ । ମନ୍ଦ ମନ୍ଦ ଗନ୍ଧବହ ବାହରେ ।
ପୁଷ୍ପ ପୁଷ୍ପରସ ପତନ ଅତି । ରଣରଣ ବୋଲେ ଭ୍ରମରପନ୍ତି ॥ ୫୭

---

ତେଜ ଓ ତପସ୍ୟା ) ରେ ଖ୍ୟାତ ହୋଇଅଛି ଏବଂ ସ୍ତୁତ ( ଅଗ୍ନି ଓ ପବନଙ୍କ ) କୁ ଜନ୍ମାଇଅଛି ।

୫୨।୫୩—ସେ ରାଜା ଚନ୍ଦନଙ୍କ ବନକୁ ଦେଖି ଏହିପରି ନାନା କଥା ଭାବି ପ୍ରତ୍ୟହ ଯାଆନ୍ତି । ଦିନେ ସ୍ୱୟଂବ୍ରହ୍ମା କେଦାରେଶ୍ୱରଙ୍କ ନିକଟବର୍ତ୍ତୀ ସ୍ୱର୍ଣ୍ଣସରୋବର ତୀରସ୍ଥ ଚନ୍ଦନବନରେ ଏହି କନ୍ୟା ସହିତ ବିହାର କରି, ଏହାଙ୍କୁ ରତି-ମର୍ଦ୍ଦାଙ୍କୁ ଅର୍ପଣକରି ସ୍ୱର୍ଗକୁ ଗଲେ । ଯେଉଁ ଚନ୍ଦନବନକୁ ଦେଖି ମନ, ଚ, ବାଦି, ନ, ଅକ୍ଷର ଯୋଗ କରି ( ଅର୍ଥାତ୍ ନନ୍ଦନବନ ) ସମାନ ଘେନୁ-ଅଛି । ସେହି ଦମ୍ପତୀ ( ରାଜା ଓ ରତିମର୍ଦ୍ଦା ) ସେହି ବନରେ ବିହାର କରି ଅଭେଦପ୍ରୀତି ଜନ୍ମାଇଲେ । ପଦ୍ମଯୋନି ( ବ୍ରହ୍ମା ) ।

୫୪—ପରସ୍ପର ହାତକୁ କେବଳ ହାର କଲେ, ବିଷୟସଙ୍ଗକୁ ତ୍ୟାଗ କଲେ, ପରସ୍ପର ଅଧରକୁ ପାନପାନ କଲେ, ଭାବକୁ ସର୍ବଦା ଧ୍ୟାନ କଲେ ।

୫୫—ମଧୁର ଚୁମ୍ବନକୁ ପରସ୍ପର ଦାନ କଲେ, ଛିନ୍ନବସନ ପରିତ୍ୟାଗ କଲେ, ଯେଉଁ ସ୍ଥାନରେ ଦନ୍ତାଘାତ ବା ନଖାଘାତ କଲେ ସେ, ସ୍ଥାନରେ ପରମ ସୁଖ ଜନ୍ମାଇଲେ ।

୫୬—ପରସ୍ପର ଘେନାଘେନି ବାକ୍ୟ ( ଗୂଢ଼ବାକ୍ୟ ) କୁ ପାଠ କଲେ । କାମକୁ ଜୟ କରିବାକୁ ହଠ କଲେ । ସେ ତରୁଣ କାନ୍ତ ଓ କାନ୍ତା ଦୁହେଁ ଏକାନ୍ତ ହେଲେ । ଏହା କିଛି ବିଶେଷ କଥା ନୁହେଁ ।

୫୭—ସେହି ଚନ୍ଦନବନ କାମକୁ ଜନ୍ମାଉଅଛି, ମନ୍ଦ ୨ ପବନ ବହୁଅଛି, ଅତଏବ ଫୁଲ ଓ ଫୁଲମଧୁ ପଡ଼ୁଅଛି । ଭ୍ରମରମାନେ ଗୁଣୁ ଗୁଣୁ ଶବ୍ଦ କରୁଅଛନ୍ତି । ବନୀ ( ବଗିଚା ) ଅନଙ୍ଗ ( କାମ ) ଗନ୍ଧବହ ( ପବନ ) ।

କୁହୁକୁହୁ କରୁଛନ୍ତି କୋକିଳ । ହୁଁ ହୁଁ ହୁଁ ହୁଁ କରେ କପୋତକୁଳ ।
ଶୁଭୁଅଛି ପୁଣି କଳସ୍ୱୀ-ଗୀତ । ଲୋଭୁଅଛି ତହିଁ ବିଶେଷ ଚିତ୍ତ । ୫୮
ତରୁ ଆଳବାଳ ଜମ୍ବୁ-ଜମ୍ବାଳ । ଗୁଞ୍ଜ ଭ୍ରମିବାରୁ ଶୀତଳ ଜଳ ।
ମହୀରେ ରେଣୁ କେବଳ କର୍ପୂର । ତହିଁରେ ପଙ୍କ କସ୍ତୁରୀନାକର ॥ ୫୯
ବର୍ଣ୍ଣିତ ଏମନ୍ତେ ପଦ୍ମିଣୀ କେତେ । ଗୁପ୍ତ ସୁକୁମାରୀ କୁମାରୀ ଜାତେ ।
ଶୋଚନା କରନ୍ତେ ନୃପତମଣି । ରଚନା କଲ୍ଲ ମନ୍ତ୍ରୀ ବୋଧବାଣୀ ॥ ୬୦
ନନ୍ଦନୀ ଶୋଇ ରତନ-ପଲଙ୍କେ । ବିବାଦୀ ଦେଖିଲ୍ଲ ଆଖି ପଲକେ ।
ବେଦନସ୍ୱନ କ୍ଷଣେ କ୍ଷଣେ ରଚି । ପିକେ ଦେଉଛି ମୂକିଭୂତ ଯାଚି ॥ ୬୧
ରତିକେ ସମାନ ନୋହିବ ରତି । ଯତି କେ ଦେଖିଲେ ରଖିବ ଧୃତି ।
ଯୁବାକାଳେ ଏ ବା ହେବ କେମନ୍ତ । ହେବାରେ ଜନମ ଯହିଁ ଏମନ୍ତ ॥ ୬୨
ସମାନେ କାହୁଁ ଭେଆଇବା ବର । ଏମାନେ ସଚିବ ଚିତ୍ତ ଅଧୀର ।
ଆକାଶରୁ ଶୁଭେ ଏମନ୍ତ ଗୀର । ପ୍ରକାଶ ହେଲଣି ବର ଏହାର ॥ ୬୩

---

୫୮—କୋକିଳମାନେ କୁହୁ ୨ ଶବ୍ଦ କରୁଅଛନ୍ତି । କପୋତପକ୍ଷୀ ହୁଁ କାରଶବ୍ଦକରୁଅଛନ୍ତି । କଳସ୍ୱୀମାନଙ୍କ ଗୀତ ପୁଣି ଶୁଭୁ ଅଛି । ଏଥିରେ ଚିତ୍ତ ବିଶେଷରେ ଲୋଭୀ ହେଉଅଛି ।

୫୯—ସୁବର୍ଣ୍ଣପଙ୍କ ବୃକ୍ଷମାନଙ୍କର ମନ୍ଦା ହୋଇ ଅଛି, ତହିଁରେ ଶୀତଳ ଜଳ ରହି ସୁନ୍ଦର ଦିଶୁଅଛି । ସେ ସ୍ଥାନରେ ଧୂଳିସବୁ କେବଳ କର୍ପୂର ଅଟେ । ମୃଗନାଭି କସ୍ତୁରୀ ସେଠାରେ ପଙ୍କ ହୋଇଅଛି । ଆଳବାଳ ( ମନ୍ଦା ) ଜମ୍ବୁ-ଜମ୍ବାଳ ( ସୁବର୍ଣ୍ଣପଙ୍କ ) ।

୬୦—ସୁକୁମାରୀ ରତିମର୍ଦ୍ଦୀ ଏହିପରି କେତେକାଳ ରହି କନ୍ୟାଟିଏ ଜନ୍ମିବାରୁ ଗୁପ୍ତ ହୋଇଗଲେ, ରାଜା ଶୋଚନା କରିବାରୁ ମନ୍ତ୍ରୀ ବୋଧବାଣୀ ରଚନା କଲେ ।

୬୧—ସେହି କନ୍ୟା ରତ୍ନପଲ୍ୟଙ୍କରେ ଶୋଇ ଦେଖିବା ଲୋକର ପଲକ ପତନରେ ବିବାଦୀ ହେଲ । ଅର୍ଥାତ୍ ତାଙ୍କୁ ଦେଖି ପଲକ ପଡ଼ିଲ ନାହିଁ । ସେ କନ୍ୟା କ୍ଷଣେ ୨ ବେଦନ କରି ପିକକୁ ମୂକିଭୂତ ( ମୂକତା ) ଯାଚିକରି ଦେଇଅଛି । ଅର୍ଥାତ୍ ତାହାର ସୁମଧୁର ସ୍ୱର ଶୁଣି ପିକମାନେ ମୂକ ହେଲେ ।

୬୨—ରତିଦେବୀ ରତିଏ ମାତ୍ର ଏହାର ସମାନ ହେବେ ନାହିଁ । କେଉଁ ଯତୀ ଏହାକୁ ଦେଖି ଧୈର୍ଯ୍ୟ ରଖିପାରିବ । ଯେ ଜନ୍ମିବା ମାତ୍ରେ ଏପରି, ସେ ପୁଣି ଯୌବନାବସ୍ଥାରେ କଣ ନ ହେବ ।

୬୩—ଏହାର ସମାନ ବର କେଉଁଠାରୁ ଆଣିବା ଏହାଭାବି ମନ୍ତ୍ରୀଙ୍କ ମନ ଅଧୀର ହେଲ । ଏହାର ବର ପ୍ରକାଶ ହେଲଣି ଏହିପରି ଆକାଶବାଣୀ ହେଲ ।

ଏଣୁ ସ୍ଥିର-ଚିତ୍ତ ପୃଥ୍ୱୀଙ୍କ ଘେନି । ସକଳେ ପରବେଶ ରାଜଧାନୀ
ପାଳିତ ହୋଇଲା ରାଣୀବଂଶରେ । ଜେମା ଲଳିତ ବାଲ୍ୟ ଅବସ୍ଥାରେ ॥ ୭୪
ବଦ୍ରିକାନାଥ ଉପଇନ୍ଦ୍ର ଚନ୍ତେ । ଶୁଦ୍ଧ ସୁବର୍ଣ୍ଣ-ମୟ-ପଦ ଜାତେ ।
ଧ୍ୟାନେ ସ୍ମରଣ କରିବେ ହୃଦୟ । ସ୍ପରଶ ମଣିବେ କାମିଣୀ କାୟ ॥ ୭୫

---

# ତୃତୀୟ ଛାନ୍ଦ

( କୋଟିବ୍ରହ୍ମାଣ୍ଡସୁନ୍ଦରୀର ବାଲ୍ୟ ପୌଗଣ୍ଡ ଏବଂ ଯୌବନାବସ୍ଥା ବର୍ଣ୍ଣନ )

ରାଗ—କେଦାର—ଚକ୍ରକେଳୀ ବାଣୀ


ନା ଶବ୍ଦରେ ଯେ ବିଚକ୍ଷଣ । ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।
ସେହି କରୁ ଏ ଛାନ୍ଦ ବିବେଚନା । ବାଲ୍ୟ ପୌଗଣ୍ଡ ଯୌବନରଚନା ।

ନବବିଧାତା ମଦନ ହୋଇଲା । ନବ ଯୌବନସୃଷ୍ଟି କରିଲା ।
ବାଲ୍ୟ ପୌଗଣ୍ଡ ଯୌବନ-ଚିହ୍ନକୁ । ଅନ ଅନ ସ୍ଥାନେ ଦେଲା ଥିତିକୁ ॥ ୨

---

୭୪—ରାଜା ଏହା ଶୁଣି ସ୍ଥିର ମନରେ କନ୍ୟାଙ୍କୁ ନେଇ ସସୈନ୍ୟରେ ରାଜଧାନୀରେ ପ୍ରବେଶ କଲେ । ଜେମାମଣି ମନୋହର ବାଲ୍ୟାବସ୍ଥାରେ ରାଣୀମାନଙ୍କଦ୍ୱାରା ପାଳିତ ହେଲେ ।

୭୫—କବି ଉପେନ୍ଦ୍ର ଭଞ୍ଜ ଶୁଦ୍ଧ ସୁବର୍ଣ୍ଣ ସଦୃଶ ପଦ ସମୂହରେ ବଦ୍ରିକାନାଥ ନାରାୟଣଙ୍କୁ ଚିନ୍ତା କରନ୍ତି । ବଦ୍ରିନାରାୟଣଙ୍କର ଶରୀର ସ୍ପର୍ଶମଣିରେ ନିର୍ମିତ ହୋଇ ଥିବାରୁ ତାହାଙ୍କୁ ଧ୍ୟାନକଲେ । ସ୍ପର୍ଶମଣି ଲୌହକୁ ସ୍ୱର୍ଣ୍ଣ-କଲାପରି ସେ ହୃଦୟକୁ ସ୍ୱର୍ଣ୍ଣକରିବେ । ହୃଦୟ (ହୃତ୍, ହୃଦୟ) ଅୟ (ଲୌହ)

---

୧—ଯେ ନାନାପ୍ରକାର ଶବ୍ଦାର୍ଥ ଜାଣେ, ଯେ ଅଳଙ୍କାର ଲକ୍ଷଣ ଜାଣେ, ସେହି ଲୋକ ଏ ଛାନ୍ଦକୁ ବିଚାର କରୁ । ଏ ଛାନ୍ଦରେ ବାଲ୍ୟ ପୌଗଣ୍ଡ ଓ ଯୌବନ ବର୍ଣ୍ଣିତ ହୋଇଅଛି ।

୨—କାମ ନୂତନ ସୃଷ୍ଟିକର୍ତ୍ତା ହୋଇ ନବଯୌବନକୁ ସୃଷ୍ଟି କଲା । ବାଲ୍ୟ ପୌଗଣ୍ଡ ଓ ଯୌବନର ଚିହ୍ନମାନଙ୍କୁ ଭିନ୍ନ ଭିନ୍ନ ସ୍ଥାନରେ ରଖାଇଲା ।

ରଜନୀକର ମାଗିଲା ଖେଳିଲା । ରଜନୀକର ସ୍ନେହେ ତା ଛାଡ଼ିଲା ।
ଧାତ୍ରୀମଣ୍ଡନା ହେବାକୁ ଭୁଲଇ । ଧାତ୍ରୀମଣ୍ଡନା ନାମ ଯେ ବୋଲଇ ॥ ୩
ନେତ୍ର-ଗର୍ତ୍ତରେ ଥିଲା ଅଧିରତା । ନେତ୍ର-ଗର୍ତ୍ତରେ ଅଣି କଲା ରତା ।
କନ୍ୟାବର କରବାର କଣ୍ଟାଇ । କନ୍ୟାବର ଶତ୍ରୁ ଦେଲା ଛଡାଇ ॥ ୪
ଚିତ୍ର-ବନ୍ଧ ଦରଶନେ ଥୋଇଲା । ଚିତ୍ର-ବନ୍ଧନ ଚିତ୍ତକୁ ହୋଇଲା ।
ବନ୍ଦୀ ଲକ୍ଷେ ଶୋଭା-କୀର୍ତ୍ତି କୁହାଇ । ବନ୍ଦୀ ଲକ୍ଷେ ଅବରୋଧ ରୁହାଇ ॥ ୫
ସୁଷମାକୁ ଉରରୁ କରି ଧିକ । ସୁଷମାକୁ ବଢ଼ାଇଲା ଅଧିକ ।
ପୁନ୍ନାଗପୂଗ ପରାଯେ ରଞ୍ଜନ । ପୁନ୍ନାଗ-ପୁଙ୍ଗ ଧୈର୍ଯ୍ୟ ବିଭଞ୍ଜନ ॥ ୬

---

୩—ବାଲ୍ୟାବସ୍ଥାରେ ରଜନୀକର (ଚନ୍ଦ୍ର) କୁ ମାଗିଲା, ପୌଗଣ୍ଡରେ ରଜନୀକର (ଧୂଳି) ରେ ଖେଳିଲା । ଏବଂ ଧାଈମାନଙ୍କଠାରେ କାଖ ହେଲା, ଯୌବନରେ ରଜନୀକର (କର୍ପୂର) ସ୍ନେହରେ ପୂର୍ବ କଥାମାନ ଛାଡ଼ିଲା ଏବଂ ଧାଈମାଙ୍କୁ ଭୁଲଇ କାଖ ନ ହୋଇ ଧାତ୍ରୀମଣ୍ଡନା (ପୃଥିବୀର ଅଳଙ୍କାର ସ୍ୱରୂପା) ବୋଲାଇଲା । ରଜନୀକର (ଚନ୍ଦ୍ର, ଧୂଳି, ଓ କର୍ପୂର) ଧାତ୍ରୀ (ଧାଈ ଓ ପୃଥିବୀ)

୪—ଅଦ୍ୟ ବୁଇ ଅବସ୍ଥାରେ ଚଞ୍ଚଳତା ନେତ୍ର (ବସ୍ତ୍ର) ପିନ୍ଧାରେ ଓ ଗର୍ତ୍ତ (ଗୁଳି) ରେ ଥିଲା । ଯୌବନରେ ସେହି ଅଧୀରତାକୁ ନେତ୍ର ଗର୍ତ୍ତରେ (ଗୁହାଁଣୀରେ) ଆଣି ରଖିଲା । ପ୍ରଥମରେ କୁଣ୍ଢେଇକୁ ବରକନ୍ୟା କରି ଖେଳୁଥିଲେ, ଯୌବନରେ ସେହି କନ୍ୟାବର (କନ୍ୟାଶ୍ରେଷ୍ଠା) ମନରୁ ତାହା (ସେ ଖେଳ) ଦୂର କଲା ।

୫—ଆଖିଆଗରେ ଚତୁଃଷଷ୍ଟି ଚିତ୍ରବନ୍ଧପୂର୍ଣ୍ଣ ଚିତ୍ରପଟ, ଲେଖିଲା, ଲୋକମାନଙ୍କର ମନକୁ ବିଚିତ୍ର ଭାବରେ ବାନ୍ଧିଲା । ଲକ୍ଷ ଲକ୍ଷ ବନ୍ଦୀ (ଭାଟ) ମାନେ ସେ କନ୍ୟାର ଶୋଭା ଓ କୀର୍ତ୍ତିଗାନ କରି ବୁଲିଲେ ଏବଂ ଯୌବନାବସ୍ଥା ଆସି-ବାରୁ ସେ କନ୍ୟା ବନ୍ଦୀଲକ୍ଷେ (କଇଦୀ ପରି) ଅନ୍ତଃପୁରରେ ରହିଲେ ଅବରୋଧ (ଅନ୍ତଃପୁର (

୬—ଛାତିରୁ ସୁସମା (ସମତା) କୁ ତୁଚ୍ଛ କରି ଦେଇ (ସ୍ତନ ଅଙ୍କୁରିତ ହେବାରୁ ଛାତିରେ ସମତା ରହିଲା ନାହିଁ) ସୁଷମାକୁ (ଉତ୍ତମ ଶୋଭାକୁ) ଅଧିକ ବଢ଼ାଇଲା । ସ୍ତନ ପୁନାଙ୍ଗ ଓ ଗୁବାକ ପରି ଶୋଭା ପାଇ ପୁନ୍ନାଗ (ପୁରୁଷ-ଶ୍ରେଷ୍ଠ) ପୁଙ୍ଗ (ସମୂହ) ର ଧୈର୍ଯ୍ୟ ଭାଙ୍ଗି ଦେଲା ।

ହେଲା ସେ ସୁମନାଳୟ ଉଦୟ । ରସ-ବାସ କରି କଲା ହୃଦୟ
ବଳୀ ସଦନ ହୋଇଲା ଉଦର । ତ୍ରିଭୁବନ ସରଞ୍ଜନ ଆଦର ॥ ୭
ଅଙ୍କୁରାଇଲା ନୂତନେ ରୋମାଳୀ । ସ୍ତୁତ ପ୍ରଥମ-ରସ ବର୍ଣ୍ଣାବଳୀ ।
ଅତି ଶୋଭି ନାଭି ଏହି ପ୍ରକାର । ଧାଡ଼ିପ୍ରାନ୍ତେ ରଖିଅଛୁ ଠକାର ॥ ୮
ଅଜ ବର୍ଣ୍ଣ ଚୂର୍ଣ୍ଣକେଶେ ରଖିଲା । ଥିଲା ଅସ୍ତବ୍ୟସ୍ତ ସମେ ଲେଖିଲା ।
ହ୍ରସ୍ୱ ଦୀର୍ଘ ପ୍ଲୁତ କରି ଗୁରୁରେ । କଲା ପ୍ରସ୍ତାର ଦେଖାଇ ଭ୍ରୂରେ ॥ ୯
କଲା ନିତମ୍ବ ପୃଥୁ ଚକ୍ରବର୍ତ୍ତୀ । ବେଗେ ଅବିବେକ ଗଲା ନିବର୍ତ୍ତି ।
କରି ନୂପୁର ତୂରକୁ ବାଜନ୍ତୀ । କିଙ୍କା ଡମ୍ବରୁରେ ଘଣ୍ଟି ସାଜନ୍ତୀ ॥ ୧୦

---

୭—ସେ ସ୍ତନ ସୁମନାଳୟ ( ମେରୁ ) ପରି ଉଦୟ ହେବାରୁ ସୁମନାଳୟ ( ସ୍ୱର୍ଗ ) ତୁଲ୍ୟାହେଲା । ତାହାର ହୃଦୟ ରସାବାସ ( ଶୃଙ୍ଗାରରସର ସ୍ଥାନ ) ହେବାରୁ ସେ ରସା ( ପୃଥ୍ୱୀ ) ତୁଲ୍ୟା, ଉଦର ବଳିସଦନ ( ତ୍ରିବଳିର ସ୍ଥାନ ) ହେବାରୁ ବଳିସଦନ ( ପାତାଳ ) ତୁଲ୍ୟା, ଫଳତଃ ସେ କନ୍ୟା ତ୍ରିଭୁବନର ଅନୁରାଗ ଉତ୍ପାଦକା ହୋଇ ଆଦରଣୀୟା ହେଲା ।

୮—ତାପରେ ସେ କନ୍ୟାର ଉଦରରେ ଯେଉଁ ନୂତନ ରୋମରାଜି ଅଙ୍କୁରିତ ହୋଇଲେ ତାହା ପ୍ରଥମରସ ( ଶୃଙ୍ଗାରରସ ) ଲିଖିତ କୃଷ୍ଣବର୍ଣ୍ଣ ଅକ୍ଷରଧାଡ଼ି ଏବଂ ତାହାର ଶେଷରେ ଥିବା ଅତିସୁନ୍ଦର ନାଭିଟି ଧାଡ଼ିଶେଷରେ ଥିବା 'ଠ' ଅକ୍ଷର ପରି ରହିଲେ ।

୯—କର୍ତ୍ତିତ କ୍ଷୁଦ୍ର କେଶ ସବୁ ଅନ୍ୟାନ୍ୟ ବର୍ଣ୍ଣହେଲେ, ସେହିଚୂର୍ଣ୍ଣ କୁନ୍ତଳଗୁଡ଼ିକ ବଢ଼ିଯାଇ ଇତସ୍ତତଃ ବିକ୍ଷିପ୍ତ ହୋଇଥିଲେ ତାହାକୁ କତୁରୀରେ କାଟି ସମାନ କରିଦେବାରୁ ସମାନ ଧାଡ଼ିରେ ଅକ୍ଷର ଲେଖାହେଲା ପରି ଦେଖାଗଲେ । ବିସ୍ତୃତ ଭ୍ରୂଲତାରେ ଥିବା ଛୋଟ ବଡ଼ ଓ ମଧ୍ୟମପ୍ରକାର ସୁନ୍ଦର କେଶ ସବୁ ହ୍ରସ୍ୱ, ଦୀର୍ଘ, ପ୍ଲୁତ ଅକ୍ଷର ହେଲେ ।

୧୦—ନିତମ୍ବ ( କଟିପଶ୍ଚାଦ୍ଭାଗ ) କୁ ପୃଥୁ ଚକ୍ରବର୍ତ୍ତୀ ( ଚକ୍ରାକାରରେ ବଡ଼ ଓ ପୃଥୁରାଜା ) କରାଇବାରୁ ଅବିବେକ ଶୀଘ୍ର ନିବର୍ତ୍ତିଗଲା, ପୃଥୁରାଜାଙ୍କ ଶାସନରେ ଲୋକମାନଙ୍କର ଅବିଚାର ନ ଥିଲା । ଏବଂ ସେ ବୀରବାଦ୍ୟ ବଜାଇ ଯୁଦ୍ଧଯାତ୍ରା କରୁଥିଲେ ଏ ମଧ୍ୟ ଯେଉଁ ନୂପୁର ପିନ୍ଧିଲେ ତାହା ତୂରୀପରି ବାଜିଲା, କଟି ଡମ୍ବରୁ ବାଦ୍ୟ ପରି ତହିଁରେ ଘଣ୍ଟି ଶୋଭା ପାଇଲା ।

ତ୍ରପା ବିଲମ୍ବେ ପାନ୍ଥ ମନୋହରେ । ମନ ଅସୀମାନ୍ତେ ଆସି ବିହରେ ।
ଜ୍ୟୋତ୍ତମୋକ୍ତି ନାସାରେ ଯେ ବିଦିତ । ଯେଣୁ ଲଗ୍ନ ଉଚ୍ଚେ କାବ୍ୟ ଉଦିତ ॥ ୧୧
ଅଙ୍ଗଦେଶରେ ଶୋଭା-ଅନୁଚରେ । ବୃଦ୍ଧି ଅକଥିତ ହୋଇ ସଞ୍ଚରେ ।
କାନ୍ତି କରଣି ପ୍ରକଟ ଛଟକେ । ଅଧିକାର କଲା ହେମ-କଟକେ ॥ ୧୨
ଦୀପ୍ତି ପ୍ରଧାନ ପ୍ରକାଶ ବହନେ । ନିଶ୍ଚେ ମଣି ତ ସେ ସର୍ବମୋହନେ ।
ମାଧୁର୍ଯ୍ୟ ତା ହୃତ ପୁଣି ଉପୁଜେ । ଚିତ୍ର ଲେଖନ ବିନା ଅନ୍ୟ ପୂଜେ ॥ ୧୩
ପ୍ରଗଲ୍‌ଭତା ବିଦୂଷକ ସଙ୍ଗତ । ଜାତ ପରିହାସ ସୁବକ୍ର ଉକ୍ତ ।
ରାଗ ବ୍ୟକ୍ତ ଅତିଶୟ ଅଧରେ । ସାର କର ମଞ୍ଜିଷ୍ଠାକୁ ଉଦ୍ଧରେ ॥ ୧୪
କଲା କି ସୃଷ୍ଟି କିଛି ନ ଭୁଲିଲା । ହରି-ଲୀଳା ଏରୂପେ ନିର୍ବାହିଲା ।
ସୁଗ୍ରୀବରେ ଯେ ଚନ୍ଦନ ମିଶ୍ରିତ । ରାମ-ଲକ୍ଷ୍ମଣ ମୁଖେ ପ୍ରଶଂସିତ ॥ ୧୫

---

୧୧।୧୨-କାମଦେବ ସୁବର୍ଣ୍ଣପୁର ସଦୃଶ ତାହାର ଦେହ ଅଧିକାର କରିବାରୁ ତ୍ରପା ( ଲଜ୍ଜା ) ବିପ୍ରୀତରେ ପାନ୍ଥ ହୋଇ ସେହି କନ୍ୟାର ମନକୁ ଆସି ସର୍ବଦା ଆନନ୍ଦରେ ବିହାର କଲା, ଉଜ୍ଜ୍ୱଳ ମୁକ୍ତାଟିଏ ନାସାରେ ରହିବାରୁ କାବ୍ୟ ( ଶୁକ୍ର ) ଲଗ୍ନୋଚ୍ଚେ ( ଉଚ୍ଚସ୍ଥାନରେ ଲଗ୍ନ ହୋଇ ) ଲଗ୍ନର ଉଚ୍ଚରେ ଶୁକ୍ର ରହି ଯେପରି ସମସ୍ତ ଶୁଭ ଫଳ ପ୍ରଦାନ କରନ୍ତି, ଏଠାରେ ତାହା ଘଟିଲା । ସର୍ବାଙ୍ଗରେ ଶୋଭାରୂପ କାମ ରାଜାର ଅନୁଚର ବର୍ଗ କ୍ରମେ ବଢ଼ି ବଢ଼ି ଅକଥିତ ରୂପେ ( କେହି ନ କହିଲେ ମଧ୍ୟ ) ସ୍ୱେଚ୍ଛାରେ ସଞ୍ଚାର କଲେ । କାନ୍ତି ( ଲାବଣ୍ୟ ) ରୂପୀ କରଣି ଚଞ୍ଚଳ ପ୍ରକାଶ ପାଇଲେ ।

୧୩—ଦୀପ୍ତି ( ଦେହର ପ୍ରଭା ) ପ୍ରଧାନ ହୋଇ ଶୀଘ୍ର ପ୍ରକାଶପାଇ, ସମସ୍ତଙ୍କୁ ନିଶ୍ଚୟ ବଶ କରିବ ବୋଲି ଭାବିଲା । ମଧୁରତା ହୃତ ( ଛାଟିଆ ) ହେଲା, ତାକୁ ଚିତ୍ରଲେଖନ ବିନା ( ବିନାଚଟିରେ ) ଲୋକେ ମାନ୍ୟକଲେ ।

୧୪—ପ୍ରଗଲ୍‌ଭତା ( ଚତୁରତା ) ମିଳି ବିଦୂଷକପରି ପରିହାସ ଓ ବକ୍ରୋକ୍ତି ଜନ୍ମାଇବାରୁ ଅଧରରେ ଅତିଶୟ ରାଗ ( ସ୍ନେହ ଓ ରକ୍ତିମା ) ଜନ୍ମିଲା । ତେଣୁ ସେ ଅଧର ମଞ୍ଜିଷ୍ଠା ( ରକ୍ତବର୍ଣ୍ଣଲତା ) ସହ ଉପମାକୁ ପାଇ ସେ ଲତାକୁ ସାର କରି ଉଦ୍ଧାରିଲା ।

୧୫—ବିଧାତା କି ସୃଷ୍ଟି କଲା, କିଛି ଭୁଲିଲା ନାହିଁ, ଏ କନ୍ୟାଠାରେ ହରିଲୀଳା ( ବିଷ୍ଣୁଙ୍କ ଲୀଳା ) ଏହିପରି ପ୍ରକାଶ ପାଇଲା । ହରି ରାମାବତାରରେ ସୁଗ୍ରୀବ ଓ ଚନ୍ଦନ ନାମକ ମର୍କଟ ଦ୍ୱୟଙ୍କ ସହିତ ମିଳିଥିଲେ, ଏବଂ ସେ ଦୁହିଙ୍କ ମୁଖରେ ରାମ ଓ ଲକ୍ଷ୍ମଣଙ୍କର ପ୍ରଶଂସା ହେଉଥିଲା । ଏ କନ୍ୟାର ସୁଗ୍ରୀବ ( ଉତ୍ତମଗ୍ରୀବା ) ରେ ଚନ୍ଦନ ଯୁକ୍ତହେଲା, ମୁଖରେ ରାମଲକ୍ଷ୍ମଣ ( ଚନ୍ଦ୍ର ) ପ୍ରଶଂସିତ ହେଲା, ଏହାଙ୍କର ମୁଖ ଚନ୍ଦ୍ର ପରି ହେବାରୁ ଚନ୍ଦ୍ର ଧନ୍ୟ ହେଲା ।

ପ୍ରକାଶିତ ଚନ୍ଦ୍ରହାସ-ଝଳକ । ମନ୍ଦୋଦରୀ-ବର ଶକ୍ତି- ତଳକ ।
ମେଘନାଦ ଶିଖା ଲକ୍ଷ୍ୟ ଝଳକ । ଦକ୍ଷ ଧର ସେ ସୁମନା-ବଳୀକ ॥ ୧୬
ସଦା ଅଙ୍ଗଦ ବାହୁରେ ବହରେ । କୁଚ-କୁମ୍ଭ ଜଗତ ଚିତ୍ତ ହରେ ।
ଏଣୁ କର ପୁଷ୍ପ-ଲଙ୍କା କମ୍ପନ । ଏତ କଳ୍କକ କଥା ଉଦ୍ଦୀପନ । ୧୭
ନେନେ ସୁଭାରତ ହେବା କହୁଛୁ । କୃଷ୍ଣ ଅର୍ଜୁନ ରଙ୍ଗ କରାଉଛୁ ।
ଗୁଣ ଅଞ୍ଜନ କପାଳ କମାଣ । ବାଣପ୍ରୟୋଗ କଟାକ୍ଷ ପ୍ରମାଣ ॥ ୧୮
କର୍ଣ୍ଣ ବଜ୍ର-ମଲ୍ଲୀକଢ଼ୀ ବହିଲ । ସୁଚାଟଙ୍କ ଅଡ଼ଣୀରେ ଶୋହିଲ ।
ଦ୍ରୋଣସୁତ ଉତ୍ତରହିଁ ବଖ୍ୟାତ । କଳ୍କି ଉପଲକ୍ଷଣ ସାକ୍ଷାତ ॥ ୧୯

---

୧୬—ରାମଲୀଳାରେ ମନ୍ଦୋଦରୀ ବର (ରାବଣ) ଚନ୍ଦ୍ରହାସ (ଖଡ୍‌ଗ) ଝଲକ ଏବଂ ଶକ୍ତି ତଳକ (ଉତ୍କୃଷ୍ଟ ଶକ୍ତି ଅସ୍ତ୍ର) ରେ ପ୍ରକାଶିତ ହୋଇଥିଲା । ମେଘନାଦ (ଇନ୍ଦ୍ରଜିତ) ର ଶିଖାଝଲ (ବୀରମୁକୁଟ ପ୍ରଭା) କୁ କାହା ଲକ୍ଷ୍ୟ ନଥିଲା, ଏବଂ ସେ ସୁମନାବଳୀ (ଦେବସମୂହ) କୁ ଧରିବାକୁ ଦକ୍ଷ ହୋଇ ଥିଲା । ଏଠାରେ ଚନ୍ଦ୍ରତୁଲ୍ୟ ହାସ୍ୟ ଝଲକ ପ୍ରକାଶିଲା ଏବଂ ଏ ମନ୍ଦୋଦରୀବର (କ୍ଷୀଣମଧ୍ୟାଶ୍ରେଷ୍ଠା) ଶକ୍ତି ଅସ୍ତ୍ରପରି ତଳକକଲା ରଚିଲା । ଏହାର ଶିଖା (କେଶଗୁଚ୍ଛ) ର ଝଲ (ପ୍ରଭା) ସହିତ ମେଘନାଦ (ମୟୂର) ଲକ୍ଷ୍ୟ ଅଟେ, ତହିଁରେ ସୁମନାବଳୀକୁ (ପୁଷ୍ପ ସମୂହକୁ) ଧରିବାରେ ଏ ଦକ୍ଷା ହେଲା ।

୧୭—ରାମଲୀଳାରେ ଅଙ୍ଗଦ ନାମା ମର୍କଟ ସଦା ବାହୁବଳରେ କ୍ରୀଡ଼ା କରୁଥିଲା, କୁମ୍ଭକର୍ଣ୍ଣ ଜଗତାରେ ଦର୍ଶକ ମାନଙ୍କର ଧୈର୍ଯ୍ୟ ହରଣ କରୁଥିଲା, ଏଠାରେ ଅଙ୍ଗଦ (ଅଳଙ୍କାର ବିଶେଷ) ସର୍ବଦା ବାହୁରେ ରହିଲା, କୁଚ କୁମ୍ଭ ଜଗତାରେ ଲୋକଙ୍କର ମନକୁ ହରଣ କଲା । ପୁଣି ସେ ଲଙ୍କାରେ ପୁଷ୍ପକ ବିମାନ କମ୍ପୁଥିଲା, ଏଣୁ ଏ ପୁଷ୍ପଲଙ୍କା (ପୁଷ୍ପ ସମୂହ) କୁ କେଶରେ କମ୍ପାଇଲା, ଏହିପରି କଳ୍କକ (ଯୁଗାନ୍ତର) କଥା ପ୍ରକାଶ ପାଇଲା ।

୧୮—ଏ ନେନରେ ଉତ୍ତମ ମହାଭାରତ-ଯୁଦ୍ଧକୁ ପ୍ରକାଶ କରୁଛୁ, ମହାଭାରତ ଯୁଦ୍ଧରେ କୃଷ୍ଣ ଓ ଅର୍ଜୁନ ଯୁଦ୍ଧରଙ୍ଗ କରୁଥିଲେ, ଏ ନେନରେ କୃଷ୍ଣ (କଳା) ଅର୍ଜୁନ (ଶୁକ୍ଳ) ଓ ରଙ୍ଗ (ରକ୍ତ ବର୍ଣ୍ଣମାନକୁ) ପ୍ରକାଶ କରଅଛୁ । ଏଠାରେ ଅଞ୍ଜନ ଧନୁର୍ଗୁଣ ଭଳି ଧନୁହେଲା, କଟାକ୍ଷ ଗୁଳନ ବାଣ ପ୍ରୟୋଗ ହେଲା ।

୧୯—ସେଠାରେ କର୍ଣ୍ଣ ବଜ୍ର ଧରିଥିଲେ ଏବଂ ଅଡ଼ଣୀ (ଢାଲ) ରେ ଶୋଭିତ ହୋଇଥିଲେ, ଅଜ ଦ୍ରୋଣସୁତ (ଅଶ୍ୱତ୍ଥାମା) ଓ ବିରାଟ ରାଜପୁତ୍ର ଉତ୍ତର ଏ ଯୁଦ୍ଧେ ଖ୍ୟାତ ହୋଇ ଥିଲେ । ଏ କର୍ଣ୍ଣରେ ବଜ୍ରତୁଲ୍ୟ ମଲ୍ଲୀକଢ଼ୀ ଓ ଢାଲପରି ଉତ୍ତମ ଚାଟଙ୍କ ଧାରଣ କରି ଶୋଭା ପାଇଲେ । ପୁଣି ଦ୍ରୋଣସୁତ (କୋକିଳ) ପରି ଉତ୍ତର (ବାକ୍ୟ) କହିବାରେ ବିଖ୍ୟାତ ହେଲେ । ମହାଭାରତ ଯୁଦ୍ଧରେ ଯୁଦ୍ଧ ସହ ଏହିପରି ଉପଲକ୍ଷ ପ୍ରତ୍ୟକ୍ଷ ହେଲା ।

ଭଲ ଯୌବନ ସୃଷ୍ଟି ସଜାଡ଼ିଲା । ଆଗ ଉପମା-ସୃଷ୍ଟି ଉଜାଡ଼ିଲା ।
ଯୋଗୀ-ସୃଷ୍ଟିରେ ପ୍ରଳୟ ବହିବ । ଯୁବା-ସୃଷ୍ଟି ଅଭ କେହ୍ନେ ରହିବ ॥ ୨୦
ଅଛି ଏତେ ହେବାଯାଏ ଦର୍ଶନ । କହୁଁମାନ ସେହି ଶୋଭା-ପ୍ରସନ୍ନ ।
ଯୋଗୀଗଣେ ମୁଁ ଜଣେ ଗଣେ ଭାଳି । ଶମ୍ଭୁ ଶିଳା ହେଲେ ହେବ ସମ୍ଭାଳି ॥ ୨୧
ନୋହିବ କି ଦ୍ରବଣ ଶିଳାଙ୍କର । କେଉଁ ସୁବିଗ୍ରହ କଲେ ଶଙ୍କର ।
ଦିବ୍ୟ ସୃଷ୍ଟି କଲା ଭାବ ମଦନ । ମନୋରମ ସ୍ଥାନେ କଲା ସଦନ ॥ ୨୨
ଅନବରତେ ମଣ୍ଡନ ସୁ-ଚିର । ଉରୁ ଅର୍ଗଳ-ଦ୍ୱାରେ ହିଁ ରୁଚିର ।
ରତି ଗୁପ୍ତେ ବସେ ତହିଁ ସତ୍ୱର । ମହୋଜ୍ଜ୍ୱଳ ସୁ-ଜଘନ ଚତ୍ୱର ॥ ୨୩
ଝିଲିମିଲି ମାଳୀ କି ଶୋଭାକର । ଏକାଦଶ ଘରେ ଗ୍ରହନିକର ।
ହେମବିଦ୍ରୁମ ମର୍କତ ମୋତିରେ । ଉଦେ ଯେ ଯାହାର ନିଜ ଜ୍ୟୋତିରେ ॥ ୨୪
ମୀନ-କେତନ ନିଜ ନିକେତନେ । ରଙ୍ଗ କେତନ ବାନ୍ଧିଲା ଯତନେ ।
ରଙ୍ଗପଦ୍ମ ସେ ହୋଇଥିବ ପରା । ପୁଷ୍ପ ବୋଲାଇ ଅଛି ପରମ୍ପରା ॥ ୨୫

---

୨୦—ବିଧାତା ଅଚ୍ଛା ଯୌବନ ସୃଷ୍ଟି ସଜେଇଲା, ପ୍ରଥମରୁ ଉପମା ସୃଷ୍ଟିଯାକ ଉଜାଡ଼ିଦେଲା, ଯେ ଯୋଗୀମାନଙ୍କର ମଧ୍ୟ ପ୍ରଳୟ କରି ପାରିବ ସେଠାରେ ବା ଯୁବା ସୃଷ୍ଟି କିପରି ରହିବ ।

୨୧—ଏତେ ଦୂର ହେବା ପର୍ଯ୍ୟନ୍ତ ଦେଖାଯାଇ ଅଛି ଯେ ଶିବ ସେ ଶୋଭାରେ ବିମୁଗ୍ଧହୋଇ "ମୁଁ ଯୋଗୀମାନଙ୍କ ମଧ୍ୟରେ ଜଣେ ହେବି" ଏହାମନରେ ଭାବି ପଥର ହୋଇ ସମ୍ଭାଳି ଗଲେ ।

୨୨—ପଥର କଣ ତରଳିବ ନାହିଁ, ମହାଦେବ କାହିଁକି ଏ ବିଗ୍ରହ କଲେ, କାମ ଭାବି ୨ ଉତ୍ତମ ସୃଷ୍ଟି ଆରମ୍ଭ କଲା, ସେହି ମନୋରମ ସ୍ଥାନରେ ଆଶ୍ରୟ ନେଲା ।

୨୩—ଅନବରତ ଉତ୍ତମ ବସ୍ତ୍ର ନିର୍ମିତ ଗୃହଦ୍ୱାରରେ ସେହି ଗୃହକୁ ମଣ୍ଡିତ କରି ଦ୍ୱାର ଦେଶରେ ମନୋରମ ଉରୁକୁ ଅର୍ଗଳି କରି ନିଜ ପତ୍ନୀ ରତିଦେବୀଙ୍କ ସହ ସେଠାରେ ଗୁପ୍ତ ଭାବରେ ବାସ କଲେ । ଉତ୍ତମଜଘନ ସେହି ଗୃହର ଉଜ୍ଜ୍ୱଳ ଅଗଣାରୂପେ ଶୋଭା ପାଇଲା । ସଦନ ( ଗୃହ ) ସୁ-ଚିର (ସୁ ଉତ୍ତମ ବସ୍ତ୍ର ) ଚତ୍ୱର [ ଅଗଣା ]

୨୪—ଝିଲିମିଲି ମାଳୀ ( ଅଳକା ) ରେ ସୁବର୍ଣ୍ଣ ପୋହଳା, ମର୍କତମଣି ଓ ମୁକ୍ତା ଥିବାରୁ ଏକାଦଶ ସ୍ଥାନରେ ଗ୍ରହମାନେ ନିଜ ନିଜ ଜ୍ୟୋତି ଧରି ବିଜେ କଲା ପରି ଶୋଭା ପାଇଲା । ବିଦ୍ରୁମ ( ପୋହଳା ) ।

୨୫—ମୀନକେତନ ( କାମ ) ନିଜଘରେ ନାଲିଆ ପତାକା ଅତି ଯତ୍ନରେ ବାନ୍ଧିଲା । ବୋଧହୁଏ ସେ ରକ୍ତପଦ୍ମ ହୋଇଥିବ ଯେ ହେତୁ ପରମ୍ପରା କ୍ରମରେ ସେ ପୁଷ୍ପ ( ଫୁଲ ଓ ଋତୁ ) ନାମରେ ବିଖ୍ୟାତ ହୋଇଅଛି । ନିକେତନ ( ଗୃହ ) କେତନ ( ପତାକା )

ପୁଣି ପୁଷ୍ପଶର ନାମ ଯାହାର । ଆନ କେଉଁନ କି ହେବ ତାହାର ।
ବାସେ ଅନୁସରିଲେ ଭୃଙ୍ଗମାନେ । ଏଣୁ ହେଲାତ ପୁଷ୍ପ ଅନୁମାନେ ॥ ୨୬
ବାଲା ପଦ୍ମିନୀ ହେବାର ସକାଶେ । ନାହିଁ ସଂଶୟ ତ ପୁଷ୍ପବିକାଶେ
ଥିଲେ ସଜନୀ-ମାଳୀ ସନ୍ନିଧିରେ । ନେଲେ ବାସ ସୁମନସ ବିଧିରେ । ୨୭
ଥିଲେ ତହିଁ ଦୈବଜ୍ଞା ଉପାଧ୍ୟାୟୀ । ଶୁଭାଶୁଭ ବୁଝିଲେ ସବୁ ଧ୍ୟାୟି ।
କାତ୍ୟାୟିନୀ ଥିଲା ତାଙ୍କ ସଙ୍ଗରେ । ପୁଷ୍ପ ଫୁଟି କହି ନୃତ୍ୟରଙ୍ଗରେ ॥ ୨୮
ଶ୍ରୁତିବିଧିରେ କାର୍ଯ୍ୟ ଉଞ୍ଚାଇଲେ । ଏହା ମଙ୍ଗଳ-ମହୁରୀ ବାଇଲେ ।
ନାମ ଯା 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' । ଦୁଷ୍ଟରଜା ପଦ ଏବେ ଆଦରି ॥ ୨୯
ଘେନି ଏ ପଦ ଉଭୟବଶରେ । ଉଚ୍ଛନ୍ନତା ସବୁ ରୂପେ ନ ସରେ ।
ବର୍ତ୍ତିଲେ ଲୋକେ ଏହା ଲୋକରେ । ଅମ୍ଭ ଜୀବ ରହିଲା କାମ-କରେ ॥୩୦

---

୨୬—ପୁଣି ଯାହାର ନାମ ଫୁଲଶର ତାହାର ଅନ୍ୟ ପଟାନ୍ତର କିପରି ହେବ । ପୁଷ୍ପ ସୁବାସରେ ଭୃଙ୍ଗମାନେ (ଭ୍ରମର ଓ ଲମ୍ପଟପୁରୁଷ) ମାନେ ଅନୁସରଣ କଲେ ଏହି ହେତୁ ପୁଷ୍ପର ଅନୁମାନ ହେଲା ।

୨୭—ସେହି ବାଲା ପଦ୍ମିନୀ ହୋଇଥିବାରୁ ପୁଷ୍ପବିକାଶରେ ସନ୍ଦେହ ହେଲାନାହିଁ । ସଜନୀ ମାଳୀ ( ସଖୀସମୂହ ) ସେତେବେଳେ ନିକଟରେ ଥିଲେ, ମାଲୁଣୀ ଫୁଲ ନେଲାପରି ସେହି ବସନକୁ ସଖୀମାନେ ନେଲେ । ସୁମନସ (ପୁଷ୍ପ) ।

୨୮—ସେଠାରେ ଦୈବଜ୍ଞା ( ଜ୍ୟୋତିଷ କନ୍ୟା ) ଉପାଧ୍ୟାୟୀ ( ଶିକ୍ଷୟିତ୍ରୀ ) ଥିଲେ, ତତ୍‌କ୍ଷଣାତ୍ ଶାସ୍ତ୍ରାନୁସାରେ ସମସ୍ତ ଶୁଭାଶୁଭ ବୁଝିନେଲେ । ତାଙ୍କସଙ୍ଗରେ କାତ୍ୟାୟନୀ ( ସନ୍ନ୍ୟାସିନୀ, ବିଧବାନାରୀ ) ଥିଲେ ଫୁଲ ଫୁଟିଲା ଏହାକହି ନାନାରଙ୍ଗରେ ନୃତ୍ୟ କଲେ ।

୨୯—ବେଦ ବିଧିରେ ସମସ୍ତ କାର୍ଯ୍ୟ ସମାପ୍ତ କଲେ । ଯାହାର ନାମ "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" ସେ ଏବେ ଦୁଷ୍ଟରଜା (ନବପୁଷ୍ପବତୀ) ପଦ ପାଇଲେ, ଏହି ମଙ୍ଗଳମହୁରୀ ବଜାଇଲେ ।

୩୦—ଏହିପଦ ( ଦୁଷ୍ଟରଜା ) ବଶ ହେବାରୁ ସେମାନଙ୍କ ଏପରି ବ୍ୟାକୁଳତା ( ରଜସ୍ୱଳା ଓ ଦୁଷ୍ଟରଜା ) ବଶ ହେବାରୁ ସେମାନଙ୍କ ଏପରି ବ୍ୟାକୁଳତା ଜନ୍ମିଲା ଯେ 'କୌଣସିମତେ ତାହା ସରିଲା ନାହିଁ ( ଘୁଞ୍ଚିଲା ନାହିଁ ) ଲୋକେ ବର୍ତ୍ତିଲେ ଏହି ଦୁଷ୍ଟରଜାର ଲୋକରେ ( ଗୃହାଙ୍ଗଣରେ ) ଅମ୍ଭମାନଙ୍କର ଜୀବ କାମହାତରେ ରହିଲା । ଦୁଷ୍ଟରଜାର କେବଳ କରେ ( ରଜସ୍ୱଗ୍ରହଣରେ ) କାମ ( ଇଚ୍ଛା ) ଥାଏ ।

ନବରଣ୍ଡୀ ଅର୍ଚ୍ଚନ ଆରମ୍ଭରେ । ପଶୁ ଭାବନା କରନ୍ତି ଅମ୍ଭରେ ।
କନ୍ୟା ସମୟ ହେଲା କି ସଂଶୟ । ତୁଳା ହେବାକୁଁ ହୁର ଅତିଶୟ ॥ ୩୧
ଚନ୍ଦ୍ରା ଜନମ ଉପମା ଲେଖାର । ତାଙ୍କ ଇଚ୍ଛାରେ ହେଲେ ନାରଖାର ।
ବିଦ୍ୟୁ ଅତର ପ୍ରଭାଭ୍ର ଲକ୍ଷଙ୍କେ । ଚନ୍ଦ୍ରକ୍ଷୀଣ ହୋଇଗଲା ପକ୍ଷଙ୍କେ ॥ ୩୨
ଘନ ଜୀବନୁ ଅଗ୍ନି ଉପୁଜାଇ । ଧୂମ-ବିବର୍ଣ୍ଣ ହେଲା ଜଳ ଯାଇ ।
ଭକ୍ଷ କଲା ସୁପର୍ଣ୍ଣ କାକୋଦର । ମନ୍ଦ ନାମରେ ବହିଲା ମନ୍ଦର ॥ ୩୩
ପଦ୍ମ ମୃଣାଳ କଣ୍ଟକକୁ ଧରି । ହୁଏ ପଙ୍କଜ ପଦେ ସେ ଜଡ଼ିରି ।
ବିମ୍ବ ହୋଇଲା ଭସ୍ମବିଲେପନ । ବୃକ୍ଷରାଜ-ଦଳ ବହେ କମ୍ପନ ॥ ୩୪
ଫଳେ ଅଧୋମୁଖ ହେଲା କଦଳୀ । ଜବା କାଳିମା-ଉଙ୍ଗେ ଶୋଭା ଦଳି ।
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ । କଲା ମୁକୁତା ଶାମୁକେ ସଦନ ॥ ୩୫

---

୩୧—କାଣ୍ଡଘରେ ନବରଣ୍ଡୀ ( କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ) ର ପୂଜା ଆରମ୍ଭ କରନ୍ତେ ଯୁବାମାନେ ପାଣ୍ଡିଲେ ଏ ନବରଣ୍ଡୀ ( ନବଦୁର୍ଗା ) ପୂଜାରେ ଅମ୍ଭମାନଙ୍କୁ ବଳିପଶୁ ଭାବୁଛି ପରି ? କିନ୍ତୁ ଦୁର୍ଗାପୂଜା କନ୍ୟା ମାସରେ ହୁଏ, ଏହାର କନ୍ୟାସମୟ ଦୂର ହୋଇଅଛି ଏବଂ ପୁଷ୍ପବତୀ ହେବାରୁ ଯୌବନରେ ତୁଳା ( ତୁଳନା ) ଅଛିଅଛି । ଅତଏବ ଏ ତୁଳାମାସ ପୂଜାସମୟକୁ ବଳି ପଡ଼ିଥିବାର ଭାବି କାଣ୍ଡିର୍ ଅଶ୍ୱସ୍ତ ହେଲେ ।

୩୨—ଉପମାମାନ ଏହାର ସମାନ ହୋଇ ପାରିବେ ନାହିଁ ଏହି ଚନ୍ଦ୍ରା ଜନ୍ମିବାରୁ ଅପଣା ସ୍ୱୟଂ ନାରଖାର ହେଲେ । କାନ୍ତିର ଲକ୍ଷ୍ୟ ହେବାମାନେ ସମାନ ନ ହେବାରୁ ବିଜୁଳୀ କ୍ଷଣପ୍ରଭା ହେଲା । ଚନ୍ଦ୍ର ମଧ୍ୟ ମୁଖର ତୁଳନା ନ ପାଇ ପକ୍ଷଙ୍କେ ( ଦୀ୧୫ ଦିନରେ ) କ୍ଷୀଣ ହୋଇଗଲା ।

୩୩—ଘନ ( ମେଘ ) କେଶ ସହ ସମାନ ନ ହୋଇ ଆପଣା ଜୀବନ ( ଜଳ )ରୁ ଅଗ୍ନି ଜନ୍ମାଇ ପୋଡ଼ିଯାଇ ଧୂମପରି ବିବର୍ଣ୍ଣ ହୋଇ ଗଲା, ସୁପର୍ଣ୍ଣ ( ଗରୁଡ଼ ) ନାସା ସମାନ ନ ହେବାରୁ ବିଷ ବୁଦ୍ଧିରେ କାକୋଦର ( ସର୍ପ )କୁ ଭକ୍ଷଣ କଲା । ମନ୍ଦରଗିରି କୁଚସମାନ ନହେବାରୁ ମନ୍ଦଶବ୍ଦକୁ ନାମରେ ବହିଲା ।

୩୪—ପଦ୍ମମୃଣାଳ ବାହୁର ତୁଳନା ନ ପାଇ କଣ୍ଟକ ମୟ ହେଲା, ପଦ୍ମ ତାହାର ପାଦସମାନ ଜଡ଼ିବାର ପାଇଲା । ବିମ୍ବ ( ଗୋଲୁଖିଅଫଳ ) ଅଧରର ଉପମା ନ ପାଇ ଭସ୍ମଲେପି ହେଲା, ବୃକ୍ଷରାଜ ଦଳ ( ଅଶ୍ୱତ୍ଥ ପତ୍ର ) ସମାନ ନ ହୋଇ କେବଳ ଭୟରେ ଥରିଲା ।

୩୫—କଦଳୀବୃକ୍ଷ ଉରୁର ସମାନ ନ ହୋଇ ଫଳରେ ଅଧୋମୁଖ ହେଲା । ଜବାପୁଷ୍ପ ଅଧରର ସମାନ ନ ହୋଇ ନିଜଶୋଭାକୁ ଦଳିଦେଇ କଳା ପଡ଼ିଗଲା, ଚନ୍ଦନ ଦେହର ଶୀତଳତାକୁ ନ ପାଇ ଦୁଃଖରେ ଇନ୍ଧନ (କାଠ) ହୋଇଗଲା । ମୁକ୍ତା ଦନ୍ତ ସମ ନୋହି ଶାମୁକାକୁ ଆଶ୍ରା କଲା । ସଦନ ( ଗୃହ )।

ବୀଣା ସ୍ୱନ କଲା ପରବଶରେ । ସିଂହ ଲୁଚିଲା କେଉଁ ପ୍ରଦେଶରେ ।
ବିଷ ଶବଦୁଁ ମୃଣାଳ-ଅହାରୀ । ଦେଖି ହୋଇଲା ମାନସ ବିହାରୀ ॥ ୩୬
ଏହାରୂପେ ସୁଲକ୍ଷଣା ମାତର । ହେଲେ ଛାଡ଼ି ନ ପାରିଲେ କାତର ।
ଊର୍ଦ୍ଧ୍ୱ ଅଧୋମୁଖେ କରି ବିଚୁର । ଗନ୍ଧବହ ଭ୍ରମର କଲା ଚୁର ॥ ୩୭
ବାଳା ସମ୍ମୁଖରେ ଆସିବ ଜଣାଇ । ସ୍ୱଇଚ୍ଛାରେ ସମ ନୋହୁ ମଣାଇ ।
ସବୁ ଦୋଷ ଏ କବିମାନଙ୍କର । ତାକୁ କାହିଁତରେ କୋପ ନ କର ୩୮
ଆଳୀ ଗୁଞ୍ଜୁଁ ଧ୍ୱନି ଧରେ ବ୍ୟଜନ । ତହିଁ ଥାଇ ଜଣାଇ ପ୍ରଭଞ୍ଜନ ।
ଯେଉଁସ୍ଥାନେ ବିଜୟୁ ନାରୀଶ୍ୱରୀ । ରୋଳେ ଜଣାଇ ଭୃଙ୍ଗ ଅନୁସରି ॥ ୩୯
କାନ୍ତ-ଗୃହେ ରଖିଲେ ଅନୁଚରୀ । ବାଳା କାମକାଣ୍ଡ ଏହା ବିଚାରି ।
ନୋହେ ଲୌହ ଫଳ ଏଥୁ ବାହାର । ରୂପ ମୋହନାସ୍ତ୍ର ନିଷ୍ଟେ ଏହାର । ୪୦

---

୩୬—ବୀଣା ସ୍ୱର ସମାନ ନ ହେଇ ପରାଧୀନ ହୋଇ ଶବ୍ଦ କଲା । ସିଂହକଟି ସାମ୍ୟ ନ ପାଇ କୁଆଡ଼େ ଲୁଚିଲା । ମାନସ ବିହାରୀ (ରାଜହଂସ) ଗତି ସାମ୍ୟ ନ ପାଇ ମୃଣାଳର ବିଷ ନାମ ଥିବାରୁ ଭ୍ରମରେ ତାହା ଭକ୍ଷଣ କଲା । ବିଷ (ପଦ୍ମନାଡ଼) ।

୩୭—ଊର୍ଦ୍ଧ୍ୱରେ ଅଧୋଭାଗରେ ଥିବା ସମସ୍ତ ଉତ୍ତମ ଉପମାମାନେ ଏହିପରି ହୋଇ କାତରତା ଛାଡ଼ି ନ ପାରୁଥିବାର ଦେଖି ପବନ ବିଚୁର କରି ଭ୍ରମରକୁ ଚୁର କରି ପଠାଇଲା । ସୁଲକ୍ଷଣା (ଉତ୍ତମ ଉପମା)

୩୮—ସେ ବାଳାର ଇଚ୍ଛା ପବନ ଅପେକ୍ଷା ଦ୍ରୁତଗତି ହେବାରୁ ନିଜ ଇଚ୍ଛାରେ ପବନର ସମାନ ହେଲା ନାହିଁ । ପବନ ତାହାକୁ ମଣେଇବାକୁ ( ମନୋନୀତ କରାଇବାକୁ ) ବାଳା ସମ୍ମୁଖରେ ଭ୍ରମର ଜଣାଇ ଆସିବ । କବିମାନଙ୍କର ଏହିପରି ବର୍ଣ୍ଣନା କରିବା ଦୋଷଥାଏ, ତାହାପ୍ରତି ଲେଶ ମାତ୍ର କୋପ କରିବା ଉଚିତ ନୁହେଁ ।

୩୯—ଆଳୀ (ସଖୀ) ବ୍ୟଜନ (ବିଞ୍ଚଣା) ସଞ୍ଚାଳନକରନ୍ତେ ତହିଁରେ ଯେଉଁ ଶବ୍ଦ ହେଉଅଛି, ପ୍ରଭଞ୍ଜନ ( ବାୟୁ ) ସେଠାରେ ରହି ସ୍ୱୟଂ ସେହିଧ୍ୱନି ଛଳରେ ଜଣାଉ ଅଛି । ସେ ନାରୀଶ୍ରେଷ୍ଠା ଯେଉଁଠାରେ ବିଜେକରେ ଭୃଙ୍ଗ (ଭ୍ରମର) ମାନେ ସେ ସ୍ଥାନକୁ ଯାଇ ଗୁଣୁ ଗୁଣୁ ରୋଳ ( ଶବ୍ଦ ) କରି ପବନ ବିଷୟ ଜଣାନ୍ତି ।

୪୦—ସଖୀମାନେ, ଏ ବାଳା କାମ ଦେବଙ୍କର କାଣ୍ଡ (ମୋହନାସ୍ତ୍ର) ଏହା ମନରେ ଭାବି କାନ୍ତ ନିର୍ମିତ ଗୃହରେ ଏହାଙ୍କୁ ନେଇ ରଖିଲେ । ( ପୁଷ୍ପ ପ୍ରକାଶ ହେଲେ ରାଜ କନ୍ୟାମାନେ ୭ ଦିନପାଇଁ କାନ୍ତ ନିର୍ମିତ ଘରେ ରହନ୍ତି ) । କିନ୍ତୁ ଏ ବାଳରୂପ କାଣ୍ଡ ଲୌହ ନିର୍ମିତ ନୁହେଁ, ଯେହେତୁ ଏଥିରୁ ପୁଷ୍ପ ପ୍ରକାଶ ପାଇଅଛି । ଏହାର ରୂପ ନିଶ୍ଚୟ ମୋହନାସ୍ତ୍ର ।

କାମ ରୂପାସ୍ତ୍ର ନୋହିଲେ କାହିଁକି । ଆଗୁଁ ଗୋଚର ଥିଲା ଏ ବିହିକି ।
ଏବେ ଗୋଚର ହୋଇଲା କବିକି । ବର୍ଣ୍ଣିବାରୁ ତା ମଞ୍ଜୁଳ ଛବିକି ॥ ୪୧
ସାତଦ୍ୱୀପରେ ଯାହା ବନ୍ଦାଇଲେ । ସାତଦ୍ୱୀପରେ କି ଅଛି ବୋଇଲେ ।
ସାତଦ୍ୱୀଗୁଣ-ଭୁବନ-ସୁନ୍ଦରୀ । ବୃନ୍ଦେ ହୋଇଲା ସିନା ପୁରନ୍ଦରୀ ॥ ୪୨
ସାତଦନାନ୍ତରେ କର ବିଶୁଦ୍ଧା । କଲେ ଚଲାଇ ଅଶୋକ ବସୁଧା ।
ଗୃହୁ ପ୍ରପଦ-କଳିକା ଧଇଲା । ପଦ-ପତନେ ଦୋହଦ ହୋଇଲା ॥ ୪୩
ତହୁଁ ସ୍ଥଳକମଳ ଉଛୁଟିଲେ । ଚୁମ୍ବ ଦେବାକୁ ରୋଲମ୍ବ ଘୋଟିଲେ ।
କରିବାରେ ରବି ଅର୍ଘ୍ୟ ବନ୍ଦନ । ଓଷ୍ଠ କଲା ପ୍ରାତୋଦୟ ନନ୍ଦନ ॥ ୪୪
ଏଥି ଉତ୍ତାରେ ମନ୍ଦିରେ ପ୍ରବେଶ । ସଖୀଗଣେ ବେଢ଼ି କଲେ ସୁବେଶ ।
ବେଶ ବେଶକୁ ଯେବଣ ସୁନ୍ଦରୀ । କିସ ବର୍ଣ୍ଣିବା ତା ବେଶ ଗୃହୁରୀ ॥ ୪୫

---

୪୧—ଏହା ନୋହିଲେ କାମର ଗୋଟିଏ ନାମ "ରୂପାସ୍ତ୍ର" କାହିଁକି ହୋଇ ଥାଆନ୍ତା, ପୂର୍ବରୁ ବିଧାତାଙ୍କୁ ଏ ବିଷୟ ଜଣାଥିଲା । କବି ବର୍ତ୍ତମାନ ତାହାର ମନୋରମ ରୂପଛବି ବର୍ଣ୍ଣିବାରୁ ଜାଣି ପାରିଲେ ଯେ ଏଣୁ କାମର ନାମ "ରୂପାସ୍ତ୍ର" ।

୪୨—ସାତ ଦ୍ୱୀପରେ ବନ୍ଦାପନା କରିବା ଦ୍ୱାରା ଜଣାଇଲେ ସପ୍ତଦ୍ୱୀପରେ ଏହାପରି କେହି ନାହିଁ । ସୁନ୍ଦରୀ ସାତଦ୍ୱିଗୁଣ ( ଚଉଦ ୧୪ ) ଭୁବନରେ ଯେତେ ସୁନ୍ଦରୀ ଅଛନ୍ତି ସେମାନଙ୍କ ମଧ୍ୟରେ ପୁରନ୍ଦରୀ ( ଶ୍ରେଷ୍ଠାହେଲା )

୪୩—ସାତଦିନପରେ ଶୁଦ୍ଧସ୍ନାନ କରାଇ ପୃଥିବୀରେ ଚଲାଇଲେ, ତହିଁରେ ବସୁଧା ( ପୃଥିବୀ ) ଅଶୋକା (ଶୋକରହିତା ଓ ଅଶୋକବୃକ୍ଷ ) ହେଲା । ଯେପରି ସ୍ତ୍ରୀମାନଙ୍କର ପାଦାଘାତରେ ଅଶୋକ ବୃକ୍ଷ ବିକଶିତ ହୁଏ, ଏଠାରେ ସେହିପରି ପୃଥିବୀ ରୂପ ଅଶୋକ ବୃକ୍ଷ ପଦପତନ ରୂପଦୋହଦ ପାଇ ସୁନ୍ଦର ପଦାଙ୍ଗୁଳିରୂପ କଢ଼ି ଧଇଲା ।

୪୪—ତା'ରପରି ସ୍ଥଳକମଳମାନେ ଫୁଟି ଆସିଲେ । ରୋଲମ୍ବ ( ଭ୍ରମର ) ମାନେ ଗୃହଅଡ଼ୁ ଚୁମ୍ବିବାକୁ ଆସିଲେ । ଯେତେବେଳେ ସେହି ସୁନ୍ଦରୀ ବାଳ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଇ ବନ୍ଦନା କରନ୍ତି ସେତେବେଳେ ଓଷ୍ଠ ବାଳ ସୂର୍ଯ୍ୟଙ୍କୁ ରକ୍ତିମାରେ ନିନ୍ଦା କଲା ।

୪୫—ଏହାପରେ ଗୃହରେ ପ୍ରବେଶ ମାତ୍ରେ ସଖୀମାନେ ବେଶ କରିବାକୁ ଗୃହ-ଅଡ଼ୁ ବେଢ଼ିଗଲେ; ସୁନ୍ଦରୀ ଅଳଙ୍କାର ମାନଙ୍କୁ ମଣ୍ଡିତ କଲା ପରି ଜଣାପଡ଼ିଲା, ତାହାର ବେଶଗୃହୁରୀ ଅବର୍ଣ୍ଣନୀୟ ହେଲା ।

ଯେ ଲକ୍ଷ୍ମଣ ଶେଷାଞ୍ଚଲ-ବିହାରୀ । ଜନ ଅଭୀଷ୍ଟ ଦାତା ଦୁଃଖହାରୀ ।
ମନୋରଥ ପୂର୍ଣ୍ଣ ହେବା କାରଣ । ଉପଇନ୍ଦ୍ର ଭଞ୍ଜ ପଦେ ଶରଣ ॥ ୪୬

---

# ଚତୁର୍ଥ ଛାନ୍ଦ

[ ପାଟଳିପୁର ବା ପୁଷ୍ପପୁର ନଗର ବର୍ଣ୍ଣନା ଏବଂ ତହିଁର
ରାଜପୁତ୍ର ପୁଷ୍ପକେତୁର ରୂପ ଗୁଣ ବର୍ଣ୍ଣନା ]

ରାଗ—ମଙ୍ଗଳବରାଡ଼ୀ । ମୁନିବର ବାଣୀ



ଣ ବିଦଗଧ ଜନ । ମଗଧ ଦେଶ ରଞ୍ଜନ ।
ମାଗଧ-ମାଗଧେ ଭଣି । ଦେଶ ଅଗ୍ରଣୀ ଏ ॥ ୧

ପୁଚ୍ଛିଲେ ନିଷେଧ କହି । ସ୍ୱଦେଶୀ ସେ ସମ କେହି ।
ଏ ବାଣୀ ମରୁ ମହ୍ଲାରେ । କହେ ବେଗରେ ଯେ ॥ ୨
ଯହିଁ ବିଷ୍ଣୁପଦୀ ସ୍ଥିତ । ବିଦେହେ ଗତ ବାଞ୍ଛନ୍ତି ।
ବ୍ରହ୍ମଯୋନି ପ୍ରେତଶିଳା । ହୋଇଛି ମେଳା ଯେ ॥ ୩

---

୪୬—ଯେଉଁ ଲକ୍ଷ୍ମଣ ଶେଷଦେବଙ୍କ ମସ୍ତକ ବିହାରୀ, ଲୋକମାନଙ୍କର ଅଭୀଷ୍ଟ ଦାତା ଓ ଦୁଃଖହାରୀ ମନୋରଥ ପୂର୍ଣ୍ଣ ଅଂଶରେ ଉପେନ୍ଦ୍ରଭଞ୍ଜ ତାହାଙ୍କର ପାଦରେ ଶରଣ ଗଲା ।

---

୧—ହେ ପଣ୍ଡିତ ମାନେ ମଗଧ ଦେଶର ମନୋହାରିତାକୁ ଶୁଣ, ମଗଧଦେଶ-ବାସୀ ଭାଟମାନେ ନାନାସ୍ଥାନ ଭ୍ରମଣ କରି ଆସି କହନ୍ତି, ଏ ଦେଶ ସବୁ ଦେଶଠାରୁ ଶ୍ରେଷ୍ଠ । ବିଦଗଧ ( ପଣ୍ଡିତ ) ମାଗଧ-ମାଗଧ ( ମଗଧ ଦେଶ-ବାସୀ ଭାଟ )

୨—କେହି ସ୍ୱଦେଶୀ (ମଗଧ ବାସୀ ) ନିଷେଧ ବାସୀଙ୍କୁ "ଆମ୍ଭ ଦେଶ ପରି ତୁମ୍ଭ ଦେଶନା" ଏ କଥା ପଚାରିଲେ ସେ ସେହିନାମରେ ( ନିଷେଧ ନାମରେ ) କହନ୍ତି ( ନିଷେଧ କରନ୍ତି ) ମରୁ ଏବଂ ମହ୍ଲାର ଦେଶ ବାସୀଙ୍କୁ ପଚାରିଲେ ସେମାନେ କହନ୍ତି "ଆମ୍ଭଦେଶ ଏହା ଆଗରେ ମରୁଭୂମି ଓ ମଳାପରି ।"

୩—ଯେଉଁଠାରେ ବିଷ୍ଣୁପଦୀ (ଗଙ୍ଗା) ଅଛନ୍ତି, ସେହିଠାରେ ଲୋକେ ବିଦେହେ ( ମୃତ୍ୟୁରେ ) ଗତି (ମୁକ୍ତି) କୁ ଇଚ୍ଛା କରନ୍ତି । ଯହିଁରେ ବ୍ରହ୍ମଯୋନି (ସର ସ୍ୱତୀ ନଦୀତୀରସ୍ଥ ତୀର୍ଥ ) ପ୍ରେତଶିଳା (ପିଣ୍ଡ ଦାନାର୍ଥ ଗୟାସ୍ଥିତ ତୀର୍ଥ ) ବିଦ୍ୟମାନ ।

ଫଲ୍‌ଗୁ ସରିତ ବିଚିତ୍ର । ବିଦାରିଲେ ତାର ଗାତ୍ର ।
ମତ୍ସ୍ୟସହ ସ୍ୱଚ୍ଛଜଳ । ଜାତ ତତ୍କାଳ ଯେ ॥ ୪
ଭଜ ପିଣ୍ଡଦାନେ ମୋକ୍ଷ । ରହସ୍ୟ ଯହିଁ ପ୍ରତ୍ୟକ୍ଷ ।
ଶୁଦ୍ଧାଶୁଦ୍ଧ କାଳ ନାହିଁ । ସାକ୍ଷୀ ବୈଦେହୀ ଯେ ॥ ୫
ତହିଁ ପିଣ୍ଡଦାନମାନ । ଅଗୋଚର କର ଧ୍ୟେନ ।
ପାତକୀ କରେ ପବିତ୍ର । ସେ ଗୟାକ୍ଷେତ୍ର ଯେ ॥ ୬
ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର ।
ଚେଳ କାଞ୍ଚୀ ତାର ତଳ । ଏଡ଼େ ମଞ୍ଜୁଳ ସେ ॥ ୭
ବିଦଗ୍ଧ ରାକ୍ଷସପୁରୀ । ଅସମାନ-ମାନୁ କରି ।
ନଗରମାନଙ୍କ ମୋକ୍ଷ । ତହିଁକି ଲକ୍ଷ୍ୟ ଯେ ॥ ୮
ଛଦ୍ମ ନୁହଇ ଏ ପୁଣି । ସଦ୍ମ ରତନେ ନିର୍ମାଣି ।
ପଦ୍ମ ସକାଶରୁ ଜାଣି । ଦିବା ରଜନୀ ଯେ ॥ ୯
ନାନାରତ୍ନ ପ୍ରଭା ଧରି । ନଭ ଚିତ୍ରବାଡ଼ ସରି ।
ଦେଖାଇବେ କେଉଁ ଜ୍ୟୋତି । ଧାରଙ୍କା ପନ୍ତ ଯେ ॥ ୧୦

---

୪—ଫଲ୍‌ଗୁ ନଦୀ ଅତି ବିଚିତ୍ର, ତାହାର ଗାତ୍ର (ଦେହ) ଖୋଳିଦେଲେ ମାଛ ସହିତ ନିର୍ମଳ ଜଳ ବାହାରି ପଡ଼େ ।

୫—ଯେଉଁଠାରେ ବାଲୁକା ପିଣ୍ଡ ଦାନରେ ମୋକ୍ଷ ହେବାର ରହସ୍ୟ ପ୍ରତ୍ୟକ୍ଷହୋଇ ଅଛି । ଶୁଦ୍ଧାଶୁଦ୍ଧର ମଧ୍ୟ ବିଗ୍ଭର ଯେଉଁଠାରେ ନାହିଁ, ଏ ବିଷୟରେ ସୀତା ଦେବୀ ସାକ୍ଷୀ ଅଛନ୍ତି । ସୀତା ଦେବୀ ପୁଷ୍ପବତୀ ହୋଇଥିବା ଅବସ୍ଥାରେ କୌତୁକରେ ଫଲ୍‌ଗୁନଦୀ ବାଲିରେ ପିଣ୍ଡକରି ପିତୃଲୋକଙ୍କୁ ଦେବାରୁ ଦଶରଥ ହାତ ପତାଇ ନେଇଥିଲେ ।

୬—ଗୟାରେ ପିଣ୍ଡଦାନ ଫଳ ଅସୀମ ଅଟେ, ସେ କ୍ଷେତ୍ର ପାପୀମାନଙ୍କୁ ପବିତ୍ର କରେ ।

୭—ସେ ମଗଧ ଦେଶର ରାଜଧାନୀ ପୁଷ୍ପପୁର ଅଟେ । ପୁଷ୍ପପୁର ( ଫୁଲରସ୍ଥାନ ) କୁନ୍ତଳ (କେଶ) ର ଉପରେ, ଚେଳ (ତନ୍ତୀମାନଙ୍କ ପୁର ଓ କାଞ୍ଚଲ ) କାଞ୍ଚୀ (ପୁରୀ ଓ କଟିକିଙ୍କିଣି ) ସହଜରେ ପୁଷ୍ପପୁରର ତଳ ଅଛନ୍ତି ।

୮—ରାକ୍ଷସପୁରୀ (ଲଙ୍କା) ସମାନ ନ ହେବାରୁ ଅଭିମାନରେ ବିଦଗ୍ଧ ( ପୋଡ଼ି ) ହୋଇଅଛି । ଅନ୍ୟ ନଗରମାନଙ୍କର ମୋକ୍ଷ (ଶ୍ରେଷ୍ଠତ୍ୱ) ତାହାକୁ ଲକ୍ଷ୍ୟନୁହେ ।

୯—ଏ ଛଦ୍ମ ( କପଟ ) କଥା ନୁହେଁ, ତାହାର ସଦ୍ମ ( ଗୃହ ) ସବୁ ରତ୍ନରେ ନିର୍ମିତ । ସେମାନଙ୍କର ଜ୍ୟୋତିରେ ଦିନରାତି ଜଣା ପଡୁନାହିଁ, କେବଳ ପୁଷ୍କରିଣୀ ସ୍ଥିତ ପଦ୍ମ ସକାଶୁ ଦିନରାତି ଜଣା ପଡ଼ୁଅଛି ।

୧୦—ଚିତ୍ରବାଡ଼ ( ଚିତ୍ରିତ କାନ୍ଥ ) ସବୁ ନାନାପ୍ରକାର ରତ୍ନମାନଙ୍କର ପ୍ରଭାକୁ

ପ୍ରଭାହୀନ ପ୍ରଭାକର । ହିଙ୍ଗୁଳି କୁତୁକୀ ସାର ।
ଉଡ଼ାଇ କାଗଜଚଙ୍ଗୀ । ଏମନ୍ତ ତର୍କି ଯେ ॥ ୧୧
ଜଗତୀ-ବିଳାସୀ ରାମା । ସନ୍ନିଧେ ଯାଉଁ ଚନ୍ଦ୍ରମା ।
ଭାବନ୍ତି ସେ ଆଦରଶ । ହୀନ ପାରସ ଯେ ॥ ୧୨
ତୋରଣା ବିବିଧ ରତ୍ନେ । ପ୍ରାସାଦେ ଖଞ୍ଜିତ ଯତ୍ନେ ।
ବଲ୍ମୀକରେ ଇନ୍ଦ୍ରଚାପ । ଜାତ ସ୍ୱରୂପ ସେ ॥ ୧୩
ଯହିଁରେ ମଣ୍ଡପମାନ । ଯଥା ପୁଷ୍ପକବିମାନ ।
ବହେନ ପୁଣ୍ୟଜନବର । କି ଶୋଭାକର ସେ ॥ ୧୪
ଗୃହେ ମଣିମୟ ଚାଳ । ବଜ୍ରଲଙ୍ଗ୍ରୀ ପ୍ରବାଳ ।
ମହାରଜତ ରଜତ । ବାଡ଼ ନିର୍ମିତ ଯେ ॥ ୧୫
ମାଣିକ୍ୟ ମର୍କତ ମିହାଣ । ପିତୁଳୀ ଫଳ ରଚନା ।
ଲତା ମହୀରୁହଡାଳୀ । ତହିଁରେ ଝଳି ଯେ ॥ ୧୬
କଳଶ ହୀରା ବୈଦୂର୍ଯ୍ୟ । ପ୍ରକାଶମାନ ସ୍ୱେ ତେଜ ।
କି ଶ୍ୱେତ ପୀତ ପତାକା । ଏମନ୍ତ ଶଙ୍କା ସେ ॥ ୧୭

---

ଧରିଥିବାରୁ ନଭ (ଆକାଶ) ପରି ହୋଇଅଛନ୍ତି । ତାରକା ଶ୍ରେଣୀ ବା ସେ ରତ୍ନମାନଙ୍କ ଆଗରେ କେଉଁ ତେଜ ଦେଖାଇବେ ।

୧୧—ସେ ବାଟେ ସୂର୍ଯ୍ୟଦେବ ଗଲାବେଳେ ନଗରର ରତ୍ନପ୍ରଭାରେ ନିସ୍ତେଜ ହୋଇ କୌତୁକୀ ଲୋକମାନେ ହିଙ୍ଗୁଳରେ ରଙ୍ଗେଇ ଉଡ଼ାଇଥିବା କାଗଜଚଙ୍ଗୀ ( କାଗଜ ନିର୍ମିତ ଗୋଡ଼ି ) ପରି ଜଣା ପଡୁଅଛି ।

୧୨—ସେ ନଗରର ଅଟ୍ଟାଳିକା ଉପରେ ବିହାର କରୁଥିବା ରମଣୀମାନେ ନିକଟରେ ଯାଉଥିବା ଚନ୍ଦ୍ରଙ୍କୁ ଦେଖି ପାରସ ଛାଡ଼ି ଯାଇଥିବା ( କଳଙ୍କ ଥିବାରୁ ) ଦର୍ପଣ ସମାନ ମଣୁଅଛନ୍ତି । ଆଦରଶ [ ଦର୍ପଣ ]

୧୩—କୋଠାଘର ମାନଙ୍କରେ ନାନାପ୍ରକାର ରତ୍ନନିର୍ମିତ ତୋରଣମାନ ଖଞ୍ଜାହୋଇ ଉଇ ହୁଙ୍କାରୁ ଇନ୍ଦ୍ରଧନୁ ଜନ୍ମିଲା ପରି ଦିଶୁଅଛି । ଉଇ ହୁଙ୍କାରୁ ଇନ୍ଦ୍ରଧନୁ ଜନ୍ମିବା ପ୍ରବଶୋକ୍ତ ।

୧୪—ଯେଉଁ ନଗରରେ ମଣ୍ଡପ ସବୁ ପୁଷ୍ପକ ବିମାନପରି ପୁଣ୍ୟଜନବର ( କୁବେର ଓ ପୁଣ୍ୟବନ୍ତଙ୍କ ମଧ୍ୟରେ ଶ୍ରେଷ୍ଠ )ଙ୍କୁ ବହନ କରି ଶୋଭା ପାଉଅଛି ।

୧୫—ଗୃହମାନଙ୍କର ଚାଳ ସବୁ ମଣିରେ, ବଜ୍ରଲଙ୍ଗ୍ରୀ ପ୍ରବାଳ ( ପୋହଳା ) ରେ କାନ୍ଥମାନ ମହାରଜତ ( ସୁବର୍ଣ୍ଣ ) ଓ ରଜତ ( ରୂପା ) ରେ ନିର୍ମିତ ।

୧୬—ସେ କାନ୍ଥରେ ମାଣିକ୍ୟ ଓ ମରକତ ମଣିର ମିହାଣ ( ଜଡ଼ାଉ ) କାର୍ଯ୍ୟଦ୍ୱାରା ପିତୁଳା, ଲତା, ବୃକ୍ଷଡାଳ, ଫଳରେ ରଚିତ ହୋଇଅଛି ।

୧୭—ହୀରା ଓ ବୈଦୂର୍ଯ୍ୟ ମଣି ନିର୍ମିତ କଳଶମାନଙ୍କର ତେଜ ପ୍ରକାଶ ପାଇ ଶୁକ୍ଳ ଓ ହଳଦିଆ ପତାକାର ଶଙ୍କା ଜନ୍ମାଉଅଛି ।

ନୀଳମଣି ସ୍ଫଟିକର । ଯହିଁ ପାବଚ୍ଛ ଚତ୍ୱର ।
ମୁକୁତା ଗୁଞ୍ଜା ଗୃମର । ବତାନ ତାର ଯେ ॥ ୧୮
କିଣି ବଦର ସଙ୍ଗତେ । ଶିଶୁ କ୍ଷେପଣ କରନ୍ତେ ।
ମାତଙ୍ଗୀ ଯୋଗ୍ୟ ହୁଅନ୍ତି । ମାତଙ୍ଗ-ମୋତି ଯେ ॥ ୧୯
ଯହିଁ ଅବଗାହ ସର । ବସ୍ତୁ ପଦ୍ମା ମନୋହର ।
ତହିଁ ସ୍ନାନ ବଧୂ ସାରି । ସେ ପୁରସ୍ତ୍ରୀଙ୍କ ଯେ ॥ ୨୦
ପୃଚ୍ଛିଲେ କୁନ୍ଦକାରଙ୍କ । ନ ଦେଖାନ୍ତି ସମ୍ମୁଖଙ୍କ ।
ଅଦ୍ର୍ରବାସେ ସ୍ତନ ଗୁହିଁ । ଅତଙ୍ଗ ବହୁ ଯେ ॥ ୨୧
ଆଣିଲେ ପୁଳନ୍ଦବାର । ମୟୂରପୁଚ୍ଛ ଗୃମର ।
ବବନ୍ଧ କେଶ ଅନାଇ । ବେଗେ ଲୁଗୃଇ ଯେ ॥ ୨୨
ବିକା ନ ଯିବ ଏ ବ୍ୟଥା । ଜଳ୍ପି ପରସ୍ପର କଥା ।
କାଠ ବ୍ୟାଘ୍ର ନଖକୁଳ । ବିକବା ଗୃଲ ହେ ॥ ୨୩
ସେ ପାଟଳିପୁତ୍ରପୁର । ନୃପତି ଦୀପ୍ତିସାଗର ।
ବଂଶବରଷ ଲଭିତ । ତାହାର ସୁତ ଯେ ॥ ୨୪

---

୧୮—ଯାହାର ଅଗଣାମାନଙ୍କର ପାଦାର ନୀଳମଣି ପ୍ରସ୍ତରରେ ନିର୍ମିତ; ଏବଂ ଗୃହଦ୍ୱାରମାନ ମୁକ୍ତାଗୁଞ୍ଜା ଗୃମରରେ ଉଜ୍ଜ୍ୱଳ ହୋଇଅଛି ।

୧୯—ସେଠାରେ ମାତଙ୍ଗ ମୋତି ( ଗଜମୁକ୍ତା ) ଏତେ ପଡ଼ିଥାଏ ଯେ ଶବରଣୀମାନେ ବରକୋଳି ସଙ୍ଗେ ଗୋଟାଇ ଆଣି ଥାଆନ୍ତି କିନ୍ତୁ ପିଲାମାନେ ବରକୋଳି କିଣି ସେ ମୁକ୍ତା ବାଛି ପକାଇ ଦିଅନ୍ତି । ସେ ମୁକ୍ତା କେବଳ ମାତଙ୍ଗୀ ( ଶବରଣୀ ) ମାନଙ୍କର ଘେନିବା ଯୋଗ୍ୟ ହୁଏ ।

୨୦।୨୧—ସେଠାରେ ଗଙ୍ଗା ସ୍ନାନ ପୁଷ୍କରଣୀ ହୋଇଅଛି । ତହିଁରେ ପୁରସ୍ତ୍ରୀମାନେ ସ୍ନାନ ସାରି ଆସିବାବେଳେ କୁନ୍ଦକାରୀମାନଙ୍କୁ "ଫରୁଆ ଅଛି କି" ପଚାରିଲେ ସେମାନେ ଓଦା ଲୁଗା ମଧ୍ୟରେ ଦିଶୁଥିବା ସ୍ତନଙ୍କୁ ଗୁହିଁ ତାହା ଅପେକ୍ଷା ଫରୁଆକୁ ନିକୃଷ୍ଟ ମଣି ଭୟରେ ଦେଖାନ୍ତି ନାହିଁ ।

୨୨-୨୩—ପୁଳନ୍ଦବାର ( କୋଳାସମୂହ ) ମୟୂରପୁଚ୍ଛ ଓ ଚଅଁର ଆଣିଥିଲେ କିନ୍ତୁ ସେ ସ୍ତ୍ରୀମାନଙ୍କର ବିମୁକ୍ତ କେଶ ଦେଖି ଶୀଘ୍ର ସେ ଗୁଡ଼ିକ ଲୁଗୃଇଲେ ଏବଂ ଏ ବିକା ଯିବନାହିଁ ଏହିପରି ପରସ୍ପର କଥୋପକଥନ କରି ଦୁଃଖିତ ହୋଇ କାଠ, ଏବଂ ବାଘନଖ ବିକୀ କରିବାକୁ ବସିଲେ ।

୨୪—ସେ ପାଟଳିପୁର ନଗରର ରାଜା ଦୀପ୍ତିସାଗର କୋଡ଼ିଏ ବର୍ଷ ବୟସରେ ପୁତ୍ର ଲଭ କଲେ ।

ଏମନ୍ତ ସୁନ୍ଦର ଈଶ । କାମଦେବ ତାହା ବେଶ ।
ଧରି ସୁନ୍ଦର ବୋଲାଏ । ପୌଣ୍ଡ୍ରୀକ ପ୍ରାୟେ ଯେ ॥ ୨୫
ପୁଂସ ଲକ୍ଷଣେ ମକର- । କେତୁରେ ବହିଛି ମାର ।
ପୁଷ୍ପକେତୁ ନାମ ସିଦ୍ଧ । ସେ ପୁଷ୍ପାୟୁଧ ଯେ ॥ ୨୬
ଏମନ୍ତ ଟସ ବୀରପଣେ । ଭୀମ ବୋଲି ଯେବେ ଶୁଣେ ।
ସେହି ବୃନ୍ଦକୁ ଗଞ୍ଜଇ । ଗଦା ଭାଙ୍ଗଇ ଯେ ॥ ୨୭
ଭୈରବ ନ ସଧାଇଲେ । ଏମନ୍ତ ଚଓେ ଧାୟିଲେ ।
ପଦକ ରହିବ କେହି । ପାଞ୍ଚିଲେ ଏହି ଯେ ॥ ୨୮
ଶୁଣି ଧନୁର୍ଦ୍ଧର ପଣ । ଲକ୍ଷ୍ୟେ ଭାବିଲେ ଲକ୍ଷ୍ମଣ ।
ହୋଇଥିବ ଇନ୍ଦ୍ରଜିତ । ଅବଶ୍ୟ ଜାତ ଯେ ॥ ୨୯
କର୍ତ୍ତାପରି ବ୍ୟାକରଣେ । ପାଣିନୀୟ ମନେ ଗୁଣେ ।
କରିବା ଏହା ସଙ୍ଗତ । ହେବ ବ୍ୟୁତ୍ପନ୍ନ ଯେ ॥ ୩୦

---

୨୫—ସେ ପୁନି ଏପରି ସୁନ୍ଦର ଶ୍ରେଷ୍ଠ ଯେ କନ୍ଦର୍ପ ତାହାଙ୍କ ରୂପ ଧରି ପୁଣ୍ଡ୍ରୀକରାଜାପରି ସୁନ୍ଦର ବୋଲାଉଅଛି । ପୁଣ୍ଡ୍ରୀକରାଜା ବାସୁଦେବଙ୍କ ପରି ହେବା ଇଚ୍ଛାରେ ତାଙ୍କ ସଦୃଶ ବେଶଭୂଷା ଧରି ଶେଷରେ ହାସ୍ୟାସ୍ପଦ ହୋଇ "ପୁଣ୍ଡ୍ରୀକ ବାସୁଦେବ" ନାମ ପାଇଥିଲେ ।

୨୬—ପୁରୁଷ ଲକ୍ଷଣ ମଧ୍ୟରେ ଶ୍ରେଷ୍ଠ ଲକ୍ଷଣ ମତ୍ସ୍ୟରେଖା ରାଜପୁତ୍ରଠାରେ ଥିବାର ଜାଣି କାମ ନିଜ ପତାକାରେ ମକରଚିହ୍ନ ବହିଛି । କୁମାରର ପୁଷ୍ପକେତୁ ନାମ ଜାଣି ସେ ପୁଷ୍ପାୟୁଧ ହୋଇଅଛି । ମକର ( ମତ୍ସ୍ୟ ) କେତୁ (ପତାକା) ଆୟୁଧ ( ଅସ୍ତ୍ର ) ।

୨୭—ସେ ବୀରପଣରେ ଏପରି ଯେ ଯେଉଁମାନଙ୍କଠାରୁ ଭୀମ ବଳବାନ ବୋଲି ଶୁଣେ ସେମାନଙ୍କୁ ନିନ୍ଦାକରେ ଓ ଭୀମର ପ୍ରଧାନ ଆୟୁଧ ଗଦାକୁ ଅନାୟାସରେ ଭାଙ୍ଗି ପକାଏ ।

୨୮—ଭୈରବ ସାଧନା ନ କଲେ କିପରି ଏକ ପାଦରେ ଠିଆ ହୋଇ ଖଡ଼ଗାଦି ଚଳାନ୍ତେ ଏହି କଥା ଲୋକମାନେ ପାଞ୍ଚିଲେ ।

୨୯—ବୀରମାନେ ଏହାଙ୍କର ବୀରତ୍ୱ ଶୁଣି ଭାବିଲେ ଏ ଧନୁର୍ଦ୍ଧର ପଣରେ ଲକ୍ଷ୍ମଣଙ୍କ ପରି, ତେବେ ନିଶ୍ଚୟ ଇନ୍ଦ୍ରଜିତ ଜନ୍ମିଥିବ ।

୩୦—ବ୍ୟାକରଣ ଶାସ୍ତ୍ରର କର୍ତ୍ତା ପରି ଏହାଙ୍କୁ ଜାଣି ପାଣିନୀୟ ( ବ୍ୟାକରଣ ରଚୟିତା ) ମନରେ ଭାବିଲେ ଏହାଙ୍କର ସଙ୍ଗତ କରିବା ତାହାହେଲେ ଆମ୍ଭର ବ୍ୟୁତ୍ପନ୍ନ ହେବ ।

ମୀମାଂସା ବେଦ ବେଦାନ୍ତେ । ଟୀକାପୁସ୍ତକ ଏ ସତେ ।
ଜୈମିନି ବିଖନ ବ୍ୟାସ । ପ୍ରଶଂସି ତୋଷ ଯେ ॥ ୩୧
କଲ୍ୟାଣେ କର ଅଞ୍ଜଳି । କରେ ଶୁଣି ପତଞ୍ଜଳି ।
ବଇଶେଷିକ ସାଂଖ୍ୟରେ । ସାକ୍ଷୀ ପ୍ରକାରେ ଯେ ॥ ୩୨
ବେନିରୂପେ ନ୍ୟାୟବନ୍ତ । ଏହିରୂପେ ଜାଣେଂମନ୍ତ ।
ଅଳଙ୍କାର ଅଲଙ୍କାର । ଦୁଇ ପ୍ରକାର ସେ ॥ ୩୩
ତୁରଙ୍ଗାରୋହଣ ଗୁହିଁ । ହେଲ କାଶ୍ୟପିକ କହି ।
କେମନ୍ତ ଅଷ୍ଟର୍ଯ୍ୟ ସାଦ । ମହୀ ସମ୍ବାଦ ଯେ ॥ ୩୪
ଚଢ଼ି ନ ଜାଣନ୍ତି ରଜ । ଏହାପର ସୁରରାଜ ।
ହୟ ହସ୍ତୀ ନାହିଁ ମିଳି । ଆସନ ଭଳି ଯେ ॥ ୩୫
ସୁମେରୁ ଦାନକୁ ଭୟ । କରି ହେଲା ଦେବାଳୟ ।
ଦେନିଲା ଏହି ବିବେକ । ମହାଧାର୍ମିକ ଏ ॥ ୩୬

---

୩୧—ଜୈମିନି ( ମୀମାଂସା ଶାସ୍ତ୍ର ପ୍ରଣେତା ) ବିଖନ ( ବେଦ ପ୍ରଣେତା ବ୍ରହ୍ମା ) ବ୍ୟାସ ( ବେଦାନ୍ତ ପ୍ରଣେତା ) ଏମାନେ ନିଜ୨ ଶାସ୍ତ୍ରମାନଙ୍କର ଟୀକା ପୁସ୍ତକ ବୋଲି ଏହାଙ୍କୁ ପ୍ରଶଂସା କରି ତୁଷ୍ଟ ହେଲେ ।

୩୨—ପତଞ୍ଜଳି ( ଯୋଗ ଶାସ୍ତ୍ର ପ୍ରଣେତା ) ରାଜକୁମାରଙ୍କୁ ନିଜଶାସ୍ତ୍ରରେ ପ୍ରବୀଣ ଦେଖି ସନ୍ତୁଷ୍ଟ ହୋଇ କଲ୍ୟାଣ କରିବାକୁ ହାତ ଅଞ୍ଜୁଳା କରନ୍ତି । ବୈଶେଷିକ ( କଣାଦମୁନି ପ୍ରଣୀତ ଦର୍ଶନ ) ରେ ଏବଂ ସାଂଖ୍ୟ ( କପିଲମୁନି ପ୍ରଣୀତ ଦର୍ଶନ ) ରେ ସାକ୍ଷୀ ସ୍ୱରୂପ ।

୩୩—ଦୁଇ ମତରେ ନ୍ୟାୟବାନ ( ନ୍ୟାୟ ଶାସ୍ତ୍ରଜ୍ଞ ) ଓ ବିଚାରଶୀଳ ଏହିପରି ମଧ୍ୟ ମନ୍ତ୍ର ( ଗୁପ୍ତ ବିଚାର ଓ କୁହୁକ ବିଦ୍ୟା ) କୁ ଜାଣନ୍ତି । ଅଳଙ୍କାର ( ଭୂଷଣ କର୍ମ ) ଏବଂ ଅଲଙ୍କାର ଶାସ୍ତ୍ର ଜାଣନ୍ତି, ଅଥବା ଅଲଙ୍କାରର ଅଲଙ୍କାର ସୌନ୍ଦର୍ଯ୍ୟରେ ( ଭୂଷଣର ଭୂଷଣ ) ଏବଂ ଅଲଙ୍କାର ଶାସ୍ତ୍ରର ଅଲଙ୍କାର ( ଭୂଷଣ ସ୍ୱରୂପ ) ।

୩୪—ଏହାର ଅଶ୍ୱାରୋହଣ ଦେଖି ହେଲ ( ସୂର୍ଯ୍ୟ ) କାଶ୍ୟପିକି ( ସାରଥି ) ଅରୁଣଙ୍କୁ କହିଲେ, ମହୀ ସମ୍ବାଦ ( ରାଜା ) କିପରି ଅଷ୍ଟର୍ଯ୍ୟ ସାଦ ( ଅଶ୍ୱାରୋହୀ ) ଦେଖ ।

୩୫—ସୁରରାଜ ( ଦେବେନ୍ଦ୍ର ) ମଧ୍ୟ ଏହାଙ୍କପରି ହାତୀ ଚଢ଼ି ଜାଣନ୍ତି ନାହିଁ, ଏହାଙ୍କର ଆସନ ସମାନ ଘୋଡ଼ା ହାତୀ ମିଳନ୍ତି ନାହିଁ । ହୟ (ଘୋଡ଼ା) ।

୩୬—ସୁମେରୁ ପର୍ବତ ଏହାଙ୍କର ଦାନକୁ ଭୟ କରି ଦେବତା ମାନଙ୍କର ବାସ ସ୍ଥାନ ହୋଇ ଗଲା, ଏହି ବିଚାର ଜଣାଯାଉଛି, ଏ ଅତ୍ୟନ୍ତ ଧାର୍ମିକ ।

ଯାହାର କୀରତି-ସୁଧା । ଧବଳ ସାରି ବସୁଧା ।
ହଂସ ହୋଇଲା ମାନସେ । କ୍ରୀଡ଼ା ମାନସେ ଯେ ॥ ୩୭
ସେ ପୁଣି କ୍ଷୀର ହୋଇଲା । ବ୍ରହ୍ମାଣ୍ଡ- ଭାଣ୍ଡ ପୂରିଲା ।
ଶ୍ରୁତି-ମୁଖରେ ପିଇଣ । ପୁଷ୍ଟ ମାର୍ଗଣ ଯେ ॥ ୩୮
ବୀଣା ଶ୍ରବଣେ ନାରଦ । ସନ୍ତୋଷେ ହେଲେ ବରଦ ।
ହେଉ ତବ ମନୋହାରୀ । ଦିବ୍ୟ ସୁନ୍ଦରୀ ଯେ ॥ ୩୯
ଯା'ପରି ଗୁରୁ ଲପନ । ଦେଖି ନ ଥିବ ସ୍ୱପନ ।
ଏରୂପେ କଳ୍ପନା ହୋଇ । ସମ୍ଭବ ଯେହି ଯେ ॥ ୪୦
ଅଳପଙ୍କ କଳପନା । ନୋହେ ଯେହୁ ସୁଲପନା ।
କଳ୍ପ କଳ୍ପ କଳ୍ପ ହୋଇ । ଯାହା ଧିଆଇ ଯେ ॥ ୪୧
ଋଷି କହି ତିରୋହିତ । ଖସି ଶୂନ୍ୟରୁ ତ୍ୱରିତ ।
ମିଳେ ଅଦ୍ଭୁତ ପୁରୁଷ । ମସ୍କରୀ ବେଶ ଯେ ॥ ୪୨
କୁମାର ପ୍ରଣମ୍ୟ ଶେଷେ । ଦିବ୍ୟାସନ ପାଇ ବସେ ।
ସେ ବୀର ସମ ବୟସ । ବେନି ବୟସ୍ୟ ଯେ ॥ ୪୩
ବିଦ୍ୟାନିଧି ଯଶୋବନ୍ତ । ପୁରୋହିତ ମନ୍ତ୍ରୀ-ସୁତ ।
ପୁଛିଲେ କାହୁଁ ଆଗତ । କେ ତପୋବନ୍ତ ଯେ ॥ ୪୪

---

୩୭---ଯାହାଙ୍କର କୀର୍ତ୍ତିସୁଧା ସମସ୍ତ ପୃଥିବୀକୁ ଧବଳ ବର୍ଣ୍ଣ କରି ଦେଇ କ୍ରୀଡ଼ା କରିବା ମାନସରେ ମାନସରେ ( ଲୋକ ମାନଙ୍କ ମନୋରୂପକ ମାନସ ସରୋବରରେ ) ହଂସ ସ୍ୱରୂପ ହେଲା ।

୩୮—ପୁଣି ସେହି କୀର୍ତ୍ତି କ୍ଷୀର ( ଦୁଗ୍ଧ ) ହୋଇ ବ୍ରହ୍ମାଣ୍ଡ ଭାଣ୍ଡରେ ପୂରିଗଲା, ମାର୍ଗଣ ( ଯାଚକ ) ମାନେ ତାହାକୁ କର୍ଣ୍ଣରେ ପାନକରି ପୁଷ୍ଟ ହେଲେ ।

୩୯—ନାରଦ ତାହାଙ୍କର ବୀଣା ବାଦ୍ୟ ଶୁଣି ପ୍ରୀତ ହୋଇ "ତୁମ୍ଭର ଦିବ୍ୟସୁନ୍ଦରୀ ଲାଭ ହେଉ" ଏହି ବର ଦେଲେ ।

୪୦—ଗୁରୁଲପନ ( ବ୍ରହ୍ମା ) ଯାହାପରି ସୁନ୍ଦରୀ ସ୍ୱପ୍ନରେ ସୁଦ୍ଧା ଦେଖି ନ ଥିବେ ଏପରି ନାରୀ ଯେ କି ବ୍ରହ୍ମାଙ୍କର କଳ୍ପନାରେ ସମ୍ଭବିଛି ।

୪୧—ସେ ସୁଲପନା ( ସୁନ୍ଦର ବଦନା ) ଅଳ୍ପ କଳ୍ପନାରେ ହୋଇନାହିଁ । ବ୍ରହ୍ମା କଳ୍ପ ୩ ଧ୍ୟାନକରି ଯାହାକୁ ସୃଷ୍ଟି କରି ଅଛନ୍ତି ।

୪୨—ଦେବର୍ଷିନାରଦ ଏହାକହି ଅନ୍ତର୍ହିତ ହୁଅନ୍ତେ ଶୂନ୍ୟରୁ ଏକ ଅଦ୍ଭୁତପୁରୁଷ ମସ୍କରୀ ( ସନ୍ନ୍ୟାସୀ ) ବେଶ ଧରି ପହଞ୍ଚିଲେ ।

୪୩—୪୪—କୁମାର ତାହାଙ୍କୁ ପ୍ରଣାମ କରି ଦିବ୍ୟ ଆସନରେ ବସାଇଲେ । ସେ ବୀରଙ୍କର ସମବୟସ୍କ ଦୁଇ ସଖା ଯେ କି ପୁରୋହିତପୁତ୍ର ବିଦ୍ୟାନିଧି ଏବଂ ମନ୍ତ୍ରୀପୁତ୍ର ଯଶୋବନ୍ତ ଏ ଦୁଇଜଣ ସେ ତପୋବନକୁ କାହୁଁ ଆସିଲ ବୋଲି ପଚାରିଲେ ।

କହିଲେ ସେ ପରିବ୍ରାଟ । ମଠ ଗନ୍ଧସର ତଟ ।
ଏ ବୀର ଗୁଣ ପ୍ରକଟ । ହୋଇଲୁଁ ଭେଟ ଯେ ॥ ୪୫
ଜାଣୁ ବହୁ ଚମତ୍କାର । ଏଣୁ ସେ ପାଇ ଆଦର ।
ବଞ୍ଚିଲେ ତାହାଙ୍କ ସଙ୍ଗେ । ଆଶ୍ଚର୍ଯ୍ୟ ରଙ୍ଗେ ଯେ ॥ ୪୬
କଠିନ ଦୋଷ ହରିଲା । ଶିଳାକୁ ଅବଳା କଲା ।
ସେ ପଦ-ପ୍ରସାଦେ ପଦ । ସ୍ଫୁରଣେ ମୋଦ ମୁଁ ॥ ୪୭
ଉପଇନ୍ଦ୍ର ଭଞ୍ଜ କବି । ନିରତେ ଚିତ୍ତରେ ଭାବି ।
ହୋଇବ ଅର୍ଥେ ସରସ । ନୋହିବ ଦୋଷ ଯେ ॥ ୪୮

---

## ପଞ୍ଚମ ଛାନ୍ଦ

( କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଶୋଭା,
ଯଶ ପ୍ରକାଶ ଏବଂ ସଖୀ ପ୍ରାପ୍ତି ବିଷୟ ବର୍ଣ୍ଣନ )

ରାଗ—ଗୁର୍ଜ୍ଜରୀ


ଉଁ ଯଉବନୀକି ଧରି । ଧରଣୀ ହୋଇଲା ଉଦ୍ଧାର ।
ତନୁ ତାର ମାପ ପ୍ରମାଣ । ଅଦଭୁତରେ ସେ ନିର୍ମାଣ ।୧।

---

୪୫—ସେ ପର୍ଯ୍ୟଟନକାରୀ ସନ୍ନ୍ୟାସୀ କହିଲେ, ଆମ୍ଭର ମଠ ଗନ୍ଧସରତଟରେ ଏ ବୀରଙ୍କର ଗୁଣ ଗୃହଆଡ଼େ ପ୍ରକଟ ହେବାରୁ ଏହାଙ୍କୁ ଭେଟିବା ପାଇଁ ଆସିଲୁ ।

୪୬—ଆମ୍ଭେ ବହୁତ ଚମତ୍କାର ବିଷୟ ଜାଣୁ, ଏଣୁ ସେ ବହୁତ ଆଦର ପାଇ ହସ ଖେଳରେ କୁମାରଙ୍କ ସଙ୍ଗରେ ରହିଲେ ।

୪୭—ଯେଉଁପଦ କାଠିନ୍ୟ ଦୋଷ ଦୂରକରି ପଥରକୁ ସ୍ତ୍ରୀ କରିଥିଲେ, ସେହିପଦ ପ୍ରସାଦରୁ ମୋହର ଏ ପଦମାନ ସ୍ଫୁରିଲା । ତେଣୁ ମୁଁ ଆନନ୍ଦିତ ହେଲି । ମୋଦ ( ଆନନ୍ଦ ) ।

୪୮—ଉପେନ୍ଦ୍ରଭଞ୍ଜ କବି ସର୍ବଦା ମନରେ ଭାବନ୍ତି ଯେ ମୋହର କବିତାମାନ ଅର୍ଥରେ ସରସ ହେବ ଏବଂ ଦୋଷ ରହିବ ନାହିଁ ।

---

୧—ଯେଉଁ ସୁନ୍ଦରୀକି ଧରଣୀ ( ପୃଥିବୀ ) ଧରି ଉଦ୍ଧରିଲା, ଯାହାର ତନୁ ( ଶରୀର ) ମାପହେଲା ପ୍ରାୟ ( ଯେଉଁଠାରେ ଯେତିକି ହେବାର ଉଚିତ ତଦନୁରୂପ ) ସେ ଆଶ୍ଚର୍ଯ୍ୟଭାବରେ ନିର୍ମିତ ହୋଇଅଛି ।

ସେ କଳାନିଧି କଳା ବୃଦ୍ଧି । କରନ୍ତେ ବାଲ୍ୟରୁ ଅବଧି ।
ଯୌବନେ ପୂର୍ଣ୍ଣତା ପାଇଲା । ଲକ୍ଷଣେ ମହତ ବହିଲା ॥ ୨
ସେ ବଶୀକରଣ ନିବିଧି । ପ୍ରକାଶ ହାସ ଅଉଷଧି ।
ମୋହନ-ମନ୍ତ୍ର-ମୃଦୁ-ବାଣୀ । ବୋଇଲା ରମଣୀଙ୍କ ମଣି ॥ ୩
ନବବୟସ ସଙ୍ଗେ ମେଳ । ହୋଇ ହେବାରୁ କୋଳାକୋଳ ।
ଶୋଭା ପ୍ରଭାଏ ଭଡ଼ାଭଡ଼ । ହରଷ ରସ ଜଡ଼ାଜଡ଼ ॥ ୪
ଭାବ ଲଜ ଏ କଷାକଷି । ହାବ ନୟନ ମିଶାମିଶି ।
ଲୀଳା ବିଳାସ ବସିଗଲେ । ପ୍ରସନ୍ନ-ସାଗର ଉଚ୍ଛୁଳେ ॥ ୫
ଯୋଗେ ଯୋଗାଏ ଦେଲେ ଗୁହିଁ । ପଲକ ଭାସିଯିବ କାହିଁ ।
ବୁଡ଼ାଇବେ ସେ ଗୁଣି ଜ୍ଞାନ । ବଢ଼ାଇ ଯାହାର ଏସନ ॥ ୬
ଜଗତୀ-ବିଳାସରେ ଥାଇ । ଜଗତୀ ବିଳାସକୁ ଦେଇ ।
ଏସନ କୀର୍ତ୍ତିସମୂହକୁ । ଯେ ଶୁଣେ ଭଜେ ସେ ମୋହକୁ ॥ ୭

---

୨—ସେ ସୁନ୍ଦରୀ ବାଲ୍ୟ କାଳରୁ ଆରମ୍ଭ କରି ଚନ୍ଦ୍ରଙ୍କ ପରି କଳାଏ କଳାଏ ବଢି ବଢ଼ି ଯୌବନରେ ପୂର୍ଣ୍ଣ ହେଲା । ପୂର୍ଣ୍ଣ ହେବାରୁ ଚନ୍ଦ୍ର ଯେପରି ଲକ୍ଷ୍ମଣ (କଳଙ୍କକୁ) ବହିଥାଅନ୍ତି ସେହିପରି ଏ ଉତ୍ତମ ଚିହ୍ନସବୁ ବହନ କଲା।

୩—ଏ ସୁନ୍ଦରୀ ନିବିଧ ବଶୀକରଣର ଉପାୟ ( ଔଷଧ, ମନ୍ତ୍ର ଓ ମଣି )। ସୁନ୍ଦରୀର ହାସ ଔଷଧି, କୋମଳବାକ୍ୟ ମୋହନ ମନ୍ତ୍ର ନିଜେ ରମଣୀମାନଙ୍କ ମଧ୍ୟରେ ମଣି ।

୪—ନବବୟସ (ଯୌବନ) ସହିତ ମଣି କୋଳାକୋଳ ହେବାରୁ ଶୋଭା, ( ସୌନ୍ଦର୍ଯ୍ୟ ) ପ୍ରଭା (ଦୀପ୍ତି ) ଦୁହେଁ ଭଡ଼ାଭଡ଼ ହେଲେ, ହର୍ଷ ( ଆନନ୍ଦ ) ରସ (ଶୃଙ୍ଗାର) ଦୁହେଁ ପରସ୍ପର ଜଡ଼ ରହିଲେ ।

୫—ମନୋଗତ ଭାବ ଓ ଲଜ ଏ ଦୁହେଁ କଷାକଷି ହେଲେ । ହାବ, ବକ୍ରଦୃଷ୍ଟି, (ଭ୍ରୂଭଙ୍ଗାଦି ବିକାର, ) ଓ ନୟନ ଏ ଦୁହେଁ ମିଶାମିଶି ହେଲେ । ଲୀଳା ( ଶୃଙ୍ଗାର ଭାବଜାତ ଚେଷ୍ଟା ) ଓ ବିଳାସ ( ଅଙ୍ଗଭଙ୍ଗି ) ଏ ଦୁହେଁ ଏକାପ୍ରକାର ବସିଲେ ପ୍ରସନ୍ନ ରସ ସାଗର ଉଚ୍ଛୁଳି ପଡ଼େ ।

୬—ଯେଉଁ ସୁନ୍ଦରୀ ଏପରି ବଢ଼ାଇ ଯେ ଯେବେ କୌଣସି ପ୍ରକାର ଯୋଗୀମାନେ ତାହାଙ୍କୁ ଗୁହିଁବେ ତେବେ ସେମାନଙ୍କର ପଲକ ଆଉ ପଡ଼ିବ ନାହିଁ । ସେମାନେ ଜ୍ଞାନ ହରାଇବେ ।

୭—ଜଗତୀଠା ବିଳାସରେ (ଅଟ୍ଟାଳିକା ବିହାରରେ) ରହି ଜଗତକୁ ଆନନ୍ଦ ପ୍ରଦାନ କରେ, ଏପରି ତାହାଙ୍କର କୀର୍ତ୍ତି ଯେଉଁମାନେ ଶୁଣନ୍ତି ସେମାନେ ମୁଗ୍ଧ ହୁଅନ୍ତି ।

କମ୍ବୁ ଡମ୍ବରୁ ବସ୍ତୁ ଶିବେ । ଜାଣନ୍ତି କି କହିବୁଁ ଏବେ ।
ଯୌବନ କୁନ୍ଦେ କୁନ୍ଦ ହେଲା । କାମ-ହେମ-ଯନ୍ତ୍ର-ପିତୁଳା ॥ ୮

ସେ ଧେନି ନିଜ ଧୈର୍ଯ୍ୟ ବାଧ । ଏକ ଶୟନ ସିନ୍ଧୁ ମଧ୍ୟ ।
ଏକ କୃତ୍ତିକି ଘୋଡ଼ି ହେଲେ । ତାକୁ ଲୁଗ୍ନଇ ସେ ଲୁଚିଲେ ॥ ୯

ମୁଖ ଛବି ଧ୍ୟାନରେ ଲୀନ । ସଙ୍କୋଚରେ ନଳିନ ମଳିନ ।
ଦିନାନ୍ତେ ଜନ୍ମିଲା ସେ ଭ୍ରାନ୍ତି । ନିତି ନିତି ଭଜେ ସେ ଶାନ୍ତି ॥ ୧୦

ଚତୁର-ମୁଖ-ଯେ ଚତୁର । ଜାଣିଲା ଆସନରୁ ତାର ।
ଏବେ ତରୁଣୀକୁ ଭଜେ । କୋଟିବ୍ରହ୍ମାଣ୍ଡସୁନ୍ଦରୀ ଯେ ॥

ନିଜ ବାହନ-ଦୁହିତାଙ୍କ । ଦେଲା ସେ ମାନବୀ ମୂର୍ତ୍ତିକ ।
ନାମ ତା ଦେଲା କାଦମ୍ବିନୀ । କହେ ସାରସେ ଯାଅ ଘେନି ॥ ୧୨

ସେ କନ୍ୟା ସଖୀ ଏ ହୋଇବ । ମାଙ୍ଗଲ୍ୟା ଭେଟ କରାଇବ ।
ସେ ଦୁହେଁ କରନ୍ତେ ଗମନ । ମାର୍ଗରେ ଦେଖନ୍ତି ଏମାନ ॥ ୧୩

---

୮—ସୁନ୍ଦରୀର କଣ୍ଠ ଶଙ୍ଖ ଅପେକ୍ଷା ସୁନ୍ଦର ହେତୁ କଟି ମଧ୍ୟ ଡମ୍ବରୁ ଅପେକ୍ଷା ଅଧିକସରୁ ହେତୁ ଦୁହେଁ ଅର୍ଥାତ୍ କମ୍ବୁ (ଶଙ୍ଖ) ଶ୍ରୀକୃଷ୍ଣଙ୍କୁ, ଡମ୍ବରୁ ମହାଦେବଙ୍କୁ ଜଣାଇଲେ "ଏ ସୁନ୍ଦରୀ ଯୌବନ କୁନ୍ଦରେ କୁନ୍ଦହୋଇ କାମଦେବଙ୍କର ସୁବର୍ଣ୍ଣ ଯନ୍ତ୍ରରେ ନିର୍ମିତ ପିତୁଳାପରି ଦିଶୁଅଛି" ।

୯—ସେ ଦୁହେଁ ଏହାଶୁଣି ନିଜ ଧୈର୍ଯ୍ୟର ବାଧା ଘଟିବାର ଜାଣି, ଜଣେ (ଶ୍ରୀକୃଷ୍ଣ) ସମୁଦ୍ରରେ, ଆଉ ଜଣେ ବାଘଚମରେ ପଶି ସେ କମ୍ବୁ ଓ ଡମ୍ବରୁକୁ ଲୁଗ୍ନଇ ନିଜେ ଲୁଚି ରହିଲେ । କୃତ୍ତି (ବ୍ୟାଘ୍ରଚର୍ମ)

୧୦—ନଳିନ (ପଦ୍ମ) ଦିନଯାକ ଏହାଙ୍କର ମୁଖଛବି ଧ୍ୟାନ କରି କରି ଦିନଶେଷରେ ମଳିନ ହୋଇ ସଙ୍କୁଚିତ ହେଲା, ସେହି ଭୟରୁ ପ୍ରତିଦିନ ସେହି ଦିନ ଶେଷରେ ମଳିନ ହୋଇ ସଙ୍କୁଚିତ ହେଉଅଛି ।

୧୧—ଚତୁର ମୁଖ (ବ୍ରହ୍ମା) ଚତୁର ନିଜ ବାହାନଠାରୁ (ହଂସଠାରୁ) ଜାଣିଲେ ଯେ ସେ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଏବେ ତରୁଣୀକୁ ଖୋଜୁଅଛି ।

୧୨—ନିଜ ବାହନ-ଦୁହିତାଙ୍କ (ହଂସ କନ୍ୟାକୁ) ମାନବୀ ମୂର୍ତ୍ତିଦେଲେ, ତାହାର ନାମ କାଦମ୍ବିନୀ ଦେଇ ହଂସକୁ କହିଲେ ନେଇଯାଅ ।

୧୩—ଏ, ସେ କନ୍ୟାର ସଖୀହେବ, ମାଙ୍ଗଲ୍ୟା (ଏକ ତପସ୍ୱିନୀ) ଭେଟ କରାଇଦେବ । ସେ ଦୁହେଁ ଗମନ କରନ୍ତେ ମାର୍ଗରେ ଏହିପରି ଦେଖିଲେ ।

ହେଠ-ମୁଖ ଅଶ୍ୱିନୀ-ସୁତ । ଶଶୀ ମାରୁଛି ହୃଦେ ହାତ ।
ମଘବା ମୁକୁରକୁ ଚୃହିଁ । ହରଷ ବରସ ହୁଅଇ ॥ ୧୪
ଲୁଚିଣ ଥାଏ ନୋହେ ମରୁତ । ଭାବ ମୁଁ ଦନ୍ତୀ ଗର୍ଭଜାତ ।
ନିଜରେଖ କୁବେର ତନୁକୁ । ନୈଋତ ଚୃହେଁ ଆସନକୁ ॥ ୧୫
ଦିନ ନେଉଛି ଦୀନ ହୋଇ । ଯମ ପଦରେ ଲକ୍ଷ୍ୟ ଦେଇ ।
ବରୁଣ ପାଶେ ଦେଇ ଦୃଷ୍ଟି । ଏ ବୁଦ୍ଧି ହେବ ବୋଲି କଷ୍ଟି ॥ ୧୬
ସନ୍ନିକଟ ଦକ୍ଷିଣାୟନେ । କଥା ଚସ ବେନି ବିରୋଚନେ ।
ବହିବାରୁ ଏ ତେଜମାନ । ହେଲଇ ସିନା ବିରୋଚନ ॥ ୧୭
କୁମାରେ ଏହି ଚିନ୍ତା ଘୋର । ରାବଣୁ ଊଣା ଶୋଭା ମୋର ।
ଆନ କି ଉପମା ସେ ଯୋଷା । ଜାନକୀ ରୂପକୁ ସଦୃଶା ॥ ୧୮
ଗଙ୍ଗା କେ ନଦୀ ଭୟଙ୍କରୀ ।, କରୀରେ ଆଦର ନ କରି ।
ସେହି ଲପନ କର୍ମେ ହେଲି । ମାଳୀ ଧେନି ଗଣେଶ ଭାଳି ॥ ୧୯

---

୧୪—ଅଶ୍ୱିନୀକୁମାର ଘୋଡ଼ାମୁହାଁ ହୋଇଥିବାରୁ ଦୁଃଖିତ ହେଲେ, ଚନ୍ଦ୍ର ନିଜର କଳଙ୍କ ଥିବା ଜାଣି ହୃଦୟରେ ମାରିହେଲେ । ଇନ୍ଦ୍ର ଦର୍ପଣରେ ନିଜକୁ ଚୃହିଁ ସହସ୍ରନୟନରେ ସୁନ୍ଦରୀର ରୂପ ଦେଖିପାରିବେ ଭାବି ଆନନ୍ଦିତ ହେଲେ । ସହସ୍ର ନେତ୍ର ହେତୁ ବିରୂପ ଭାବି ବିମୁଖ ହେଲେ ।

୧୫—ମରୁତ ( ବାୟୁ ) ଅସୁର ମାତା ଦନ୍ତୀଙ୍କ ଗର୍ଭରୁ ଜନ୍ମିଥିବାରୁ ଦର୍ଶନମାତ୍ର ଥୟ ନ ହୋଇ ବ୍ୟାକୁଳ ହେଉଅଛନ୍ତି । କୁବେର ଯାଦୁଅ ହୋଇଥିବାରୁ ନିଜ ଶରୀରକୁ ଚୃହିଁଲେ, ନୈଋତ ଶବ ବାହନ ହେତୁ ନିଜ ଆସନକୁ ଚୃହିଁଲେ ।

୧୬—ଯମ ଗୋଦରୀ ହୋଇ ଗୋଡ଼ରେ ଲକ୍ଷ୍ୟରଖି ଅତି ଦୁଃଖରେ ଦିନ ଯାପନ କଲେ, ବରୁଣ ପାଶ ଆୟୁଧରେ ଦୃଷ୍ଟିଦେଇ କାଳେ ତାହାର ଏ ବୁଦ୍ଧିହେବ ଏହା ଭାବି କଷ୍ଟ ପାଉ ଅଛନ୍ତି ।

୧୭—ଦକ୍ଷିଣାୟନ ସନ୍ନିକଟ ହେଲେ ଦୁଇ ବିରୋଚନ ( ସୂର୍ଯ୍ୟ ଓ ବାଡ଼ବାଗ୍ନି ) ଏପରି ପ୍ରଚଣ୍ଡ ତେଜ ବହିବାର କଥା ଥିବାରୁ ବିରୋଚନ ( ଅରୁଚିକର ) ହେଲେ ।

୧୮—କୁମାରକୁ ଏହି ଘୋର ଚିନ୍ତା ହେଲା ଯେ ରାବଣଠାରୁ ମୋହର ଶୋଭା କମ, ଅନ୍ୟ କି ଉପମାଦେବା ସେ ସୁନ୍ଦରୀ ସୀତାଦେବୀଙ୍କପରି ।

୧୯—ଐରାବତ ହସ୍ତୀ ଗଙ୍ଗାକୁ ବିବାହ ହେବାପାଇଁ ଅଶାୟୀ ହୋଇ ପଛ଼ ଭାସି ଗଲେ ତଥାପି ଗଙ୍ଗା ତାଙ୍କୁ ଆଦର କରେ ନାହିଁ । ମୁଁ କର୍ମବଶରୁ ହସ୍ତୀ-ମୁଖ ହେଲି, ଗଣେଶ ମାଳୀ ଧେନି ଏହି କଥା ଭାବିଲେ ।

ଅଜ୍ଞ ଦେବତାମାନେ ଗ୍ରୀତ । ଅମ୍ଭେ ତ ଏମାନଙ୍କ ଭୃତ୍ୟ ।
ଏମନ୍ତ ହେଲେ ଲୋଭଚୟ । ନ ତେଜେ ହୃଦୟ-ନିଳୟ ॥ ୨୦
ବିରହ ନାମରେ ବହ୍ନି । ମନୁ ଜନମି ତାହା ଦହି ।
ସନ୍ତାପ ଅଙ୍ଗେ ଜାତ ହୋଇ । ମଦନ ଜ୍ୱର ସେ ବୋଲାଇ ॥ ୨୧
ବଢ଼ାଇ ତୃଷ୍ଣା ଅତିଶୟ । ଦାହ-ଜନକ ଅପ୍ରମେୟ ।
କଣ୍ଠ କପାଳେ ଦେଇ ଝାଳ । କମ୍ପ କ୍ଷଣ କ୍ଷଣକେ ମେଳ ॥ ୨୨
ନ ଲଭେ ବେଳେ ବେଳେ ନାଡ଼ି । ପ୍ରଳାପ ଜାତ ଘଡ଼ି ଘଡ଼ି ।
ଫୁଟଇ ତନୁ ଖରଶ୍ୱାସ । ପାଣ୍ଡୁର କରଇ ଅଶ୍ଳେଷ ॥ ୨୩
ତା ଦେଖି କହି ହେଲା ହଂସ । ନବୈଦ୍ୟ-ବ୍ୟାଧିକା ଯା ରସ ।
ସେତ ଦୁର୍ଲ୍ଲଭ ଏହାଙ୍କର । ଖଣ୍ଡିଲେ ଅରମ୍ଭ ଆହାର ॥ ୨୪
କାଏ ପୁଚ୍ଛିଲା ସୁତା ତାର । କହେ ଶ୍ୱେତ ଗରୁତବର ।
ପ୍ରେମମଞ୍ଜରୀ ବାଳା ନାମ । ଅଙ୍କୁରାଏ ଶବ୍ଦରେ ପ୍ରେମ ॥ ୨୫

---

୨୦—ଅଜ୍ଞ ଦେବତାମାନେ ଭାବିଲେ ଅମ୍ଭେମାନେତ ଏମାନଙ୍କ ଗ୍ରୁକର, ଅମ୍ଭେ ବା କଣ ପାଇବା, ତଥାପି ଲୋଭ ହୃଦୟକୁ ଛାଡ଼େନା ।

୨୧—ବହ୍ନି ( ଅଗ୍ନି ) ବିରହ ନାମରେ ମନରୁ ଜନ୍ମି ମନକୁ ପୋଡ଼ିଦିଏ । ତାହାର ଉତ୍ତାପ ଶରୀରରେ ଜାତ ହେବାରୁ ମଦନ ଜ୍ୱର ନାମରେ କଥିତ ହୁଏ ।

୨୨—ସେ ବିରହ ଜ୍ୱରରେ ଅତ୍ୟନ୍ତ ତୃଷା ବଢ଼େ, ଅପରିମିତ ଦାହ ଜନ୍ମେ, କଣ୍ଠ ଓ କପାଳରେ ଝାଳ ଦିଏ, କ୍ଷଣେ କ୍ଷଣେ କମ୍ପ ଜାତ ହୁଏ ।

୨୩—ବେଳେ ବେଳେ ନାଡ଼ି ମିଳେନା, ଘଡ଼ି ଘଡ଼ି ପ୍ରଳାପ ଜନ୍ମେ, ଖରନିଶ୍ୱାସ ବହେ, ଜ୍ୱରରୁ ପାଣ୍ଡୁରୋଗ ଜନ୍ମିଲାପରି ଦେବତାମାନଙ୍କର ଦେହ ବିରହରୁ ପାଣ୍ଡୁରବର୍ଣ୍ଣହୋଇ ବିବର୍ଣ୍ଣ ହେଲା ।

୨୪—ତାହା ଦେଖି ହଂସ କହି ହେଲା ଏ ନବୈଦ୍ୟବ୍ୟାଧିକା (ଅସାଧ୍ୟରୋଗକୁ) ଉପଶମ କରିବା ପାଇଁ ଯେଉଁ ସୁନ୍ଦରୀର ରସ (ଶୃଙ୍ଗାର ରସ) (ବଟିକା-ବିଶେଷ ) ପରି ସେ ଏ ଦେବତାମାନଙ୍କର ଦୁର୍ଲ୍ଲଭ ଅଟେ, କେବଳ ଏମାନେ ଅମ୍ଭମାନଙ୍କର ଯେ ଆହାର ମୃଣାଳ ତାହାକୁ ଶେଷକଲେ । ବିରହୀମାନେ ପଦ୍ମପତ୍ରରେ ଶୟନ କରନ୍ତି ଏବଂ ପଦ୍ମନାଡ଼ ମାଳ କରନ୍ତି ।

୨୫—କୌଣସି ଶ୍ୱେତ ଗରୁତବର ( ରାଜହଂସଶ୍ରେଷ୍ଠର ) କନ୍ୟା ବାଳାର ନାମ ପଚାରିବାରୁ ସେ କହିଲା ବାଳାନାମ ପ୍ରେମ ମଞ୍ଜରୀ, ସେ ଶବ୍ଦରେ ପ୍ରେମକୁ ଅଙ୍କୁରିତ କରେ ।

ସଂକଳ୍ପଭବ ନାମ କାମ । ସାର୍ଥେ ଏ କାଳେ ହେଲା କ୍ଷମ ।
ଏମନ୍ତ କଥା ହୋଇଁ ହୋଇଁ । ନଭେ ସତ୍ୱରେ ଯାଉଁ ଯାଉଁ ॥ ୨୬
ପ୍ରିୟ ଅପ୍ରିୟ ହେବା ଘେନି । ଏ ରୂପେ କଥା ବାମାବେନି ।
ହେଲି ସନ୍ଧ୍ୟାଗାମୀ ମୁଁ ଶଚୀ । ଜେମା ରୁଚି ଲୋକନେ ଲୁଚି ॥ ୨୭
ସୁସଙ୍ଗେ ହାର ମୁଁ ସାରଦା । ଲଞ୍ଚକର ଦେଇଛି ବିଦ୍ୟା ।
ଶୁଣିଲି ବୋଇଲା ମରାଳ । ଜାଣିଲି ଯହିଁକି ଆକୁଳ ॥ ୨୮
ତହିଁକି ବାଳା ଦୃକପାତ । କାହିଁକି ହେବ କଦାଚିତ ।
ଯେ ଗାନ୍ଧର୍ବୀ ଗନ୍ଧର୍ବସୂତା । ଷୋଡ଼ଶୀ ଏକ ପ୍ରତଶୋଭିତା ॥ ୨୯
ବିଧାତା ଅନୁକୂଳ ଥିବ । ଯେ ଅନୁକୂଳ ପୁଂସ ହେବ ।
ଶୋଭା ଗୁଣ କୁଳ ବୟସେ । ସମ ମିଳିବ ଭାଗ୍ୟବଶେ ॥ ୩୦
ବିଭାମଣ୍ଡପ ତୁଳପାଦେ । ବସିବେ ସୀତା ରାମ ମତେ ।
ନୋହିଲେ ଥିବ ବହୁକାଳ । ଯଥା ରେବତୀ ଲଭେ ବଳ ॥ ୩୧

---

୨୬।୨୭।୨୮—କାମର ସଂକଳ୍ପଭବ ( ମନୋଜ ) ନାମକୁ ସାର୍ଥକ କରିବାକୁ ଯୌବନରେ ସେ ବାଳା ସକ୍ଷମ ହେଲା । ଏହିପରି କଥୋପକଥନ କରି ଆକାଶରେ ଶୀଘ୍ର ଯାଉଁ ଯାଉଁ ମରାଳ ଏହିପରି ପ୍ରିୟଅପ୍ରିୟ ନେଇ ଦୁଇଟି ସ୍ତ୍ରୀଙ୍କର ଏହିପରି କଥୋପକଥନ ଶୁଣିଥିଲା । ଶଚୀଦେବୀ କହିଲେ ଜେମାର ଇଚ୍ଛା ଦେଖିବାକୁ ମୁଁ ସନ୍ଧ୍ୟାବେଳେ ଲୁଚିକରି ଯାଇଥିଲି, ସରସ୍ୱତୀ ସୁନ୍ଦର ପଣରେ ହାରି ସେ ସୁନ୍ଦରୀକୁ ବିଦ୍ୟାଲଞ୍ଚ ଦେଇ ଅଛନ୍ତି । ମରାଳ ଏହାଶୁଣି କହିଲା ତୁମ୍ଭେମାନେ ଯାହାପାଇଁ ବ୍ୟାକୁଳ ମୁଁ ତାହା ଜାଣିଲି ।

୨୯—ବାଳା ସେ କଥାରେ ଟିକିଏ ଦୃକ୍‌ପାତ କଲାନାହିଁ । ଯେ ଗାନ୍ଧର୍ବୀ ( ନବ ଯୁବତୀ ) ପୁଣି ଗନ୍ଧର୍ବ ( ଅପ୍ସରାଗର୍ଭଜାତା ) ଷୋଡ଼ଶବୟସୀ, ଇନ୍ଦ୍ର ଭଗବାନ ଦେବସତ୍ତ୍ୱ ପୁଣି ବୟୋଜ୍ୟେଷ୍ଠ ତାଙ୍କଠାରେ ଅନୁରାଗିଣୀ ହେଲେ କଣ ଶୋଭା ପାଇବ ।

୩୦—ବିଧାତା ଯେବେ ଅନୁକୂଳ ( ସହାୟ ) ଥିବ ତେବେ ଯେ ଅନୁକୂଳପୁରୁଷ ( ଯେ ଏକ ସ୍ତ୍ରୀ ଭିନ୍ନ ଅନ୍ୟଠାରେ ଅଭିଳାଷୀ ନୁହେଁ ) ଏବଂ ଶୋଭା ଗୁଣ, କୁଳ, ଓ ବୟସରେ ସମାନ ଭାଗ୍ୟବଶରୁ ସେହି ପୁରୁଷ ଏହାକୁ ମିଳିବ ।

୩୧—ବିଭାମଣ୍ଡପ ତୁଳ ପାଦରେ ସୀତା ଓ ରାମଙ୍କ ପରି ସ୍ତ୍ରୀ ପୁରୁଷ ଦୁହେଁ ବସିବେ, ଅଥବା ଯେପରି ରେବତୀ ବଳରାମଙ୍କୁ ପାଇଥିଲେ ସେହିପରି ଉତ୍ତମ-ପୁରୁଷପାଇ ବହୁକାଳ ରହିବେ ।

ଶୁଣି କହିଲେ ଦେବୀ ବେନି । ଅସୁର ଅଂଶଭବା ଘେନି ।
ଯାଇ ଦଅ ତା ସଙ୍ଗୀ କରି । ସେ ହେବେ ହୃଦ-ଶଙ୍କାହାରୀ ॥ ୩୨
କାଦମ୍ବ ଚେ ସମ୍ମତ ଭଲା । ପ୍ରମଦାଯୁଗ ଉପୁଜିଲା ।
ଶଚୀକଳା ବାଣୀକା ସେହି । କାଦମ୍ବିନୀରେ ସଙ୍ଗ ହୋଇ ॥ ୩୩
ପ୍ରଥମା ଦ୍ୱିତୀୟା ଅପରା । ପ୍ରୟୋଗେ ହୋଇବେ ରୁଚିରା ।
ଚମ୍ପାବତୀଶ କ୍ରୀଡ଼େ ଜଳେ । ମହିଷୀ ସଙ୍ଗେ ଅଛି ମିଳେ ॥ ୩୪
ସେ ସାରସର ସାରସରେ । ପୂର୍ଣ୍ଣ ସୁଖଦ ସାରସରେ ।
ଲୋକନେ ନୃପ ପଚାରିଲା । ଲୋକେଶ-ବାହନ କହିଲା ॥ ୩୫
ହେ ଦେବଦେବ କନ୍ୟା ତିନି । ସଙ୍ଗେ ମୁଁ ଅସିଅଛି ଘେନି ।
ତୁମ୍ଭ ନନ୍ଦିନୀ କି ଇତର । ବୋଲିବା ବିପୁରାଲଙ୍କାର ୩୬
ସେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ଏ ହେଲେ ତାହା ସହଚରୀ ।
କେତେ ବା ଦଶିବ ଶୋଭନ । ମନୁଜାରୁ କି ପ୍ରୟୋଜନ ॥ ୩୭

---

୩୨—ଏ କଥା ଶୁଣି ସେହି ଶଚୀ ଓ ଶାରଦା ଦୁଇ ଦେବୀ କହିଲେ ସେ ସୁନ୍ଦରୀ ଅମ୍ଭ ଅଂଶରେ ଜାତ, ତେବେ ତୁମ୍ଭେ ଯାଇ ଅମ୍ଭଙ୍କୁ ତାହାଙ୍କର ସଙ୍ଗୀ କରାଇ, ଦଅ ସେ ଆମ୍ଭ ହୃଦୟରୁ ଶଙ୍କା ହରିବ ।

୩୩ । ୩୪—ହଂସ ସେ କଥା ସମ୍ମତ ହେଲା, ଶଚୀ ଓ ଶାରଦାଙ୍କୁ ଶଚୀ କଳା ଓ ବାଣୀକା ନାମରେ ଦୁଇ ସ୍ତ୍ରୀ କରାଇ କାଦମ୍ବିନୀ ସଙ୍ଗରେ ନେଇଗଲା । ଏମାନେ ପ୍ରଥମା, ଦ୍ୱିତୀୟା, ଓ ଅପରା, ପ୍ରୟୋଗରେ ମନୋହାରିଣୀ ହେବେ ଏହା ଭାବିଲା । ଚମ୍ପାବତୀଶ ( ରାଜା ଦୀପ୍ତିସାଗର ) ରାଣୀଙ୍କ ସହିତ ଜଳରେ କ୍ରୀଡ଼ା କରୁଅଛନ୍ତି । ଏହି ସମୟରେ ସେଠାରେ ମିଳିଲା ।

୩୫—ସେ ସାର ସର ( ଶ୍ରେଷ୍ଠ ସରୋବର ) ସାରସରେ ( ପଦ୍ମରେ ପୂର୍ଣ୍ଣହେବାରୁ ସାରସରେ ) ( ହଂସମାନଙ୍କ ବିଷୟରେ ) ବିଶେଷ ସୁଖଦ ଅଟେ । ରାଜା ପୂର୍ବ ପରିଚିତ ସେହି ବ୍ରହ୍ମାଙ୍କ ହଂସକୁ ଦେଖିବା ମାତ୍ରେ ପଚାରିବାରୁ ଲୋକେଶ ବାହନ ( ବ୍ରହ୍ମାଙ୍କ ବାହନ ହଂସ ) କହିଲା ।

୩୬—ହେ ରାଜାଧିରାଜ ମୁଁ ସଙ୍ଗରେ ତିନୋଟି କନ୍ୟା ନେଇ ଅସିଅଛି, ସେମାନଙ୍କୁ ତୁମ୍ଭ କନ୍ୟାଛଡ଼ା ଅନ୍ୟ ବିପୁର ସୁନ୍ଦରୀମାନଙ୍କର ଅଲଙ୍କାର ବୋଲି କହିବା ।

୩୭—ଆପଣଙ୍କ କନ୍ୟା କୋଟିବ୍ରହ୍ମାଣ୍ଡସୁନ୍ଦରୀ ଏମାନେ ତାହାର ସହଚରୀ ହେଲେ କେଡ଼େ ସୁନ୍ଦର ଦିଶିବ, ମନୁଜାରୁ ( ମାନବୀ ସହଚରୀରୁ ) କି ପ୍ରୟୋଜନ ।

ଭୂପତି ତୃପ୍ତିକି ପାଇ । ସୁଖାରେ ସଖୀ ସମର୍ପଇ ।
କୌଶିକୀ ତଟର ବିପିନ । ଦେଲେ ବାଳାକୁ କ୍ରୀଡ଼ାସ୍ଥାନ ॥ ୩୮
କ୍ଷୀରେ ନୀର ମିଶିଲା ପରି । ସୁନ୍ଦରୀ ମାନେ ସହଚରୀ ।
ନିଜ ମନକୁ ମିଶାଇଲେ । ରହସ୍ୟ ଭାବେ ରସାଇଲେ ॥ ୩୯
ହଂସବଂଶରେ ଯେ ଠାକୁର । ପରମହଂସ ଅବତାର ।
ଯେ ମୁନି ମାନସେ ବିହରି । ଉପଇନ୍ଦ୍ର ଭଞ୍ଜ ସୁମରି ॥ ୪୦

---

## ଷଷ୍ଠ ଛାନ୍ଦ

( ବସନ୍ତକାଳ ବର୍ଣ୍ଣନା, ରାଜପୁତ୍ରର ବନବିହାର ଏବଂ
କୋଟିବ୍ରହ୍ମାଣ୍ଡସୁନ୍ଦରୀର ପ୍ରସଙ୍ଗ ଶ୍ରବଣ

ରାଗ—ବସନ୍ତ



ଅତି ରସମୟ ସମୟ ବସନ୍ତ ବିତବି ପ୍ରମେୟ ତାହାର ।
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଅଚରି ଚର୍ଚ୍ଚରୀ-ବିହାର ।
ଆଗତେ, ଆରୋହିଲା ନାଗେଶ୍ୱରକୁ ।
ଋତୁ-ରାଜ ପରି ସେ ରଜ ଘେନିଲା ଗୃହି ପ୍ରଫୁଲ୍ଲକେଶରକୁ ॥ ୧

---

୩୮—ଭୂପତି ତୃପ୍ତହୋଇ କନ୍ୟାକୁ ସଖୀମାନଙ୍କୁ ଦେଲେ, କୌଶିକୀ ନଦୀ ତଟବର୍ତ୍ତୀ ଅରଣ୍ୟ ବାଳାକୁ କ୍ରୀଡ଼ା କରିବା ପାଇଁ ଦେଲେ ।

୩୯—ଦୁଗ୍ଧ ଜଳ ମିଶିଲା ପରି ସୁନ୍ଦରୀର ମନରେ ସହଚରୀମାନେ ଆପଣା ଆପଣା ମନକୁ ମିଶାଇ ଦେଲେ, ରହସ୍ୟ କଥାରେ ବାଳାକୁ ରସାଇଲେ ।

୪୦—ଯେ ହଂସବଂଶରେ ( ସୂର୍ଯ୍ୟବଂଶରେ ) ଠାକୁର ଅଟନ୍ତି, ଯେ ପରମହଂସ (ସନ୍ନ୍ୟାସୀ) ରୂପ ଧାରଣ କରିଥିଲେ, ଯେ ହଂସ ମାନସରୋବରରେ ଖେଳିଲାପରି ମୁନିମାନଙ୍କ ମନରେ କ୍ରୀଡ଼ା କରନ୍ତି ସେହି ରାମଚନ୍ଦ୍ରଙ୍କୁ ଉପେଇନ୍ଦ୍ର ଭଞ୍ଜ ସ୍ମରଣ କରେ ।

---

୧—ବସନ୍ତ ସମୟ; ତାହାର ପ୍ରମେୟ (ସବୁକଥା) ବିତବି, ନିଜମିତ୍ର ଅନଙ୍ଗକୁ (କନ୍ଦର୍ପକୁ) ପ୍ରବଳ କରାଇ ଚର୍ଚ୍ଚରୀ ବିହାର (ଦୋଳଯାତ୍ରା ଫଗୁଖେଳ) ଆରମ୍ଭିଲା । ବସନ୍ତ ଋତୁରାଜ ହେତୁ ରାଜାଙ୍କ ପରି ନାଗେଶ୍ୱର (ହସ୍ତୀଶ୍ରେଷ୍ଠ ଓ ବୃକ୍ଷ) ରେ ଆରୋହି ପ୍ରସ୍ଫୁଟିତ ନାଗେଶ୍ୱର କେଶରକୁ ଗୃହି ତାହାର ପରାଗରେ ଫଗୁଖେଳ କଲା ।

ଛୁଞ୍ଚ-ପତ୍ର ସୂଚ ଆବରଣ ମଧ୍ୟେ ସାଧ୍ୱୀ ଗୁଣ ଯେନ ପଶିଲା ।
ନବପୁଷ୍ପବତୀ ସେବତୀ ସଙ୍ଗତେ ଅସି କ୍ରୀଡ଼ାକୁ ପ୍ରକାଶିଲା ।
ମନୋଜ, ଶତ୍ରୁପୁର ମଧ୍ୟ ଚତ୍ୱରେ ।
ଉଦ୍ଧତ କରାଇ ରତି ଅନୁରାଗ ଅବୀର ସେ ଖେଳେ ସତ୍ୱରେ । ୨
ମଧୁ ବନ୍ଧୁ ପଣେ ମଳୟ-ଶଇଳ-ନିଳୟ ଅନିଳ ବହିଲା ।
ସଲିଳେ ମଜ୍ଜି ପଦ୍ମିନୀ ଗୃହଜାତି ଦକ୍ଷିଣ ସ୍ୱଭାବେ ମୋହିଲା ।
ତା ଜାଣି, ବନ-ଭବନେ ଯେ ଅବେଶ
ତରୁ ଲତାଶ୍ରେଣୀ ତରୁଣ ତରୁଣୀ ସମସ୍ତେ ସୁମନ-ସୁବେଶ ॥ ୩
ଶୋଭା କରବୀର ରସାଳ ପୁନ୍ନାଗ ପୂଗ ମଗ୍ନ ସେ ଅଭିଳାଷେ
ସୁନାରୀ ମାଧବୀ ମଲ୍ଲିକା ସେବତୀ ଚମ୍ପାନାମ ସହ ଉଲ୍ଲାସେ ।
ଏ ଭାବେ, ବକୁଳ ସଙ୍ଗାତ ହୋଇଲେ ।
ସହଚରୀ ଦାସୀ ଅସି ତହିଁ ମିଶି ଉନ୍ନତ ପ୍ରଭା ଦେଖାଇଲେ ॥ ୪

---

୨—ସାଧ୍ୱୀ (ପତିବ୍ରତା ନାରୀ) ମାନଙ୍କର ଗୁଣ ଯେନ ଛୁଞ୍ଚପତ୍ର (କେତକୀକୁସୁମ) କଣ୍ଟକାକୀର୍ଣ୍ଣ ପତ୍ର ଆବରଣ ମଧ୍ୟରେ ପଶିଲା (ପତିବ୍ରତାମାନେ ପୁରମଧ୍ୟରେ ଲୁଚିରହିନ୍ତି) ନୂତନ ପ୍ରସ୍ଫୁଟିତ ସେବତୀ ସହିତ ରସକ୍ରୀଡ଼ା ଆରମ୍ଭିଲା । ମନୋଜ ( କାମ ) କୁ ଶତ୍ରୁ ରୂପକ ଗୃହରେ ଅଗଣାରେ ଉଦ୍ଧତ କରାଇ ରତି (ଆସକ୍ତି) ଓ ଅନୁରାଗ ( ସ୍ନେହ ) ରୂପକ ଅବୀରରେ ବସନ୍ତ ଶୀଘ୍ର ଖେଳିଲା ।

୩—ମଧୁ (ବସନ୍ତକାଳ)ର ବନ୍ଧୁଭାବରେ ମଳୟପର୍ବତବାସୀ ଅନିଳ (ଦକ୍ଷିଣା-ପବନ ) ବହିଲା । ସଲିଳ ( ଜଳରେ ) ବୁଡ଼ି ରହିଥିବା ପଦ୍ମିନୀ ପ୍ରଭୃତି ଗୃହଜାତି ପୁଷ୍ପ, ସଲୀଳେ (କ୍ରୀଡ଼ାରେ ) ମଗ୍ନହୋଇଥିବା ପଦ୍ମିନୀ ପ୍ରଭୃତି ଗୃହଜାତ ସ୍ତ୍ରୀ ହେଲେ । ସେମାନଙ୍କୁ ଦକ୍ଷିଣ ନାୟକ (ଯେ କି ଅନେକ ସ୍ତ୍ରୀ ଠାରେ ସମସ୍ନେହୀ ) ରୂପେ ମୋହିଲା । ଏହି ଜାଣି ବନବାସୀ ତରୁଲତାମାନେ ଯୁବା ଓ ଯୁବତୀପରି ପୁଷ୍ପରେ ଭୂଷିତ ହେଲେ । ସୁମନ ( ପୁଷ୍ପ ) ।

୪—ସେହି ଇଚ୍ଛାରେ ( ଦକ୍ଷିଣନାୟକ ପରି କ୍ରୀଡ଼ା କରିବା ଇଚ୍ଛାରେ ) କନିଅର, ଆମ୍ବ, ପୁନ୍ନାଗ, ଗୁଆ, ଏମାନେ ନୂତନ ବେଶ-ଭୂଷାରେ ଶୋଭିତ ହେଲେ । ସୁନାରୀ, ମାଧବୀ, ମଲ୍ଲୀ, ସେବତୀ, ଚମ୍ପା, ଏମାନେ ସୁନାରୀ ( ଉତ୍ତମ ସ୍ତ୍ରୀ ) ପରି ସେମାନଙ୍କ ସହିତ କ୍ରୀଡ଼ାକଲେ । ଏହା ଦେଖି ବକୁଳ ସେମାନଙ୍କର ସଙ୍ଗାତ ହେଲା । ସହଚରୀ ( ହଳଦିଆ ଦାସକେରଣ୍ଟା ) ସଙ୍ଗିନୀପରି ଦାସୀ ( ନୀଳବାଣ ) ଦାସୀପରି ସେମାନଙ୍କ ସହିତ ମିଳି ଉନ୍ନତ ଶୋଭା ଦେଖାଇଲେ ।

କଲୀ ନଳୀ-କୋଷ-ମୁଠା ସ୍ଫୁଟି କର ପଲ୍ଲବ-କର ପ୍ରସୁରିଲେ ।
ମକରନ୍ଦ ଗନ୍ଧ-ପିଚକା ପରାଗ ଫଗୁ ଅବିରତେ ଖେଳିଲେ ।
ହେଲେ ଯେ, ଅରଦ୍ର ଶସ୍ୟରେ ଝଳଦ ।
କଲେ ଖଞ୍ଜନ-ରଞ୍ଜନ-ଈକ୍ଷଣକୁ କ୍ଷଣକୁ କ୍ଷଣ ଚଞ୍ଚଳତ ॥ ୫

ବର୍ଣ୍ଣ ଅବ୍ୟକ୍ତରୁ ହାରିତ କନକ-କଙ୍କଣ ନିଃସ୍ୱନେ ଦଶିଲେ ।
ମତ୍ତ ଭୃଙ୍ଗଶ୍ରେଣୀ ବାଜଣୀ କିଙ୍କିଣୀ ରଣରଣ ପଦ ଘୋଷିଲେ ।
ଏଥକୁ, ମାନ ରହିଲା ବିବେଚନା ।
ପିକ କୁହୁକୁହୁ ଲୋକ ହୁଁ ହୁଁ ହୁଁ ହୁଁ କଲେ ଉଚ୍ଚ ବଚ ରଚନା ॥ ୬

ବିକାଶ ହୋଇଲେ କିଂଶୁକ ସାଧୁ ଯେ ପୂର୍ବ ବିଭୂତିକି ତେଜିଲେ ।
ଛୁରିକ କାରିତ କାଷ୍ଠ-କଠୋରାଙ୍ଗ ଉତ୍‌ଫୁଲ୍ଲ ପୁଲକ ଭଜିଲେ ।
ତା ଦେଖି, ଦୀନ ହୃଷ୍ଟପୁଷ୍ଟ ଲଭିଲେ ।
ଉଡ଼ି ପଡ଼ିଲା ବିରାଜମାନରଜ ବଶେ କେତେ ଅଙ୍ଗ ଶୋଭିଲେ ॥ ୭

---

୫—ପୁଷ୍ପିତ ବୃକ୍ଷସବୁ କଢ଼ୀରୂପକ ନଳକୋଷ (ପିଚକାନଳୀ)ରେ ପୁଷ୍ପଗୁଚ୍ଛରୂପ ହସ୍ତମୁଠା ପ୍ରକାଶ କରି ପତ୍ର ରୂପ ହସ୍ତ ଗୁଳିଲେ । ମକରନ୍ଦ ( ପୁଷ୍ପମଧୁ ) ରେ ସୁଗନ୍ଧ ଜଳରେ ପିଚକା ଏବଂ ପୁଷ୍ପଧୂଳିରେ ଅବିର ଖେଳିଲେ । ଏବଂ ଓଦାଦେହରେ ଶୋଭା ପାଇଲେ । ସ୍ତ୍ରୀ ମାନେ ପିଚକା ଖେଳବେଳେ ଖଞ୍ଜନନୟନକୁ ଚଞ୍ଚଳ କଲାପରି ବୃକ୍ଷମାନଙ୍କରେ ଖଞ୍ଜନପକ୍ଷୀ ଉଡ଼ିବାରୁ ସେ ଶୋଭା ପ୍ରକାଶିଲା ।

୬—ପିଚକାଜଳରେ ନାଲି ହୋଇ ନିଜରଙ୍ଗରେ ପ୍ରକାଶ ପାଉ ନ ଥିବା କନକ କଙ୍କଣମାନେ ହାରିଯାଇ ଚୁପ ହୋଇ ରହିଲାପରି କନକ ( ଚମ୍ପକ ) ବୃକ୍ଷମାନେ ଦେଖାଗଲେ । ଉନ୍ମତ୍ତ ଭ୍ରମରମାନେ କିଙ୍କିଣୀ ( କଟିସୁତା ) ବାଜେଣୀ ପରି ରଣ ରଣ ପଦକୁ ଘୋଷିଲେ । ସେଠାରେ ଏଥକୁ କଥା ଅଧିକ ବିଚାର କରିବାକୁ ରହିଲା ଯେ ଲୋକମାନଙ୍କର ହୁଁ କାର ଶବ୍ଦ ପରି ପିକଙ୍କର କୁହୁ ଶବ୍ଦ ଉଚ୍ଚରେ ରଚିତ ହେଲା ।

୭—ପଲାଶଫୁଲ କଢ଼ିବେଳେ ପାଉଁଶିଆ ଦିଶୁଥାଏ, ଫୁଟିଲେ ଲାଲ ହୁଏ ଅତଏବ ସେମାନେ ସାଧୁପୁରୁଷପରି ବିଭୂତି ବୋଲି ହୋଇଥିଲେ, ବସନ୍ତ ଆସିବାରୁ ତାକୁ ଛାଡ଼ି ଅବିର ରଙ୍ଗହେଲେ । ଛୁରିଅନାର ଦେହ କାଷ୍ଠପରି କଠୋର, ତେଣୁ ସେମାନେ ଶବର ପରି, ସେ କଠୋର ଦେହରେ ମଧ୍ୟ ରୋମାଞ୍ଚ ହେଲାପରି ପୁଷ୍ପ ପ୍ରକାଶ ପାଇଲା । ତାହାଦେଖି ଦୀନ ଦୁଃଖୀମାନେ ମଧ୍ୟ ହୃଷ୍ଟ-ପୁଷ୍ଟହେଲେ, ଫଗୁଖେଳ ବେଳେ ଦରିଦ୍ର ମାନଙ୍କଉପରେ ଅବିର ଉଡ଼ି ପଡ଼ିଲାପରି କେତେ ପରାଗ ହୀନବୃକ୍ଷ-ସବୁ ଅନ୍ୟ ବୃକ୍ଷରୁ ଉଡ଼ି ଆସିଥିବା-ରେଣୁରେ ଶୋଭିତ ହେଲେ ।

ନବମାଳିକା ନବବାଳିକା ଏକା ବର୍ଣ୍ଣେ ଭେଦ ଅଛି ମାତର ।
ବାମା ହୁଅଇ 'ବିପରୀତେ ବୋଲନ୍ତେ ବାସ ଆଶ୍ରୟ ନିରନ୍ତର ।
    ମୁକୁଳ, ବତୀ ଭାବ ଯେଣୁ ଗୃହୀତ ।
ଖେଳ ଉଦ୍ୟମରେ ଧବ ସମୀପରେ ଶୁକ-ବାକ୍ୟେ ଗୂଢ଼ ବାହାତ ॥ ୮
ସେ ରଙ୍ଗବଶ ଯେ ହୋଇଲେ ଅଶୋକ ସ୍ତବକ-ଉରଜ ଦର୍ଶାଇ ।
ନଭ-ସ୍ଥିତ ଛତ୍ର ସେ ଲୀଳାରହସ୍ୟ ଚରିତେ ଦ୍ବିରତ ରସାଇ ।
    ସାରଥି ରଥୀ ମାନସ ବଳାଇଲେ ।
ପ୍ରାତଃ ଦିବସାନ୍ତ ଅରୁଣ କରିଇ ଦୁହେଁ ଅରୁଣ ବୋଲାଇଲେ ॥ ୯
ସ୍ନେହ ପୂର୍ଣ୍ଣରେ ଚନ୍ଦ୍ର ଚନ୍ଦ୍ର-ଚୂର୍ଣ୍ଣରେ ଖେଳିଲେ ତାରାଳୀ ସଙ୍ଗତେ ।
ତ୍ରିଯାମା ରାମା ଶ୍ୟାମା ଅତଶପୂରେ କସ୍ତୁରିକା ଦଳି ଫିଙ୍ଗନ୍ତେ ।
    ସେ ଧୂଳି, ସେହି ଲେଉଟାଇ ମାଇଲେ ।
ନିଃଶଙ୍କେ ଚନ୍ଦ୍ରିକା ଅଙ୍କକରି ଅଙ୍କେ ଲୀଳା ବିଳାସେ କି ଥୋଇଲେ ॥ ୧୦

---

୮—ନବମାଳିକା (ନିଆଳୀ) ନବବାଳିକା ପରି କେବଳ ଗୋଟିଏ ବର୍ଣ୍ଣରେ ପ୍ରଭେଦଅଛି । ମାଳିକାର "ମା" ବାଳିକାର "ବା" ଏ ଦୁଇଅକ୍ଷରକୁ ଓଲଟ ପଢ଼ିଲେ "ବାମା" ହେଲା ଅର୍ଥାତ୍ ନୂତନ ସ୍ତ୍ରୀତ୍ୱକୁପାଇଲା, ସ୍ତ୍ରୀତ୍ୱଲଭିବାପରେ ବାମାମାନେ ସର୍ବଦା ବାସ (ବସ୍ତ୍ର)କୁ ଆଶ୍ରୟ କରନ୍ତି, ଏ ବାସ (ବାସନା) କୁ ଆଶ୍ରୟ କଲା । ମୁକୁଳବତୀ (କଳିକାବତୀ ଓ ଅଦୃଷ୍ଟରଜା ସ୍ତ୍ରୀ) ଭାବକୁ ଗ୍ରହଣ କରିବାରୁ ନିକଟବର୍ତ୍ତୀ ଧବବୃକ୍ଷ ଧବ (ପତି) ପରି ତାହାସହିତ ଖେଳିବା ଇଚ୍ଛାରେ ଶୁକବାକ୍ୟ ଛଳରେ ଗୂଢ଼ବାଣୀ ପ୍ରକାଶିଲା ।

୯—ଅଶୋକ ପୁଷ୍ପଗୁଚ୍ଛ ରୂପକ ସ୍ତନ ଦେଖାଇ ସେ ଖେଳରେ ମାତିଲେ । ସେ କ୍ରୀଡ଼ା ରହସ୍ୟ ଦେଖି ଆକାଶସ୍ଥ ସୂର୍ଯ୍ୟାଦି ଦେବତାମାନେ ସେ କ୍ରୀଡ଼ାରେ ମନ ମଜ୍ଜାଇଲେ । ରଥୀ (ସୂର୍ଯ୍ୟ) ଓ ତାହାଙ୍କର ସାରଥି ଦୁହେଁ ଫଗୁ ଖେଳରେ ମନ ବଳାଇ ସକାଳ ଓ ସନ୍ଧ୍ୟାକୁ ଲାଲ କରିଇ ନିଜେ ମଧ୍ୟ ଲାଲ ହେଲେ, ଅରୁଣନାମକୁ ଧଇଲେ ।

୧୦—ଚନ୍ଦ୍ର ସ୍ନେହପୂର୍ଣ୍ଣ ହୋଇ ତାରାମାନଙ୍କ ସଙ୍ଗରେ ଚନ୍ଦ୍ରଚୂର୍ଣ୍ଣ (କର୍ପୂରଧୂଳି)ରେ ଖେଳିଲେ । ଶ୍ୟାମଳବର୍ଣ୍ଣା ତ୍ରିଯାମା (ରାତି) ରୂପା ରାମା (ସ୍ତ୍ରୀ) କସ୍ତୁରୀକୁ ଉତ୍ତମରୂପେ ଚୂନାକରି ଫିଙ୍ଗିବାରୁ ଚନ୍ଦ୍ର କର୍ପୂର ଧୂଳିକୁ ଲେଉଟାଇ ଫିଙ୍ଗିଲେ । ରାତି ଓ ଚନ୍ଦ୍ର ଦୁହେଁ ନିର୍ଭୟରେ ନିଜ ନିଜ ଅଙ୍କେ (ଦେହରେ) କ୍ରୀଡ଼ା କୌତୁକରେ ତାହାକୁ ଧାରଣ କଲେ । ଚନ୍ଦ୍ର କସ୍ତୁରୀକୁ କଳଙ୍କରୂପେ ରାତି କର୍ପୂରକୁ ଚନ୍ଦ୍ରିକା ରୂପେ ଧଇଲେ ।

ମିଳିଣ ଯେ ଗନ୍ଧମାଦନ କାନନଉଦରେ ଚତୁର-ଆନନ
ଗୁଣ-ବିଶାରଦା ସାରଦା ସାବିତ୍ରୀ ସଙ୍ଗେ ରଙ୍ଗେ ତୋଷ ଜନନ ।
ଶ୍ରୀଖଣ୍ଡ, ଅଚଳେ ଆଖଣ୍ଡଳ ଚଳେ ।
ଘେନି ଇନ୍ଦ୍ରାଣୀ ଗନ୍ଧର୍ବ ଅପସରୀ ସେ ଉତ୍ସବେ ମତ୍ତ ଚଞ୍ଚଳେ ॥ ୧୧
କିନ୍ନରୀ କିନ୍ନର ଘେନି ଧନେଶ୍ୱର ଚୈତ୍ରରଥରେ ବିଳସେ ।
କ୍ଷେତ୍ରମାନଙ୍କେ ଉମାଧବ ମାଧବ ପ୍ରତିମାରୂପରେ ଲୀଳ ସେ ।
ବିମାନ, ଆରୋହି ସେ ରଙ୍ଗେ ଭ୍ରମିତ ।
ସେ ବିଳାସ କୈଳାସ ବୈକୁଣ୍ଠେ ହୋଇଥିବ ଶତ ରମିତ ॥ ୧୨
ମୋହି ପାରଇ ଜଗତ ଯେଉଁ ଗୀତ ଆଲିଙ୍ଗିତ ସ୍ୱର ସପତ ।
ସ୍ତମ୍ଭିତ ଲୋଭିତ ଯହିଁରେ ପନ୍ନଗ ଅନଙ୍ଗ ତହିଁତ ଗୁପତ ।
ବିହଗ, ପଶୁ ସ୍ୱରେ ସ୍ୱରେ ଧରିଲେ ।
ପ୍ରଶସ୍ତ କରି ବସନ୍ତ ରାଗ ଧରି ସର୍ବଲୋକେ ତାହା ଗାଇଲେ ॥ ୧୩
ସେ କର୍ଣ୍ଣକୁହରେ ପ୍ରବେଶ ବିହରେ ଅବିରତେ ରହି ହୃଦରେ ।
କଲେ ଉଦ୍ଦୀପନ ଆଲମ୍ବନ ଅବଲମ୍ବନ ସେ ଅତି ଆଦରେ ।
ସମ୍ଭୋଗ, ବିପ୍ରଲମ୍ଭ ବେନି ଶୃଙ୍ଗାର ।
ଯୋଗୀ ବିଯୋଗୀ ବିରଚନ କରନ୍ତି ଭାବି ବେଗେ କେଳି ଆଦର ॥ ୧୪

---

୧୧—ଚତୁର ଆନନ (ବ୍ରହ୍ମା) ଗନ୍ଧମାଦନ କାନନ ମଧ୍ୟରେ ମିଳି ଗୁଣବିଶାରଦା (ଗୁଣବିଚକ୍ଷଣା) ସାରଦା (ସରସ୍ୱତୀ) ଓ ସାବିତ୍ରୀଙ୍କ ସଙ୍ଗରେ ନାନା-ରଙ୍ଗରେ ଆନନ୍ଦ ଜନ୍ମାଇଲେ । ଆଖଣ୍ଡଳ (ଇନ୍ଦ୍ର) ଶ୍ରୀଖଣ୍ଡଅଚଳେ (ମଳୟପର୍ବତକୁ) ଇନ୍ଦ୍ରାଣୀଙ୍କୁ ଘେନି ଚଳିଲେ । ଗନ୍ଧର୍ବ ମାନେ ଓ ଅପ୍ସରାମାନେ ସେ ଉତ୍ସବରେ ପ୍ରମତ୍ତ ହୋଇ ଚଞ୍ଚଳ ମଳୟାଚଳକୁ ଗଲେ ।

୧୨—ଧନେଶ୍ୱର (କୁବେର) କିନ୍ନର ଓ କିନ୍ନରୀମାନଙ୍କ ସହ ଚୈତ୍ର ରଥରେ (ତାଙ୍କର ନିଜ ଉଦ୍ୟାନରେ) ବିହରିଲେ । ଉମାଧବ (ଶିବ) ମାଧବ (ବିଷ୍ଣୁ) ସେ କ୍ରୀଡ଼ାରେ ଲୁବ୍ଧହୋଇ ବିମାନ ଚଢ଼ି ପ୍ରତିମାରୂପରେ କ୍ଷେତ୍ରମାନଙ୍କରେ ଭ୍ରମଣ କଲେ । ସେ ବିଳାସ କୈଳାସରେ ଓ ବୈକୁଣ୍ଠରେ କିପରି ମନୋହର ହୋଇ ନ ଥିବଟି ।

୧୩-୧୪-ଯେଉଁ ଗୀତ ବୀଣାର ସପ୍ତ ସ୍ୱରକୁ ଆଲିଙ୍ଗନ କରିଥିବାରୁ ଜଗତକୁ ମୋହି ପାରେ, ଯେଉଁ ଗୀତ ଶୁଣି ପନ୍ନଗ (ସର୍ପ) ମାନେ ସ୍ତମ୍ଭିତ ହୋଇ ରହି ରହିଲେ, ତହିଁରେ କାମ ଗୁପ୍ତଭାବେ ରହିଅଛି । ବିହଗ (ପକ୍ଷୀ) ମାନେ ଓ ପଶୁମାନେ ନିଜ ୨ ସ୍ୱରରେ ତାହାକୁ ଗାନ କଲେ । ସମସ୍ତ ଲୋକେ ତାହାକୁ ପ୍ରଧାନ କରି ବସନ୍ତ ରାଗରେ ଗାଇଲେ । ସେଗୀତ କର୍ଣ୍ଣରେ ପ୍ରବେଶକରନ୍ତେ ହୃଦୟରେ ସର୍ବଦା ଉଦ୍ଦୀପନ (ଗୀତାଦିଶ୍ରବଣରେ ରସଭାବ)

ଯହିଁରେ ହୁଅଇ ଇନ୍ଧନ ଚନ୍ଦନ ବନ୍ଦନ ତାପ ବିନାଶରେ ।
ଲେଖୀ ଲେଖନ୍ତି ସ୍ୱର୍ଗଭୋଗ ମଧ୍ୟରେ ଅତ୍ୟନ୍ତ ସୁଖ ମାନସରେ ।
କୁମର, ବର ଏ ଋତୁ ଉପଗତେ ।
ଅଭିରାମ ଆରାମକୁ ଗମେ ବେନି ମିତ୍ର ଶତପୁଂସ ସଙ୍ଗତେ ॥ ୧୫
ତର୍କବାଦ ବାଗୀଶ୍ୱର ନାମ ବେନି କବି ଭେଟାଇ ପ୍ରତିହାରୀ ।
ପୁରୋଧା ସୁତ ପୁଷ୍ପକାଳ ପ୍ରଶଂସି ହୋଇବାରୁ ବନବିହାରୀ ।
ତରୁଏ ଏଥିକି ସୁମନେ ହସନ୍ତି ।
ତୁହିନକାଳରେ ତାହି ବୋଲି ପିକେ ଅତିଜରେ ଯେଣୁ ଭାଷନ୍ତି ॥ ୧୬
ନିକଟ ପ୍ରକଟ ସରସୀ ଦେଖାଇ ସଚିବ-ନନ୍ଦନ ଭାଷୁଛି ।
ନୂତନା ପଦ୍ମ-ମୁଖୀ ଅଳି ବିକାଶି ଏହି କଥା କହି ଆସୁଛି ।
ଯେ ଜଡ଼, ସେକି ମଧୁସଙ୍ଗେ ଲଷିତ ।
ସୀରମଣି ଭଣି ଗ୍ରୀଷମ ବରଷା ଶରଦେ କି ନିନ୍ଦା ବାଞ୍ଛିତ ॥ ୧୭

---

ଆଲମ୍ବ ( ପିକ, ଭୃଙ୍ଗଧ୍ୱନି ଶ୍ରବଣରୁ ଏବଂ ଚନ୍ଦ୍ରକିରଣ ଓ ମଳୟପବନ ସ୍ପର୍ଶରୁ ମନ ଶୃଙ୍ଗାରସ୍ଥିତ ହେବା ) ଅବଲମ୍ବନ ( ନାୟିକାଦି ) ଏମାନେ ଅତି ଆନନ୍ଦରେ ବିହାର କଲେ । ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ( ବିଚ୍ଛେଦ ଶୃଙ୍ଗାର ) ଦୁହେଁ ବେଳରେ ଆଦର ଭାବ ସଂଯୋଗୀ ଓ ବିଯୋଗୀ ରଚନା କଲେ ।

୧୫— ଯେଉଁ ବସନ୍ତ କାଳରେ ଚନ୍ଦନ କାଠ ତାପ ନାଶ କରିବାରୁ ଆଦରଣୀୟ ହୁଏ ଲେଖୀ ( ଦେବତା ) ମାନେ ସ୍ୱର୍ଗଭୋଗରେ ରହି ପ୍ରଫୁଲ୍ଲଚିତ୍ତରେ ଲେଖୀ (ପ୍ରଣୟପତ୍ର) ଲେଖନ୍ତି । ସେହି ବସନ୍ତ ଋତୁ ଆସିବାରୁ କୁମାର ଶ୍ରେଷ୍ଠ ଦୁଇମିତ୍ର ଓ ଅଭିଜ୍ଞ ପୁରୁଷ ସହ ମନୋହର ଉପବନକୁ ଗଲେ । ଆରାମ ( ଉପବନ ) ।

୧୬—ପ୍ରହରୀ ତର୍କବାଦ ଓ ବାଗୀଶ୍ୱର ନାମରେ ଦୁଇ କବିଙ୍କୁ ଭେଟ କରାଇଲା । ପୁରୋହିତ ପୁତ୍ର ବିଦ୍ୟାନିଧି ବନବିହାରୀ ହୋଇ ଥିବାରୁ ବନଶୋଭା ଦେଖି ବସନ୍ତକୁ ପ୍ରଶଂସା କରି କହିଲା । ପିକମାନେ ତୁହିନକାଳ ( ଶୀତକାଳ ) କୁ ତାହି ( ତୁ, ହୀନ ) ବୋଲି ଅତି ଉଚ୍ଚରେ କହୁଛନ୍ତି । ଏଥିପାଇଁ ବୃକ୍ଷ-ମାନେ ସୁମନେ ( ପୁଷ୍ପପ୍ରକାଶ ଦ୍ୱାରା ) ହସୁଅଛନ୍ତି ।

୧୭—ନିକଟବର୍ତ୍ତୀ ସରୋବରକୁ ଦେଖାଇ ମନ୍ତ୍ରୀପୁତ୍ର ଯଶୋବନ୍ତ କହିଲା ଏ ପୁଷ୍କରିଣୀ ନୂତନ ସ୍ତ୍ରୀପରି ପଦ୍ମମୁଖକୁ ଅଳିମାନଙ୍କ ଦେଖାଇ ଏହି କଥା କହୁଛି ଯେ ଜଡ଼ ( ଶୀତକାଳ ) ଜଡ଼ (କାକର) ସେ କିପରି ମଧୁ ( ବସନ୍ତକାଳ ) ମଧୁ (ମହୁ) ସଙ୍ଗେ ସମାନ ହେବ । ଏହାଶୁଣି ସୀରମଣି କହିଲା ତେବେ ଗ୍ରୀଷ୍ମାଦି ଅନ୍ୟଋତୁମାନଙ୍କୁ ବସନ୍ତ କି ନିନ୍ଦୁଛି ?

ଅଗ୍ରତରେ ଥିଲା ଅଦ୍ଭୁତ ପୁରୁଷ ପାଲଟିଲା ହୋଇ ଭୃଷିଲା ।
ବାଧି ବିବେକ ଅଛୁ ପଛେ ପକାଇ ଅବଧାନକୁ ନ ଆସିଲା ।
ନରେଶ, ସୁତ ସସ୍ମିତେ ଅନାଇଲା ।
ସେହି ସମୟେ ସାବଧାନ କରାଇ କବିଏ ମନ ମନାଇଲା ॥ ୧୮

ସୁରଭିପଣରେ ସୁରଭି ଗୁଣରେ ସୁରଭି-ପୁରେଶ ନନ୍ଦନା ।
ଯେମନ୍ତ ମତ୍ତକାଶିନୀଙ୍କ ସୀମନ୍ତ-ମଣିଭୂଷା ହୋଇ ବନ୍ଦନା ।
ତେମନ୍ତ, ସୁରଭି ଋତୁରେ ପ୍ରଧାନ ।
ନଦୀରେ ଗଙ୍ଗା ପୁରୁଷେ ମନସିଜ ଗଜେ ଇନ୍ଦ୍ରଗଜ ବିଧାନ ॥ ୧୯

ଶୋଭା ଅରମ୍ଭରେ ରମ୍ଭାରେ ପ୍ରୟୋଗ ବୋଧକର ଥିଲା ବୋଇଲା ।
ସେ ଅପସରୀ ବିଟପୀ-ଭାବ ଭଜି ତନୁକୁ ରମ୍ୟ ନ ପାଇଲା ।
ଯା ଶୋଭା, ଯଶ ଜଗତରେ ପ୍ରସର ।
ହାର ହାର ହୋଇ ତରଳକୁ ଘେନି ସୁର-ସରିତ ଅନୁସର ॥ ୨୦

---

୧୮—ଅଗରେ ଯାଉଥିବା ଅଦ୍ଭୁତ ପୁରୁଷ ଲେଉଟି ପଡ଼ି କହିଲା ବିଧାତା ବିଚାର କରି ଅନ୍ୟଋତୁମାନଙ୍କୁ ପଛକୁ ପକାଇ ଦେଇଅଛି, ଏ କଥା କଣ ଆପଣଙ୍କ ମନକୁ ଆସୁନାହିଁ । ରାଜପୁତ୍ର ଅଳ୍ପ ଅଳ୍ପ ହସିକରି ଚାହିଁଲା । ସେହି ସମୟରେ ଜଣେ କବି ସାବଧାନ କରାଇ ମନ ମନାଇ ଦେଲା ।

୧୯—ସୁରଭି ପୁରେଶନନ୍ଦନା [ ପୁଷ୍ପପୁରର ରାଜକନ୍ୟା ] ସୁରଭି [ ସୁନ୍ଦରୀ ] ପଣରେ ସୁରଭି [ଉତ୍ତମ] ଗୁଣରେ ଯେପରି ସ୍ତ୍ରୀମାନଙ୍କର ମସ୍ତକମଣି ହୋଇ ସୁନ୍ଦରୀମାନଙ୍କର ବନ୍ଦନୀୟା ହୋଇଅଛି, ସେହିପରି ଋତୁମାନଙ୍କ ମଧ୍ୟରେ ବସନ୍ତ, ନଦୀମଧ୍ୟରେ ଗଙ୍ଗା, ପୁରୁଷମଧ୍ୟରେ କାମ ଏବଂ ହସ୍ତୀ ମଧ୍ୟରେ ଐରାବତ ପ୍ରଧାନ, । ମତ୍ତକାଶିନୀ ସୁନ୍ଦରୀସ୍ତ୍ରୀ] ସୀମନ୍ତ ମଣିଭୂଷା [ମଣିମୟ ଶିରୋଭୂଷଣ] ମନସିଜ [କାମ] ।

୨୦—ଏକଥା ଶୁଣି ସେଠାରେ ଥିବା ବୋଧକର (ଭାଟ କହିଲା) ସେ ରାଜକନ୍ୟା କଣ ଶୋଭାରେ ରମ୍ଭାତୁଲ୍ୟ ପ୍ରୟୋଗ ହେବ । କବି କହିଲେ ସେ ରମ୍ଭା ଅପ୍ସରା ଶୋଭାରେ ଏହାଙ୍କ ସମାନ ନହେବାରୁ ବିଟପୀ (ବୃକ୍ଷ) ଭାବ ଧରି ( କଦଳୀବୃକ୍ଷରୂପେ ) ଏହାଙ୍କର ଗୋଟିଏ ଅଙ୍ଗର ( ଉରୁର ) ଶୋଭାକୁ ସୁଦ୍ଧା ସମାନ ହେଲା ନାହିଁ । ଯାହାଙ୍କର ଜଗତ୍‌ବ୍ୟାପୀ ଶୋଭା ଯଶ ସହ ଶୁକ୍ଳତାରେ ହାରି ଯାଇ ସୁରସରିତ ( ମନ୍ଦାକିନୀ ) ତରଳ ହୋଇ ହାର ରୂପରେ ଏହାଙ୍କ ଅନୁସରୁଛି ।

ଜଗଜ୍ଜୟ-ଅର୍ଥୀ ତା ବଶ ମନ୍ମଥ ମୂର୍ତ୍ତିମନ୍ତ ହେବା କାରଣ ।
ଗଜଙ୍କ ଇଚ୍ଛିଟି ଚରଣତଳରେ ଶରଣ ପଶିଲ୍ଲ ବାରଣ ।
କବିଏ, କରନ୍ତି ପ୍ରତ୍ୟୁତ୍ତର ଏସନ ।
ରବି ଏ ବୋଲେ ହୁଡ଼ିଲ ଧଡ଼ିକି ଧରି ଯେ ବସନ୍ତ-ବସନ । ୨୧
ହେ ଭଲ କହିଲ ବର କାହିଁ ଲକ୍ଷ୍ୟ ସ୍ୱକାନ୍ତିକି ଆଉ ତୁଳାଇ ।
ସେ ବେନି ବଚନ ରଚିତ ଉଚିତ ଚିତ୍ତକୁ ନେଲା ଯେ ଭୁଲାଇ ।
ଆତୁରେ ବିଷୟ ବିଷୟ ଧ୍ୱଂସନ ।
ମାଧବୀ-ମଣ୍ଡପେ ରାଜସୂଜ ବିଜେ କଲା ମନ୍ତ୍ରୀସୁତ ପ୍ରଶନ । ୨୨
ହେ ଉଭେ କହ ତୁମ୍ଭେ କେଉଁ ଦେଶରେ କବିର ଗୃତୁସ୍ୱୀ ଆଦର ।
ଯାହା କହିଲ କି ସତ ସେହିରୂପେ ଜାତ ହୋଇଅଛି ସୁନ୍ଦରୀ ।
ଶ୍ରବଣ, କିବା ଦ୍ରଷ୍ଟବ୍ୟ ସେ ଭଣିଲେ ।
ମିଥ୍ୟା ପ୍ରକାର ଚମତ୍କାର ଯେତେକ ତା ଯେନି ସତ୍ୟକୁ ଅସିଲେ । ୨୩
ନୋହିଲା ବିଶ୍ୱକର୍ମା ମୟ ପିତୁଳା ବିରଚନେ ଚିନ ଲେଖନେ ।
ସ୍ୱସମେ ସମେ ବାଲ୍ୟକାଳେ ଭାବିଲେ କେହି ନିର୍ମାଣ ଏ ବିଧନେ ।
ହେଲା ଏ, ଯୋଗେ କରନ୍ତୁ କଳ୍ପନା ।
ଏ ଅଙ୍ଗ ସେ ଅଙ୍ଗ ଏସନ ତେସନ ପ୍ରସଙ୍ଗ କଳ୍ପିବା କଳ୍ପନା । ୨୪

---

୨୧—ମଦନ ଜଗତ ଜିଣିବାକୁ ଇଚ୍ଛାକରି ମୂର୍ତ୍ତିମାନ ହେବାକୁ ତାହାର ବଶ ହେଲା । ଗଜଙ୍କ ସମାନ ହେବାପାଇଁ ଐରାବତ ଏହାଙ୍କର ଚରଣ ତଳରେ ହସ୍ତୀଗଣରୂପେ ଶରଣ ପଶିଲା । ଜଣେ କବି ଏହିପରି ପ୍ରତ୍ୟୁତ୍ତର କରନ୍ତେ ଅନ୍ୟକବି କହିଲା ତୁମ୍ଭେ ହୁଡ଼ିଲ, ବସନ୍ତଋତୁ ସୁନ୍ଦରୀର ବସନର ବସନ୍ତ ଧଡ଼ିରୂପେ ଶରଣ ପଶିଲା ।

୨୨—ହେ କବି ଭଲ କଥା କହିଲ, ସେ ସୁନ୍ଦରୀ ତୁଳନାରେ ବର କାହିଁ ବୋଲି ମନ୍ତ୍ରୀପୁତ୍ର ପଚାରନ୍ତେ କବିଙ୍କ ଉତ୍ତରରେ ଉଚିତଭାବରେ ରଚିତ କଥାସବୁ ରାଜପୁତ୍ରଙ୍କର ମନକୁ ଭୁଲାଇ ନେବାରୁ ରାଜପୁତ୍ର ସେ ବିଷୟରେ ଆତୁର ହୋଇ ବିଷୟ ବାସନା ଧ୍ୱଂସ କଲେ ଏବଂ ମାଧବୀମଣ୍ଡପରେ ବିଜେକଲେ, ମନ୍ତ୍ରୀପୁତ୍ର ପ୍ରଶ୍ନକଲେ ।

୨୩—ହେ କବିମାନେ ଆପଣ କେଉଁ ଦେଶର କବି, ଆପଣ ଯା କହିଲ ଏହା କଣ କବିତାର ଗୃତୁସ୍ୱୀ, କି ସତ ସେହିରୂପେ ସୁନ୍ଦରୀ ଜନ୍ମିଛି । ଏହାକ'ଣ ଶୁଣିଛ ବା ଦେଖିଛ । ସେ ଦୁହେଁ କହିଲେ ଯେଉଁସବୁ ଆଶ୍ଚର୍ଯ୍ୟ କଥା ମିଛପରି ପ୍ରତୀତ ହୁଏ ସେ ସବୁ ତା ଯୋଗୁଁ ସତ ହେଲା ।

୨୪—ବାଲ୍ୟାବସ୍ଥାରେ ସେ ସୁନ୍ଦରୀର ସମାନରେ ଗୋଟିଏ ପିତୁଳା ନିର୍ମାଣ କରିବାକୁ ବିଶ୍ୱକର୍ମା ଚେଷ୍ଟାକଲେ କିନ୍ତୁ ଠିକ୍ ହେଲା ନାହିଁ, ମୟ (ଅସୁର)

ଯୌବନ ଏବେ ସେବନ କର ଭାଳୁ ପ୍ରଭୃମାନଙ୍କୁ ଯେ ବଢ଼ାଇ ।
କବି ଭାରତୀ ଅଗୋଚର ମାର୍ଗରେ କବି ଭାରତୀକ କଢ଼ାଇ ।
ଜାତକ, ସ୍ଥାମା ଘେନି ଅମ୍ଭ ଭରସା ।
ଗୃତକ ସ୍ଥାନେ ଯଥା ଥିଲା ମୁଦିର ପ୍ରଭଦନ କରେ ବରଷା ॥ ୨୫
ଯେଉଁ କାଶୀକ୍ଷେତ୍ର ପରମ ପବିତ୍ର ତ୍ରିନେତ୍ର ମନ୍ତ୍ରଦ କାରଣେ ।
ମୋକ୍ଷ ଦାନରେ ସେ ଦକ୍ଷିଣ ଦକ୍ଷିଣକର୍ଣ୍ଣ ଊର୍ଦ୍ଧ୍ୱ ହୁଏ ମରଣେ ।
ସେ ଧନୁ, କ୍ଷେତ୍ର ଶର ତହିଁ ତାରକ ।
ଗୁଣ କୋଟି ସ୍ଥାନ ଧନ୍ୱୀ ଧୂର୍ଜଟି ଯେ ପାପ-ପରକୁ ବିଦାରକ ॥ ୨୬
ମଦ ମଜ୍ଜନ ମୃତଜନ ରଞ୍ଜନ ବୃଷାଞ୍ଜନ ରୂପ ବହିଲ ।
ଦୁଷ୍କୃତ ଆଚରଣେ ହେଲା ସୁକୃତ ପୁରାଣିକୃତରେ ରହିଲା ।
ଭୈରବୀ, ବିନା ଦଣ୍ଡ ନାହିଁ ଯହିଁରେ ।
ଯମର ଅମର ବାଞ୍ଛିତ ଅଟଇ ସେହି ସ୍ୱର୍ଗ ସିନା ମହୀରେ ॥ ୨୭

---

ଶିଳ୍ପୀ ମଧ୍ୟ ଶଙ୍କରେ ଲେଖି ପାରିଲେ ନାହିଁ ତହୁଁ ଭାବିଲେ ଏ କିପରି ବିଶେଷ ( ବ୍ରହ୍ମାଙ୍କ ଦ୍ୱାରା ) ନିର୍ମିତ ହେଲା । ବୋଧହୁଏ ବ୍ରହ୍ମା ଏ ଅଙ୍ଗ ସେ ଅଙ୍ଗ ନିର୍ମାଣ ଓ ଏଣୁ ତେଣୁ କରି ସଂଯୋଗ କରୁ କରୁ ଦୈବ-ଯୋଗରେ ଏପରି ପ୍ରସନ୍ନମୂର୍ତ୍ତି ହୋଇଗଲା । କିନ୍ତୁ ହିଚରିତ୍ର ଏପରି ନିର୍ମାଣ କରିବା ଅଳ୍ପ କଥା ନୁହେଁ ।

୨୫—ଏବେ ସଯୌବନ ସେ ସୁନ୍ଦରୀକୁ ଆଶ୍ରୟ କରି ତାହାର ଦୀପ୍ତିକୁ ବଢ଼ାଇବାରୁ କବି (ଶୁକ୍ର)·ଭାରତୀ (ସରସ୍ୱତୀ) ଏ ଦୁହିଙ୍କର ଅଗୋଚର ବର୍ଣ୍ଣନା ମାର୍ଗରେ କବିମାନଙ୍କର ବାକ୍ୟକୁ ବାଟ କଢ଼ାଇଲା । କେବଳ ତାହାର ଜନ୍ମ-ସ୍ଥାନରେ ଅମ୍ଭର ଜନ୍ମ ହୋଇଥିବାରୁ ବର୍ଣ୍ଣନା କରିବାକୁ ଭରସା ହେଉଅଛୁ । ଗୃତକଥିବା ସ୍ଥାନରେ ମୁଦିର (ମେଘ) ଯେପରି ପ୍ରଭଦନରେ ବରଷା କରେ, ସେହିପରି ଅମ୍ଭେ ସେହି ସ୍ଥାନରେ ଥିବାରୁ ସୁନ୍ଦରୀର ସୌନ୍ଦର୍ଯ୍ୟରସ କିଛି କିଛି ହୃଦୟଙ୍ଗମ କରିଅଛୁଁ ।

୨୬—ଯେଉଁ କାଶୀକ୍ଷେତ୍ର ମହାଦେବ ମନ୍ତ୍ରଦାତା ହେବାରୁ ଅତି ପବିତ୍ର ସ୍ଥାନ, ଏବଂ ମୁକ୍ତିଦେବା ବିଷୟରେ ଅତି ଦକ୍ଷିଣ (ନିପୁଣ) ଯେଉଁଠାରେ ମରଣ-କାଳରେ ଦକ୍ଷିଣ କର୍ଣ୍ଣ ଉପରକୁ ହୁଏ । ସେ କାଶୀକ୍ଷେତ୍ର ଧନୁ, ଶିବତାରକ-ମନ୍ତ୍ର ତହିଁରେ ଶର, କୋଟିଏ ଲିଙ୍ଗର ସ୍ଥାନ ଗୁଣ, ଧୂର୍ଜଟି ( ମହାଦେବ ) ସେ ଧନକୁ ଧରି ପାପରୂପୀ ଶତ୍ରୁମାନଙ୍କୁ ବିଦାରଣ କରୁଅଛୁ । ଧନ୍ୱୀ (ଧନୁର୍ଦ୍ଧାରୀ) ପର (ଶତ୍ରୁ)

୨୭—ଯେଉଁଠାରେ ମଦ୍ୟକୁଣ୍ଡରେ ବୁଡ଼ିବା ଲୋକ ମଲାପରେ ସୁନ୍ଦରରୂପେ ବୃଷାଞ୍ଜନ (ଶିବ) ସ୍ୱରୂପ ଧାରଣ କଲା, ଏପରି ପାପ ଆଚରଣରେ ମଧ୍ୟ

ସେ ମୁକ୍ତିଦପୁରେ ମଣିକର୍ଣ୍ଣିକାରେ ତ୍ରିବର୍ଗ ଫଳରେ ସୋପାନ ।
ମୂର୍ଖମୁଖରେ ସଂସ୍କୃତ ଜାତ ଯେଉଁ ତୀର୍ଥ ପୟପାନ ।
ବରଦା, ସାରଦା ଅନ୍ନପୂର୍ଣ୍ଣା ଦେବୀ ।
ଅଛନ୍ତି ବାଞ୍ଛନ୍ତି ବିଦ୍ୟା ତୁରେ ବିଦ୍ୟା କ୍ଷୁଧାତୁରକୁ ଅନ୍ନ ଦେବି ॥ ୨୮
ଜପ ନାହିଁ ବକ୍ର-ତୁଣ୍ଡ ବିହୀନରେ ଆମ ମନ୍ତ୍ରରେ ତେବେଁ ଅଜି ।
ତପ ନାହିଁ ଆନ କାମନାରେ ସେହି ବାଳା ବର୍ଣ୍ଣନାକୁ ଧିଆଉଁ ।
ପଠ ହେ, ମଠରୁ ଆଉ କି କାରଣ ।
ବୀର ବୋଲେ ହୃଦକୁମୁଦକୁ ମୋଦୁ ବଧୂ କାନ୍ତି ବିଧୁ-କିରଣ ॥ ୨୯
ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ସେହିତ ।
ମହାଗୁରୁ ଭାବୁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ବିହିତ ।
ହୋଇଲି, କବି ଉପଇନ୍ଦ୍ର ଭଞ୍ଜର ।
କାମ-ଦାୟକ ବିନାୟକ ଜନକ ଏ ଭବରେ ପୁଣି ଜର୍ଜର ॥ ୩୦

---

ପୁଣ୍ୟ ହେଲା ସେ ପୁଣି ପୁରାଣରେ ଲେଖା ହୋଇ ରହିଲା । ଯେଉଁଠାରେ ଭୈରବୀ (ଦୁର୍ଗା) ଦଣ୍ଡ ଛଡ଼ା ଯମଦଣ୍ଡ ନାହିଁ, ଦେବବାଞ୍ଛିତ ସେହିସ୍ଥାନ ପୃଥିବୀରେ ସ୍ୱର୍ଗତୁଲ୍ୟ ଅଟେ ।

୨୮—ସେ ପୁର ମୁକ୍ତିଦାତା, ମଣିକର୍ଣ୍ଣିକା ତୀର୍ଥରେ ତ୍ରିବର୍ଗ (ଧର୍ମ, ଅର୍ଥ କାମ,) ଫଳ-ପ୍ରାପ୍ତି ବିଷୟରେ ସୋପାନ (ପାହାଚ) ରହିଅଛି । ସେ ତୀର୍ଥଜଳ ପାନକଲେ ମୂର୍ଖ ମୁଖରୁ ସଂସ୍କୃତ ବାହାରେ । ସେଠାରେ ବରଦାୟିନୀ ହୋଇ ସାରଦା (ସରସ୍ୱତୀ) ଓ ଅନ୍ନପୂର୍ଣ୍ଣା ରହିଅଛନ୍ତି । ସେ ବିଦ୍ୟାର୍ଥୀକୁ ବିଦ୍ୟା ଓ କ୍ଷୁଧାତୁରକୁ ଅନ୍ନଦେବାକୁ ସର୍ବଦା ଇଚ୍ଛା କରନ୍ତି ।

୨୯—ସେ ସ୍ଥାନରେ ରହି ଆମ୍ଭେମାନେ ବକ୍ରତୁଣ୍ଡ (ଗଣେଶ) ମନ୍ତ୍ର ଛଡ଼ା ଅନ୍ୟ ମନ୍ତ୍ରରେ ଜପ କରୁନା, ବା ସେ ସୁନ୍ଦରୀର ବର୍ଣ୍ଣନାକୁ ଧ୍ୟାନ କରିବା ଭିନ୍ନ ଅନ୍ୟ କାମନାରେ ତପସ୍ୟା କରୁନା । ଏହା ଶୁଣି ରାଜପୁତ୍ର କହିଲେ, ଆଉ ବିଳମ୍ବରେ କି ପ୍ରୟୋଜନ, ଶୀଘ୍ର ପଢ଼, ସେ ସ୍ତ୍ରୀର କାନ୍ତି ଚନ୍ଦ୍ରକିରଣପରି ହୃଦ କୁମୁଦକୁ ଆମୋଦ ଦେଉ ।

୩୦—ଯେ ସଂସାରରେ ତାରକ ମନ୍ତ୍ର ପ୍ରବର୍ତ୍ତକ ପୁଣି ସ୍ୱଭାବରେ ତାରକ (ଉଦ୍ଧାର-କର୍ତ୍ତା) ମହାଗୁରୁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା କବି ଉପେନ୍ଦ୍ରଭଞ୍ଜଙ୍କର ଉଚିତ, ପୁଣି ଏ ଭବରେ ଜର୍ଜରହୋଇ କହିଲା ହେ ଗଣେଶ-ଜନକ ଆପଣ କାମଦାୟକ, ଅତଏବ ମୋ କାମନା ପୂର୍ଣ୍ଣକର ।

# ସପ୍ତମ ଛାନ୍ଦ

[ ରାଜପୁତ୍ର ଆଗରେ କୋଟିବ୍ରହ୍ମାଣ୍ଡସୁନ୍ଦରୀର ଶୋଭା ବର୍ଣ୍ଣନା ]

ରାଗ—ରସକୋଇଲି



ମର ପ୍ରଶ୍ନେ କହିଲେ ଦୁହେଁ । ସରସ୍ୱତୀ ତାର ମିତ୍ରରେ ରହେ ।
ରଜନୀଚରୀ ଚରିତ ଚିତ୍ରିଲା । ପ୍ରୟାଗେ ନେତ୍ରପାତ ହୋଇଥିଲା ସେ ।
ଏଣୁ ତା ପ୍ରତିମା ଧରି ଯେ ।
ଭାଷିବା ଦର୍ଶିବା ବେନି ଆଶ୍ଚର୍ଯ୍ୟକୁ ବର୍ଣ୍ଣନା ବିଧି ଆଚରି ଯେ ॥ ୧
ବିଧି ନିର୍ମାଣ ଯତ୍ନେ ଅହଲ୍ୟାକୁ । କରି ରହିଲା ଗଢ଼ିବ ବାଳାକୁ ।
କଳ୍ପି ଦେଲା କାଳେ ଶିଳାପଦବୀ । ରମା ଚରଣ-ଘଷା ଭଲି ଭାବି ସେ ।
ଏହି ସିଦ୍ଧ ଅନୁମାନ ଯେ ।
ଯାହାକୁ ଏବେ ବୋଲୁଥାଇ ବିଧାତା କି କରି କଲା ବିଧାନ ଯେ ॥ ୨
କରିବା ତାହାର ବର୍ଣ୍ଣନା ବିଧି । ଇତର କଥା ଭେଦିବାର ବୁଦ୍ଧି ।
ଉପମା ପବିତ୍ର ହେବା ସମୟ । ପଡ଼ିଲା ଏଥିରେ କେଉଁ ସଂଶୟ ସେ ।
କାହିଁକି ଲକ୍ଷ୍ୟେ ଲକ୍ଷଣା ଯେ ।
ଏହି ବଡ଼ କଥା ନୁହଇ ତାହାକୁ ବୋଇଲେ ହୋଇଲା ଊଣା ଯେ ॥ ୩

---

୧—କୁମାର ପଚାରିବାରୁ କବିଦୁହେଁ କହିଲେ, ସରସ୍ୱତୀ ତାହାର ମିତ୍ର ହୋଇ ଥିବାରୁ ବର୍ଣ୍ଣନାରମ୍ଭରେ ମନ ସରସ୍ୱତୀଙ୍କୁ ଚିନ୍ତା ନ କରି ସରସ୍ୱତୀ ରୂପ ଧରିବା କାରଣ ରଜନୀଚରୀ ଚରିତକୁ ଚିତ୍ରିଲା ( ସୁକାନ୍ତିନାମ୍ନୀ ରାକ୍ଷସୀ ସୀତାଙ୍କୁ ଦେଖି ପ୍ରୟାଗରେ ବାସଦେଇ ସୀତାଙ୍କ ପ୍ରତିମୂର୍ତ୍ତି ଧରିଥିଲା ); ମନ ସରସ୍ୱତୀଙ୍କ ପ୍ରତିମୂର୍ତ୍ତି ଧରିବାରୁ ତାକୁ ଦେଖିବା ଓ କହିବା ଏ ଦୁଇ ଆଶ୍ଚର୍ଯ୍ୟ ଫଳ ପାଇଁ ବର୍ଣ୍ଣନା ଆରମ୍ଭ କଲା ।

୨—ବିଧି ଯତ୍ନପୂର୍ବକ ଅହଲ୍ୟାକୁ ଗଢ଼ି ବାଳାକୁ ଗଢ଼ିବ ବୋଲି ରହିଲା, କିନ୍ତୁ ବାଳା ରୂପ କଳ୍ପନା କରି ଭାବିଲା ଯେ ଅହଲ୍ୟା ବାଳାର ଚରଣଘଷା ଭଳି ହେବ, ତେଣୁ ଅହଲ୍ୟାକୁ ଶିଳାପଦବୀ ଦେଲା ଏହିପରି ସିଦ୍ଧ ଅନୁମାନ ହେଉଅଛି ।

୩—ଏବେ ଯାହାକୁ ବିଧାତା କହୁଁ ଥାଇଁ ସେ କିପରି ଏପରି ବିଧାନ କଲା । ତାହାର ବର୍ଣ୍ଣନା କରିବା ଅନ୍ୟ କଥାରେ କେବଳ ବୁଦ୍ଧିକି କ୍ଳେଶ ଦେବାମାତ୍ର । ଉପମାମାନଙ୍କର ପବିତ୍ର ହେବା ସମୟ ପଡ଼ିଲା, ଏଥିରେ କିଛି-ମାତ୍ର ସଂଶୟ ନାହିଁ । ଏହା ଲକ୍ଷ୍ୟରେ ଲକ୍ଷଣା (ତୁଳନା) କେଉଁଠାରେ ଅଛି ? ସମସ୍ତ ଉପମା ଊଣା ହେଲେ—ଏହା କହିଲେ କିଛି ବଡ଼ କଥା ହେବନାହିଁ ।

ବଚନ ଲକ୍ଷ୍ୟକୁ ହୋଇଲେ ଯେଣୁ । ବିଷ୍ଣୁ ମୁଖେ ମେଲ ମୋହନ ବେଣୁ ।
କ୍ଲେଶ ସହି କଣ୍ଠ ଛବି ଧ୍ୟାଇଲା । ପୁରୁଷୋତ୍ତମ କମ୍ବୁପୁର କଲା ସେ ।
ନିଶ୍ୱାସ ତୁଲନା ସ୍ନେହେ ଯେ
ଧୀର ଗନ୍ଧ ଶୀତ ମରୁତ ବସନ୍ତେ ଦେବତା ଅସୁର ଦେହେଁ ଯେ ॥ ୪
ଦଶନ ଲକ୍ଷ୍ୟକୁ ପାଇ ନ ପାଇ । ମୁକ୍ତ ହୋଇ ସିନା ମୁକ୍ତା ବୋଲାଇ ।
ମଧୁର ନୋହେ ମଧୁଓଷ୍ଠ ପରି । ସରଘା-ଉଚ୍ଛିଷ୍ଟେ ସେ ଶବ୍ଦ ଧରି ସେ ।
ଦେବତା ପ୍ରତିଷ୍ଠା ବହିଁ ଯେ ।
ଅରୁଣ ଅଧରେ ଅରୁଣ ଅଧର ଜବା ସର୍ବତଳେ ରହି ଯେ ॥ ୫
ହାସ ଯଶେ ଚୂର୍ଣ୍ଣ ହେଲେ କର୍ପୂର । କରଇ ସମସ୍ତ ହୃଦରେ ପୁର ।
ଯେ ଦୁଇ ତନୁ ସ୍ୱର୍ଗ ବେଦ ନାମା । ଶୁକବାବୁ ବଳେ ହେବ ଉପମା କି ।
ଯାହାର ଅଶ୍ରିତ ଭୂଷା ଯେ
ଗୁରୁ କବି ଛବି ଲୁଟି କରିବାରେ ପାଇଛି ଲୋକେ ପ୍ରଶଂସା ଯେ ॥

---

୪—ମୋହନ ବଂଶୀ ଏହାର ବଚନ ସହିତ ସମାନ ହେବାରୁ ବିଷ୍ଣୁଙ୍କ ମୁଖରେ ଲାଗିଲା । କମ୍ବୁ ( ଶଙ୍ଖ ) କଣ୍ଠାଘଷା ହୋଇ ନାନାପ୍ରକାର କ୍ଲେଶ ସହି ଏହାର କଣ୍ଠ ଛବିକୁ ଧ୍ୟାନ କରିବାରୁ ବିଷ୍ଣୁ ତାଠାରେ ସ୍ନେହୀ ହୋଇ ଆପଣାର ବାସସ୍ଥାନକୁ କମ୍ବୁପୁର କଲେ, ( ପୁରୁଷୋତ୍ତମ କ୍ଷେତ୍ରର ନାମ କମ୍ବୁପୁର ) ବାୟୁ ନିଶ୍ୱାସ ସମାନ ହେବାରୁ ସ୍ନେହରେ ବସନ୍ତରେ ଶୀତଳ ଓ ସୁଗନ୍ଧ ହୋଇ ଧୀରେ ଧୀରେ ବହିବାରୁ ଅସୁରଦେହ ଧରି ସୁଦ୍ଧା ( ଦୀତି ଗର୍ଭରୁ ଜାତହେତୁ ବାୟୁ ଅସୁର ଦେହୀ ) ଦେବତା ହୋଇଗଲା ।

୫—ମୁକ୍ତା ଦନ୍ତ ତୁଳନାକୁ ପାଇ ନ ପାଇଲା ହୋଇସୁଦ୍ଧା ମୁକ୍ତ ହୋଇ ଯିବାରୁ ମୁକ୍ତା ବୋଲାଇଲା । ମଧୁ ଓଷ୍ଠପରି ମଧୁର ନ ହେଲେ ମଧୁ ନିଜନାମରେ ମଧୁ ଶବ୍ଦ ଧରିଥିବାରୁ ସରଘା ( ମଧୁମକ୍ଷିକା ) ଉଚ୍ଛିଷ୍ଟରେ ପୁଷ୍ପରସରେ ଦେବତା ମାନଙ୍କର ପ୍ରତିଷ୍ଠା ହେଉଅଛି । ଅରୁଣ ( ବାଲସୂର୍ଯ୍ୟ ) ଅରୁଣ ( ରକ୍ତବର୍ଣ୍ଣ ) ଅଧର ଆଗରେ ଅଧର ( ନିକୃଷ୍ଟ ) ହେଲେ । ଜବା (ମନ୍ଦାର) ସର୍ବତଳେ ରହିଲା ( ପାଦତଳ ସମାନହେଲା )

୬—ଯାହାର ହାସ ଓ ଯଶ କର୍ପୂରକୁ ଚୂନା କରି ଦେଇଥିବାରୁ କର୍ପୂର ଭୟରେ ଲୋକମାନଙ୍କ ହୃଦୟକୁ ଆଶ୍ରୟ କରି ପୁର ( ବାସସ୍ଥାନ ) କରିଅଛି । ଯେଉଁ ଦୁଇଟି ଶରୀର ( ନାକ ଓ କାନ ) ସ୍ୱର୍ଗ ଓ ବେଦ ନାମକୁ ଧରି ଅଛନ୍ତି, ( ସ୍ୱର୍ଗର ଅପର ନାମ "ନାକ", ବେଦର ଅପର ନାମ "ଶ୍ରୁତି" ) ସେ ଦୁହିଁଙ୍କର ଉପମା ଶୁକବାବୁ ( ବ୍ୟାସ )ଙ୍କ ଦ୍ୱାରା ହୋଇ ପାରିବ କି ? ଯେଉଁ ନାକର ଅଶ୍ରିତ ଭୂଷଣ ( ମୋତି ) ବୃହସ୍ପତି ଓ ଶୁକ୍ରଙ୍କର ଉଜ୍ଜ୍ୱଳ ଛବିକୁ ଲୁଟି କରିବା ବିଷୟରେ ଲୋକରେ ପ୍ରଶଂସା ପାଇଅଛି ।

ଏତେକ ପଦ ଏକଲୟ ଥିଲା । ପରସ୍ପରେ ଛଳ ଉପୁଜି ଗଲା ।
ନୟନେ ଅଛି ଇନ୍ଦ୍ରଜାଲ ମାୟା । ସ୍ତମ୍ଭନ ମୋହନ ବଶ ଅଶ୍ରୟା ସେ ।
ଅଞ୍ଜନ ଗୁଣ ସାକ୍ଷାତ ଯେ ।
ତ୍ରିଗୁଣ ତ୍ରିବେଣୀ ସଗୁଣ ସାରଣୀ ପରି ଦଶେ ନାନାମତ ଯେ ॥ ୭
ସେ ନେତ୍ରେ ସଙ୍ଗ କୃଷ୍ଣ ରାମ ହେଲା । ରଙ୍ଗସଭା ଅନ୍ତେ ପ୍ରକଟ ଘେନା ।
କୁବଳୟ ଦର୍ପ ପକାଇ ନାଶି । କାଣ୍ଡ ଗୁଲକାଣ୍ଡ ପରାୟେ ଦଶି ସେ ।
ମୃଗ ଖଞ୍ଜନକୁ ତ୍ରାସି ଯେ ।
ଦେଖିଲାର ଅକ୍ଷି ଚକୋର ପକ୍ଷୀକି ଯେମନ୍ତ ପୀୟୁଷରାଶି ଯେ ॥ ୮
ଅର୍ଜୁନ ପଦବୀ ତହିଁ ପ୍ରସିଦ୍ଧ । କାଣ୍ଡ ଗୁଲକାଣ୍ଡ ତାଙ୍କ ଆୟୁଧ ।
କି କପାଳ ଧନୁ ଏ ଦୁଇ ଗୁଣ । କଜ୍ଜ୍ୱଳ ଭ୍ରୂଲତା ହୋଇ ପ୍ରମାଣ ସେ ।
ମନଭେଦୀ ମନୋଜବ ଯେ ।
ଯୁବା ଭୀଷ୍ମ-ଯତ ଧୃତ ଟାଳି ଦେଇ ଏଥି କି ବିକଳ୍ପ ଭାବ ଯେ ॥ ୯

---

୭—ଏତକ ପଦ (ସ୍ଥାନ) ବର୍ଣ୍ଣନା କରିବାକୁ ଗୋଟି ଗୋଟି କରେ ଲୟ ରହୁଥିଲା, ଏଣିକି ଉପମା ମାନଙ୍କ ମଧ୍ୟରେ ପରସ୍ପର ଛଳ ଜନ୍ମିବାରୁ ଗୋଟିଏ ସ୍ଥାନ ପାଇଁ ଅନେକ ଉପମା ଆସି ଅକ୍ଷୀ ଅଗରେ ଜୁଣ୍ଡ ହେଲେ । ନୟନରେ ଇନ୍ଦ୍ରଜାଲ ମାୟା ଥିବାରୁ ସେ ସ୍ତମ୍ଭନ, ମୋହନ ଓ ବଶୀକରଣର ଅଶ୍ରୟ ହୋଇଅଛି । ଚକ୍ଷୁରେ ଅଞ୍ଜନଗୁଣ ଥିବାରୁ (କଳା ଘେନ ଥିବାରୁ) ସେ ଚକ୍ଷୁ ସାକ୍ଷାତ୍ ତ୍ରିଗୁଣ (ସତ୍ତ୍ୱ, ରଜ, ତମ) ତ୍ରିବେଣୀ (ଗଙ୍ଗା, ଯମୁନା, ସରସ୍ୱତୀ) ସଗୁଣ ( ଗୁଣ ଦିଆ ଯାଇଥିବା ) ସାରଣୀପରି କଳା, ଧଳା, ଓ ଲାଲ ରଙ୍ଗରେ ଶୋଭିତ ହୋଇଅଛି ।

୮—ସେ ନେତ୍ରରେ କୃଷ୍ଣ (ବର୍ଣ୍ଣ) ରାମ (ଶୁକ୍ଳବର୍ଣ୍ଣ) ସଙ୍ଗ ହୋଇ କୃଷ୍ଣ ବଳରାମ ହୋଇ ଅଛନ୍ତି । ଯେପରି କୃଷ୍ଣ ବଳରାମ ରଙ୍ଗସଭା, (କଂସଧନୁର୍ଘର) ଅନ୍ତେ ( ମଧ୍ୟରେ ) ପ୍ରକଟ ହୋଇଥିଲେ ଏବଂ କୁବଳୟ ହସ୍ତୀର ଗର୍ବ ଖର୍ବ କରିଥିଲେ, ସେହିପରି ଏ ଚକ୍ଷୁ ସଭାଅନ୍ତେ ( ସର୍ବଶେଷ ଭାଗରେ ) ରଙ୍ଗବର୍ଣ୍ଣକୁ ପ୍ରକଟ କରିଅଛି ଏବଂ କୁବଳୟ (ପଦ୍ମର) ଗର୍ବକୁ ନାଶ କରୁଛି । ପୁଣି ସେ ଚକ୍ଷୁ କାଣ୍ଡ ଓ ଗୁଲକାଣ୍ଡ (ବାଟୁଲି) ପରି ଦିଶୁଛି, ଅତଏବ ମୃଗ ଓ ଖଞ୍ଜନ ପକ୍ଷୀକୁ ତ୍ରାସ ଦେଉଛି । ଦର୍ଶକମାନଙ୍କର ଚକ୍ଷୁରୂପ ଚକୋର ପକ୍ଷୀକୁ ଅମୃତ ରାଶିପରି ସନ୍ତୋଷ ଦେଉଅଛି ।

୯—ତହିଁରେ ଅର୍ଜୁନ (ଶୁକ୍ଳବର୍ଣ୍ଣ) ଅର୍ଜୁନ ବୀର ପଦବୀରେ ପ୍ରସିଦ୍ଧ ହୋଇଅଛି । ଅର୍ଜୁନଙ୍କର କାଣ୍ଡ ଗୁଲକାଣ୍ଡ (ବାଟୁଲି) ଏବଂ ମନଭେଦ ଶର ଥିଲା ଏବଂ ସେ ଭୀଷ୍ମଙ୍କର ଧୈର୍ଯ୍ୟକୁ ଟାଳି ଦେଇଥିଲେ, ଏଠାରେ କପାଳ ଧନୁ କଜ୍ଜ୍ୱଳ ଓ ଭ୍ରୂଲତା ଏ ଦୁହେଁ ଗୁଣ ( ବାଟୁଲି ଖଡ଼ାରେ ଦୁଇଟା ଗୁଣଥାଏ) କଟାକ୍ଷ

ରବି-କର-କଞ୍ଜ ଛବି ବଦନ । ଦୁଇଗୁଣ କର ନାହିଁ ସଦନ ।
କମଳ-ଦର୍ପଣ-ଚନ୍ଦ୍ର ବଦନା । ବୋଇଲେ ତେବେ ହେଉ ସମ୍ଭାବନା ସେ ।
ଏ ଉପଲକ୍ଷଣା ଛଦ୍ମ ଯେ ।
କେବଳ ସୁକୃତ ଥିଲାକୁ ଚରଣ ଆଗରେ ପଡ଼ିଅଛି ପଦ୍ମ ଯେ ॥ ୧୦
ଯେ ବରପଣ ତା ଙ୍କ ବଡ଼ପଣ । ମୁରତେ ହୁଏ ନିତ ସମର୍ପଣ ।
ପ୍ରତିବିମ୍ବକୁ କରାଇ ଲୋକନ । ଶ୍ରୀମୁଖକୁ ଶ୍ରୀମୁଖ ତୋ ସମାନ ସେ ।
ଏ ଭାବେ ବିନୟ ହୋଇ ଯେ ।
ଏତେକ ନ ହେଜ ଅନ-ନ ଶବଦ ବିଧାନ ହୋଇଛି ଯହିଁ ଯେ ॥ ୧୧
ସଂପୂର୍ଣ୍ଣ ବିଧୁ ସମାନ ଥିଆଇ । ସୁଧା କଳା ପାଇ ନଭେ ଭ୍ରମଇ ।
ଏଣୁଟି ସୁଧାକର କଳାନିଧି । ପର୍ଯ୍ୟାୟେ କଲେ ବିନାୟକେ ସିଦ୍ଧି ସେ ।
କ୍ଷୀଣ ଭଜ ବୃଦ୍ଧି ଶାନ୍ତି ଯେ ।
ଚିବୁକେ ଲଲାଟେ ସମ ନୋହି ପଦନଖେ ଦେଇ ରହେ କ୍ଷୋଭ ଯେ ॥ ୧୨

---

ମନୋଜବ ( ଅତିଶୀଘ୍ରଗାମୀ ), ମନଭେଦୀଶର ଏଥିରେ ଯୁବାମାନଙ୍କର ଧୈର୍ଯ୍ୟକୁ ଟାଳି ଦଏ, ଏଥିରେ ବିକଳ୍ପ ( ସନ୍ଦେହ ) କ'ଣ ଅଛି ?

୧୦—ମୁଖ କାନ୍ତିକି ରବି-କର-କଞ୍ଜ ( ସୂର୍ଯ୍ୟଙ୍କର ହସ୍ତ ସ୍ଥିତ ପଦ୍ମ ) କହନ୍ତେ, କିନ୍ତୁ ତହିଁରେ ଦୁଇଟି ଗୁଣ ବାସ କର ନାହିଁ, ( ଝଲ ଓ ଅହ୍ଲାଦ ଦୁଇଗୁଣ) ଅତଏବ କମଳ ଦର୍ପଣ ଚନ୍ଦ୍ର ବଦନା କହିଲେ ସମ୍ଭାବନା ହେବ, (କମଳର ସୁବାସ, ଦର୍ପଣର ଝଲ, ଚନ୍ଦ୍ରର ଅହ୍ଲାଦ ହେତୁରୁ) । ଏ ଯେଉଁ ଉପମା ଦେଲୁଁ ଏହାମଧ୍ୟ ଛଦ୍ମ (ମିଥ୍ୟା) କାରଣ ପଦ୍ମ ମୁଖ ସମାନ ନୋହି କେବଳ ପୁଣ୍ୟ ଥିବାରୁ ଚରଣ ଅଗରେ ଆସି ପଡ଼ିଛି ( ପଦ୍ମ-ସମାନ ପାଦ )

୧୧—ଦର୍ପଣ ଦର (ଭୟ) ପଣକୁ ଭଜିବାରୁ ତାହାର ବଡ଼ପଣ କାହିଁ ? ପ୍ରତିଦିନ ଆଗରେ ସମର୍ପିତ ହୋଇ ପ୍ରତିବିମ୍ବକୁ ଦେଖାଏ ଏବଂ "ତୋହର ଶ୍ରୀମୁଖକୁ ସେହି ଶ୍ରୀମୁଖ ସମାନ" ବିନୀତହୋଇ ଏହି ଭାବ ପ୍ରକାଶ କରେ । ଏତକି ହେଜି ପାରୁ ନା ଯେ ସେ ମୁଖର ନାମ ଅନ ନ (ଆଉ କିଛି ସମାନ ନାହିଁ) ଏହି ଅର୍ଥରେ ଅନନ ଶବ୍ଦ ବିଧାନ କରାଯାଇଅଛି ।

୧୨—ପୂର୍ଣ୍ଣଚନ୍ଦ୍ର ମୁଖ ସମାନ ହେବାକୁ ଧ୍ୟାନକରି ସମାନ ନ ହେବାରୁ ସୁଧା ଦେହରେ କଳାଦାଗ (କଳଙ୍କ) ପାଇ ଭୟରେ ପୃଥିବୀରେ ନ ରହି ଆକାଶରେ ବୁଲୁଛି । ଏଣୁ ବିନାୟକ ( ବୌଦ୍ଧ ଅମର ସିଂହ ) ଅମର କୋଷରେ ଚନ୍ଦ୍ରରନାମସୁଧାକର ଓ କଳାନିଧି ସିଦ୍ଧ କଲେ । ପୁଣି ସେ ଚନ୍ଦ୍ର କ୍ଷୀଣ ଭଜ ବୃଦ୍ଧିଶାନ୍ତି ଦ୍ୱିତୀୟା ଚନ୍ଦ୍ରରୂପ ଓଷ୍ଠ ସଙ୍ଗେ ଓ ଅଷ୍ଟମୀ ଚନ୍ଦ୍ର ରୂପେ ଲଲାଟ ସଙ୍ଗେ ସମାନ ନ ହୋଇ ପଦନଖକୁ କ୍ଷୋଭଦେଇ ରହିଲା । ପଦନଖର ସମାନ ହେଲା ) ।

ବର୍ଣ୍ଣନୁ ଥାଇଁ ଶ୍ରୁତି ଚକୁର । ବିବନ୍ଧୁ ଯା ସମ ଶ୍ୟାମ-ଭ୍ରମର ।
ବନ୍ଧନ ଉଦ୍ୟମେ ଧରିବା ବେଳେ । ମୟୂରପୁଚ୍ଛ ଲକ୍ଷ୍ୟ କାହା ତୁଲେ ସେ
ଏ ଲକ୍ଷ୍ୟ ନ କଲେ ପଛ ଯେ ।
ତେବେ ମୃଗ ଖଗ ବିବେକରୁ ଅମ୍ଭ ବିବେକ ହୋଇବ ତୁଚ୍ଛ ଯେ ॥ ୧୩

ପୀୟୂଷ ପିଇ ଜୂଡ଼ା ଶୋଭା ଇଚ୍ଛି । ପୀଡ଼ା ନ ମାନି ହଣା ହୋଇଅଛି ।
ପରମ ବିବେକ ସିଂହିକାପୁତ୍ର । କି ହେଲା ରହିଲା ଏତକ ମାତ୍ର ସେ ।
ଉପମା-ମାତଙ୍ଗ ସେହି ଯେ ।
ଏଣୁ ପୁଷ୍ପବନ୍ତେ ଯୁକ୍ତ ହୋଇବାରେ ସମସ୍ତେ ସ୍ନାନକୁ ଧାଆନ୍ତି ଯେ ॥ ୧୪

ନୀଳ ଚିକ୍କଣ କୁଟିଳ କୋମଳ । ପ୍ରଲମ୍ବ ଗହଳ ସୁଗନ୍ଧସ୍ଥଳ ।
ଏମନ୍ତ କେଶେ କି ତୁଲ୍ୟ ସମ୍ବାଦ । ଏତେ ଗୁଣେ ଅଛି କାଳିନ୍ଦୀ ନଦୀ ସେ
ରମ୍ୟ ଭୟଙ୍କର ସ୍ଥାନ ଯେ ।
ଯେଣୁ ଉରୁ ଗୁରୁ ପାଇବ ଭାବି ଦେଖାଇ ଦେଇ ପୁଳିନ ଯେ ॥ ୧୫

---

୧୩—ମନୋହର ଚିକୁର (କେଶ)କୁ ବର୍ଣ୍ଣନ କରୁଥାଇଁ, ବିବନ୍ଧୁ (ଫିଟିବାବେଳେ) କୃଷ୍ଣ ଭ୍ରମର ଏବଂ ବନ୍ଧନ ଉଦ୍ୟମରେ ହାତରେ ଧରିଲା ବେଳେ ମୟୂରପୁଚ୍ଛ ତା'ହାର ସମାନ ହେବାକୁ ଗଲେ । କିନ୍ତୁ ଲକ୍ଷ୍ୟ ନୋହିବାରୁ ମୟୂର ପୁଚ୍ଛକୁ ଏବଂ ମୃଗ ଭ୍ରମରକୁ ପଛରେ ଧଇଲେ । ଅମ୍ଭେ ଯେବେ ତାକୁ କେଶସଙ୍ଗେ ସମାନ କରିବା ତେବେ ଅମ୍ଭ ବିବେକ ତାଙ୍କଠାରୁ ଊଣା ହେବ ।

୧୪—ସିଂହିକା ପୁତ୍ର (ରାହୁ) ଅତ୍ୟନ୍ତ ବିଚାରଶୀଳ ଅଟେ, ସେ ଜୂଡ଼ା ଶୋଭା ସମାନ ହେବାକୁ ଇଚ୍ଛାକରି ଅମୃତ ପିଇ ପୀଡ଼ାକୁ ନ ମାନି ହଣା ହୋଇଛି. କିନ୍ତୁ କି ହେଲା, ଏତକ ମାତ୍ର କଥା ରହିଲା ଯେ ସେ ଉପମା ମାନଙ୍କ ମଧ୍ୟରେ ମାତଙ୍ଗ (ଚଣ୍ଡାଳ) ଏଣୁ ସେ ପୁଷ୍ପବନ୍ତେ (ଚନ୍ଦ୍ରସୂର୍ଯ୍ୟଙ୍କଠାରେ ଯୁକ୍ତ ହୋଇବାରେ (ଗ୍ରହଣ କାଳରେ) ସମସ୍ତେ ସ୍ନାନ କରନ୍ତି ।

୧୫—ଯେଉଁ କେଶ ନୀଳ, ଚିକ୍କଣ, କୁଟିଳ (କୁଞ୍ଚିତ) ବିଶେଷ ଲମ୍ବ, ଗହଳ ଏବଂ ସୁଗନ୍ଧର ସ୍ଥାନ ଅଟେ, ସେ କେଶକୁ କେଉଁ ତୁଳନା ସମ୍ବାଦିବା, ମାତ୍ର ଏ ସବୁ ଗୁଣରେ କାଳିନ୍ଦୀ ନଦୀଅଛି, ହେଲେ କି ହେବ । କେଶ ରମ୍ୟସ୍ଥାନ ନଦୀ ଭୟଙ୍କର ସ୍ଥାନ ହେବା ଯେଣୁ ଅସମ ହେବାରୁ ଉରୁଗୁରୁ (ଜଙ୍ଘ-ଶୋଭାକୁ) ଅବା ପାଇବି ଏହା ଭାବି ପୁଳିନ (ବାଲିକୁଦ) କୁ ଦେଖାଇ ଦେଇଛି ।

ଏ କାହିଁ ସମ ଗର୍ଜି କହେ ଘନ । ଅବିଳ କରି ଗୁଡ଼ାଇ ପୁଳିନ ।
ମୁଁ ଯହିଁ ଗଭା-ଶୋଭା ଇଚ୍ଛା କରି । ବିଦ୍ୟୁ ବକାଳୀ ଇନ୍ଦ୍ରଧନୁ ଧରି ଯେ ।
ହୋଇ ନ ପାରିଲି ମୂଳ ଯେ ।
ଯେ ପ୍ରତିଦ୍ୱନ୍ଦ୍ୱରେ ଏତେ ପ୍ରଶଂସିତ ଯହିଁକି କି ଅଛି ତୁଲ ଯେ ॥ ୧୬
ଥୟ ନ ପାଇ-ଦୃଷ୍ଟି ତହୁଁ ଖସି । ଉରଜ ଉପରେ ପଡ଼ିଲା ଆସି ।
ରୋମାବଳୀ ଦଣ୍ଡ ଅବଲମ୍ବନେ । ରହି କହିଲେ କେତେ ଅନୁମାନେ ସେ ।
ଏ ଅତି ଅଦ୍ଭୁତ ସ୍ଥଳୀ ଯେ ।
ବେନି ନାରିକେଳୁ ପୂଗ ଜନମିଛି ତମାଳ ଲତାକେ ଫଳି ଯେ ॥ ୧୭
ରହିବାକୁ ନିଷ୍ଟେ ମନ ଲୋଚନ । ସଲଗ୍ନେ ପ୍ରସାଦ ବେନି ରଚନ ।
ନୀଳା-ଭେଳା କରିବାକୁ ବିହାର । ଅବଗାହ ଅର୍ଥେ ଉଦର ସର ସେ ।
ତେଣୁ ନ ପାରିଲେ ତେଜି ଯେ ।
ଆନ ଆନ ବିଗ୍ରହକୁ ପଗ୍ରହିଲେ ସେହି ରୁଚିରରେ ମଜ୍ଜି ଯେ ॥ ୧୮

---

୧୬—ଏ କାଳନ୍ଦୀ କାହୁଁ ସମାନ ହେବ ବୋଲି ମେଘ ଗର୍ଜନ ଦ୍ୱାରା କହୁଛି ଏବଂ ବର୍ଷାଜଳରେ କାଳନ୍ଦୀର କଳା ଜଳକୁ ଗୋଳିଆ କରି ବାଲିକୁଦକୁ ବୁଡ଼ାଇ ଦେଇଛି । ମୁଁ କେଶ ଗଭାର ଶୋଭା ସମାନ ହେବାକୁ ଇଚ୍ଛାକରି (କେଶ-ସ୍ଥିତ କାଆପତ୍ର ବନ୍ଧଉଜ୍ଜ୍ୱଳ ସ୍ୱର୍ଣ୍ଣାଳଙ୍କାର ଓ ନାନାରଙ୍ଗର ପୁଷ୍ପ ସଦୃଶ ଦିଶିବାକୁ ) ବିଦ୍ୟୁତ୍, ବଳାବଳି ଓ ଇନ୍ଦ୍ରଧନୁକୁ ଧରି ସୁଦ୍ଧା ମୂଳ (ଠିକ୍-ସମାନ ) ହୋଇ ପାରିଲି ନାହିଁ । ଯେଉଁ କେଶ ଏତେ ପ୍ରତିଦ୍ୱନ୍ଦ (ବିବା-ଦରେ ) ମଧ୍ୟ ପ୍ରଶଂସିତ ହେଉଛି ତାହାର କଣ ତୁଳନା ଅଛି ?
୧୭—କବିର ଦୃଷ୍ଟି କିଛି ଥୟ ଧରି ନ ପାରି କେଶରୁ ଖସି ସ୍ତନ ଉପରେ ଆସି ପଡ଼ିଲା, ରୋମାବଳୀରୂପ ଦଣ୍ଡକୁ ଆଶ୍ରୟ କରି ରହି, ଅନୁମାନ ଦ୍ୱାରା କେତେ କହିଲା, ଏ ଅତି ଅଦ୍ଭୁତ ସ୍ଥାନ—ଗୋଟିଏ ତମାଳ ଲତାରେ ଦୁଇଗୋଟି ନଡ଼ିଆ ଫଳିଅଛି, ସେ ନଡ଼ିଆରୁ ଦୁଇଗୋଟି ଗୁଆ ଜନ୍ମିଅଛି । ରୋମାଳୀ ତମାଳ ଲତାପରି ସ୍ତନ ନଡ଼ିଆପରି, ସ୍ତନାଗ୍ର ଗୁଆପରି ।
୧୮—ମନ ଓ ଲୋଚନ ଦୁହେଁ ସେଠାରେ ରହିବାକୁ ନିଷ୍ଚୟକରି ସ୍ଥଳରେ ବିହାର ଓ ଜଳରେ ଅବଗାହ (ସ୍ନାନ) କରିବାକୁ ବକ୍ଷସ୍ଥଳରେ ଲଗା ଲଗି କରି ଦୁଇଟି ଦେଉଳ (ସ୍ତନରୂପ) ଏବଂ ଉଦର ପୁଷ୍କରିଣୀରେ ନୀଳବର୍ଣ୍ଣ ଭେଳା (ରୋମାଳୀରୂପୀ) ଟିଏ ରଚନାକଲେ । ତେଣୁ ସେ ସ୍ଥାନକୁ ଛାଡ଼ି ନ ପାରି ସେହି ଶୋଭାରେ ବୁଡ଼ି ଭିନ୍ନ ଭିନ୍ନ ବିଗ୍ରହକୁ ପ୍ରଗ୍ରହ କଲେ ।

ହେମ-ଭୂ-ସମ୍ଭୂତ ଶମ୍ଭୁ ଯୁଗଳେ । ନୀଳମଣିରେ ନିର୍ମିତ ପ୍ରଣାଳେ ।
ପାଞ୍ଚ ପାଞ୍ଚ ଯୁକ୍ତ ସପ୍ତଲାକାଳୀ । ପଙ୍କଜ-ଝୁମ୍ପା ଚମ୍ପାମାଳ ଝୁଲି ସେ ।
ନିଷ୍ଟସ୍ପ କର ଏମନ୍ତ ଯେ ।
ବେନି ପ୍ରଜାପତି ଅର୍ଚ୍ଚନ ଅଶୋକେ ପ୍ରପଦେ ସେ ଅଲଙ୍ଗିତ ଯେ ॥ ୧୯
ଯୌବନ-ସିନ୍ଧୁ-ମନ୍ଥନ ବହନେ । ମେରୁ ମନ୍ଦର ଯୁକ୍ତ କଲି ସ୍ତନେ ।
ଅଙ୍ଗ କେତକୀ ସୁଗନ୍ଧ ଝଟକ । ଜାତ ଅଦଭୁତ ପାରିଜାତକ ସେ ।
କରୁଛି ଶମ୍ପା ଅଚର ଯେ ।
ଗତି ହଂସ ଜନ୍ମି ଗଙ୍ଗାରେ ବୁଡ଼ାଇ ଦେଇଥିଲି ନାଗେଶ୍ୱର ଯେ ॥ ୨୦
ମନସିଜ ବେନି କୁଟି ଭିଆଇ । ପତ୍ରାବଳୀରେ ଯତନେ ଛୁଆଇଁ ।
ରଞ୍ଜକ ଖ୍ୟାତ ନଳୀ ଅଛି ଯୋଖି । ମନୋହର ନାଭି ପଲ୍ୱଲ ଦେଖି ଯେ ।
ମଧ୍ୟରେ କେଶରୀ ବୋଲି ଯେ ।
ଭୟେ ଶଙ୍କ ଅଛି ତାହିଁ ପଳାଇଛି ମୁହିଁ କଟିଦ୍ୱେଷୀ ଭଲି ଯେ ॥ ୨୧

---

୧୯—ସ୍ତନଦ୍ୱୟ ହେମ-ଭୂ-ସମ୍ଭୂତ ଶମ୍ଭୁ ( ସୁବର୍ଣ୍ଣ ଭୂମି ଜାତ ଶିବଲିଙ୍ଗ ଦ୍ୱୟ ) ରୋମାବଳୀ ନୀଳମଣି ନିର୍ମିତ ପ୍ରଣାଳୀ ( ଶକ୍ତିର ନାଳ ) ପାଞ୍ଚ ପାଞ୍ଚ ଅଙ୍ଗୁଳି ସପ୍ତଲାକଳୀ ( ନବମାଲିକାକଳି ) ରେ ଯୁକ୍ତ ହାତପାପୁଲି ପଦ୍ମଝୁମ୍ପା ବାହୁରୂପ ଚମ୍ପାମାଳରେ ଝୁଲୁଛି । ଏହିପରି ଦୁଇହାତକୁ ନିଷ୍ଟସ୍ପ କରି, ବାଧାଇ ଚମ୍ପକମାଳାରେ ଏହି ସ୍ତନଶମ୍ଭୁଙ୍କ ପୂଜା କରୁଛି । ଅଶୋକ କଳିକା ଅଙ୍ଗୁଳି ରୂପେ ପ୍ରପଦେ ( ପାଦପ୍ରାନ୍ତରେ ) ଅଲଙ୍ଗିତ ହୋଇଛି ।

୨୦—ସମୁଦ୍ରମନ୍ଥନରୁ ପାରିଜାତ ପୁଷ୍ପ ଏବଂ ଐରାବତ ହସ୍ତୀ ଜନ୍ମିଥିଲେ, ଐରାବତ ଗଙ୍ଗାରେ ଲୋଭ କରି ବୁଡ଼ି ଯାଇଥିଲା । ସୁନ୍ଦରୀ ରୋମାବଳୀ ସୂତ୍ରରେ ମେରୁ ଓ ମନ୍ଦର ସଦୃଶ ଦୁଇ ସ୍ତନକୁ ଯୁକ୍ତକରି ବହନ ରୂପେ ଯୌବନ ସିନ୍ଧୁ ମନ୍ଥିଲା, ତହିଁରୁ ସୁଗନ୍ଧ ଓ ଝଟକ ଯୁକ୍ତ କେତକୀ ସଦୃଶ ଅଙ୍ଗ ଅଦ୍ଭୁତ ପାରିଜାତକ ପୁଷ୍ପପରି ଜନ୍ମିଲା । ପାରିଜାତକରେ କେବଳ ସୁଗନ୍ଧ ଥାଏ, ଦେହରୂପ ପାରିଜାତକରେ ସୁଗନ୍ଧ ଓ ଝଟକ ଉଭୟ ଥିବାରୁ ଏହା ଅଦ୍ଭୁତ, ପୁଣି ସେ ଦେହ ଝଟକ ଚିରସ୍ଥାୟୀ ହୋଇ ଶମ୍ପା ( ବିଜୁଳି ) କୁ ଅଚର ( ସ୍ଥାୟି ) କରୁଛି । ହଂସ ସଦୃଶ ଗତି ଜନ୍ମି ନାଗେଶ୍ୱର (ହସ୍ତୀ ଶ୍ରେଷ୍ଠ) ତୁଲ୍ୟ ଗମନକୁ ବୁଡ଼ାଇ ଦେଇଛି ।

୨୧—ମନସିଜ (କାମ) ସ୍ତନରୂପ ଦୁଇଟି କୁଡ଼ିଆ ନିର୍ମାଣ କରି ତାହାକୁ ପତ୍ରାବଳୀରେ ( ସ୍ତନଚିତ୍ରରୂପ ପତ୍ର ସମୂହରେ ) ଛାଉଣିକରି ରଞ୍ଜକ ସହ ବନ୍ଧୁକ ନଳୀପରି ରୋମାଳିକୁ ଯୋଖି ମନୋହର ନାଭିରୂପକ ପଲ୍ୱଲ ( କ୍ଷୁଦ୍ର ପୁଷ୍କରିଣୀ ) ଦେଖି ମଧ୍ୟସ୍ଥିତ ସିଂହକୁ ମାରିବାକୁ ଲୁଚି ବସିଅଛି ( ଜଳଘାଟ

ଲୋକେ ଅବଳା ଯେ ବାଳାକୁ କହୁ । ଅଦୃଷ୍ଟି ଅଶ୍ରୁତ ବଳ ଦେଖାଇ ।
ବନ୍ଦୀ କରି ତନବଳୀ ଏଥିକି । ମର୍କତ ଧନୁକେ ବେନି ପୃଥ୍ୱୀକି ସେ ।
ନିଷ୍ଟେ ଧରିଅଛୁ ଟେକି ଯେ ।
ଜଘନ ଭଦ୍ରାସନ ଦେନି ହେଲାନି ବଳବନ୍ତେ ଅଭିଷେକୀ ଯେ । ୨୨
ଚରମସ୍ଥଳ ସହଜେ ଅଗମ୍ୟ । ନ ସମ୍ଭବେ ପ୍ରଭୃମାନଙ୍କ ରମ୍ୟ ।
ନିତମ୍ବ ଚକ୍ରବାଡ଼ ଅଛୁ ଯହିଁ । ଦୃଷ୍ଟିପଥ ଅନ୍ଧକାର କରାଇ ସେ ।
ଥିବ କ୍ଷ୍ମପଙ୍କ ଟନ୍ଧର ଯେ ।
ସୁସଞ୍ଚ ସ୍ଥୀର ସ୍ୱର୍ଣ୍ଣ ଗଣ୍ଡ-ଶଇଳ ଅଭାସୁଅଛୁ ଶତ୍ରୁର ଯେ । ୨୩
ଅଳକା ବର୍ଣ୍ଣନା ନୋହିଲା ସିନା । ସେ ଯେ ଶୋଭାଯଶ ଶ୍ଳୋକ କଳ୍ପନା ।
ଅଙ୍ଗୁଳ ତୁଲକେ ସ୍ୱହସ୍ତେ ଲେଖି । ସମେ ଥୋଇଅଛୁ ତା ଅଷ୍ଟଆଖି ସେ ।
କି ଲେଖା କହ ବିଗୁର ଯେ ।
ହରିହର ଏକମୂର୍ତ୍ତି ହୋଇଲାକୁ ରମା ଉମା ସେହିପରି ଯେ ॥ ୨୪

---

ଜଗି ପାରିଥି କରାଯାଏ ) । ମଧ୍ୟଭାଗକୁ କେଶରୀ ସଦୃଶ୍ୟ ବୋଲି ଉପମା ଦିଆ ଯାଉ୍ନା କିନ୍ତୁ ଶଙ୍କ ଭଙ୍ଗେ ଅଛୁ, ଅର୍ଥାତ୍ "କଟିକି କେ ସରି, ସିଂହ ମୁଁ କଟିଦ୍ୱେଷୀ" ଏହା ଭାବ କେଉଁ ଅଡ଼େ ପଳାଇଛୁ ।

୨୨—ଜଗତରେ ସ୍ତ୍ରୀମାନଙ୍କୁ ଅବଳା (ସ୍ତ୍ରୀ ଓ ବଳହୀନା) ବୋଲି କହନ୍ତି, କିନ୍ତୁ ଏ ଯାହା ଦେଖାଯାଇ ନାହିଁ ବା ଶୁଣାଯାଇ ନାହିଁ ସେପରି ବଳ ଦେଖାଉଛୁ, ବିଷ୍ଣୁ ଗୋଟିଏ ବଳିକି ପାତାଳରେ ବନ୍ଦୀ କରିଥିଲେ ଏ ତନିବଳିକି (ତିନିବଳୀକୁ) ହୃଦୟରେ ବନ୍ଦୀକରିଛୁ । ଅର୍ଜୁନ ଧନୁ ଦ୍ୱାରରେ ଗୋଟିଏ ପୃଥ୍ୱୀ ଟେକି ଧରିଥିଲେ ଏ ମର୍କତ ଧନୁ ସଦୃଶ ରୋମାଳୀରେ ଦୁଇଟା ପୃଥ୍ୱୀ ସଦୃଶ ସ୍ତନକୁ ଟେକିଧରିଛୁ । ଏଣୁ ଜଘନ (କଟିପଶ୍ଚାତ୍ ଭାଗ) ରୂପ ଭଦ୍ରାସନ (ସିଂହାସନ) ରେ ବଳବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠବୋଲି ଅଭିଷିକ୍ତ ହେଲଣି ।

୨୩—ଚରମସ୍ଥଳ (ପୃଷ୍ଠଭାଗ) ଦେଖା ନ ଯିବାରୁ ସହଜରେ ଅଗମ୍ୟ ହୋଇଅଛୁ, ସ୍ୱର୍ଣ୍ଣ ପ୍ରଭୃ ପ୍ରଭୃତି ଉପମାମାନଙ୍କର ରମଣୀୟତା ତହିଁକି ସମ୍ଭବୁ ନାହିଁ । ଯେଉଁ ଭାଗରେ ପୁଣି ନିତମ୍ବ (କଟିପଶ୍ଚାତ୍ ଭାଗ) ଚକ୍ରବାଡ଼ (ଲୋକା-ଲୋକ ପର୍ବତ) ପରି ରହିଅଛୁ ଏବଂ ସେ ପର୍ବତର ଅପରପାଖ ଦେଖା ନଗଲା ପରି ଦୃଷ୍ଟିପଥ ଅନ୍ଧକାର କରାଇଅଛୁ । କେବଳ ଶତ୍ରୁରେ ଏହିକଥା ଅଭାସୁଛୁ ଯେ ସେଠାରେ ପର୍ବତ ଟନ୍ଧର ତୁଲ୍ୟ ରୂପଙ୍କ (ନିତମ୍ବ ଭ୍ରମରୀ) ଓ ଗଣ୍ଡଶୈଳ (ଭୂମିକମ୍ପାଦିଦ୍ୱାରା ପର୍ବତରୁ ପତିତ ବୃହତ୍ ପ୍ରସ୍ତର ଖଣ୍ଡ) ସୁନ୍ଦର ସ୍ଥୀର (ପିଠି) ଥିବ ।

୨୪—ଅନ୍ୟ କବି କହିଲେ ଅଳକା ବର୍ଣ୍ଣନ ହେଲା ନାହିଁ, ସେ ଅଳକା (ଚୂର୍ଣ୍ଣକୁନ୍ତଳ) ରୂପେ ସୁନ୍ଦରୀର ଶୋଭା ଯଶକୁ ଅଷ୍ଟଆଖି (ବ୍ରହ୍ମା-ଶ୍ଳୋକ

କୋମଳେ ଲବଣୀ ନୋହି ସମାନ । ତରଳ ହେଲାଟି ହୈୟଙ୍ଗବୀନ ।
ପ୍ରେମ ପୀୟୂଷ ପିତୁଳା ନିର୍ମାଣ । କାମ ଜୀବବାନୁ ହେଲା ପ୍ରମାଣ ସେ ।
କଳାରେ କି ଚିହ୍ନ କଲା ଯେ ।
ହରିତ ଶୁଭ୍ରକୁ କି କି ପରକାରେ ସ୍ଥାନେ ସ୍ଥାନେ ଦେଖାଇଲା ଯେ ॥ ୨୫

ସାରଭାଗ କଲା ନୃପ-ଜେମାକୁ । ଅସାର ଭାଗ କଲା ଉପମାକୁ ।
ଏ କଥା ନିଶ୍ଚେ ଆସିଲା ମନକୁ । କହି ଭଜିଲେ କବି ମଉନକୁ ସେ ।
ଶ୍ରୀରାମ ଦୂଷଣ-ହର ଯେ ।
ପୁରାଣେ ଅଛି ସୁମରି ଗୀତ ରଚି ଉପଇନ୍ଦ୍ର ତୋଷଭର ଯେ ॥ ୨୬

---

ରଚନା କରି) ସ୍ୱହସ୍ତ ଅଙ୍ଗୁଳି ତୁଳିକାରେ ସମାନ ଧାଡ଼ିରେ ଲେଖି ଥୋଇଛନ୍ତି, ତେବେ ସେ କି ଲେଖା ବର୍ଣ୍ଣିବ କହିଲ ? ପ୍ରଥମ କବି କହିଲା—ହରି ହର ଦୁହେଁ ମିଶି ଏକମୂର୍ତ୍ତି ହେବାରୁ ସେହିପରି ରମା ଉମା ଏକମୂର୍ତ୍ତି ହୋଇ ସେ ସୁନ୍ଦରୀ ହୋଇଛନ୍ତି ।

୨୫—ବୋଧହୁଏ ବିଧାତା ପ୍ରଥମରେ ଲବଣୀରେ ସୁନ୍ଦରୀର ମୂର୍ତ୍ତି ଗଢ଼ିବାକୁ ବସିଲେ, କିନ୍ତୁ ସେ କୋମଳତାରେ ସମାନ ନ ହେବାରୁ ତରଳି ଯାଇ ହୈୟଙ୍ଗବୀ ( ସଦ୍ୟଘୃତ ) ହୋଇଗଲା, ତହୁଁ ପ୍ରେମ ଓ ଅମୃତରେ ପିତୁଳା କରି ତହିଁରେ ଭସ୍ମ ହୋଇଥିବା କାମର ଜୀବନକୁ ପ୍ରଦାନକରିବାରୁ ସୁନ୍ଦରୀର ମୂର୍ତ୍ତିହେଲା, ଏହା ପ୍ରମାଣ ହେଲା । ଏହିହେତୁ ତାକୁ କାମ କଳାରେ ଚିହ୍ନିତ କଲା—ସ୍ଥାନ ସ୍ଥାନରେ କାମର ହରିତବର୍ଣ୍ଣ, ଅମୃତର ଶୁକ୍ଳବର୍ଣ୍ଣ ( ନୟନରେ କୃଷ୍ଣ ଶୁକ୍ଳ ବର୍ଣ୍ଣ, ହାସରେ କେବଳ ଶୁକ୍ଳବର୍ଣ୍ଣ ) ଦେଖାଇଲା ।

୨୬—ପ୍ରେମ ଏବଂ ଅମୃତର ସାର ଭାଗରେ ବିଧାତା ରାଜକୁମାରୀକୁ ଗଢ଼ି ଅସାର ଭାଗରେ ଉପମାମାନଙ୍କୁ ଗଢ଼ିଲା, ଏହିକଥା ମନକୁ ଆସିଲା । ଏହାକହି କବି ମୌନ ହେଲେ । ଯେଉଁ ଶ୍ରୀରାମଚନ୍ଦ୍ର ଦୂଷଣ ( ରାକ୍ଷସ ଓ ଦୋଷ ) କୁ ହରି ଥିବାର ପୁରାଣରେ ଅଛି, ତାହାଙ୍କୁ ସ୍ମରଣ କରି କବି ଉପଇନ୍ଦ୍ର ଭଞ୍ଜ ଆନନ୍ଦରେ ଗୀତ ରଚିଲା ।

# ଅଷ୍ଟମ ଛାନ୍ଦ

ରାଗ—ଦେଶାକ୍ଷ



ବି ବର୍ଣ୍ଣିଲ କବିଙ୍କି ତହିଁ । ଅନେକ କନକ ସ୍ନାନ କରାଇ ।
ବସନେ ବସନେ ଦେଇ ପ୍ରସନ୍ନେ । ସ୍ମରଣଭାବିତ ହରଷମନେ ସେ
କହଇ ସତ ନୁହଇ ପରା । ବିଧି ବିଧାନେ ନୋହିଲ ବଧୀର ॥ ୧
ଉର୍ବଶୀରେ ବଶୀଭୂତ ଯେ ବସି । ସୁର ସଭାରେ ସୁରସରେ ରସି ।
ସେ ପୁଣି କାନ୍ତ ଏ କାନ୍ତ ଗୃହିଁ । କାନ୍ତ ହେବା ଇଚ୍ଛା ନ କଲା କେହି ।
ସମ୍ଭୂତ ଏକା ଅଦ୍ଭୁତ ହୋଇ । ଭୂତ ଭବିଷ୍ୟ ବର୍ତ୍ତିମାନେ ନାହିଁ ॥ ୨
ଛବିଚତୁରୀ ଏ ଚତୁରୀ ମିଥ୍ୟା । ଶୁଣି ନୃପମଣି-ନନ୍ଦନ କଥା ।
ମସ୍କରୀ କହିଲା କରି ସମ୍ମତ । ନ କର ସନ୍ଦେହ ସେ ଦେହବନ୍ତ ।
ମାଳିନୀ-ପୁରେ ନଳିନୀ-ସାର । ରୂପ ଅନୁରୂପେ ନାମ ତାହାର ॥ ୩

---

୧—ସୁନ୍ଦରୀର ଛବିକୁ ବର୍ଣ୍ଣନ କରୁଥିବା କବିଙ୍କୁ ଅନେକ ସୁବର୍ଣ୍ଣ ମୁଦ୍ରା ବୃଷ୍ଟିଦ୍ୱାରା କନକ ସ୍ନାନ କରାଇ ପିନ୍ଧାବସ୍ତ୍ର ଓ ଉତ୍ତରୀୟ ପ୍ରସନ୍ନ ହୋଇ ପ୍ରଦାନ କଲେ । କବିଙ୍କ ବର୍ଣ୍ଣନା ଦ୍ୱାରା ସେ ସୁନ୍ଦରୀକୁ ସ୍ମରଣକଲାପରି ମନରେ ଆନନ୍ଦିତ ହେଲେ । ମନରେ ଭାବିଲେ ପ୍ରାୟ ଏହା ସତ ନୁହେ, ପୁଣି ଭାବିଲେ ଯେ ବିଧାତାର ବିଚିତ୍ର ବିଧାନରେ ବଧିର ନୋହିଲା ( ଅସମ୍ଭବ ନୁହେଁ ) ।

୨—ଯେ ଦେବସଭାରେ ବସି ଉତ୍ତମ ରସରେ ରସି ଉର୍ବଶୀଠାରେ ବଶୀଭୂତ ସେ ପୁଣି ଏକାନ୍ତରେ ଏହାର କାନ୍ତ ( କମନୀୟତା ) କୁ ଗୃହିଁ କାନ୍ତ (ସ୍ୱାମୀ) ହେବାକୁ ଇଚ୍ଛା ନ କଲା କି ? ଏ କି ଅଦ୍ଭୁତ ସମ୍ଭବିଲା, ଭୂତ ଭବିଷ୍ୟତ ବର୍ତ୍ତିମାନ ତିନି କାଳରେ ଏପରି ନାହିଁ ।

୩—ଏହା ନାସ୍ତନ୍ତ୍ର କବିର ଚତୁରୀ, ଏପରି ଚତୁରୀ (ସୁନ୍ଦରୀ) ମିଥ୍ୟା ଅଟେ; ରାଜପୁତ୍ରଙ୍କର ଏକଥା ଶୁଣି ମସ୍କରୀ ( ଅଦ୍ଭୁତ ପୁରୁଷ ) ସମ୍ମତି କରି କହିଲା, ହେ ରାଜପୁତ୍ର ସନ୍ଦେହ କରନା, ମାଳିନୀପୁରରେ ( ଚମ୍ପାନଗରରେ ) ନଳିନୀ-ସାର ( ପଦ୍ମିନୀଶ୍ରେଷ୍ଠା ) ଦେହ ଧରି ଜନ୍ମିଅଛି, ରୂପ ସମାନରେ ତାହାର ନାମ ମଧ୍ୟ ହୋଇଅଛି ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏ ପଦୁଁ । ଶବ୍ଦର ଗୁରବର୍ଣ୍ଣ ଘେନ ଆଦ୍ୟୁଁ ।
କୀ ଯୋଗରୁ ଯୋଗ ଏକା ସ୍ଥାନରେ । ଗୋଟିଏ ଗୋଟିଏ କଲ୍ପ କଲ୍ପେରେ ।
ପ୍ରମାଣ କଲେ ନିର୍ମାଣ ଜେମା । ବନ୍ଦନ କଲେ ନନ୍ଦନ ଉପମା । ୪
ସୁଷମା ସମାପତ ହେଲା ଦିନ । ଭୁତ ଭୂତ ଭଜିଥିବ ମଦନ ।
ପୁଣି ବେଦରତ ଜରତ ଯେଣୁ । ବିକାର କାରଣୀ ନୋହିଲା ତେଣୁ ।
ବାଣୀପଣ ବିଦିତ କଲେ । ଲୋକେ ଲୋକେ ହୃଦେ ଉଦିତ ହେଲେ । ୫
ସୁମନା କାମିନୀ-ଗର୍ଭ-ସୁମନା । ନାଗ-ନାଗରୀ-ଶିରୋମଣି ସିନା ।
ମହୀ-ମହିଳା ବିଚିତ୍ର ତିଳକ । ମହିମା ମହିମ କରେ ତ୍ରୈଲୋକ୍ୟ ସେ ।
ପାଇଛି ଟୀକା ସୁନ୍ଦରୀ ଯାକେ । ଟୀକାହେଲାଣି ସଙ୍ଗୀତ ପୁସ୍ତକେ । ୬
ଗତ ଆଗତ ହେଉଥିଲେ ଋଷି । ଯୁଗେ ଯୁଗେତ ଏ ଯୁଗେ ନ ଆସି ।
ରମଣୀମଣିଙ୍କ ଯୋଗେ ଗୃହିଁଲେ । ଯୋଗ ବିଯୋଗ ହୋଇବ ଧ୍ୟାଇଲେ ।
ଏ ଅତିଶୟ ସଂଶୟ ଜାତ । ଏମନ୍ତ ମତ୍ତ କାମିନୀ କେମନ୍ତ । ୭

---

୪—"କୋଟି ବ୍ରହ୍ମାଣ୍ଡସୁନ୍ଦରୀ" ଏହି ପଦର ଆଦ୍ୟରୁ ଗୁରବର୍ଣ୍ଣ ନେଲେ "କୋଟିବ୍ରହ୍ମା" ହେଲା—ଏମାନେ କୀ ଯୋଗରୁ ଏକସ୍ଥାନରେ ମିଳି ଜଣେ ଜଣେ କଲ୍ପେ କଲ୍ପେ ଭାବି ଜେମା ନିର୍ମାଣକୁ ପ୍ରମାଣ କଲେ, ଉପମାମାନେ ନନ୍ଦାପାଇ ଜେମା ରୂପକୁ ବନ୍ଦନା କଲେ ।

୫—କାମ ଓ ବ୍ରହ୍ମା ଏହାର ରୂପରେ ବଶୀଭୂତ ହୋଇଥାନ୍ତେ, କିନ୍ତୁ ଯେଉଁଦିନ ଏହାର ସୁଷମା ( ପରମାଶୋଭା ) ସମାପ୍ତହେଲା ସେ ଦିନକୁ କାମ ଭୂତଭୂତ (ଅଦେହ ସ୍ୱରୂପ)କୁ ଭଜିଥିବ, ପୁଣି ବ୍ରହ୍ମା ଏହାର ରୂପ ନିର୍ମାଣ କରୁ କରୁ ଜରତ ( ବୃଦ୍ଧ ) ହୋଇ ଯିବାରୁ ବେଦରେ ଆସକ୍ତ ହେଲେ, ଏହି ହେତୁ ଏ ସୁନ୍ଦରୀ ସେ ଦୁଇଜଣଙ୍କର ବିକାର କାରଣ ହେଲା ନାହିଁ । ବ୍ରହ୍ମା ଜଗତରେ ବାଣୀ-ପଣକୁ ବିଖ୍ୟାତକଲେ, କାମ ଲୋକେ (ଜଗତରେ) ଲୋକେ (ଲୋକମାନଙ୍କର) ହୃଦୟରେ ଉଦିତ ହେଲେ ।

୬—ସେ ସୁନ୍ଦରୀ ସୁମନା କାମିନୀମାନଙ୍କର (ଦିବ୍ୟ ସ୍ତ୍ରୀମାନଙ୍କର) ଗର୍ଭ ସୁମନା (କେଶ ସ୍ଥିତ ପୁଷ୍ପ ସ୍ୱରୂପିଣୀ) ନାଗନାରୀ ମାନଙ୍କର ଶିରୋମଣି ମହୀ ମହିଳା (ପୃଥିବୀର-ସ୍ତ୍ରୀ) ମାନଙ୍କର ବିଚିତ୍ର ତିଳକ ସ୍ୱରୂପ, ମହିମାରେ ତ୍ରୈଲୋକ୍ୟ ( ତ୍ରିଭୁବନକୁ ) ମହିମ ( ଜୟ ) କରୁଅଛି । ସୁନ୍ଦରୀ ଯାହାଙ୍କର ଟୀକା ( ଶିରୋମଣି ) କୁ ପାଇଛି ଏହା ଯୋଗେ ସଙ୍ଗୀତ ପୁସ୍ତକରେ ଟୀକା ହେଲାଣି ।

୭—ଋଷିମାନେ ଯୁଗେ ଯୁଗେ ତ ଗତାଗତ ହେଉଥିଲେ କିନ୍ତୁ ଏ ଯୁଗରେ ଯୋଗେ ( ଧ୍ୟାନବଳରେ ) ରମଣୀ ମଣିଙ୍କି ଗୃହିଁ ଯୋଗ ନଷ୍ଟ ହେବା ଅଙ୍କାରେ ଆସୁ ନାହାନ୍ତି, ଏପରି ସୁନ୍ଦରୀ କିପରି ଜାତହେଲା ଏଥିରେ ଅତି ସନ୍ଦେହ ଜନ୍ମୁଅଛି ।

ପନ୍ଦର-ବୟସୀ ଅଙ୍ଗ ଛୁଇଁଲେ । ସୁନ୍ଦରମାନେ ସୁନ୍ଦର ହୋଇଲେ ।
ବୋଲେ ସୁବୁଦ୍ଧି ଏ ବୁଦ୍ଧି ସମ୍ପାଦ । ହରିରେ ହରି-ଜିତମଧ୍ୟା ବାଧ୍ୟା ।
କୁବୁଜା କୁଜ ଭଜ କଲାକୁ । ଏ ଶୋଭା କରେ ଅଶୋଭାମାନଙ୍କୁ ॥ ୮
ଈକ୍ଷଣେ ଯେଉଁ କ୍ଷଣେ କରେ ମେଳ । କଜ୍ଜ୍ୱଳ କଲାଟି ମହା ଉଜ୍ଜ୍ୱଳ ।
ସିଂହାଣୀ ଗୃହାଁଣିରେ ବଙ୍କ ଛୁଇଁ । ମନ ମୋହନ ବହନ କରାଇ ।
ମଧ୍ୟରେ କରୁଁ କୃଶକୁ ଗୃହୁ । ମଧ୍ୟମ କଲା ସେ ହେମ ଡମ୍ବରୁ ॥ ୯
କୁଚେ କଠିନକୁ ଘେନମା ଘେନ । ସେ ଶମ୍ଭୁ ଅଣି ଅଣି ଭାଙ୍ଗିଲାଣି ।
ବସୁଧାରେ ସୁଧାକୋଷ ବୋଲାଇ । ଶ୍ରୀଫଳ ଫଳ ବିଫଳ କରାଇ ।
ଛୁଚକ ନେଜ-ଛୁଚକ ନୋହି । ଔଲଗି ଔଲଗି ଦନ ନୁଅଇ ॥ ୧୦
ସ୍ୱଭାବେ ଗୁରୁଭାବ ଅଙ୍ଗୀକାରୀ । ନୀଳାମ୍ବର ଲୀଳା ପୁଣି ବିସ୍ତାରି ।
କବି ମଙ୍ଗଳ ସେ ଘେନ ଉପୁଜେ । ସତମସ ତ ଚନ୍ଦ୍ରେ ବିରାଜେ ।
ଆସି ଯେ କୁମ୍ଭରାଶିରେ ଏବେ । ଷଡଗ୍ରହ ମହାବିଗ୍ରହ ଭାବେ ।୧୧

---

୮—ସୁନ୍ଦର ପୁରୁଷମାନେ ଏହି ପନ୍ଦର ବୟସୀନ ଅଙ୍ଗକୁ ଛୁଇଁଲେ ସୁନ୍ଦର ହେଲେ, ବୁଦ୍ଧିମାନ ଲୋକ ଏହି ବୁଦ୍ଧି ସମ୍ପାଦନ କରି କହିଲେ ଯେ, ଏ ହରଜିତ ମଧ୍ୟା ( କେଶରୀ ମଧ୍ୟା ) ବସ୍ତୁଙ୍କଠାରେ ବାଧ୍ୟହେଲା. ଯେ ହେତୁ ବସ୍ତୁ କୁବ୍‌ଜାର କୁଜ ଭଜ (ସଳଖି) କରିବାରୁ ଅସୁନ୍ଦରକୁ ସୁନ୍ଦର କରିଥିଲେ, ଏ ମଧ୍ୟ ଯାହାକୁ ସ୍ପର୍ଶକଲା ସେ ସୁନ୍ଦର ହେଲା ।

୯—ଯେତେବେଳେ ନୟନରେ ମହା ଉଜ୍ଜ୍ୱଳ କଜ୍ଜ୍ୱଳ କଳାକୁ ଘେନେ ସେତେବେଳେ ସେ ସିଂହାଣି (ଚତୁରୀ) ଗୃହାଁଣିରେ ବଙ୍କ (ବକ୍ରତା) କୁ ସ୍ପର୍ଶ କରି ଶୀଘ୍ର ମନକୁ ମୁଗ୍‌ଧ କରାଏ । ସେ ସୁନ୍ଦରୀ ସୁନ୍ଦର ମଧ୍ୟକୁ କୃଶ କରିବାରୁ ସୁବର୍ଣ୍ଣ ଡମ୍ବରୁକୁ ମଧ୍ୟମ କଲା ।

୧୦—ସ୍ତନରେ କାଠିନ୍ୟକୁ ଘେନିବାରୁ ଶିବ ଲିଙ୍ଗର ଠାଣି ଭାଙ୍ଗିଲାଣି । ସେ ସ୍ତନ ପୃଥିବୀରେ ଅମୃତ ଭଣ୍ଡାର ହୋଇଅଛି, ଶ୍ରୀଫଳ (ନାରିକେଳ ବା ବେଲ) କୁ ବିଫଳ କରାଇଛି, ଛୁଚକ (ଠେଭା) ଚକ୍ଷୁକୁ ନ ଛୁଇବାରୁ ଔଲଗି (ନମସ୍କାର) କଲାପରି ଔଲଗି (ଓହଳପଡ଼ି) ଦନ ନେଇଅଛି ।

୧୧—ସ୍ତନ ସ୍ୱଭାବତଃ ଗୁରୁଭାବ ଅଙ୍ଗୀକାରୀ (ବୃହତ୍) ଅତଏବ ଗୁରୁ (ବୃହସ୍ପତି) ପୁଣି ନୀଳାମ୍ବର ( ନୀଳବସ୍ତ୍ର କାଞ୍ଚଲା ) ର ଲୀଳା ବିସ୍ତାର କରୁଛି; ଏଣୁ ସେ ନୀଳାମ୍ବର (ଶନି) ସେ ସ୍ତନ ଘେନି କବିମାନଙ୍କର ବର୍ଣ୍ଣନରେ ମଙ୍ଗଳଜାତ ହେଉଅଛି, ଅତଏବ ସେ ସ୍ତନ କବି ( ଶୁକ୍ର ) ଓ ମଙ୍ଗଳ, ସ୍ତନ ସତମସ ( ଅଗ୍ରକାଳିମା ଯୁକ୍ତ ) ତେଣୁ ସତମସ ( ରାହୁ ସହିତ ) ପୁଣି ଚନ୍ଦ୍ରରେ ( ସୁବର୍ଣ୍ଣ ହାରରେ ) ବିରାଜୁଛି, ଏଣୁ ସେ ଚନ୍ଦ୍ର ଏହିରୂପେ ଷଡ଼ ଗ୍ରହମାନେ କୁମ୍ଭରାଶିରେ, ( ତନ୍ମାମକରାସିରେ, ସ୍ତନକୁମ୍ଭଦ୍ୱୟରୂପେ)

ସୁଗନ୍ଧରେ ମନ୍ଦ ସଙ୍ଗତ କଲା । ଧରଣୀ ମଣ୍ଡିବା କାରଣ ହେଲା ।
ଶବ୍ଦ-ସ୍ୱରୂପା ସେ ଶବ୍ଦ ନୋହିବ । ଭବ ହୋଇଅଛି ଭବ ମୋହିବ ।
ଭାଷିଲା ମନ୍ତ୍ରୀସୁତ କି ଭାବେ । ବାଳାରେ ବଚନ ରଚନ ହେବେ ॥ ୧୨
ସୁସ୍ୱର କରି ବାଗୀଶ୍ୱର ଭଣି । ପ୍ରୟୋଜନ ଏହି ପ୍ରୟୋଗ ଶ୍ରେଣୀ ।
କେଳି-ପ୍ରବୀଣା ବୀଣା ଜିଣା ବାଣୀ । ଖଞ୍ଜନ-ଗଞ୍ଜନ-ରଞ୍ଜନେକ୍ଷଣୀ ।
ସୁରସ-ନିଧି ନିଧି-ପ୍ରତିମା । ଗୁଣୀ-ନାଗରୀ-ନାଗରୀ-ଉତ୍ତମା ॥ ୧୩
ସଂସାର-ସାର ଲାବଣ୍ୟ-ସଦନା । କୁନ୍ଦ-ହାରୀ କୁନ୍ଦ-ଜିତ-ରଦନା ।
ସବିକାଶ-କାଶ ନିନ୍ଦିତହାସୀ । ରାଜିତ-ରାଜୀବ ଜିତ ସୁହାସୀ ।
ନବୀନାଠାରେ ଏ ବିନା ଉକ୍ତି । ଶୋଭନ୍ତି ଲୋଭନ୍ତି କେବେ ନୁହନ୍ତି ॥ ୧୪

---

ଏକତ୍ର ହୋଇ ମହା ବିଗ୍ରହ ( ବୃହତ୍ ଆକାର ବା ଭୟଙ୍କର ଯୁଦ୍ଧ ) କରିବାକୁ ଯାଉଛନ୍ତି । ( ଷଡ଼ଗ୍ରହ ଏକ ରାଶିରେ ମିଳିତ ହେଲେ ପୃଥିବୀରେ ଯୁଦ୍ଧ ହୁଏ, ଜ୍ୟୋତିଷ ଶାସ୍ତ୍ରୋକ୍ତ )

୧୨—ସେ ସୁନ୍ଦରୀର ସୁଗନ୍ଧର ( ଉତ୍ତମଗନ୍ଧରେ ) ମନ୍ଦ ( ଧୀରତା ) ମିଳିଲା । ପୃଥିବୀକୁ ମଣ୍ଡିବାର ଶକ୍ତି ଆସିଲା, ସେ ଶବ୍ଦସ୍ୱରୂପା ( ଆଶ୍ଚର୍ଯ୍ୟସ୍ୱରୂପା ) କେହି ତାହାକୁ ଶବ୍ଦରେ ଲେଖି ପାରିବ ନାହିଁ, ସେ ଭବ (ମହାଦେବଙ୍କୁ) ମୋହିବାକୁ ଭବ (ଜାତ) ହୋଇଛି । ମନ୍ତ୍ରୀପୁତ୍ର କହିଲା, ସେ ବାଳାଠାରେ କିପରି ଭାବରେ ବାକ୍ୟପ୍ରୟୋଗ କରିବାକୁ ହେବ ?

୧୩।୧୪-ବାଗୀଶ୍ୱର ଉତ୍ତମ ସ୍ୱରରେ କହିଲେ, ଏହିପରି ଭାବରେ ବାକ୍ୟ ପ୍ରୟୋଗ କରିବା ଆବଶ୍ୟକ ଅଟେ—ଯଥା ସେ ସୁନ୍ଦରୀ କେଳିପ୍ରବୀଣା, ବୀଣାଜିଣାବାଣୀ ଖଞ୍ଜନ-ଗଞ୍ଜନ-ରଞ୍ଜନେକ୍ଷଣୀ ( ଯାହାର ଚକ୍ଷୁ ଖଞ୍ଜପକ୍ଷୀକୁ ଗଞ୍ଜିଦେଉଛି ) ଓ ରଞ୍ଜନ କାରୀ ସୁରସ ନିଧି ( ଉତ୍ତମ ରସମାନଙ୍କ ଖଣି ) ନିଧି ପ୍ରତିମା ( ରତ୍ନ ରୂପିଣୀ ) ଗୁଣ ନାଗରୀ-ନାଗରୀ ଉତ୍ତମା ( ଯେଉଁ ସ୍ତ୍ରୀମାନେ ଗୁଣର ଆକର ସେମାନଙ୍କ ମଧ୍ୟରେ ଉତ୍ତମା ) ସଂସାର ସାର ଲାବଣ୍ୟ ସଦନା, କୁନ୍ଦହାରୀ ( କୁନ୍ଦହୋଇଥିବା ହାରୀ ) ଓ କୁନ୍ଦ ( କୁନ୍ଦକଳିକା ) ଜିତରଦନା ରଦନ (ଦନ୍ତ) ସବିକାଶ କାଶନିନ୍ଦିତହାସୀ ସବିକାଶ ( ପ୍ରସ୍ଫୁଟିତ ) ରାଜିତ ରାଜୀବଜିତ ସୁହାସୀ, ରାଜିତ ( ବିକଶିତ )—ନବୀନାଠାରେ ଏପରି ଉକ୍ତି ଭିନ୍ନ ଅନ୍ୟ ଉକ୍ତିମାନ ଶୋଭାପାଇବେ ନାହିଁ ବା କେବେ ଲୋଭା ହେବେ ନାହିଁ ।

ମହାକୋବିଦ ତର୍କବାଦ କହି । ଚନ୍ଦ୍ର ମୁଖଚନ୍ଦ୍ର ହୋଇ ଏ ଦୁଇ ।
ଇନ୍ଦୁରେ ବଦନରେ ଯେଉଁ ହରିଣ । କାଳଙ୍କ କଳଙ୍କ ବୋଲଇ ପୁଣି ।
ମୁଖେନ୍ଦୁ ନେତ୍ର-କୁରଙ୍ଗ ରଙ୍ଗ । ଜନ ରଞ୍ଜନକୁ ପ୍ରକାଶେ ବେଗ ॥ ୧୫
ଶମ୍ପା ରୁଚି-ଶମ୍ପା ଏହିପ୍ରକାର । ସେ ଅଚିର ଏତ ଚିର ରୁଚିର ।
ରମ୍ଭା ଊରୁ-ରମ୍ଭା ଏ ଏହି ମତ । ଅଭିନ୍ନ ଚରିତ ଏହିପରି ତ ।
ଏମନ୍ତେ ଭିନ୍ନ ସମସ୍ତେ ଭାବ । ବିଧୁ-ମୁଖୀ ବିଧୁ-ହାସୀ ବୋଲିବ ॥ ୧୬
ରୂପକ ଯମକ ବ୍ୟାପକ ବଳେ । କବି କବିତ୍ୱରେ ରକ୍ଷା ପାଇଲେ ।
ଯେବେ କବି କଳ୍ପ କଳ୍ପନା ଥିବ । ଉପମାକୁ ଉପଯୋଗ ହୋଇବ ।
ମାଗଧ ବିଦଗଧ ବୋଇଲା । ନୃପଜ ଶୁଣି ମନ ମଣ୍ଡାଇଲା ॥ ୧୭
ବଲ୍ଲଭୀ କରି ଲଭିବା ଦୁର୍ଲ୍ଲଭ । ପ୍ରସନ୍ନ ଦର୍ଶନ ବଡ଼ ସୁଲଭ ।
ଅମର-ଦୃଷ୍ଟିକି କୁମର ପାଇ । ଚିତ୍ର ପ୍ରାୟେ ଚିତ୍ର-ପୁଂସେ ଅନାଇ ।
ସ୍ଥିର କଲା ଗୁରୁ ବିଧାନ । ହିତ-ବାଣୀ ପୁରୋହିତ-ନନ୍ଦନ ॥ ୧୮

---

୧୫—ମହାପଣ୍ଡିତ ତର୍କବାଦ କହିଲେ, ଚନ୍ଦ୍ର ଓ ମୁଖଚନ୍ଦ୍ର ଏପରି ଦୁଇଗୋଟି ଚନ୍ଦ୍ର, ଚନ୍ଦ୍ରଙ୍କଠାରେ ଯେଉଁ ହରିଣ ଅଛି ସେ କାଳକଯାକ କଳଙ୍କ ବୋଲାଉଛି, କିନ୍ତୁ ମୁଖଚନ୍ଦ୍ରରେ ନେତ୍ରରୂପ କୁରଙ୍ଗ ଖେଳି ଲୋକରଞ୍ଜନକୁ ବେଗେ ପ୍ରକାଶ କରୁଛି ।

୧୬—ଏହିପରି ଶମ୍ପା ( ବିଜୁଳି ) ରୁଚିଶମ୍ପା ( ଶୋଭାରୂପ ବିଜୁଳି, ) ସେ ବିଦ୍ୟୁତ୍ ଅଚିର ଏ ସର୍ବଦା ସୁନ୍ଦର । ସେହିପରି ରମ୍ଭା ଓ ଊରୁରୂପ ରମ୍ଭା ( କଦଳୀବୃକ୍ଷ ) ଦୁହେଁ ଅଭିନ୍ନ ଚରିତ ( ସମାନ ) ( ରମ୍ଭାର ସର୍ବାଙ୍ଗ ଶୋଭା ଏହାର ଏକାଙ୍ଗରେ ଅଛି ) ହେଲେ ମଧ୍ୟ ସମସ୍ତେ ଭିନ୍ନ ଅଟନ୍ତି । ତେବେ ତାକୁ ଚନ୍ଦ୍ରମୁଖୀ ଚନ୍ଦ୍ରହାସୀ କହିବା ।

୧୭—କବିମାନେ ରୂପକ, ଯମକ, ବ୍ୟାପକ ( ବିସ୍ତାରିତ ) ବଳରେ ଯେଉଁ କବିତା କରନ୍ତି ତହିଁରୁ ରକ୍ଷାପାଇଲେ । ଯେବେ କବିର କଳ୍ପବୃକ୍ଷ ସଦୃଶ ଶକ୍ତି ଥିବ ତେବେ ଏଠାରେ ଉପମା ଯୋଗ କରାଇ ପାରିବ, ଚତୁରମାଗଧ ( ଭାଟ ) ଏହିକଥା କହିବାରୁ ରାଜପୁତ୍ର ଶୁଣି ମନ ମଣ୍ଡାଇଲା ।

୧୮—ଭାଟ କହିଲା ତାହାକୁ ପତ୍ନୀ ରୂପେ ଲଭିବା ଦୁର୍ଲ୍ଲଭ, କିନ୍ତୁ ତାହାର ପ୍ରସନ୍ନ ଦର୍ଶନ ଅତି ସୁଲଭ ଅଟେ । ଏହାଶୁଣି ରାଜପୁତ୍ର ଅମରଦୃଷ୍ଟିକି ( ଦେବଦୃଷ୍ଟି ଅର୍ଥାତ୍ ପଲକ ହୀନ ) ପାଇ ଚିତ୍ରଲିଖିତପରି ଅଦ୍ଭୁତ ପୁରୁଷକୁ ଅନାଇଲେ, ପୁରୋହିତ ପୁତ୍ର ସୁନ୍ଦର ଉପାୟ ସ୍ଥିର କରି ହିତବାଣୀ କହିଲା ।

ନ ଥିଲର ଥିଲା କଲ ଗୋସାଇଁ । ପତି ଉତପତି ହୋଇଛି କାହିଁ ।
ଶ୍ରୀପତି କୁମର ଥିଲେ ସମର । ବର ହୁଅନ୍ତେ ବର-ବରନାର ।
କହିଲା ଦେଇ ଶ୍ଳେଷ ଅଶ୍ଳେଷ । ଗୁଳ ନ ଗୁଳ ଶିର ଶବପୁଂସ ॥ ୧୯
ଚତୁର କହିଲା ଆତୁର ବଶ । କି କରି କରିବା ଲୋକନ ଭାଷ ।
ଇତରେ କଲ ସେ ସେକି ଇତର । କର କର ଦାନ ପୁଣ୍ୟ ନାକର ।
ଏ ଶିବ ଅର୍ଥେ ଶିବଙ୍କୁ ତୋଷ । ପଦ୍ମ ପଦ୍ମ କର ପଦ୍ମ ମନାସ ॥ ୨୦
ହେ ଶୂର ବହୁ ଭୂ-ସୁର ଅଣାଅ । ଚଣ୍ଡୀ ଦର୍ଶନକୁ ଚଣ୍ଡୀ ଶୁଣାଅ ।
କର ଭଜନ ମଜ୍ଜନ-ଶତରେ । ଅଭିରାମ ରାମ ଅବିରତରେ ।
ସୁଗ୍ରୀବ ବିଭୀଷଣେ ସେ ଭଲେ । ସୁନ୍ଦରୀ ତାରା ମନ୍ଦୋଦରୀ ହେଲେ ॥ ୨୧
ଉପଇନ୍ଦ୍ର ଭଞ୍ଜ ଶଙ୍କା-ଭଞ୍ଜନ । ରାମଭଦ୍ର ପଦ ବିପଦ-ଘନ ।
ଏଣୁ ପରମ ମନୋରମ ପଦ । ସୁଚିତ୍ରେ ପ୍ରସନ୍ନେ କୁଶଳେ ଅସ୍ପଦ ।
ଏ ଗୀତ ବର ବର୍ଣ୍ଣନା ବିଧି । ଉଚିତେ ସୁଚିତ୍ତେ ବୁଝ ସୁବୁଦ୍ଧି ॥ ୨୨

---

୧୯—ହେ ପ୍ରଭୁ ଯାହା ନ ଥିଲା ଆପଣ ତାହାକୁ ସୃଷ୍ଟି କଲ ( ଅର୍ଥାତ୍ ଏପର ସୁନ୍ଦରୀ ନଥିଲା ଆପଣ ଏବେ କଲ ) ଶ୍ରୀପତି କୁମର ( କାମ ଓ ରାଜପୁତ୍ର) ଥିଲେ ଏ ବର ବର୍ଣ୍ଣନାର ଅନୁରୂପ ସ୍ୱାମୀ ହୁଅନ୍ତେ କିନ୍ତୁ କାମତ ଅଦେହ ତେବେ ତାହାର ପତି କିଏ ହେବ, ଏହି ରାଜପୁତ୍ର ହେବ କି ? ଏହି ଶ୍ଳେଷକୁ ଆଶ୍ରୟ କରି ମୁଣ୍ଡ ହଲେଇ ପୁଣି ନ ହଲେଇ ଅଦ୍ଭୁତ ପୁରୁଷ କହିଲା ।

୨୦—ରାଜପୁତ୍ର ଆତୁର ହୋଇ କହିଲା କିପରି ତାହାକୁ ଦେଖିବା ଏବଂ କଥା-କହିବା, ସେ ପୁରୁଷ କହିଲା ଏ କଣ ବଡ଼କଥା ? ଆପଣ ଦାନକର ପୁଣ୍ୟ ନାକର ( ସମୂହ ) କରନ୍ତୁ, ପଦ୍ମପଦ୍ମ ( ସଂଖ୍ୟା ) କର ପଦ୍ମ ଶିବଙ୍କୁ ମାନସ କରି ଏ ଶିବ ( ମଙ୍ଗଳ ) ପାଇଁ ସନ୍ତୁଷ୍ଟ କରନ୍ତୁ ।

୨୧—ହେ ଶୂର ( ବୀର ) ବହୁତ ଭୂସୁର ( ବ୍ରାହ୍ମଣ ) ଅଣାଅ, ସେ ଚଣ୍ଡୀ [ସ୍ତ୍ରୀ]ର ଦର୍ଶନ ପାଇବା ପାଇଁ ଚଣ୍ଡୀପାଠ କରାଅ, ଅନନ୍ୟ ମନହୋଇ ମନୋରମ ରାମନାମକୁ ସର୍ବଦା ଭଜ । ସେ ରାମଚନ୍ଦ୍ର ସୁଗ୍ରୀବ ଓ ବିଭୀଷଣକୁ ତାରା ( ବାଳିର ସ୍ତ୍ରୀ ) ଓ ମନ୍ଦୋଦରୀକୁ ଦେଇଥିଲେ ।

୨୨—ରାମ ଭଦ୍ରପଦ ଉପେନ୍ଦ୍ରଭଞ୍ଜଙ୍କର ଶଙ୍କା ଦୂର କରୁଅଛି ଏବଂ ସମସ୍ତଙ୍କର ବିପଦ ନାଶ କରେ ଏଣୁ ସେ ପଦ ଅତ୍ୟନ୍ତ ମନୋରମ ଅଟେ, ସେ ସୁପ୍ରସନ୍ନ ହେଲେ ମଙ୍ଗଳ ପ୍ରକାଶ ପାଏ, ହେ ପଣ୍ଡିତମାନେ ଏ ଗୀତର ଶ୍ରେଷ୍ଠ ବର୍ଣ୍ଣନା ବିଧିକୁ ଉଚିତ ରୂପେ ସୁଚିତ୍ତରେ ବୁଝ ।

## ନବମ ଛାନ୍ଦ

ରାଗ ମଙ୍ଗଳା ।

ଶୁଣ ଜନେ ଗୁଣ ମନେ ଏଥି ରହସ୍ୟ
ବେଶ କେତେ ରଙ୍ଗେ ବିଦୂଷକ ପ୍ରବେଶ ॥ ୧

ଲୋହିତ-ଅମ୍ବର ପିନ୍ଧି କି ଆଡ଼ମ୍ବର । ତାମ୍ବୁଲ-ବୋଳରେ ଜରଜର ଅଧର ॥ ୨
ପ୍ରଲମ୍ବ ପ୍ରବାଳମାଳ ଅବଲମ୍ବରେ । ହୃଦୟ ଶୋଭି ଉଦୟ ଅଭିଶୟରେ ॥ ୩
ତରୁଣ ଅରୁଣ-ପଦ୍ମ ଗୋଟିଏ ତହିଁ । ସେହି ସୂତ୍ର ସହିତେ ଗଳାରେ ଗଳାଇ ॥ ୪
ସଙ୍ଗତରେ ଆଗତ ତା ପୋଝା ଗୋଝାଏ । ବୀର ସନ୍ନିକଟ ହୋଇ ପ୍ରକଟ ହୁଏ ॥ ୫
ଇଙ୍ଗିତେ ଭାଷିଲା ଅଳ୍ପ ହସିଲା ହୋଇ । ପ୍ରଚୁର କଲ ବିଚାର ଶୁଣିଲି ମୁହିଁ । ୬
ମୋ ବିନାରେ ସେ ନବୀନା ଦରଶନକୁ । କେ ହେବ ହେ ବୋଲି ଦେବ-
ଅଣମନକୁ ॥ ୭
ଠାରେ ସେଠାରେ ପ୍ରକାଶି ଦେଖ ବୋଇଲା । ମଣ୍ଡପ ମଣ୍ଡଣି ନେତ୍ର ଆଗ ଛୁଇଁଲା ॥ ୮

---

୧—ହେ ଲୋକେ ଏଥିର ରହସ୍ୟ ଶୁଣ ଓ ମନରେ ଚିନ୍ତାକର ବିଦୁଷକ କେତେ ରଙ୍ଗରେ ବେଶ ହୋଇ ପ୍ରବେଶ କଲା ।

୨—ଲୋହିତ ଅମ୍ବର ( ଲାଲଲୁଗା ) ପିନ୍ଧି ମନରେ ଆଡ଼ମ୍ବର ବଢ଼ି ଆସିଲା, ତାହାର ଅଧର ପାନବୋଳରେ ଜର ଜର ହୋଇଛି ।

୩—ପ୍ରଲମ୍ବ ( ଲମ୍ବମାନ ) ପ୍ରବାଳମାନ ( ପୋହଳା ମାଳି ) କୁ ଅବଲମ୍ବନ କରିଥିବାରୁ ହୃଦୟ ଅତ୍ୟନ୍ତ ସୁନ୍ଦର ହୋଇଅଛି ।

୪—ଗୋଟିଏ ତରୁଣ ( ସଦ୍ୟ ପ୍ରସ୍ଫୁଟିତ ) ରକ୍ତ ପଦ୍ମକୁ ତାହାର ସୂତା ସହିତ ଗଳାରେ ଗଳାଇ ହୃଦୟରେ ଲମ୍ବାଇଅଛି ।

୫— ତାହା ସଙ୍ଗରେ ଗୋଟିଏ ପୋଝା ( ସ୍ତ୍ରୀ ପୁଂସ ଲକ୍ଷଣା ) ଆସିଅଛି, ସେ ବୀର ନିକଟରେ ପ୍ରବେଶ ହେଲା ।

୬—ଅଳ୍ପ ଅଳ୍ପ ହସି ଇଙ୍ଗିତରେ- କହିଲା ତୁମ୍ଭେ ଯେଉଁ ବିଚାର କରୁଥିଲ ମୁଁ ତାହା ସବୁ ଶୁଣିଅଛି ।

୭—ହେ ଦେବ ମୋ ଛଡ଼ା ସେ ସୁନ୍ଦରୀକୁ କିଏ ଦେଖାଇ ପାରିବ ବୋଲି ମନରେ ଭାବୁଛ ।

୮—ସେଠାରେ ଗୋଟିଏ ଠାର ପ୍ରକାଶ କରି କହିଲା ଦେଖ, ମଣ୍ଡପ ମଣ୍ଡଣି ( ପତାକା )କୁ ଦେଖାଇ ଆପଣା ନେତ୍ରକୁ ଛୁଇଁଲା, ( ଏପରି ଠାରିବା ଦ୍ୱାରା ଜଣାଇଲା ଯେ ସେ ସୁନ୍ଦରୀର ନେତ୍ର ଶୋଭା ଦେଖ )

କାହିଁଛୁ କାହିଁଛୁ ବୋଲି ବିରାଟ ଦେଶ । ଖୋଜ ହେଜ ତଡ଼ାଗେ ହୋଇଛୁ
-ପ୍ରକାଶ ॥୯

ପୋଷା ନଟ ଖଞ୍ଜରୀଟ କୁରଙ୍ଗ ଆଣି । ସୁରଙ୍ଗ କରାଇ ଛାଡ଼ି ଦେଲା ଯେ ପୁଣି ॥୧୦

ଇନ୍ଦିରା-ମନ୍ଦିର ଇନ୍ଦୀବର ଅଣାଇ । ଇନ୍ଦ୍ରିୟରେ ଅଙ୍ଗୁଳି ଦେଖାଇ ଜଣାଇ ॥୧୧

ଅଙ୍ଗେ ଅଙ୍ଗେ ଦେଖାଇବି ମୁଁ ଏହିମତେ । କେ ତହିଁ ହସିଲେ ପରଶଂସିଲେ
କେତେ ॥୧୨

ସ୍ତ୍ରୀପୁଂସ ଲକ୍ଷଣା ଭାଷେ ଲକ୍ଷଣାଗଣ । ମାର୍ଗଣ ହେଲେ ତା ତନୁତନୁକେ ଜାଣ ॥୧୩

ପୁଣ ପ୍ରତିଗୁଣ କିଛି କିଛି ପାଇଲେ । ଅନ୍ୟ ଉପମାରେ ଅନୁଗତ ହୋଇଲେ ॥୧୪

ଦୟା-ହୃଦୟା ସେ ରାମା ଘେନ ମନକୁ । ଗ୍ରହ ତେଜି ଅନୁଗ୍ରହ କଲା ତାହାଙ୍କୁ ॥୧୫

ଏ ଅନୁମାନ ମାନ ସେ କରି ସୁବୁଦ୍ଧି । ବିରୋଧୀଙ୍କି ଏ ବିଧିରେ କରନ୍ତି ସିଦ୍ଧି ॥୧୬

ବନ୍ଧୂକ-ବନ୍ଧୁ-ଅଧରୀ ପ୍ରୟୋଗ ଖ୍ୟାତି । ସୁନ୍ଦର ଦର-ସୋଦର-ହାସୀ କହନ୍ତି ॥୧୭

---

୯—ବିରାଟଦେଶ (ମତ୍ସ୍ୟଦେଶ) କେଉଁଠାରେ ଅଛୁ ଖୋଜ ହେଜ ତଡ଼ାଗରେ ( ପୁଷ୍କରିଣୀରେ ) ପ୍ରକାଶ ହୋଇଅଛୁ ବୋଲି ଠାରି ଦେଖାଇଲା ( ପୁଷ୍କରିଣୀରେ ଥିବା ମୀନ ପରି ତାହାର ଚକ୍ଷୁ )

୧୦—ପୁଣି ସେ ପୋଷା ଓ ନାଚ କରୁଥିବା ଖଞ୍ଜନପକ୍ଷୀ ଏବଂ କୁରଙ୍ଗ (ମୃଗ) କୁ ଆଣି ରଙ୍ଗ ( ଚଞ୍ଚଳ ) କରାଇ ଛାଡ଼ି ଦେଲା, ( ତାହାର ଚକ୍ଷୁ ଏପରି ) ।

୧୧—ଇନ୍ଦିରା ( ଲକ୍ଷ୍ମୀ ) ତାହାଙ୍କର ମନ୍ଦିର ( ପଦ୍ମ ) ଏବଂ ଇନ୍ଦୀବର ( ନୀଳପଦ୍ମ ) ଅଣାଇ ଇନ୍ଦ୍ରିୟ ( ମୁଖ ଏବଂ ନେତ୍ର ) କୁ ଅଙ୍ଗୁଳି ଦେଖାଇ ଜଣାଇଲା ଯେ ତାହାର ମୁଖ ପଦ୍ମପରି ଏବଂ ଚକ୍ଷୁ ଇନ୍ଦୀବର ପରି ।

୧୨—ମୁଁ ଏହିପରି ପ୍ରତି ଅଙ୍ଗରେ ଦେଖାଇବି ଏହା ଶୁଣି କେତେ ହସିଲେ କେତେ ପ୍ରଶଂସା କଲେ ।

୧୩—ପୋଥା କହିଲା ଲକ୍ଷଣାଗଣ ( ଉପମାସମୂହ । ତାହାର ତନୁ ତନୁକେ ( ପ୍ରତି ଅଙ୍ଗରେ ) ମାର୍ଗଣ ( ଶୋଭା ପ୍ରାର୍ଥୀ ) ହେଲେ ।

୧୪—ମାଗିବାରୁ କିଛି କିଛି ପ୍ରତିଗୁଣ ପାଇ ତାହାର ଉପମା ନୋହିଁ ଅନ୍ୟ ସ୍ତ୍ରୀମାନଙ୍କର ଉପମା ହେବାକୁ ଅନୁଗତ ହେଲେ ।

୧୫—ସେ ରମଣୀ ଦୟାର୍ଦ୍ର ହୃଦୟା ଏହା ମନକୁ ଆଣି ସେଣୁ ସେ ଉପମାମାନଙ୍କଠାରେ ଗ୍ରହ ( ବିବାଦ ) ନ କରି ଅନୁଗ୍ରହ କଲା ।

୧୬—ପଣ୍ଡିତମାନେ ମନରେ ଏହି ଅନୁମାନ କରି ବିରୋଧୀ ( ଉପମା ) ମାନଙ୍କୁ ଏ ବିଧିରେ ( ମିତ୍ର ଭାବରେ ) ସିଦ୍ଧି କରନ୍ତି ।

୧୭—ଯାହାକୁ ବନ୍ଧୂକ ବନ୍ଧୁ ଅଧରୀ ବୋଲି ପ୍ରୟୋଗ କରନ୍ତି, ବନ୍ଧୁକ ( ବନ୍ଧୁଲି ଫୁଲ ) ତାହାର ବନ୍ଧୁ ଅଧର ଯାହାର, ଏ ସୁନ୍ଦର ଅଟେ ଯେ ଦର (ଶଙ୍ଖ)ର ସୋଦର ( ସହୋଦର ) ହାସ ଯାହାର ।

ଶୋଭା-ଯଶ ପ୍ରଚୁରକି ସଚରାଚର । ଧ୍ୟାନେ ଦର୍ଶନେ ଏସନେ ହୋଇଲେ ଦ୍ୱାର ॥୧୮
ଅନୁଚିତ ବଚିଲେ କି ଚିତ୍ତକୁ ଆଣି । ଗୁଣ୍ଠୁବଣ୍ଠୁ କୁ ସୁଜାଣି ବୋଲନ୍ତି ଜାଣି ॥ ୧୯
ଶ୍ରବଣରେ ଚିତ୍ତ ଗଲା ଦ୍ରବଣ ହୋଇ । ମାର ମାରଣ ଉଦ୍ୟମ ଆରମ୍ଭି ତହିଁ ॥ ୨୦
ଶିଳୀମୁଖ ଗୁଣେ ଶିଳୀମୁଖ ଥୋଇଲା । ଉଚ୍ଛନ୍ନ ଅଚ୍ଛନ୍ନ ସେ କୁମର ହୋଇଲା ॥୨୧
ଚାତୁରିଲା ପଚାରିଲା ଜାଣୁ କି ତୁହି । ଉଚାରିଲା ସେ ବାଣୀକି ଶୁଣିଛୁ ମୁହିଁ ॥ ୨୨
ବାମନ ଦର୍ଶନେ ମୁଁ ଯେ ଗମନ କଲି । ଉଚ୍ଚସ୍ଥିମାଠାରେକାତ୍ୟାୟିନୀ ଦେଖିଲି ॥୨୩
ସେହି ସେହିଠାକୁ କରୁଥିଲା ଗମନ । କହି କହି ଗଲା ଦିବ୍ୟ ଗ୍ରାମ ଶୋଭନ ॥ ୨୪
ସେ ଦିନକୁ ଯଉବନ ସେବନ ତାକୁ । କରୁଥିଲା ନ ଥିଲା ଉପମା ଦେବାକୁ ॥୨୫
କି କହିଲା ସେ ଉଲ୍ଲାସେ ମନ୍ତ୍ରୀ-ଜ ଭଣି । ସୁଲକ୍ଷଣା ସେ ଲକ୍ଷଣା ଶୁଣିମା ପ୍ରାଣି ॥ ୨୬
ପୋଠା ରସାଭାସେ ରସାଇଲା ମାନସ । ରତି ଧେନି ଚଳିତେ ତା ଚିତ୍ତେ ପ୍ରବେଶ ॥ ୨୭
ମନୋଭବ ଗୃହିଁ ଭାବ ଭବଜୟକୁ । ଯୌବନ ଶିଳ୍ପୀ ସଂଚୟ ଶସ୍ତ୍ର ଚୟକୁ ॥ ୨୮

---

୧୮—ଉପମାମାନେ ସେ ଗ୍ରାମର ଶୋଭାଯଶ ସଚରାଚର ପ୍ରଚୁର କରି ଧ୍ୟାନଦ୍ୱାରା ତାହାର ଶୋଭା ଦର୍ଶନ ବିଷୟରେ ଦ୍ୱାର ସ୍ୱରୂପ ହେଲେ ।

୧୯—ଅତଏବ ମନରେ ବିଚାର କରି ଗୁଣ୍ଠୁବଣ୍ଠୁ ( ବିଦୂଷକ ) ଅନୁଚିତ କହିଲେ କି ? ତାହାଙ୍କୁ ଜ୍ଞାନୀ ବୋଲି ଜାଣି ।

୨୦—ଏହା ଶୁଣିଲାମାତ୍ରେ କୁମାରଙ୍କର ଚିତ୍ତ ତରଳିଗଲା, କାମ ମାରିବାକୁ ଉଦ୍ୟମ ଆରମ୍ଭିଲା ।

୨୧—ଶିଳୀମୁଖ ( ଭ୍ରମର ) ଗୁଣରେ ( କାମ ଧେନୁରେ ଗୁଣ ଭ୍ରମର ଶ୍ରେଣୀ ) ଶିଳୀମୁଖ ( ବାଣ ) ରଖିଲା । ସେ କୁମର ତହିଁରେ ଅଚ୍ଛନ୍ନ ହୋଇ ଉଚ୍ଛନ୍ନ ( ଉଦ୍‌ବେଗ ) ହେଲା ।

୨୨—ସେ ବିଚାର କରି ପଚାରିଲା ତୁମ୍ଭେ କଣ ଜାଣ ସେ କହିଲା ମୁଁ ସେ କଥା ଶୁଣିଛି ।

୨୩—ମୁଁ ବାମନଙ୍କ ଦେଖିବାପାଇଁ ଯାଉଁ ଯାଉଁ ଉଚ୍ଚସ୍ଥିମାଠାରେ କାତ୍ୟାୟନୀ ( ଗୈରିକବସନା ଅର୍ଦ୍ଧବୃଦ୍ଧା ବିଧବା ସ୍ତ୍ରୀ ) କୁ ଦେଖିଲି ।

୨୪—ସେ କାତ୍ୟାୟନୀ ସେଠାକୁ ଯାଉଥିଲା, ଗ୍ରାମର ଅଲୌକିକ ଶୋଭା ବର୍ଣ୍ଣନ କରିଗଲା ।

୨୫—ସେ ଦିନକୁ ଯୌବନ ତାକୁ ସେବୁଥିଲା ଅତଏବ ଉପମା ଦେବାକୁ କିଛି ନ ଥିଲା ।

୨୬—ମନ୍ତ୍ରୀପୁତ୍ର ଉଲ୍ଲାସରେ କହିଲେ କଣ ସେ କହିଲା, ସୁଲକ୍ଷଣା ( ପୋଠା ) କହିଲା, ସେ ଲକ୍ଷଣମାନ ଶୁଣିମା ହେଉ ।

୨୭।୨୮-ପୋଠା ରସର ଆଭାସ ଦେଇ ସମସ୍ତଙ୍କ ମନକୁ ରସେଇ କହି-କାମ ରତିକି ଧେନି ଉଚିତମତେ ତାହାର ଚିତ୍ତରେ ପ୍ରବେଶ କରି ଭବ ( ଶିବ, କିମ୍ବା ସଂସାର ) କୁ ଜିଣିବା ପାଇଁ ଯୌବନରୂପ ଶିଳ୍ପୀଦ୍ୱାରା ଶସ୍ତ୍ରମାନଙ୍କୁ ନିର୍ମାଣ କରାଇ ସଞ୍ଚିତ କଲା ।

ରସମୟ-ସମୟକୁ ଅଙ୍କୁର ରଚେ । ଶ୍ୟାମା କୁଚ ଶ୍ୟାମାନୁଜ ବାଟୁଲି ନାଚେଁ ॥ ୨୯
ସୁମରଣ ସୁମନ୍ତରେ ପର୍ବତାକାର । ହୋଇବ ଦଇବ କୃତ୍ୟ ଅଛି ଏଥିର ॥ ୩୧
ରଞ୍ଜନ ଧୈର୍ଯ୍ୟ-ଭଞ୍ଜନ ଗଦା ରୋମାଳୀ । ଅର୍ଦ୍ଧଚନ୍ଦ୍ରଶର ଭଳି ଅଳକ ଝଳି ॥ ୩୧
ପରଶୁ ପରମରମ୍ୟ ଭ୍ରୁକୁ ଧରିଛି । ମନ ବନ୍ଧନକୁ କେଶ ପାଶ କରିଛି ॥ ୩୨
ହୋଇଛି ନିତମ୍ବ-ବିମ୍ବ ଚକ୍ର ପ୍ରକାଶ । ପବିକି ପବିକି କରେ ସୁମଧ୍ୟଦେଶ ॥ ୩୩
ଈକ୍ଷଣୀ-ଶର କଟାକ୍ଷ ତୀକ୍ଷଣ ବହି । କପାଳସାର ସାରଙ୍ଗ ନିକଟେ ରହି ॥ ୩୪
ପ୍ରଫୁଲ୍ଲ କଫୁଲ୍ଲ ଗୁଣ୍ଠି କର ସଂଯୋଗ । ସବ୍ୟସାଚୀ ଦୀକ୍ଷା ଶିକ୍ଷା କରେ ଅନଙ୍ଗ ॥ ୩୫
ବାଜିଲଣି ଲୋକାତୁର ତୂର ନୂପୁର । ରଣରଣ କହୁଛନ୍ତି ସେ ନିରନ୍ତର ॥ ୩୬
ଯେତେକ କହିଲି ମୁଁ ତେତେକ କହିଲି । ମଉନ ହୋଇଲା ପୋଥି
ଏତେକ ବୋଲି ॥ ୩୭
ଅଳପ କି କଳପତରୁ ସେ ତରୁଣୀ । ସୁମନା ଲକ୍ଷ୍ୟ କାମନା-ସିଦ୍ଧ-କାରିଣୀ ॥ ୩୮

---

୨୯—ରସମୟ ସମୟକୁ (ପୁଷ୍ପମୟ ଆରମ୍ଭ ବେଳକୁ) ସ୍ତନମାନଙ୍କର ଅଙ୍କୁର (ପ୍ରଥମ ଆରମ୍ଭ) ରଚିଲା, ସେ ଶ୍ୟାମାର ସ୍ତନ ଶ୍ୟାମାନୁଜ (ଭରତ) ର ବାଟୁଲି ନାଚୁଅଛି ।

୩୦—ଉତ୍ତମ ବୁଦ୍ଧିରେ ଭାବିଲି ଯେ ଏ ସ୍ତନ ପର୍ବତାକାର ହୋଇଯିବ ଏଥିରେ ବିଧାତା କୃତ୍ୟ ଅଛି ।

୩୧—ମନୋହର ରୋମାବଳୀ ଧୈର୍ଯ୍ୟଭଞ୍ଜନକାରୀ ଗଦା ହେଲା । ଅଳକ (ଚୂର୍ଣ୍ଣ କୁନ୍ତଳ ) ଅର୍ଦ୍ଧଚନ୍ଦ୍ରାକାର ଶର ପରି ଶୋଭିଲା ।

୩୨—ଅତି ମନୋହର ଭ୍ରୂଲତାରୂପ ପରଶୁ (ଅସ୍ତ୍ର) ଧରିଅଛି । ମନକୁ ବାନ୍ଧିବା ପାଇଁ କେଶକୁ ପାଶ କରିଅଛି ।

୩୩—ନିତମ୍ବ ବିମ୍ବ ( ନିତମ୍ବ ମଣ୍ଡଳ ) ଚକ୍ରାସ୍ତ୍ର ପରି ପ୍ରକାଶ ପାଉଅଛି । ଉତ୍ତମ ମଧ୍ୟଭାଗ ପବିକି (ବଜ୍ରକୁ) ପରାଜୟ କରି ଦେଉଛି ।

୩୪—ନୟନ ରୂପଶର କଟାକ୍ଷ ରୂପ ତୀକ୍ଷ୍ଣତାକୁ ବହୁଛି । ସାର କପାଳ ସାରଙ୍ଗ (ଧନୁହୋଇ) ତାହା ନିକଟରେ ଅଛି ।

୩୫—ଅନଙ୍ଗ (କାମ) ଉତ୍ଫୁଲ୍ଲ କଫୁଲ୍ଲ ରୂପଗୁଣ୍ଠିକୁ ସେ ଧନୁରେ ଯୋଗ କରି ସବ୍ୟଶାଚୀ (ଅର୍ଜୁନଙ୍କର) ଦୀକ୍ଷା (ବାମ ଓ ଡାହାଣ ଉଭୟପାର୍ଶ୍ବରେ ଶର ନିକ୍ଷେପ କରିବା )କୁ ଶିକ୍ଷା କରୁଅଛି ।

୩୬—ଲୋକମାନଙ୍କୁ ଆତୁର କରାଇବା ପାଇଁ ନୂପୁର ରୂପକ ତୂର (ବୀରବାଦ୍ୟ) ବାଜିଲଣି । ସେ ବାଦ୍ୟ ସର୍ବଦା ରଣ ରଣ (ଜୟ) କହୁଛନ୍ତି ।

୩୭—ସେ କାତ୍ୟାୟନୀ ମତେ ଯେତିକି କହିଥିଲେ ମୁଁ ସେତିକି କହିଲି ଏହାକହି ପୋଥି ମୌନହେଲା ।

୩୮—ସେ ତରୁଣୀ ଅଳ୍ପକି ? ସେ କଳ୍ପତରୁ ପରି । ସୁମନା (ଦେବତା) ତୁଲ୍ୟ କାମନା ସିଦ୍ଧିକାରିଣୀ ।

ଚିତ୍ରପୁଂସ ବୋଲନ୍ତି ବୀର ବରବରେ ଭାଷା । ସ୍ୱଭାବ ଭାବନା ଅମ୍ଭ ଲୋକନଆଶା ॥୩୯
ବିଫଳ ନ କର ଏହା କରିବ ଠିକ । ଅର୍ଥିକ ଅମ୍ଭେ ତୁମ୍ଭେ ସେ ପଥ ପଥିକ ॥ ୪୦
ଦେଖାଅ ସରଣୀ ଆନ ଶରଣ ନାହିଁ । ବିସ୍ମିତ ନାଶିବା ବୋଲି ସସ୍ମିତ ହୋଇ ॥
ଅମ୍ଭ ଆୟତ୍ତ ଏତେକେ ଦର୍ଶନ ଦେବା । ତୁମ୍ଭ ଉଦ୍ୟମ ଉଦୟ ପ୍ରସନ୍ନ ହେବା ॥ ୪୨
ସୁମନ୍ତ୍ର-ଶିଷ୍ୟ କହିଲେ ମନ୍ତ୍ରବଳରେ । ଜୀବନରେ ନେବୁଁ ରାମା କେଳିବନରେ ॥୪୩
ସଚିବର ସୁତ ବୋଲେ ଏମନ୍ତ ହେଲେ । ଶଚୀ-ବରପଦ ତୁଚ୍ଛ କରିବେ ଭଲେ ॥୪୪
ଯେଉଁ ଅଭିରାମ ରାମ ବାମନମୂର୍ତ୍ତି । ଉପଇନ୍ଦ୍ର ଭଞ୍ଜର ସକଳ ସମ୍ପତ୍ତି । ୪୫
ପଦ୍ମ ଧ୍ୟାନେ ମୋର ଗୀତ ସ୍ଫୁରିତ । ଚିତ୍ରନୋହେ ପୂର୍ଣ୍ଣ କରିବାର ଏ ଗୀତ ॥

---

୩୯—ଅଦ୍ଭୁତ ପୁରୁଷ ଏହିକଥା କହିବାରୁ ବୀର କହିଲେ ଅମ୍ଭର ଦେଖିବା ପାଇଁ ଆଶା ଜନ୍ମିବାରୁ ସ୍ୱଭାବରେ ଭାବନା ହେଉଛି ।

୪୦—ତୁମ୍ଭେ ଏହାକୁ ବିଫଳ ନ କର ଠିକ୍ କରିବ ଅମ୍ଭେ ପ୍ରାର୍ଥୀ ତୁମ୍ଭେ ସେପଥରେ ପଥିକ ଅଟ ।

୪୧—ସରଣୀ (ବାଟ) ଦେଖାଅ ଅମ୍ଭର ଅନ୍ୟ ଆଶ୍ରୟ ନାହିଁ, ଏହା କହି ବିସ୍ମିତ ହେବାରୁ ସେ ପୁରୁଷ ଅଳ୍ପ ଅଳ୍ପ ହସି କହିଲେ ତୁମ୍ଭର ବିସ୍ମୟ ଦୂର କରିବା ।

୪୨—ଦର୍ଶନ ଦେବା ଅମ୍ଭ ଆୟତ୍ତ କିନ୍ତୁ ସେ ରାମା କିପରି ତୁମ୍ଭଠାରେ ପ୍ରସନ୍ନ ହେବ ଏହା ତୁମ୍ଭର ଉଦ୍ୟମରେ ହେବ ।

୪୩—ତହୁଁ ସୁମନ୍ତଶିଷ୍ୟ ( ଚିତ୍ରପୁଂସ ) କହିଲେ ଅମ୍ଭେ ମନ୍ତ୍ରବଳରେ ଜୀବନରେ (ଅତିଶୀଘ୍ର) ରାମାର କ୍ରୀଡ଼ା ଉପବନକୁ ନେଇ ଯିବୁ ।

୪୪-୪୫—ମନ୍ତ୍ରୀପୁତ୍ର କହିଲା ଯେବେ ଏପରି ହେବ ତେବେ ଶଚୀବର ପଦ ( ଇନ୍ଦ୍ରପଦ ) ଅକ୍ଲେଶରେ ତୁଚ୍ଛ କରି ଦେବେ । ଅଭିରାମ ବାମନ ମୂର୍ତ୍ତି ରାମ ଉପେନ୍ଦ୍ର ଭଞ୍ଜର ସବୁ ସମ୍ପତ୍ତି, ତାହାଙ୍କର ପଦପଦ୍ମ ଧ୍ୟାନରେ ମୋହର ଗୀତପଦ ସ୍ଫୁରେ ସେ ମୋର ଏ ଗୀତକୁ ପୂର୍ଣ୍ଣ କରିବେ ଏହା ଆଶ୍ଚର୍ଯ୍ୟ ନୁହେଁ ।

# ଦଶମ ଛାନ୍ଦ

( ସୁନ୍ଦରୀର ବନବିହାର )

ରାଗ କଉଶିକ



ହି ଦିବସେ ମଧୁର ମଧୁ-ମାସେ ମଧୁର ମଧୁ-କଣ୍ଠ-ଭାଷି ।
ସୁଧାଂଶୁ-ପ୍ରଭା ସୁଧା-ପୁରେ ବସୁଧା-ମଣ୍ଡନା ସୁଖେ ଥିଲା ବସି ।
ଗୃହି ସ୍ତନକୁ । କି ଘେନି ମର୍ଦ୍ଦଳ ବଜାଇ ।
ଖେଳିବା ଗୋ ପଶା ତପସ୍ୟା-ଭଙ୍ଗିନୀ ସଙ୍ଗିନୀକି ଗୃହି ବୋଲଇ ॥ ୧

ଶଚୀ-କଳା କଳା-ଲାଳସୀ ସୁନ୍ଦରୀ-କଳାପେ ପ୍ରକାଶିଲା ଛଳ ।
ଜଗତେ ଯୁଗତେ ପ୍ରାବୃଟ ଆଗତେ ପ୍ରକଟ ହୁଅଇ ସେ ଖେଳ ।
ଏକାକାର ସେ । ବିଦିତ ମିଥୁନ ହେବାରେ ।
କରୀ ଦ୍ୱିଜର କାଠି ନରେ ଆନନ୍ଦ ଦାନତ ପାଣି ଚାଳିବାରେ ॥ ୨

---

୧—ଏହିଦିନ ସୁନ୍ଦର ମଧୁ ( ଚୈତ୍ର ) ମାସରେ ମଧୁର ( ସୁମିଷ୍ଟ ) ମଧୁକଣ୍ଠ (କୋକିଳ) ଭାଷି, ଧରଣୀମଣ୍ଡନା ସେ ସୁନ୍ଦରୀ ସୁଧାଂଶୁପ୍ରଭା ସୁଧାପୁରେ ( ଚୂନଲେପା ଘରେ ) ସୁଖରେ ବସି ସ୍ତନକୁ ଗୃହି ବିଗୁର କରି ତପସ୍ୟା ଭଙ୍ଗ କାରିଣୀ ମର୍ଦ୍ଦଳ ବଜାଇ ସଙ୍ଗିନୀକୁ ଆଗୋ ପଶା ଖେଳିବା ବୋଲି କହଇ ( ମର୍ଦ୍ଦଳ ଏବଂ ପଶାସାର ସହିତ ସ୍ତନର ସାମ୍ୟ ଥିବାରୁ ତାକୁ ତାଡ଼ନ କରିବା ଇଚ୍ଛାରେ ଏପରି କଲା ) ।

୨—କଳାଲାଳସୀ ( ଚତୁଃଷଷ୍ଟୀ କାମକଳାରେ ସ୍ନେହୀ ) ଶଚୀକଳା ନାମରେ ଏକ ସଖୀ ସୁନ୍ଦରୀସମୂହରେ ଛଳ ପ୍ରକାଶ କଲା, ଜଗତରେ ଯୁଗତେ ( ଉପଯୁକ୍ତରୂପେ) ପ୍ରାବୃଟ ( ବର୍ଷାକାଳ ) ଆସିଲେ ସେ ଖେଳ ପ୍ରକଟ ହୁଏ, ସେ ଖେଳ ଓ ବର୍ଷାକାଳ ସମାନ । ବର୍ଷାକାଳ ମିଥୁନ (ଆଷାଢ଼ମାସ) ହେଲେ ପ୍ରକାଶ ପାଏ ପଶାଖେଳ ମିଥୁନ (ଯୁଗଳଜଣ) ହେଲେ ପ୍ରକାଶ ହୁଏ । ବର୍ଷାକାଳ କାଠିନରେ ( ନିଷ୍ଠୁରଭାବରେ ) ପାଣି ଚାଳିବାରୁ ଦ୍ୱିଜର ( ପକ୍ଷୀମାନଙ୍କର ) ଆନନ୍ଦକୁ ଦାନ ( ଛେଦନ ) କରେ । ପଶାଖେଳରେ ନରେ କରୀଦ୍ୱିଜର ( ହାତୀ ଦାନ୍ତର ) କାଠିପରି ପାଣି (—ହସ୍ତ ) ଚାଳିବାରେ ଦାନପକାଇ ଆନନ୍ଦ ହୁଅନ୍ତି ।

ଦେଖୁଁ ଦେଖୁଁ କରେ ସୁମନା ଉତ୍ଫୁଲ୍ଲ ପୁନଃପୁନଃ ବନ୍ଧୁ୍ୟ ପ୍ରଚୁର ।
କେତେବେଳେ ସେହି ଅଚଳ ଭଜଇ ଚଳ ପ୍ରଚଳ ଘନ-ସାର ।
ମାର ପ୍ରତାପ । ଘୋଷ ଅଧିକରେ ପ୍ରକାଶ ।
ସେ କାଳ ହୋଇଲେ ସେ ଖେଳ ଖେଳବା ନ୍ୟାୟବଳେ ହୁଅ ଅବେଶ ॥ ୩॥

ବସନ୍ତେ ହୁଏ ଦ୍ୱିଗୁଣ ଏକ ପ୍ରାୟେ ସମସ୍ତ ରାଜା ହୋଇ ଜାତ ।
ପାଞ୍ଚ ମନୋଭବ ଅଧିକ ହୁଅଇ ଶଚୀ-ବରେ ସେ ପ୍ରଶଂସିତ ।
ଏତେ ସୁଖଦ । ଗନ୍ଧର୍ବ ଲୀଳାମାନ ରଚ ।
ତରଣୀପ୍ରଭା ନାଗେଶ୍ୱର ଶୋଭାକୁ ବଢ଼ାଇ ପଦଗରେ ରୁଚ ॥ ୪

---

୩—ଦେଖୁ ଦେଖୁ ସୁମନା ( ମାଲତୀକୁ ) ଉତ୍ଫୁଲ୍ଲ କରେ, ପୁନଃ ପୁନଃ ବନ୍ଧୁ୍ୟର ପ୍ରଚୁର ହୁଏ, ଘନସାର ( ବଡ଼ ବଡ଼ ମେଘଖଣ୍ଡମାନ ) ଚଳଚଳେ ହୁଅନ୍ତି, ପୁଣି କେତେବେଳେ ସେମାନେ ଅଚଳ ହୁଅନ୍ତି । ମାର (କାମ ) ପ୍ରତାପ ଏବଂ ଘୋଷ ( ମେଘଗର୍ଜନ ) ଅଧିକ ପ୍ରକାଶ ପାଏ । ପାଶାଖେଳ ଦେଖି ସୁମନା ( ବିଳାସୀ ) ମାନେ ଆନନ୍ଦିତ ହୁଅନ୍ତି, ବନ୍ଧୁ୍ୟ ପ୍ରଭୃତ ଦାନ ପଣ ତହିଁରେ ପ୍ରଚୁର କରେ, ସାର ସବୁ ଘନ ଘନ ଚଳପ୍ରଚଳ ହୁଅନ୍ତି, କେତେବେଳେ ଅବା ଅଚଳ ହୁଅନ୍ତି ମାର ମାର ଏହିଶବ୍ଦ ଅଧିଭାବରେ ପ୍ରକାଶ ପାଏ । ଅତଏବ ସେକାଳ ହେଲେ ସେ ଖେଳ ଖେଳବା, ବର୍ତ୍ତମାନ ନ୍ୟାୟବଳ ଖେଳବାରେ ତତ୍ପର ହୁଅ ।

୪—ବସନ୍ତରେ ଏବଂ ନ୍ୟାୟବଳ ଖେଳରେ ଦୁଇଗୁଣ ଏକ ପ୍ରକାର ଅଟେ । ବସନ୍ତକାଳରେ ସମସ୍ତରାଜା ଜାତ ହୁଏ, ମନୋଭବପାଞ୍ଚ ( କାମକେଳି ବିଚାର ) ଅଧିକହୁଏ ସେକାଳ ଶଚୀବରେ ( ଇନ୍ଦ୍ରରେ ) ପ୍ରଶଂସିତ, ଗନ୍ଧର୍ବ ( କୋକିଳ ) ଲୀଳାମାନ ରଚଇ, ସେକାଳ ତରଣୀ ( ସୂର୍ଯ୍ୟ ) ପ୍ରଭା ଓ ନାଗେଶ୍ୱର ବୃକ୍ଷ ଶୋଭାକୁ ବଢ଼ାଏ । ପଦଗରେ ( ପାଦଗୃସ୍ତ ହେବା ବିଷୟରେ ) ରୁଚି ବଢ଼ାଏ । ବସନ୍ତକାଳ ଏତେ ସୁଖଦ ଅଟେ । ନ୍ୟାୟବଳଖେଳରେ ଏକଥର ରାଜା ହୁଏ, ମାନସିକ ବିଚାର ଅଧିକହୁଏ, ସଚିବରେ ( ମନ୍ତ୍ରୀନାମାସାରରେ ) ଖେଳ ପ୍ରଶଂସିତ ତହିଁରେ ଗନ୍ଧର୍ବ ( ଘୋଡ଼ାସାର ) ବକଗତରେ ଲୀଳାମାନ ରଚଇ; ସେ ଖେଳ ତରଣୀ ( ନୌକାରେ ) ପ୍ରଭା ନାଗେଶ୍ୱର ( ହସ୍ତୀସାର ) ଶୋଭାକୁ ଏବଂ ପଦଗରେ ( ପାଇକସାରରେ ) ରୁଚି ( ଅନୁରାଗକୁ ) ବଢାଏ । ସେ ଖେଳ ଏତେ ସୁଖଦ ଅଟେ ।

ବାଳା କହିଲା ହେଲ ପର ବିରସ ବୀର-ସିନା ରସ ସେ ସହୁ ।
ବାଣୀ ବାଣୀକା ଭାଷିଲା ମୁଁ ହେଜୁଛି ଯୋଷା ଇରଷ୍ୟା ଅଛି ତହିଁ ।
ଶୁଣି ରମଣୀ । ବେଗ ଅଧୋମୁଖୀ ହୋଇଲା ।
ଏକାଳେ ମିଳି କାଦମ୍ବିନୀ ନବୀନ-ନିତମ୍ବିନୀ ଅଗେ ବୋଇଲା ॥ ୫
କଉଶିକୀ ତଟ ନିକଟ ଅଟବି ମଧ୍ୟେ ବ୍ରଜଲୀଳା ହେଉଛି ।
ଗୁଣ-ନିଧାନ ସାବଧାନୀ ହୁଅ ରେ ଦେଖି ଯିବାକୁ ମୁଁ କହୁଛି ।
କହ କେମନ୍ତ । ମତ୍ତକାଶିନୀ ପଚାରିଲା ।
ଚତୁରୀ ସଖୀ ବହୁତ ଚତୁରୀରେ ତୁରତେ ବାଣୀ ଉଚ୍ଚାରିଲା ॥ ୬
ଶୁଣ ରେ ରୁଚିରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁପମରେ ।
କୁଞ୍ଜରେ ଲଳିତା ବିଶାଖା କ୍ରୀଡ଼ିତ ଇନ୍ଦୁରେଖା ଚିତ୍ରା ରମ୍ୟରେ ।
ଅଛି ସୁଦେବୀ । ପୁଣି ତୁଙ୍ଗବିଦ୍ୟା ନିପୁଣେ ।
ଭାବନ୍ତି ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ ॥ ୭

---

୫—ବୀରପୁରୁଷ ରସରେ ବିରସ ହେଲାପର ସେ ବାଳା ପଶା ଖେଳରେ ବିରସ ହୋଇ କହିଲା, ତାହା ଶୁଣି ବାଣୀକା କହିଲା ମୁଁ ଭାବୁଛି ସଖୀର ସେ ଖେଳରେ ଈର୍ଷା ହୋଇଅଛି, ( ସାର ସ୍ତନ ସହିତ ସମାନ ହେବାରୁ ଈର୍ଷା ) । ରମଣୀ ତାହାଶୁଣି ଶୀଘ୍ର ଅଧୋମୁଖୀ ହେଲା, ଏହି ସମୟରେ କାଦମ୍ବିନୀ ଆସି ସେ ନୂଆନିତମ୍ବିନୀ ଆଗରେ କହିଲା ।

୬—କୌଶିକୀନଦୀତୀରବର୍ତ୍ତୀ ଅରଣ୍ୟ ମଧ୍ୟରେ ବ୍ରଜଲୀଳା ହେଉଛି, ରେ ଗୁଣନିଧାନ ତୁମ୍ଭେ ସାବଧାନୀ ହୁଅ, ଦେଖି ଯିବାକୁ ମୁଁ କହୁଛି । ମତ୍ତକାଶିନୀ ( ଉତ୍ତମା ସ୍ତ୍ରୀ କୋଟିବ୍ରହ୍ମାଣ୍ଡସୁନ୍ଦରୀ ) ପଚାରିଲା "କେମନ୍ତ ସେ ବ୍ରଜଲୀଳା କହ"। ସେ ଚତୁର ସଖୀ ଚତୁରତାରେ ଶୀଘ୍ର କହିଲା ।

୭—ରେ ସୁନ୍ଦରୀ ! ଶୁଣ ବ୍ରଜଲୀଳାର ଶୋଭା, ଅନୁପମରେ ବିରାଜିତ, କୁଞ୍ଜରେ ଲଳିତ ବିଶାଖା, ଇନ୍ଦୁରେଖା, ଚିତ୍ରା ମନୋହର ରୂପେ କ୍ରୀଡ଼ା କରୁଛନ୍ତି, ପୁଣି ସେଠାରେ ସୁଦେବୀ ଅଛି, ଚତୁର ଭାବରେ ତୁଙ୍ଗ ବିଦ୍ୟାଅଛି, ରଙ୍ଗଦେବୀ ଓ ଚମ୍ପକଲତା ମଧୁସୂଦନଙ୍କ ଭ୍ରମଣ ବିଷୟରେ ଭାବନା କରୁଅଛନ୍ତି । ଇନରେ ରୁଚିରାଧିକା ( ଅତିସୁନ୍ଦର ) ଚନ୍ଦ୍ରାବଳୀ ( ଚନ୍ଦନବୃକ୍ଷସବୁ ) କ୍ରୀଡ଼ିତ ( ଆନ୍ଦୋଳିତ, ) ଇନ୍ଦୁରେଖା ( ବାକୁଚିବୃକ୍ଷ କିମ୍ବା ସୋମଲତା ) ଚିତ୍ରା ( ଚିତାବୃକ୍ଷ ) ସୁଦେବୀ ( ଫିରିକଣାକବୃକ୍ଷ ) ପୁଣି ତୁଙ୍ଗ ( ପୁନ୍ନାଗବୃକ୍ଷ ) ସବୁଅଛନ୍ତି । ବିଦ୍ୟା ( ଅପରାଜିତା ) ନିପୁଣେ (ଅନ୍ୟବୃକ୍ଷ ଆଶ୍ରୟରେ )ଅଛି । ଏବଂ ରଙ୍ଗଦେବୀ ( ଗଙ୍ଗଶିଉଳୀ ) ଚମ୍ପକ ଲତା ମଧୁସୂଦନ ( ଭ୍ରମର ) ର ଭ୍ରମଣ ( କ୍ରୀଡ଼ା ) ବିଷୟ ଭାବୁଛନ୍ତି ( ଭ୍ରମର ଗଙ୍ଗଶିଉଳୀ ଫୁଲରେ ବସୁଛି ଚମ୍ପା ଫୁଲରେ ବସୁନାହିଁ )।

ମଞ୍ଜରୀ-ବାର ସେବିତ ନିରନ୍ତର ଅଶେଷ ଗୋପରେ ସେ ଶୋଭେ ।
ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛନ୍ତି ଦଇବେ ବେଣୁଧ୍ୱନି ଶୁଭେ ।
ଅମ୍ବୁ ପ୍ରବେଶେ । ସୁମନ ସୁଦାମ ହୋଇବ ।
କିଙ୍କିଣୀ ପ୍ରବଲବଲ ହୋଇ କରି ନାନା ବିଳାସ ପ୍ରକଟିବ ॥
ଶ୍ରୋତବେ ସେ ସୁଖ-ସରିତ ସ୍ରୋତରେ ସତ୍ୱରେ ଚିତ୍ତ ମଜ୍ଜାଇଲା ।
ଧରି ସଖୀ କର ଧରଣୀ-ଶୋଭିନୀ ଯେ ଉଭା ଚତ୍ୱରେ ଶୋଭା କଲା ।
କେହି ମୟୂର । ପୁଚ୍ଛ ଗୁମର କେ ଢାଳିଲେ ।
କେ ତହିଁ ପହଣ୍ଡ ମଣାଇ ଜଣାଇ ଅଣାଇ ବୀଣା କେ ବାଇଲେ ॥ ୯
ପୁଷ୍ପରାଗ ପତନରେ ସୁପତନ ଯେଉଁ ସରଣୀ ହୋଇଥିଲେ ।
ବରୁବ ଅନୁରୂପୀ ସୁକୁମାରୀଙ୍କ ସେ ଢଙ୍ଗେ ବଜେ କରାଇଲେ ।
ବନେ ଜବନେ । ମିଳୁଁ ବୋଇଲା ଦିବ୍ୟବାଳା ।
ବିଟପ ବିଟପୀ ଏଥିତ ବହୁତ କହୁଁ ତ ଥିଲ ଆନ ଲୀଳା ॥ ୧୦

---

୮—ବ୍ରଜଲୀଳା-ନିରନ୍ତର ମଞ୍ଜରୀ ବାର ( କୁଞ୍ଜସମୂହ ) ରେ ସେବିତ ସେ ମଞ୍ଜରୀ, ବାର ପୁଣି ଅଶେଷ ଗୋପୀର ସୁନ୍ଦର ଦିଶଇ ସେଠାରେ କାମ ମୂର୍ତ୍ତିମାନ ହୋଇ ବିରାଜୁଛି, ଦଇବେ ( ହଠାତ୍ ) ବେଣୁଧ୍ୱନି ଶୁଭୁଛି । ସେଠାରେ ସୁଦାମ ସୁମନ ( ଆନନ୍ଦିତ ) ହୋଇଛନ୍ତି, ପ୍ରବଲ ବଲରୁ ନାନା ପ୍ରକାର ବିଳାସ ପ୍ରକାଶ କରୁଛନ୍ତି । ବନ-ମଞ୍ଜରୀ ବାର ( ଲତାସମୂହ ) ରେ ସେବିତ ବହୁତ ଗୋପୀ ( କୁଆମଇତାରେ ) ସୁନ୍ଦର ଅଛେ । ମଦନ (ଧାତୁରୀ ବୃକ୍ଷ) ସେଠାରେ ମୂର୍ତ୍ତିମାନ୍ ବେଣୁ ( ଛିଦ୍ରଯୁକ୍ତ ବାଉଁଶ )ର ଶବ୍ଦ ଶୁଭୁଛି । ଅମ୍ବୁ ପ୍ରବେଶରେ ସୁମନ ସୁଦାମ ( ପୁଷ୍ପର ସୁନ୍ଦର ମାଳା ) ହୋଇବ, କିଙ୍କିଣୀ ସହାୟ ବଳରୁ ନାନା କ୍ରୀଡ଼ା ପ୍ରକଟ ହେବ ।

୯—ସେ ଧରଣୀ ଶୋଭିନୀ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଶ୍ରୋତରେ ( ଶୁଣାନ୍ତେ ) ସତ୍ୱରେ ( ଶୀଘ୍ର ) ସୁଖସରିତ ( ଆନନ୍ଦନଦୀ ) ସ୍ରୋତରେ ମନକୁ ବୁଡ଼ାଇଲା ଏବଂ ସଖୀ କରଧରି ଉଭାହୋଇ ଚତ୍ୱର ( ଅଗଣାର ) ର ଶୋଭା କଲା । କେହି କେହି ମୟୂରପୁଚ୍ଛନିର୍ମିତ ଗୁମର ଢାଳିଲେ କେହି ଅବା ପହଣ୍ଡ ମଣାଇ ବାଟ ଦେଖାଇ ଅଣାଇଲେ କେହି କେହି ବଂଶୀ ବଜାଇଲେ ।

୧୦—ଯେଉଁ ସରଣୀ ( ବାଟ ) ପୁଷ୍ପରାଗ ପଡ଼ି ସୁନ୍ଦର ହୋଇଥିଲେ, ସଖୀମାନେ ବରୁରଙ୍କର ସୁନ୍ଦରୀଙ୍କୁ ସେହିଢଙ୍ଗରେ ବଜେ କରାଇଲେ । ବନରେ ଜବନେ ( ଶୀଘ୍ର ) ପହୁଞ୍ଚନ୍ତେ ଦିବ୍ୟବାଳା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କହିଲା, ଏଠାରେ କେବଳ ବିଟପ ( ବୃକ୍ଷ ) ବିଟପୀ ( ଲତା ) ବହୁତ ଅଛନ୍ତି, ତୁମ୍ଭେ ତ ଅନ୍ୟ ପ୍ରକାର ଲୀଳା କଥା କହୁଥିଲ ।

ବାଣୀକା କଲ୍ପ ପ୍ରମାଣ ମାଣବକ-ମୃଗ ଜଢ଼-ନେବା ଉତ୍ତର ।
ଏଥିରେ ବାଳା କାଳାନ୍ତରେ ଅଛି ରେ ଏହି ବିହାର ବ୍ୟବହାର ।
ଥିବା ବେଳରେ । ସୁମନା-ବଳୀ ମନୋହରରେ ।
ପ୍ରକର ବରଅଁ ଲାଳସ ଗଣିକା ଭାବେ ସୁବାସ ହରିବାରେ ॥ ୧୧
ଶଚୀକଳା ଭଲ ସେ କଥା ସମ୍ମତ ଏମନ୍ତ କହିଲା ସେଥିରେ ।
ଇନ୍ଦ୍ର ତପସ୍ୱିନୀ ଘେନି ବହୁନେଇ ଶୋଭା ହୋଇଥିଲା ଏଥିରେ ।
ଯାହା ପ୍ରେରିତ । ସେ ଭାବେ ଦେଖାଇଲା ଛଳେ ।
କେ କେଉଁ ମହୀରୁହ ଲତା ଅନାଇ ଚାହାଁଉଥିବ ରମା ବୋଲେ ॥ ୧୨
ପୁନ୍ନାଗ ନାଗର ଦେଖରେ ବୋଲି କେ ଦେଖାଉଁ ଅଙ୍ଗୁଳିରେ କରି ।
ଏହି ତରୁ ତରୁଣ-ଶ୍ରେଷ୍ଠ ନୋହେ କି ତରୁଣୀ-ରତନ ପଚାରି ॥
ମଲ୍ଲୀ ବୋଲନ୍ତେ । କାହିଁକି ବୋଲି ସେ ହସଇ ।
ମାଧବୀଙ୍କ ଗୁହିଁ ମାଧବୀ ବୋଲନ୍ତେ ଏହି ମଧୁପୁର ଭାଷଇ ॥ ୧୩

---

୧୧—ମାଣବକ (ଶିଶୁ) ମୃଗଜଢନେବାର ଉତ୍ତରକୁ ବାଣୀକା ସଖୀ ପ୍ରମାଣ କଲା, କହିଲା ରେ ବାଳା । ଏଥିରେ ଏହି ( ବିଟପ, ବିଟପୀ ) ବ୍ୟବହାର ବହୁକାଳରୁ ଅଛି ଏଠାରେ ସୁମନାବଳୀ ( ଦେବତାମାନେ ମନୋହର ରୂପେ ଥିବାବେଳେ ପ୍ରକର ବରଅଁ ( ବୃଦ୍ଧବ୍ରହ୍ମା ) ଗଣିକା ( ବେଶ୍ୟା ) ଭାବରେ ବଶ ହୋଇ ତାହାର ଉତ୍ତମ ବସ୍ତୁକୁ ହରଣ କରିବା ବିଷୟରେ ଲାଳସ ହୋଇଥିଲେ, ଏବନରେ ସୁମନାବଳୀ ( ପୁଷ୍ପସମୂହ ) ମନୋହର-ରୂପେ ପ୍ରକର ( ସ୍ତବକ ) ବିରଚି ଥିବାବେଳେ ପବନ ଗଣିକା ( ଯୂଥି) ଭାବରେ ବଶ ହୋଇ ତାହାର ଉତ୍ତମ ଗନ୍ଧ ହରଣ କରିବାରେ ଲାଳସ ହୋଇଛି ।

୧୨—ଶଚୀକଳା ସଖୀ ସେ କଥାରେ ସମ୍ମତ କରି ଏହିପରି କହିଲା ଏଥିରେ ଇନ୍ଦ୍ର ତପସ୍ୱିନୀ (ଅହଲ୍ୟା) ଙ୍କୁ ଘେନି ବହୁ ନେଇରେ ଶୋଭା ପାଉଥିଲେ । ବର୍ତ୍ତମାନ ଏ ବନ ତପସ୍ୱିନୀ (ଜଟାମାଂସୀ) ଇନ୍ଦ୍ର (କୁଟଜ) ପ୍ରଭୃତି ବହୁତ ବୃକ୍ଷ ଘେନି ନେଇ ଶୋଭାକର ହୋଇଅଛି । ଯେ ଯାହା ପ୍ରେରିତ (ବ୍ରହ୍ମା ପ୍ରେରିତ କାଦମ୍ବିନୀ, ଇନ୍ଦ୍ର ପ୍ରେରିତ ଶଚୀକଳା ) ସେମାନେ କପଟରେ ସେହି ଭାବ ଦେଖାଇଲେ । କିଏ କେଉଁ ମହୀରୁହ ( ବୃକ୍ଷ ) କିଏ କେଉଁ ଲତା ଭଲ କରି ଦେଖି ମତେ ଚାହାଁଇ ଦେଉଥିବ ବୋଲି ସୁନ୍ଦରୀ ସେମାନଙ୍କୁ କହିଲା ।

୧୩—ରେ ନାଗର । ପୁନ୍ନାଗ ଦେଖ ବୋଲି କେଉଁ ସଖୀ ଅଙ୍ଗୁଳିରେ ଦେଖାନ୍ତେ ତରୁଣୀରତ୍ନ ପଚାରିଲା ଏତ ତରୁ (ବୃକ୍ଷ ) ତରୁଣ ଶ୍ରେଷ୍ଠ ( ପୁନ୍ନାଗ-ଯୁବା-ଶ୍ରେଷ୍ଠ) ନୁହେଁ, କେହି ସଖୀ ଏ ମଲ୍ଲୀ ବୋଲନ୍ତେ ସୁନ୍ଦରୀ କହେ କାହିଁକି

ଅଣିମି ଭଣି ସୁସ୍ୱରେ ନାଗେଶ୍ୱରେ ତାର ସନ୍ନିଧେ ଯାଉଁ କେହୁ ।
ମଥାକୁ ତାଳି ଏକଥା ପୁଚ୍ଛା କଲି କଥା-ପ୍ରସଙ୍ଗ ହେଲୁ କେହୁ ।
ସେହୁ ବୋଇଲା । ଅଣିମି ସୁପର୍ଣ୍ଣେ ଭରସା ।
ଭାଷାକୁ ଭାଷା ମିଶିବାରୁ ହେଲା ଯେ ଏତକ ଭାଷିଲା ସୁଦୃଶା ॥ ୧୪
ଚମ୍ପା କହ ନା ଜଗତ-ବନ୍ଦନାକୁ ସମ୍ଭାବବ ସିନା ଏସନ ।
ଆମ୍ଭ ନଗର ନଗରୂପ ହେଲା କି ବୋଲି ଯେ କହିବ ବହନ ।
ବୋଲେ କେ ତହିଁ । ହୋଇ ଏ ମୌଗ୍ଧ ପ୍ରକାଶିଛୁ ।
କେ କହେ ନୋହେ ଏ ପରମ ପଣ୍ଡିତା ମନକୁ ନାନାର୍ଥ ଅଣୁଛୁ ॥ ୧୫
ଏମନ୍ତ ରହସ୍ୟ ବଶ ହସ ହସ ହଂସପନ୍ତି ପ୍ରାପ୍ୟେ ଗମନ ।
ସମସ୍ତେ ସୁବେଶ ପ୍ରବେଶ ହୋଇଲେ ମାଙ୍ଗଲ୍ୟାଙ୍କ ଥିଲା ବିପିନ ।
କାଦମ୍ବିନୀ ଯେ । ଯତନେ କଢ଼ାଇ ନେଉଛୁ ।
ବିଧିରେ ବିଧିଙ୍କର ଆଜ୍ଞା ଅବଜ୍ଞା ନୋହିବ ଏ ହେତୁ ହୋଇଛୁ ॥ ୧୬

---

ମଲୁ ? ବୋଲି ହସଇ । କେହୁ ମାଧବୀ ବୃକ୍ଷକୁ ଚାହିଁ ଏ ମାଧବୀ ବୋଲନ୍ତେ, ଏ ଜଣ ମଧୁପୁର ଯେ ଏଠାରେ ମାଧବୀ (ଲକ୍ଷ୍ମୀ) ଅଛନ୍ତି ?

୧୪—କୌଣସି ସଖୀ ମୁଁ ନାଗେଶ୍ୱର ଅଣିବ ଏହା ସୁସ୍ୱରେ ଭଣି ତାହା ନିକଟକୁ ଯାଅନ୍ତେ ଅନ୍ୟ ସଖୀ ମଥାତାଳି ଏ କଥା ପଚାରିଲା ତୁ କପର କଥା ପ୍ରସଙ୍ଗ ( ସାପୁଅକେଳା ) ହେଲୁ ଯେ ନାଗେଶ୍ୱର (ଜଣେସ୍ତ ନାଗ) ଅଣିବୁ ? ସେ କହିଲା ନିଶ୍ଚୟ ଅଣିବ, ସୁପର୍ଣ୍ଣ (ସୁନ୍ଦର ପତ୍ର ଓ ଗରୁଡ଼ ହେଲା, ମୋର ତାହା ଠାରେ ଭରସାଅଛି) କଥାକୁ କଥା ମିଶି ଯିବାରୁ ସୁଦୃଶା ( ସୁନେତ୍ରା ) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ "ହେଲା ଯେ" ଏତିକି କହିଲା ।

୧୫—କେଉଁ ସଖୀ କହିଲା ଜଗତ ବନ୍ଦନାକୁ ଏ ଚମ୍ପାବୋଲି କହନା ସେ ଏପରି ସମ୍ଭାବବ (ମନରେ ଭାବିବ ) ଯେ ଆମ୍ଭ ନଗର ନଗ [ ବୃକ୍ଷ ] ରୂପ ହେଲା କି ? ଏହା ଶୀଘ୍ର କହିବ । କିଏ କହିଲା ଏ ସୁନ୍ଦରୀ ମୌଗ୍ଧ ( ନବଯୌବନକୁ ) ପାଇ ମୌଗ୍ଧ (ଚତୁରତା) ପ୍ରକାଶୁଛି, କେହୁ କହେ ତାହା ନୁହେ ଏ ପରମ ପଣ୍ଡିତା ହେତୁ ମନକୁ ନାନା ଅର୍ଥ ଆଣୁଛି ।

୧୬—ଏହିପରି ରହସ୍ୟରେ ବଶହୋଇ ହସି ହସି ହଂସଶ୍ରେଣୀପରି ଗମନ କରନ୍ତି ସମସ୍ତେ ସୁବେଶ ହୋଇଛନ୍ତି ଯେଉଁ ବନରେ ମାଙ୍ଗଲ୍ୟ ଥିଲେ ସେହି ବନରେ ଯାଇଁ ପ୍ରବେଶ କଲେ । କାଦମ୍ବିନୀକୁ ବ୍ରହ୍ମାଙ୍କର ଆଦେଶ ଥିବାରୁ ସେ ଅତି ଯତ୍ନରେ ବାଟ କଢ଼ାଇ ନେଉଛି । ବିଧିରେ ବିଧାତାଙ୍କର ଆଜ୍ଞା ଅବଜ୍ଞା ହେବ ନାହିଁ ଏହି ହେତୁରୁ ଏମାନେ ସେଠାରେ ପହୁଞ୍ଚିଲେ । (ବ୍ରହ୍ମା ) ସୁନ୍ଦରୀକୁ ମାଙ୍ଗଲ୍ୟାଙ୍କ ଭେଟ କରାଇବା ପାଇଁ କାଦମ୍ବିନୀକୁ ଆଦେଶ ଦେଇଥିଲେ )

ସେ ବନ ଧନ୍ୟ ସମାନ ନାହିଁ ଅନ୍ୟ ସେଵିତ ପୁଣ୍ୟବନ୍ତ ଜନ ।
ଶୁକ ପିକ ଯୂଥ କଥଯୁନ୍ତି ଚୈତ୍ରରଥ ନନ୍ଦନର ଜନନୀ ।
ସତ ଏ କଥା । ପ୍ରସବ ସୁଲକ୍ଷଣ ଅଛୁ ।
ଫୁଲ ପତନ ସ୍ତନ-ନାରକେଳରେ ପୟ ପରିପୂର୍ଣ୍ଣ ହୋଇଛୁ ॥ ୧୭

ଉପକୁଲ୍ୟା ଆଦ ଉପକରଣକୁ ଅଛୁ ଏ ଗର୍ଭଗତ କର ।
ତମାଳ-ଦଳ କୁନ୍ତଳ ବାନ୍ଧ ନାହିଁ ଅତପ ସ୍ନେହୀ ସ୍ନାନ ସାର ।
ଉଦ୍ଭବ୍ୟ ବାସରେ । ଅଛୁ ସେ ଆଚ୍ଛାଦନ ହୋଇ ।
ଉଡ଼େ ପୁଷ୍ପରଜ ବ୍ୟାଜ ନିଜ ଦେହୁଁ କୁଙ୍କୁମ ଥିଲ ଉଲୁଟାଇ ॥ ୧୮

ଏକଥା ବୃଥା ହୋଇଥିଲେ ଶୋଭିତ ଲଭିଥାନ୍ତା କିମ୍ପା ସେ ସ୍ଥଳେ ।
ଭସ୍ମ ଦ୍ୱିରଦ ରଦ-ଚୂର୍ଣ୍ଣକି ଉବେ ନାଭି କୁରଙ୍ଗ-ନାଭି ଛଳେ ।
ଯକ୍ଷ ଅମରେ । ସ୍ୱରେ ଘେନଗଲେ ଏ ବସ୍ତୁ ।
ଋତୁପତି ପ୍ରିୟବତୀ ଯୁବତୀ ଏ ପାଳିତ ନ ପାରିବ ଶିଶୁ ॥ ୧୯

---

୧୭—ସେ ବନ ଧନ୍ୟ ଅଟେ ତାହା ସମାନ ବନ ଆଉ ନାହିଁ, ଯେଉଁମାନେ ପୁଣ୍ୟବନ୍ତ ହୋଇ ଜନ (ଜନ୍ମ) ଗ୍ରହଣ କରିଛନ୍ତି ସେମାନଙ୍କର ସେଵିତ ଏ ସ୍ଥାନ । ଶୁକ ଓ କୋକିଳ ମାନେ କହୁଛନ୍ତି ଏ ବନ ଚୈତ୍ରରଥ [ କୁବେରଙ୍କ ବନ ] ନନ୍ଦନ ( ଇନ୍ଦ୍ରଙ୍କ ବନ ) ର ଜନନୀ ଅଟେ ଏକଥା ସତ୍ୟ ଯେ ହେତୁ ପ୍ରସବର ସୁଲକ୍ଷଣମାନ ଏଠାରେ ଅଛୁ । ପୁଷ୍ପ ପତନ ହୋଇଛୁ । ନାରିକେଳ ସ୍ତନ ହେଲ ତହିଁରେ ଥିବା ପୟ ( ଜଳ ) ଦୁଗ୍ଧ, ସେ ତହିଁ ରେ ପରିପୂର୍ଣ୍ଣ ।

୧୮—ପ୍ରସୂତ ଉପକୁଲ୍ୟା ( ପିପ୍ପଳୀ ) ପ୍ରଭୃତି ଉପକରଣମାନ ଗର୍ଭ ଗତ କଲ ପରି ଏ ବନ ପିପ୍ପଳି ପ୍ରଭୃତି ଉପକରଣ ( ଅନୁ ସଙ୍ଗିକ ) ବୃକ୍ଷମାନଙ୍କ ମଧ୍ୟରେ ରଖିଅଛୁ । ପ୍ରସୂତ କୁନ୍ତଳ ( କେଶ ) ବାନ୍ଧି ନ ଥାଏ ଏ ମଧ୍ୟ ତମାଳପତ୍ର-ରୂପ କେଶକୁ ବାନ୍ଧିନାହିଁ ସେ ସ୍ନାନ ସାର ରୌଦ୍ର ( ଖରା ) ସ୍ନେହୀ ହେଲ ପରି ଏ ମଧ୍ୟ ରୌଦ୍ର ( ଅତପ ବା ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ରଜନ୍ତୁ ) ସ୍ନେହୀ ହୋଇଛୁ । ପୁଣି ପୁଷ୍ପ ରଜ ଛଳରେ ପ୍ରସୂତ ପରି ନିଜ ଦେହକୁ କୁଙ୍କୁମ ଉଲୁଟାଇ ( ଛଡ଼ାଇ ଥିବାରୁ ) ତାହା ଉଡୁଅଛୁକି ।

୧୯—ଏ କଥା ବୃଥା ହୋଇଥିଲେ ସେ ବନରେ କାହିଁକି ଦ୍ୱିରଦ ରଦ (ହସ୍ତୀ-ଦନ୍ତ) ଚୂର୍ଣ୍ଣ କିତବେ ( ବ୍ୟାଜରେ ) ଭସ୍ମ ( ପାଉଁଶ ) ପୁଣି କୁରଙ୍ଗ ନାଭି [ କସ୍ତୁରୀ ] ଛଳରେ ନାଭି ପାଉଥାନ୍ତା, ( ନବଜାତ ଶିଶୁର ନାଭି କଟାହୋଇ ପାଉଁଶରେ ପଡ଼େ ) ଏବନ ଋତୁରାଜ ବସନ୍ତର ପ୍ରିୟ ଯୁବତୀ, ଅତଏବ ଶିଶୁମାନଙ୍କୁ ପାଳି ନ ପାରିବ ଭାବି ଯକ୍ଷ ( କୁବେର ) ଅମର ( ଇନ୍ଦ୍ର ) ଏହାର ସନ୍ତାନଙ୍କୁ [ ଚୈତ୍ରରଥ ଓ ନନ୍ଦନ ବନ ରୂପ ଶିଶୁ ଦ୍ୱୟଙ୍କୁ ] ନିଜପୁରକୁ ଘେନଗଲେ ।

ତହିଁ ଗୃହିଁ ଗୋରୀ ଶ୍ୟାମଳ ଅବଳା ମେଳା ତପସ୍ୱିନୀ ତର୍କ ।
ଅବନୀ-ବନିତା ଗର୍ଭ ଶୋଭା ପୀତ ନୀଳ ଅମ୍ଳାନ-ମାଲ୍ୟରେ କି ।
ଅଛି ମଧ୍ୟରେ । କେତକୀ ଦଳ ଝଂଗ୍ର ଏଣେ ।
ସେହି ସୁବାସରେ ପାଶକୁ ଭ୍ରମରଶ୍ରେଣୀ ହେଉଛନ୍ତି ଆଗତ ॥ ୨୦

ସେକ୍ଷଣି ମିଳି ସୁଲକ୍ଷଣୀ ମିତଣୀ ସଙ୍ଗେ ମାଙ୍ଗଲ୍ୟାଙ୍କୁ ଓଳଗି ।
କଲ୍ୟାଣ କଲେ ସେ ଉଲ୍ଲାସେ ହୁଅ ତୁ ସୁଭାଗୀ ତାହାର ଶୋଭାଙ୍ଗି ।
ଯେହୁ ଜନ୍ମିବ । ଜାଣି ଗର୍ବହତେ ମଦନ ।
ତ୍ରି-ନେତ୍ର-ନେତ୍ର-ଜାତ-ଜାତବେଦରେ ଦହନ ହୋଇଲା ବହନ ॥ ୨୧

ପୁଚ୍ଛାକଲା କେହି ବାଞ୍ଛାଦ୍ରୁମ ହୋଇ ତୁମ୍ଭେ ବାଞ୍ଛା ପୂର୍ଣ୍ଣ କରିବ ।
କହିବ ସେ କାହିଁ ଜନ୍ମୁଛି କି ନାହିଁ କି ଦେବ ଦାନବ ମାନବ ।
ହେଲେ ବଞ୍ଚନ । ଜେମା ଜାଣିବ ମିଥ୍ୟାଭାବ ।
ସେ ଭାଷି ଅମ୍ଭ ମନେ ଏତ ଆଭାସି ଏ ପୁରେ ଅବଶ୍ୟତ ଥିବ ॥ ୨୨

---

୨୦—ସେ ବନରେ ଗୋରୀ ଓ କାଳୀ ଅବଳାମାନଙ୍କର ମେଳା ଦେଖି ତପସ୍ୱିନୀ ( ମାଙ୍ଗଲ୍ୟା ) ତର୍କ କଲେ ଏ କଣ ଅମ୍ଳାନ ( ସଦ୍ୟ ପ୍ରସ୍ଫୁଟିତ ) ପୀତ [ ହରିଦ୍ରବର୍ଣ୍ଣ ] ଓ ନୀଳ ବର୍ଣ୍ଣପୁଷ୍ପମାଳାରେ ଅବନୀବନିତା ( ପୃଥିବୀ ସ୍ତ୍ରୀ)ର ଗର୍ଭ ଶୋଭା ହୋଇଛି କି ? କେତକୀପତ୍ର ଝଂଗ୍ରମଧ୍ୟରେ ଅଛି, ଭ୍ରମର ଶ୍ରେଣୀ ସେହି ସୁବାସରେ ପାଖକୁ ଆସୁଛନ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀ କେତକୀ ଝଂସ, ଗୁରୁ ପାଖରେ ଥିବା ସଖୀମାନେ ଭ୍ରମର ଶ୍ରେଣୀ ।

୨୧—ସୁଲକ୍ଷଣୀ ସେହୁକ୍ଷଣି ମିତଣୀ ସହ ମାଙ୍ଗଲ୍ୟାଙ୍କୁ ଓଳଗିଲା । ସେ ଉଲ୍ଲାସରେ କଲ୍ୟାଣ କଲେ ତୁ ତାହାର ଶୋଭାଙ୍ଗ ହୋଇ ସୌଭାଗ୍ୟବତୀ ହୁଅ ଯେଉଁ ପୁରୁଷ ଜନ୍ମିବାର ଜାଣି କାମ ଗର୍ବହତ ହୋଇ ମହାଦେବଙ୍କର ନେତ୍ରରୁ ଜାତ ହୋଇଥିବା ଜାତବେଦରେ [ ଅଗ୍ନିରେ ] ଶୀଘ୍ର ଦଗ୍ଧ ହେଲା ।

୨୨—କେହି ପଚାରିଲା ତୁମ୍ଭେ କଳ୍ପବୃକ୍ଷ ହୋଇ ଆମ୍ଭମାନଙ୍କର ବାଞ୍ଛା ପୂର୍ଣ୍ଣ କରିବ ସେ କେଉଁଠାରେ ଜନ୍ମିଛନ୍ତି ସେ ପୁରୁଷ ଦେବତା କି ଦାନବ କି ମାନବ ଏକଥା କହିବ । ବଞ୍ଚନ ହେଲେ ( ନ କହିଲେ ) ଜେମାମଣି ଏ ଭାବ ମିଥ୍ୟା ବୋଲି ଜାଣିବ । ସେ କହିଲେ ଅମ୍ଭ ମନରେ ଏପରି ଆଭାସ ହୁଛି ଯେ ସେ ପୁରୁଷ ଅବଶ୍ୟ ଏହି ମର୍ତ୍ତ୍ୟପୁରେ ଥିବ ।

ଥିବ କାହିଁ ଅଚ୍ଛି ଅଚ୍ଛଦ୍ରେ ଏ ପୁରରେ ଜାଣୁଥାଇ ଏଣୁ ଚନ୍ଦ୍ରମା ।
ଅସମାନ ମାନୁ କରେ ତନୁ ତନୁ ସକଳ କଳଙ୍କର ସୀମା ।
ସେହି ହୋଇବ । ବୋଇଲେ ଅବଧୂତୀ ଥିଲେ ।
ଯା ଘେନ ସୁନ୍ଦରକୁଳେ ଅଶ୍ୱମୁଖା ଭାନୁ-ତନୁଜେ ବୋଲାଇଲେ ॥ ୨୩
ପୁଷ୍କରତୀର୍ଥେ ଭାସ୍କର ଉପରାଗେ ସରାଗେ ସ୍ନାନ ଦାନ ଅର୍ଥେ ।
ଥିଲା ସେ ଯାଇ ସର୍ବଚିତ୍ତ-ମଜ୍ଜାଇ ନେଲା ଅନୁପମ ପଦାର୍ଥେ ।
ହାହା ଶୋଭୁଛି । ପୁଷ୍ପକେତୁ ନାମ ତାହାକୁ ।
ପାଟଳୀପୁତ୍ର ନୃପତିପୁତ୍ର ହେବ ଦମ୍ପତି ଲଭିଲେ ଏହାକୁ ॥ ୨୪
ବୋଲି ଦେଖାଉଁ ଯେ କରକୁ କରକ-ବୀଜ ବାଜିତ-ଦଶନାର ।
ପୁଲକ ଅଙ୍କୁର ମୁକୁରେ ଯା ଥୂକ କରେ କପୋଳ ତତପର ।
ନୀପ-କୋରକ । ଧଇଲା କି ରସଲତିକା ।
କୃମ୍ଭାରେ ଅଧର ଏହି ଶୋଭା ଧରେ ଫୁଟେ ଅବା ଜବା କଳିକା ॥ ୨୫

---

୨୩—ଥିବ କାହିଁକି ସେ ପୁରୁଷ ଅଚ୍ଛଦ୍ରେ (ନିଷ୍ଟସ୍ତ) ଏହିମର୍ତ୍ତ୍ୟରେ ଅଛି ଏଣୁ ଆମ୍ଭେ ଜାଣୁଥାଇଁ ଚନ୍ଦ୍ର ତାହାଙ୍କର ସମାନ ନହେବା ଅଭିମାନରୁ ତନୁ (ଶରୀର) କୁ ତନୁ (କୃଶ) କରଇ ଏବଂ ସକଳ କଳଙ୍କର ସୀମାହୁଏ ମାଙ୍ଗଲ୍ୟା ନିକଟରେ ଅବଧୂତ ଥିଲେ, ସେ କହିଲେ-ସେହି ସୁନ୍ଦର ଜେମାର ପତି ହେବ; ଯାହାଙ୍କ ପାଇଁ ଭାନୁ ତନୁଜେ (ଅଶ୍ୱିନୀ କୁମାର ଦ୍ୱୟ) ସୁନ୍ଦର କୁଳରେ ଘୋଡ଼ା ମୁହାଁ ବୋଲାଇଲେ ।

୨୪—ସେ ସୁନ୍ଦର ଭାସ୍କର ଉପରାଗରେ (ସୂର୍ଯ୍ୟପରାଗରେ) ସ୍ନାନ ଓ ଦାନ କରିବା ପାଇଁ ପୁଷ୍କର ତୀର୍ଥକୁ ସରାଗରେ ଯାଇଥିଲେ ସେଠାରେ ସମସ୍ତଙ୍କର ଚିତ୍ତ ମଜ୍ଜାଇ ନେଲେ, ସେ ଗୋଟିଏ ଅନୁପମ ପଦାର୍ଥ ଅଟନ୍ତି, ପୁଷ୍ପକେତୁ (ସୁନ୍ଦରଙ୍କ ମଧ୍ୟରେ ପୁଷ୍ପପତାକା) ଏହି ନାମଟି ତାହାଙ୍କୁ ସୁନ୍ଦର ହୋଇଛି, ସେ ପାଟଳିପୁତ୍ର ନୃପତିଙ୍କର ପୁତ୍ର, ଏହି ସୁନ୍ଦରୀକୁ ପାଇଲେ ଉପଯୁକ୍ତ ଦମ୍ପତି (ସ୍ତ୍ରୀ, ପୁରୁଷ) ହେବେ ।

୨୫—ଏହା କହି ଜେମା ଅଡ଼କୁ ହାତ ଦେଖାନ୍ତେ, ଯାହାର ଦନ୍ତ କରକବୀଜ (ଦାଡ଼ିମ ମଞ୍ଜି) କୁ ଜିଣିଅଛି ସେ ସୁନ୍ଦରୀର କପୋଳରେ ତତପରେ (ଶୀଘ୍ର) ରୋମୋଦ୍‌ଗମହେବାରୁ ସେ କପୋଳ ମୁକୁରେ [ ଦର୍ପଣକୁ ] ଥୂକ (ତୁଚ୍ଛ) କରେ । ରସଲତିକା ନୀପକୋରକ (କଦମ୍ବ କଳୀ) ଧଇଲାପରି ଦିଶଇ, କୁମ୍ଭା (ହାଇ) ବଶରୁ ଅଧର ଏହି ଶୋଭା ଧରେ ଜବାକଳିକା ଅବା ଫୁଟଇ ।

ବଚ୍ଛ ତ୍ରୁଣାୟ୍ୱା ପ୍ରମଦା ପ୍ରୀତୟ୍ୱା ହୋଇଲା ଗୁଚ୍ଛ ସଚ୍ଛକଟି ।
କଲ୍ୟାଣୀ ବଦନ୍ତି ଶୁଣ ଗୋ ସୁଦନ୍ତ କଲ୍ୟାଣ ସତ ହୋଇଲାଟି ।
ପ୍ରତ୍ୟୁତ୍ତର । କଲେ କି ହେବ ସତ ହୋଇ ।
ପୁନରୁକ୍ତ ହେଲା କି କି ପରକାରେ ବାରେ ଦେବା ଅମ୍ଭେ ଦେଖାଇ ॥ ୨୬

ଦେଖାଇବ ଏକା ଲେଖାଇବ ନାହିଁ ତାଠାରୁ ବିନୟପତର ।
ଲେଖାଇବ ଯେବେ ବିନୟପତ୍ରିକା ରଖାଇବ ଏକା ପାଶର ।
ଦୀକ୍ଷା ଦେଲା ଯେ । କୃତାର୍ଥ କରିବ ନାହିଁକି ।
ଅନ୍ୟ ସଙ୍ଗିନୀ ଇଙ୍ଗିତ ଉକ୍ତ ଘେନି ଭୁଷିଲେ ନୋହିବ କାହିଁକି ॥ ୨୭

ବିଦ୍ୟା-ବିଶାରଦା ସାରଦା ଏକାଳେ ମାଙ୍ଗଲ୍ୟା ଶିବପୁଂସ ମନେ ।
ପ୍ରବେଶ ଅବେଶ କରାଇଲେ ମାୟାରଚନେ ଦେନି ଦରଶନେ ।
ସେହି ଦୁହିଙ୍କି । ଶୁଭିଲା ଦୈବ ବଚନ ।
ବାଳକ ପ୍ରଥମପଢ଼ା ଗୁରବର୍ଣ୍ଣ ମନୋରଥ ପଢ଼ିଛି ବିଧାନ ॥ ୨୮

---

୨୬—ଏହି ଲକ୍ଷଣ ସବୁ ଦେଖି ତୃଣାୟ୍ୱା ପ୍ରମଦା ( ବାଣୀକା ) ବିଚ୍ଛିର ଗୁଚ୍ଛସଚ୍ଛକଟି (ଜେମା) ସୁନ୍ଦରଠାରେ ପ୍ରୀତିୟ୍ୱା ହେଲା । ସେହି ସମୟରେ କଲ୍ୟାଣୀ ( ମାଙ୍ଗଲ୍ୟା) କହିଲେ ଅଗୋ ସୁଦନ୍ତ ! ଶୁଣ, ଆମ୍ଭ କଲ୍ୟାଣ ସତ ହେଲାଟି ସଖୀମାନେ ପ୍ରତ୍ୟୁତ୍ତର କଲେ ସତ ହୋଇ କି ହେବ ? ଏହାପରେ ଅନେକ ଉକ୍ତ ପ୍ରତ୍ୟୁକ୍ତ ହେଲା ପରେ ମାଙ୍ଗଲ୍ୟା କହିଲେ ଅମ୍ଭେ କି କି ପରକାରେ (କୌଣସି ପ୍ରକାରେ ) ଥରେ ଦେଖାଇ ଦେବା ।

୨୭—ସଖୀମାନେ କହିଲେ ସେ ସୁନ୍ଦରକୁ କେବଳ ଦେଖାଇବ, କିନ୍ତୁ ତାଠାରୁ ବିନୟପତ୍ର ଲେଖାଇବ ନାହିଁ, ଯେବେ ବିନୟ ପତ୍ରିକା ଲେଖାଇବ ତେବେ ନିଜପାଖରେ ରଖାଇବ । ଜଣେ କହିଲା ଯେ ଦୀକ୍ଷା ଦେଲା ସେ କଣ କୃତାର୍ଥ କରିବ ନାହିଁ ? ଅନ୍ୟ ସଖୀଯାକ ଏହିପରି ଇଙ୍ଗିତ ଉକ୍ତ ଘେନି ଭୁଷିଲେ କାହିଁକି ନୋହିବ ।

୨୮—ଏହି ସମୟରେ ବିଦ୍ୟାବିଶାରଦା ( ମହାପଣ୍ଡିତା ) ସାରଦା ମାଙ୍ଗଲ୍ୟା ଓ ଶିବ ପୁଂସଙ୍କ ମନରେ ପ୍ରବେଶକରି ମାୟାରଚନା ଦ୍ୱାରା ଦୁହିଙ୍କର ଦର୍ଶନ ବିଷୟକୁ ଅବେଶ ( ପ୍ରଚୁର ) କରାଇଲେ ସେ ଦୁହିଙ୍କି ଦୈବବାଣୀ ଶୁଭିଲା ଯେ ମନୋରଥ ବାଳକ ପ୍ରଥମ ପଢ଼ା ଗୁରବର୍ଣ୍ଣ ( ସିଦ୍ଧିରସ୍ତୁ ) ।

ଆଶ୍ଚର୍ଯ୍ୟ ପୁରୁଷ ଏ କାର୍ଯ୍ୟେ ଲାଳସ ଯୋଗରେ ଜାଣିଲେ କଲ୍ୟାଣୀ ।
କଲ୍ୟାଣୀ ଉଦ୍ୟମ ଉଦୟ କଲଣି ଏହା ଅଦ୍ଭୁତ ପୁଂସ ଜାଣି ।
ମୂର୍ତ୍ତିମନ୍ତ ଯେ । ସେ କାର୍ଯ୍ୟ ବିଧାତା ସମ୍ମୁଖେ ।
ଏଣୁ ସେ ବେନି ହୃଦୟ ଆଦରଶେ ଆଦରେ ପ୍ରତିବିମ୍ବ ସୁଖେ ॥ ୨୯
କାଳ-କାନ୍ତ-ହର କାଳୀ-କାନ୍ତ ହର କାଲି କରିବେ ଏ ଉତ୍ସବ ।
ଦେଖା ଦେଖି ହୋଇ ଲେଖା ଲେଖି ହୋଇ ନୟନେ ନୟନେ ରଖିବ ।
ବୋଲି ନୃପଜା । ନୃପଜ ପୁରେ ପଠାଇ ।
ଦୀନବନ୍ଧୁ ନାମ ଧିଆଇଁ ଧିଆଇଁ ଦିନବନ୍ଧୁ ଦେଖା ନ ଯାଇ ॥ ୩୦
ବହିଲା ତାପର ପ୍ରଶଂସା ଶଶାଙ୍କ ଦହିଲା କଲା ଅପଘନ ।
ଲୋକଙ୍କନେ ମନୀଷା ନିଶା ବ୍ରହ୍ମନିଶା କଷାୟିତ ନୋହେ ଲୋଚନ ।
ସେତୁ ହେତୁରେ । ବିଚିତ୍ରକର୍ମା ରଘୁନାଥ ।
ତାଙ୍କ ଧ୍ୟାନରେ ଉପେନ୍ଦ୍ର ବିଚିତ୍ର ଚରିତ ରଚନେ ସମର୍ଥ ॥ ୩୧

---

୨୯—ଚିତ୍ରପୁଂସ ଏ କାର୍ଯ୍ୟରେ ଲାଳସ ହେଲେଣି ବୋଲି କଲ୍ୟାଣୀ ଧ୍ୟାନରେ ଜାଣିପାରିଲେ, କଲ୍ୟାଣୀ ଉଦ୍ୟମ ଆରମ୍ଭ କଲେଣି ଏହା ମଧ୍ୟ ଚିତ୍ରପୁଂସ ଜାଣିଲେ ।ସେ କାର୍ଯ୍ୟ ବିଧାତାଙ୍କ ସମ୍ମୁଖରେ ମୂର୍ତ୍ତିମନ୍ତ ହେଲା, ଏଣୁ ସେ ଦୁହିଁଙ୍କ ( ମାଙ୍ଗଲ୍ୟା ଓ ଚିତ୍ରପୁଂସଙ୍କ ) ହୃଦୟ ରୂପ ଆଦର୍ଶେ ଦର୍ପଣରେ ଏହି ସୁନ୍ଦର ସୁନ୍ଦରୀ ଦୁହିଙ୍କର ପ୍ରତିବିମ୍ବ ସୁଖରେ ଆଦରିଲା ।

୩୦—କାଳ-କାନ୍ତ-ହର ( କଜ୍ଜ୍ୱଳଶୋଭା ହରଣକାରୀ ଶ୍ରୀକୃଷ୍ଣ ) ଏବଂ କାଳୀ କାନ୍ତ ( ପାର୍ବତୀ ପତି ) ମହାଦେବ କାଲି ଏ ଉତ୍ସବ କରିବେ, ଦୁହେଁ ଦେଖା ଦେଖି ହୋଇ ପରସ୍ପର ରୂପକୁ ନୟନେ ନୟନେ ଲେଖା ଲେଖି ହେଲେ, ପରସ୍ପରକୁ ପରସ୍ପର ମନେରଖିବ ଏହାକହି ମାଙ୍ଗଲ୍ୟା ରାଜକନ୍ୟାଙ୍କୁ ଓ ଚିତ୍ରପୁଂସ ରାଜ ପୁତ୍ରଙ୍କୁ ନିଜ ନିଜ ପୁରକୁ ପଠାଇ ଦେଲେ । ସୁନ୍ଦରୀ ଓ ସୁନ୍ଦର ଏ ଘଟଣା ସଫଳ ହେବା ନିମିତ୍ତ ଦୀନବନ୍ଧୁ ( ପରମେଶ୍ୱରଙ୍କୁ ) ଧ୍ୟାନ କରୁ କରୁ ଦିନବନ୍ଧୁ (ସୂର୍ଯ୍ୟ) ଦେଖା ଗଲେ ନାହିଁ ( କେତେବେଳେ ସଂଧ୍ୟାହେଲା ଜାଣିପାରିଲେ ନାହିଁ ) ।

୩୧—ରାତ୍ରି ପ୍ରବେଶରେ ଶଶାଙ୍କ, ତା ପର ( ସୂର୍ଯ୍ୟପର ) ପ୍ରଶଂସା ବହିଲା; ଦୁହିଁଙ୍କ ଅପଘନ ( ଦେହ )କୁ ଦହିଲା ପରି କଲା, ଲୋକଙ୍କନେ ( ଦର୍ଶନ ବିଷୟରେ ) ମନୀଷା ( ଇଚ୍ଛା ) ପ୍ରବଳ ହେତୁ ସେ ରାତ୍ରି ବ୍ରହ୍ମନିଶା (କଳ୍ପ) ପରି ଜଣାଗଲା ଓ ଆଖି କଷା ହେଲା ନାହିଁ । ରଘୁନାଥ ସମୁଦ୍ରରେ ସେତୁବନ୍ଧ କରିଥିବାରୁ ବିଚିତ୍ର କର୍ମା ଅଟନ୍ତି, ତାହାଙ୍କୁ ଧ୍ୟାନ କରି ଉପେନ୍ଦ୍ର ଭଞ୍ଜ ବିଚିତ୍ର ଚରିତ ରଚନା କରିବାକୁ ସମର୍ଥ ହେବ ।

# ଏକାଦଶ ଛାନ୍ଦ

( ଦର୍ଶନାନୁରକ୍ତା )

ରାଗ—ଶଙ୍କରାଭରଣ

ଶୁଣ ରସିକ ସୁଜାଣ ଆଣ ମାନସକୁ । ଚତୁର ବାଧି ଦର୍ଶନ ଗ୍ରତୁରୀରସକୁ
ଅତ ଚତୁରୀ ଚତୁର । ବସ ନାଶୀ ନେତ୍ରଛନ୍ତି ଲୋକନେ ଆତୁର ॥ ୧

କରୂପରେ ହେବ ପୁଣି ସେ ରୂପ ଦର୍ଶନ । ଅନୁମାନ ଅଗୋଚର ତନୁଙ୍କ ପ୍ରସନ୍ନ ।
ନାହିଁ ଯହିଁକି ବଚନ । ତେତେ ପୁଣ୍ୟ କରଥିବ କେବଣ ଲୋଚନ । ୨
ଯୁବାଜନ ଗତଦାତା ବୈକୁଣ୍ଠ ପ୍ରକାର । ବାଟ ଦେଖାଇବା କଥା ବଡ଼ ଚମତ୍କାର
ସ୍ଥାନ ପରମାନନ୍ଦର । ଦୂର କବ ପାରଇ ମାନସ-ଭବ ଦର ॥ ୩
କୋଟି ଅମ୍ବୁଜକୁ ନିନ୍ଦୁଥିବ ସେ ଲପନ । ଚଳନେ କରବ ସିନା ଦମ୍ଭକୁ କମ୍ପନ ।
ତୋଳା ଜ୍ଞାନ ବୁଡ଼ାଇବ । ଶିଳୀମୁଖ ଚଳବା ଶୋଭାକୁ ଛଡ଼ାଇବ ॥ ୪

---

୧—ହେ ସୁଜାଣ ( ଉତ୍ତମ ଜ୍ଞାନୀ ) ରସିକମାନେ ଶୁଣ, ଚତୁର ବାଧିରେ ଯେଉଁ ଦର୍ଶନ ତାହାର ଗ୍ରତୁରୀକୁ ମନକୁ ଆଣ, ଅତ ଚତୁରୀ ଚତୁର ସ୍ତ୍ରୀ ପୁରୁଷ ଦୁହେଁ ପରସ୍ପର ଦର୍ଶନରେ ଆତୁର ହୋଇ ବସି ବସି ରାତି ଅତବାହିତ କରୁଅଛନ୍ତି ।

୨—ସେ ରୂପ କାପର ଭାବରେ ଦେଖାହେବ, ତନୁଙ୍କ (ଅଙ୍ଗମାନଙ୍କର) ପ୍ରସନ୍ନ ( ପ୍ରଫୁଲ୍ଲ ଶୋଭା ) ଅନୁମାନର ଅଗୋଚର ଅଟେ । ଯେଉଁରୂପ ବର୍ଣ୍ଣିବାକୁ ବାକ୍ୟନାହିଁ, କେଉଁନେତ୍ର ସେତେ ପୁଣ୍ୟ କରଥିବ ଯେ ତାହାକୁ ଦେଖିବ ।

୩—ସେ ରୂପ ବୈକୁଣ୍ଠ ପର ଯୁବାଜନମାନଙ୍କର ଗତ ( ମୁକ୍ତ ଓ ଗମନ ) ଦାତା ଅଟେ, କନ୍ତୁ ସେଠାକୁ ଯିବାପାଇଁ ବାଟ ଦେଖାଇବା କଥା ବଡ଼ ଚମତ୍କାର ଅଟେ । ଏବଂ ପରମାନନ୍ଦର ଆଧାର ଅଟେ, ସେ ମାନସଭବ ( କନ୍ଦର୍ପ ) ର ଦର ( ଭୟ ) କୁ ଦୂର କରପାରେ, ବୈକୁଣ୍ଠ ମଧ ପରମାନନ୍ଦର ସ୍ଥାନ ମାନସଭବ ଦର ( ପାପକାର୍ଯ୍ୟାଦ ଦ୍ୱାରା ମନରେ ଜନ୍ମିଥିବା ଭୟ ) କୁ ଦୂର କରେ ।

୪—ଲପନ (ମୁଖ) କୋଟି କୋଟି ଅମ୍ବୁଜ (ପଦ୍ମ) କୁ ନିନ୍ଦୁଥିବ, ଗମନ କରନ୍ତେ ଦମ୍ଭକୁ ( ଧୈର୍ଯ୍ୟକୁ ) କମ୍ପାଇ ଦେବ; ନତୋଳା ଜ୍ଞାନ ବୁଡ଼େଇ ଦେବ ଏବଂ ଶିଳୀମୁଖ ( ଭ୍ରମର ) ଚଳନ ଶୋଭାକୁ ଜିଣିଯିବ ।

କି ଦିଶିବ ସୁହାସ ଅଳପ ପ୍ରକାଶରେ । ବାନ୍ଧିନେବ ନୟନକୁ ମୋହନ-ପାଶରେ ।
ଭାଲ ତିଳକ ରମ୍ୟକୁ । ଶ୍ରୁତିରେ ଖୋଜିଲେ ନ ପାଇବ ତା ସମକୁ ॥ ୫
ରତି-ବର-ଶୋଭାକୁ ଛୁଇଁବ ନାହିଁ ଚିତ୍ତ । ଚାହୁଁ ଥିଲେ ଭଙ୍ଗିମାନ କାଅଁତ କାଅଁତ ।
ଏ ଭାଗ୍ୟକୁ ଅର୍ଜିବ କି । ସନମତ ଜାଣିଲା କ୍ଷଣି ମୁଁ ହେବ ବିକି ॥ ୬
ବିକି ହୋଇଲେଣି କଲା ବେଳରୁ ଶ୍ରବଣ । ଯାହା ଶୋଭା ଚାହିଁ
ଶିଳା ହୋଇବ ଦ୍ରବଣ ।
ଭାବେ ମୁହିଁ ମାନୁଷତ । ତରଳାଲ ଘୃତ ମତ ବହି ଯିବ ସତ ॥ ୭
କଟାକ୍ଷ ଅମୃତ ଶୀତଳକୁ ପାଇବାରେ । ସ୍ଥକିତକୁ ପୁଣି ଭଜୁଥିବ ବାରେ ବାରେ ।
ତହିଁ ଲାଭ ଅଛି ଏତେ । ଭଲକରି ଦେଖିବ ପଲକ ଅନାଯୃତ୍ତେ ॥ ୮
ମୋର କର୍ଣ୍ଣେ ମନ ନେତ୍ର ସୁକୃତୀ-କେଶରୀ । ଅପୂର୍ବ ପଦାର୍ଥେ ଏତେରୂପେ ଅନୁସରି ।
ଶୁଣି ତୋଷ କେ ସ୍ୱଭାବେ । କେ କଲା ସଦନ କେ ସଦନ ହେବା ଭାବେ ॥୯॥

---

୫—ସୁନ୍ଦରହାସ ଅଳ୍ପ ପ୍ରକାଶ ପାଇ କେତେ ସୁନ୍ଦର ଦିଶିବ, ଚକ୍ଷୁକୁ ମୋହନ ପାଶରେ ବାନ୍ଧି ନେଇଯିବ । ଭାଲ ( ଲଲାଟ ) ରେ ଥିବା ତିଳକର ସୌନ୍ଦର୍ଯ୍ୟକୁ ଶ୍ରୁତିରେ ( ବେଦରେ ) ଖୋଜିଲେ ମଧ୍ୟ ତା ସମାନ ପାଇବ ନାହିଁ ।

୬—ପୁରୁଷ ବିଗ୍ରହରେ ସେ ସୁନ୍ଦରୀର ଭଙ୍ଗିମାନଙ୍କୁ କାଅଁତ କାଅଁତ ଚାହୁଁଥିଲେ ମନ ରତିର ବର ଶୋଭାକୁ ( ଶ୍ରେଷ୍ଠ ସୌନ୍ଦର୍ଯ୍ୟକୁ ) ଛୁଇଁବ ନାହିଁ; ସ୍ତ୍ରୀ ବିଗ୍ରହରେ-ସେ ସୁନ୍ଦରର ଭଙ୍ଗିକୁ ଚାହିଁଲେ ମନ ରତିବରର ( କାମର ) ଶୋଭାକୁ ଛୁଇଁବ ନାହିଁ । ସତେ କିଏ ମୁଁ ଏ ଭାଗ୍ୟକୁ ଅର୍ଜିବ ? ତାହାଙ୍କର ସମ୍ମତି ଜାଣିଲାକ୍ଷଣି ମୁଁ ବିକି ହେବ । ଏହାପରେ ୫୭ପଦଠାରୁ ୫୬୧ପଦ ପର୍ଯ୍ୟନ୍ତ ଦୁହିଁଙ୍କର ଅନୁଚିନ୍ତା ।

୭—ମୁଁ ଶୁଣିଲା ବେଳୁ ବିକି ହେଲିଣି, ଯାହାର ଶୋଭା ଦେଖି ପଥର ମଧ୍ୟ ଦ୍ରବି ଯିବ, ଭାବୁଛି ମୁଁ ତ ମନୁଷ୍ୟ ମୁଁ ତାହାର ଶୋଭା ଦେଖି ତରଳାଇ ଘିଅପରି ନିଶ୍ଚୟ ବହିଯିବି ।

୮—ତାହାଙ୍କର କଟାକ୍ଷ ( ଅଣ୍ଡଚାହାଣି ) ରୂପ ଅମୃତକୁ ପାଇବାଦ୍ୱାରା ମୁଁ ବାର ବାର ସ୍ଥକିତକୁ ( ନିଶ୍ଚଳତାକୁ ) ଭଜୁଥିବି, ତହିଁରେ ( ନିଶ୍ଚଳ ହେବାରେ) ଏତେ ଲାଭଅଛି ଯେ ପଲକ ଅନାଯୃତ୍ତ ହେବାରୁ (ଚକ୍ଷୁ ପିଛଡ଼ା ନ ପଡ଼ିବାରୁ) ସେ ରୂପ ମାଧୁରୀ ଭଲ କରି ଦେଖି ପାରିବି ।

୯—ମୋହର କର୍ଣ୍ଣ, ମନ ଓ ନେତ୍ରମାନେ ସୁକୃତୀ ( ପୁଣ୍ୟବନ୍ତ ) ଙ୍କ ମଧ୍ୟରେ କେଶରୀ ( ଶ୍ରେଷ୍ଠ ) ଅଟନ୍ତି, ସେହି ଅପୂର୍ବ ପଦାର୍ଥକୁ ଏହାପରି ଅନୁସରିଛନ୍ତି । କର୍ଣ୍ଣ ସ୍ୱଭାବକୁ ଶୁଣି ସନ୍ତୁଷ୍ଟ ହେଲା ମନ ତା ଠାରେ ସଦନ ( ଗୃହ ) କଲା, ନୟନ ତାହାର ଗୃହ ହେବ ଭାବିଲା ।

ମନ-କଳ୍ପିତ ସମ୍ପତ୍ତି ସାକ୍ଷାତ ହୋଇବ । ମୁହିଁ ଭଲା ଭାଗ୍ୟବନ୍ତ ଭଲରେ ହୋଇବ-
ଏତେ କାଳ ସହିବ କି । ଏଥକୁ ତାଙ୍କୁ ଜଣାଣ ଯେ ମାଇଲେ ବକୀ ॥ ୧୦
ତେତେବେଳ ଯାଏ ପଞ୍ଚଶର ନ ନାଶିବ । ଦୁଇଥର ବୋଲୁଥିବା ଭିତେ ଶିବ ଶିବ-
ବହୁତକୁ ଅବକାଶ । ରହୁ ନାହିଁ ବଚନେ ସେ କଥା ପରକାଶ ॥
ଦରଶନ କଲା ବେଳେ ସେ ଶୋଭାଶ୍ରେଣୀକି । ଯେଣିକି ମୁଁ ଗୁହିଁ ୧୧
ଦେଉଥିବାଟି ତେଣିକି ।
ବସି ଯାଉଥିବ ମୋତେ । ନିଶି ନିଦ୍ରା ବେଳତ ଦେଖିବ ସେହିମତେ ॥୧୨
ଗୁଣିବା ଶୁଣିବା ହୋଇ ହେବ ସେ ଚରିତ । ଭଣିବାକୁ ସେହି କଥା ହୋଇବ ତ୍ୱରିତ
ହା ହା ତନ୍ମୟ ରସ । ବେଳେ ବେଳେ ଜାତ କରୁଥିବ ସେ ହରଷ ॥୧୩
ନୋହୁ ଦରଶନ ଏଡ଼େ ମନକୁ ହରୁଛି । ମନ୍ଦ ମୂର୍ତ୍ତିକର ତାକୁ ବିଧାତା କରୁଛି ।
ଅଛି ତହିଁରେ ଧିଆନ । ସିଦ୍ଧ କର ନ ପାରଇ କର୍ମବଳୁ ଆନ ॥ ୧୪
ସ୍ୱରୂପ ପୀୟୂଷ ହୋଇ ହୁଏ ଅନୁମାନ । ସମସ୍ତ ମତରେ ନାହିଁ ମଧୁର ସମାନ-
ଲଭ୍ୟ ପଦାର୍ଥ ନୁହଇ । ଯିବା ଜୀବ ରଖିବା କରଣିକି ବହଇ ॥ ୧୫

---

୧୦—ସତେ କଣ ମୋହର ମନରେ କଳ୍ପିତ ହୋଇଥିବା ସମ୍ପତ୍ତି ସାକ୍ଷାତ ହେବ ? ମୁଁ ବଡ଼ ଭାଗ୍ୟବାନ୍, ଧନ୍ୟ ଦୈବ ଏତେକାଳ କଣ ସହିବ ? ଏଥିପାଇଁ ଯେଉଁ ଶ୍ରୀକୃଷ୍ଣ ବକୀ ( ବକାସୁର ସ୍ତ୍ରୀ ପୂତନା ) କୁ ମାରିଥିଲେ ତାଙ୍କୁ ଜଣାଉଛି ।

୧୧—ତେତେବେଳ ଯାଏ ପଞ୍ଚଶର ( କାମ ) ମାରି ପକାଇବ ନାହିଁ ଯେ ପର୍ଯ୍ୟନ୍ତ ଦୁଇଥର ଭିତରେ ଶିବ ଶିବ ବୋଲୁଥିବ । ସେ କଥା ( ଶିବ ଶିବ ) ବହୁତ ବାକ୍ୟରେ ପ୍ରକାଶ କରିବାକୁ ଅବସର ରହୁନାହିଁ ।

୧୨—ସେ ଶୋଭା ଶ୍ରେଣୀକୁ ଦର୍ଶନ କଲାବେଳେ ମୁଁ ଯେଉଁଆଡ଼େ ଗୁହୁଁଥିବ ସେ ଆଡ଼େ ମୋତେ ସେ ବସି ଯାଉଥିବ, ସେହିପରି ମଧ୍ୟ ରାତିରେ ନିଦ୍ରାରେ ଦେଖିବ ।

୧୩—ତାହାଙ୍କର ସେହି ଚରିତ ଗୁଣିବା ଓ ଶୁଣିବାକୁ ହେବ, ସେହି କଥା ମଧ୍ୟ ଶୀଘ୍ର କହିବାକୁ ହେବ, ହାୟ ହାୟ ତନ୍ମୟରସ [ତାହାର ରୂପ ଗୁଣ ଚିନ୍ତା କରୁ କରୁ ତଦାତ୍ମକ ଭାବ ] ବେଳେ ବେଳେ ଜନ୍ମି ଆନନ୍ଦ ଦେଉଥିବ ।

୧୪—ଦର୍ଶନ ନୋହୁଣୁ ଏପରି ମନକୁ ହରଣ କରୁଛି, ବୋଧହୁଏ ତାହାକୁ ବିଧାତା ମନ୍ଦ ମୂର୍ତ୍ତି କର ଗଢ଼ିଅଛି ମୋର ତହିଁରେ ଧ୍ୟାନ (ମନକୁ ସ୍ମରଣ କଲାପରି ଏକାଗ୍ରଚିନ୍ତା ) ସର୍ବଦା ଅଛି କିନ୍ତୁ ମୁଁ କେମନ୍ତ ସିଦ୍ଧ କରିପାରୁ ନାହିଁ, ମୋ କର୍ମ ଦୋଷରୁ ଅନ୍ୟଥା ହେଉଅଛି ।

୧୫—ତାହାର ସ୍ୱରୂପ ଅମୃତ ବୋଲି ଅନୁମାନ ହୁଏ,ମାତ୍ର ସମସ୍ତ ଗୁଣରେ ଅମୃତ ସମାନ ନୁହେଁ, ମଧୁରେ ( ସ୍ୱାଦୁରେ ) ଅମୃତ ସମାନ, କିନ୍ତୁ ମଧୁରେ

ମନ-କୃପଣଙ୍କୁ ଯେଉଁ ଚରିତ ରତନ । ଗଣ୍ଠିକରି ଥୋଇଅଛୁ କରି କା ଯତନେ ।
ମାର-ତସ୍କର ଭୟରେ । ଦକ ଦକ ହେଉଅଛୁ ମାନ ହୃଦୟରେ ॥ ୧୬

ଫନ୍ଦା କରିବାର ନିଶ୍ଚେଁ ହେଲାଣି ତାହାର । ବିଗୁରିବ ଦୁଃଖ-ଦଶା କରିବ ସଂହାର ।
ସବୁ ଭାଲ-ବର୍ଣ୍ଣାବଳୀ । ଆଜଯାଏ କେହି ତାହା ପାରି ନାହିଁ ବଳି ॥ ୧୭

ଭେଟିଁ ବୃଦ୍ଧି ହେବ ଯେ ପ୍ରମୋଦ-ଅକୂପାର । ବ୍ୟକ୍ତ ହୋଇବେ
ଉପମା-ରତନ ଅପାର ।
ଅସୀମାକୁ ନାହିଁ ଡର । ପ୍ରଳୟ-ସୂଚକ-ଯାକ କରିବେ କାତର ॥ ୧୮

ଏ ହୋଇଲେ ନବ-ସୃଷ୍ଟି ହେବ ଯେ ରଚିତ । ସଲିଲ ବିହାର ତହିଁ
ହୋଇ ଯେ ଉଚିତ ।
ସେହି ରସ ଜରଜରେ । ନୋହିବି ଲାଳସ ଆଉ ଆନ କାରଣରେ ॥ ୧୯

---

(ସୌନ୍ଦର୍ଯ୍ୟରେ) ନୁହେଁ, ଅମୃତ ପରି ବାହାରି ଯାଉଥିବା ଜୀବନକୁ ରଖିବା କରଣିକି (କ୍ଷମତାକୁ) ବିଧାନ କରଇ, କିନ୍ତୁ ଅମୃତ ଲଭ୍ୟ ନୁହେ, ଏ ଲଭ୍ୟ-ପଦାର୍ଥ ।

୧୬—ମନ କୃପଣଙ୍କୁ ଯେଉଁ ଚରିତ ରତ୍ନପରି, ତାକୁ ମନ ଗଣ୍ଠିଧନ କରି ଟେକେଡ଼େ ଯତ୍ନରେ ରଖିଛୁ, ମାନ ମାରତସ୍କର (କାମଚୋର) ଭୟରେ ନିତ ହୃଦୟରେ ଦକ ଦକ ହେଉଛୁ ।

୧୭—ସେ ରତ୍ନର ଫନ୍ଦା (ବାଣିଜ୍ୟ) କରିବାର ନିଶ୍ଚୟ ହେଲା ଅତଏବ ଦୁଃଖ ଦଶାକୁ ସଂହାର କରିବି, କିନ୍ତୁ ସବୁକଥା ଭାଲବର୍ଣ୍ଣାବଳୀ (କପାଳ ଲେଖା) ଅନୁସାରେ ହୁଏ । ଆଜି ପର୍ଯ୍ୟନ୍ତ କେହି ତାକୁ ବଳି ନାହିଁ, ମୋ କପାଳରେ ଲେଖା ଥିଲେ ହେବ ।

୧୮—ତାହାଙ୍କୁ ଭେଟିଲେ ପ୍ରମୋଦ ଅକୂପାର (ଆନନ୍ଦ ସାଗର) ବଢ଼ିବ, ଏବଂ ଅସୀମ ଉପମା ରତ୍ନ ପ୍ରକାଶ ପାଇବ, କିନ୍ତୁ ସେ ରତ୍ନମାନଙ୍କୁ ଆଣିବାକୁ ଡର ନାହିଁ ପ୍ରଳୟ-ସୂଚକ ଯାକ (ପ୍ରଳୟ କାଳିନ ଘଟଣା ମାନ, ଏବଂ ଦର୍ଶନରେ ମୋହ ଜଡ଼ତାଦି ଘଟଣାମାନ) କାତର କରି ପକାଇବେ ।

୧୯—ଏ (ପ୍ରଳୟ) ହେଲେ ପୁଣି ନୂତନ ସୃଷ୍ଟି ରଚିତ ହେବ, ନୂତନ ସୃଷ୍ଟିରେ ସଲିଲ (ଜଳ) ବିହାର (ନାମ) ହୋଇଯାଏ, ଏ (ମୋହ ଜଡ଼ତାଦି) ପରେ ପୁଣି ନୂତନ ପ୍ରେମ ସୃଷ୍ଟି ରଚିତ ହେବ, ତହିଁରେ ମୋହର ଉଚିତ ରୂପେ ସଲୀଳ ବିହାର (ଲୀଳା) ସହ କ୍ରୀଡ଼ା ହେବ ମୁଁ ସେହି ରସରେ ଜର୍ଜର ହୋଇ ଅନ୍ୟ କାର୍ଯ୍ୟରେ ଲାଳସ ହେବିନାହିଁ ।

କିବାଧି ବଶୀକରଣ ବୋଲନ୍ତି ସଂସାର । କି ମନ୍ତ୍ର କି ମଣି କେଉଁ ଅଉଷଧି ସାର ।
ପଚ୍ଛୁରନ୍ତି କେ ଉପାୟୀ । ଘେନିଥାନ୍ତି ତାହା ଚତୁରାକ୍ଷ ବେଳ ପାଇ ॥ ୨୦
ଊଣା ଅଧିକେ ସଂଯୋଗ ପୂର୍ବରୁ ହୋଇଛି । ଶଶ ରହି ଚନ୍ଦ୍ରେ ରାହୁ ପୀୟୂଷ ପିଇଛି ।
ଗଲା ଏକଳପ୍ୟ ପଦ । ଭକ୍ତି ପରିଚୟ ଏହିଠାରୁ ଅସ୍ପଦ ॥ ୨୧
କୁମାରୀ ବୟସରେ ମୁଁ ତ କମଳା ଅଟଇ । ପୁଂସ-ବାଧୁ ଜାନୁ ଲୀଳା ମୋତେ ସେ ଘଟଇ ।
ଗୁଣ-ଗର୍ବିତା ଲକ୍ଷଣ । ଉତ୍କଣ୍ଠା ବଶରୁ କବି ଦେଲା ବିଚକ୍ଷଣ ॥ ୨୨
ପୁନଃ ପୁନଃ ଭାବନା କରଇ ସୁରସିକ । ହୋଇବେ ବଢ଼ାଇହୀନ ଏବେ କଉଶିକ ।
ତପ ବିନା ଅନାୟାସେ । ବ୍ରହ୍ମପଦ ସୁଖ ମୋର ଜାତ ହୋଇ ଅସେ ॥ ୨୩
ଗନ୍ଧର୍ବ-ସଖୀ ଭାବଇ ଫୁଲ ଚମ୍ପା ପରି । ଭ୍ରମର ମୋହିତ ତହିଁ ନୋହେ ପରମ୍ପରା ।
କିବା ହେଲେ ସେପରିରେ । ଏ ଜୀବ ଯିବାର ହେବ ନ ରହି ଶରୀରେ ॥୨୪

---

୨୦—ସଂସାରରେ ଅନେକ ପ୍ରକାର ବଶୀକରଣ ଉପାୟ ଅଛି ବୋଲି ଲୋକେ କହନ୍ତି କି ମନ୍ତ୍ର, କି ମଣି କେଉଁ ଔଷଧି ସବୁଠାରୁ ଶ୍ରେଷ୍ଠ କେଉଁ ଉପାୟ ଜାଣିବା ଲୋକଙ୍କୁ ପଚାରନ୍ତି, ତାହାଠାରୁ ତାକୁ ନେଇ ଚତୁରାକ୍ଷ ( ଗୃହଚକ୍ଷୁ ) ହେବା ବେଳେ ଘେନିଥାନ୍ତି ।

୨୧—ମୁଁ ତାହାଠାରୁ ଊଣା ସେ ମୋ ଠାରୁ ଅଧିକ କିପରି ସଂଯୋଗ ହେବ, ନା ଏପରି ସଂଯୋଗମାନ ପୂର୍ବରୁ ହୋଇଛି, ଚନ୍ଦ୍ରଠାରେ ଶଶ ରହିଛି, ରାହୁ ଅମୃତ ପିଇଛି । ଏକଳପ୍ୟ ( ସୁନ୍ଦର ସୁନ୍ଦରୀ ଦୁହିଁଙ୍କର ଏକ ପ୍ରକାର ଭାବନା ) ପଦ ଶେଷ ହେଲା । ଏହିଠାରୁ ପୃଥକ୍ ପୃଥକ୍ ଭକ୍ତି ପରିଚୟ ଆସ୍ପଦ (ସ୍ଥାନ) ପାଇଲା ।

୨୨—କୁମାରୀ ବୟସରେ ମୁଁ କମଳା ( ପଦ୍ମିନୀ ) ସୁତରାଂ କମଳା ( ଲକ୍ଷ୍ମୀ ) ହେଲି, ସେ ପୁଂସବାଧୁ ( ପୁରୁଷ ଶ୍ରେଷ୍ଠ ) ବାଧୁ ( ଭଗବାନ୍ ) ହେଲେ, ତେଣୁ ତାଙ୍କ ଜାନୁରେ ବସି ଲୀଳା କରିବା ମୋ ପକ୍ଷରେ ଘଟିଲା । ହେ ବିଚକ୍ଷଣ ପଣ୍ଡିତମାନେ ବିଚାର କର—ଉତ୍କଣ୍ଠା ହେତୁ ଗୁଣଗର୍ବିତା ଲକ୍ଷଣ ହେଲା ।

୨୩—ସୁରସିକ ପୁରୁଷ ପୁନଃ ପୁନଃ ଭାବିବ—ଏବେ କୌଶିକ ( ବିଶ୍ୱାମିତ୍ର ) ବଡ଼ାଇ ଶୂନ୍ୟ ହେବେ । ଯେ ହେତୁରୁ ବିନା ତପସ୍ୟାରେ ଅକ୍ଲେଶରେ ମୋହର ବ୍ରହ୍ମପଦ ସୁଖ ଜାତ ହୋଇ ଆସୁଛି ( ବିଶ୍ୱାମିତ୍ର କଠୋର ତପସ୍ୟା କରି ବ୍ରହ୍ମପଦ ପାଇଥିଲେ ) ।

୨୪—ଗନ୍ଧର୍ବ ସଖୀ ( କୋଟିବ୍ରହ୍ମାଣ୍ଡସୁନ୍ଦରୀ ) ଭାବେ-ଚମ୍ପା ଫୁଲରେ ଭ୍ରମର ମୋହି ନ ହେବାର ପରମ୍ପରା ଅଛି, ସେ ହେଲେ ଏ ଜୀବ ଶରୀରରେ ନ ରହି ବାହାରି ଯିବାର ହେବ ।

ନାଟର ଭାବେ ପଦ୍ମିନୀ ସୁରଭି ନିଳୟ । ମୁଦ୍ରିତ କର ନ ରଖେ ସୁଧାଙ୍କରେ ଲୟ ।
କି କରିବଟି ତେମନ୍ତେ । ଦହି ହେବ କିରତେ ସଗର-ସୁତ ମତେ ୨୫
ବାଳୀ ରୂପ-ଗର୍ବେ ଭାଳି ବୋଲନ୍ତି ଜଗତେ । ନାହିଁ ତ ମୋ ପ୍ରାୟେ ଶୋଭା ବର୍ତ୍ତିମାନ ଗତେ ।
ଅଜ ଆଗତେ ନୋହିବ । ଏମନ୍ତ ସ୍ୱରୂପ ଯୁବା ଚିତ୍ତ ନ ମୋହିବ ॥ ୨୬
ପୂରୁଷ ଭାବେ ପୂତନା-ମର୍ଦ୍ଦନ-ନନ୍ଦନ । ହୋଇ ନାରୀ ଈର୍ଷ୍ୟା କି ଛାଡ଼ିବ ମଦନ
ଛନ୍ଦ କରିବ ତା ଭାଳି । ସ୍ତନ ବ୍ୟାଜେ ଅଛି ପୁଣି ଶମ୍ଭୁକୁ ସମ୍ଭାଳି ॥ ୨୭
ରାମା ଚିତ୍ତ ବାର ହର କଠିନ ପାଷାଣ । ରସିତ ନୋହିବେ ପରା ସେ ହେମର-ଶାଣ ।
ଗୁଣୀ କଷ ତା ବହନ୍ତି । ହେମ ଅଙ୍ଗୀ ବୋଲି ମୋତେ ସମସ୍ତେ କହନ୍ତି ॥୨୮
ସିହାଣ ବିଚାରେ ମୋତେ ନ କରିବ ଦୟା । ଗିରି ପରରେ କଠୋର ହୃଦଜ-ଉଦୟା ।
ଏଥିଁ ଭରସା ହୁଅଇ । ଭଲ କବି ନାରୀକେଳ ଉପମା ଦିଅଇ ॥ ୨୯

---

୨୫—ନାଗର ଭାବଇ-ସେ ସୁନ୍ଦରୀର ପଦ୍ମିନୀ ସୁରଭି ନିଳୟ (ସୁବାସସ୍ଥାନ) ପଦ୍ମ ଯେପରି ହୃଦୟକୁ ମୁଦ୍ରିତ କରି ଚନ୍ଦ୍ରଠାରେ ଲୟ ରଖେନା, ସେହିପରି ସୁନ୍ଦରୀ ଚକ୍ଷୁମୁଦି ମୋ ମୁଖଚନ୍ଦ୍ରକୁ ଯେବେ ନ ଗୃହେଁ ତେବେ କି କରିବଟି, କେବଳ ସଗରସୁତ ପରି ସବୁରବଳେ ସିନା ଦହି ହେବ ॥
୨୬—ବାଳୀ (ସୁନ୍ଦରୀ) ରୂପଗର୍ବରେ ଭାବି କହନ୍ତି ଜଗତରେ ମୋ ପରି ଶୋଭା ବର୍ତ୍ତିମାନ ନାହିଁ, ଗତେ ( ଅତୀତରେ ) ନ ଥିଲା, ଅଜ ମଧ୍ୟ ଆଗତେ ( ଭବିଷ୍ୟତରେ ) ହେବନାହିଁ । ଏପରି ରୂପ ଯୁବାଚିତ୍ତକୁ କାହିଁକି ନ ମୋହିବ ॥
୨୭—ପୂରୁଷ ଭାବେ ମଦନ ପୂତନା ନାମ୍ନୀ ସ୍ତ୍ରୀକୁ ମର୍ଦ୍ଦନ କରିଥିବା ଶ୍ରୀକୃଷ୍ଣଙ୍କର ପୁତ୍ର ହୋଇ ନାରୀଈର୍ଷ୍ୟା (ନାରୀହିଂସା) ଛାଡ଼ିବ କି ? ପୁଣି ସେ ସୁନ୍ଦରୀ ସ୍ତନ ବ୍ୟାଜରେ କାମଶତ୍ରୁ ଶମ୍ଭୁକୁ ସମ୍ଭାଳିଛି, ସେ ତାହା ଭାବି ଅବଶ୍ୟ ତାକୁ ଉଚ୍ଛନ୍ନ କରିବ, ଅତଏବ ସେ ସୁନ୍ଦରୀ ମୋ ଠାରେ ସ୍ନେହ କରିବ ॥
୨୮—ରାମା ଚିତ୍ତ କଳ-ବାନ ହର (ହୃଦୟ) ପାଷାଣ ପରି କଠିନ, ସେ ବାର ମୋଠାରେ ରସିନବ ନାହିଁ ପରା, ନା ହେବେ, ସେ ହୃଦୟ ବିପାତେ ସମସ୍ତେ (କଷଟିପଥର) ଗୁଣିମାନେ କଷଟିରେ ତାହାକୁ କଷନ୍ତି । ମୋତେ ସମସ୍ତେ ହେମାଙ୍ଗୀ ବୋଲି କହନ୍ତି, ଯେତ ଗୁଣି ଅବଶ୍ୟ ମୋତେ ହୃଦୟରେ କଷ କରିବେ ॥
୨୯—ସିହାଣ (ପୁରୁଷ) ବିଚାରଇ-ସେ ମୋତେ ଦୟା କରିବ ନାହିଁ ପରା, ଯେ ହେତୁ ତାହାର ହୃଦୟରେ ପର୍ବତ ପରି କଠୋର ହୃଦଜ (ସ୍ତନ) ଉଦୟ

ଭାନୁ ଦୁହେଁ ହୋଇଲେ ନିର୍ମଳ-ଭାବ ଆଶା । ଦେଖି ସୁଖୀ ବୃଦ୍ଧି ଆଜ ଭେଟ
ହେବା ଆଶା ।
ଦେବନ ଗଲେ ନୀତ ଅଶେ । କାବ୍ୟ ସର୍ଗ ଭଙ୍ଗେ ଯଥା ଅନ ବୃତ୍ତ ବଟେ ॥ ୩୦
ଏତ ପରାକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ । ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛୁ ବିଶେଷତ
ଘେନ ନୈଷଧ ପରାୟେ । ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ॥ ୩୧

—○—

# ଦ୍ୱାଦଶ ଛାନ୍ଦ

( ସୁନ୍ଦରୀର ବେଶ ରଚନା । )

ରାଗ ବରାଡ଼ି । ଅଷାଢ଼ଶୁକ୍ଳ ବାଣୀ




ଳ ବାଳକଶେ ଏ କଥା ପ୍ରସଙ୍ଗ । ତାଙ୍କ ଚିତ୍ତ କାହିଁ ସୁରୀତେ ସଙ୍ଗ ।
ଯେ କବି ଅର୍ଥୀ ପଣ୍ଡିତ ସୁହୃଦ । ରସିକ ଯେହି ଘେନି ମୋ ଏ ଛାନ୍ଦ
ବ୍ୟସ୍ତ ଅଳଙ୍କାର । ମଣ୍ଡନ-ବିଧି ନିର୍ଦ୍ଦୋଷ ବିସ୍ତର ॥ ୧

ହୋଇଅଛି, କିନ୍ତୁ ଉତ୍ତମ କବିମାନେ ସେ ସ୍ତନକୁ ନାରିକେଳ ସହିତ ଉପମା ଦେଇଥିବାରୁ ମୋତେ ଦୟା କରିବ ବୋଲି ଭରସା ହେଉଅଛି । ( ନାରିକେଳ ଉପରେ କର୍କଶ ହେଲେ ମଧ୍ୟ ଭିତରେ ସରସ ) ।

୩୦—ଦୁହେଁ ଏହିପରି ଭାବୁ ୨ ଆଶା (ଦିଗ) ନିର୍ମଳ ହୋଇଗଲା (ରାତ୍ରିପାହିଲା) ଦେଖି ସୁଖୀ ହେଲେ, ଭେଟ ହେବାର ଆଶା ବଢ଼ିଲା, ଦୁହେଁ ନୀତ ଅଶେ (ନିତ୍ୟକର୍ମ ସାରିବା ଆଶାରେ) ଗଲେ, ଯେପରି କାବ୍ୟର ସର୍ଗ ସମାପ୍ତିରେ ଅନ୍ୟ ବୃତ୍ତବସେ, ସେହିପରି ରାତ୍ରିଯାକ ଏକ ଭାବନା ଥିଲେ ମଧ୍ୟ ପ୍ରଭାତରେ ସେ ଦୁହିଁଙ୍କର ଅନ୍ୟଭାବ ହେଲା ।

୩୧—ଏତ ପରାକୃତ କାବ୍ୟ, ଛାନ୍ଦ ମଧ୍ୟ ଶେଷ ହେଲା ଏଥିରେ ପୂର୍ବୋକ୍ତ ଦୃଷ୍ଟାନ୍ତର ଦୃଷ୍ଟି (ଦର୍ଶନ) ବିଶେଷ ଭାବରେ ଅଛି । ନୈଷଧପରି ଏ କାବ୍ୟ ପଣ୍ଡିତମାନଙ୍କର ଆନନ୍ଦ କରାଏ ଅତଏବ ଏହାକୁ ମନରେ ଘେନ ।

—○—

୧—ଖଳ ଓ ବାଳକଶେ (ମୂର୍ଖମାନଙ୍କ ପକ୍ଷରେ) ଏକଥା ପ୍ରସ୍ତାବ ନୁହେଁ, ଯେହେତୁ ସେମାନଙ୍କ ଚିତ୍ତର ସୁରୀତିରେ ସଙ୍ଗ କାହିଁ ? ଯେଉଁମାନେ କବି, ଅର୍ଥଜ୍ଞ ପଣ୍ଡିତ, ସହୃଦୟ ଓ ରସିକ ସେହିମାନେ ଏ ଛାନ୍ଦକୁ ଗ୍ରହଣ କରିବେ । ଏ ଛାନ୍ଦରେ ବ୍ୟସ୍ତାଳଙ୍କାର ଓ ମଣ୍ଡନବିଧି (ବେଶ ବିଧାନ) ନିର୍ଦ୍ଦୋଷରୂପେ ବିସ୍ତର କରାଯାଇଅଛି ।

ଉତପ୍ରେକ୍ଷା ଉପମା ରୂପକ ତିନି । ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି ।
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ । ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।
ନିତ୍ୟ ସାରିବାକୁ । ସଖୀଗଣେ ବେଢ଼ି ନୃପ ଜେମାକୁ ॥ ୨
ସୁଉରଙ୍ଗା-ବଲ୍ଲୀ ଭଳି ଏ ବାଳା । ବିଶୁଦ୍ଧ ହେମ ପୂରଟ-ପିତୁଳା ।
ଦିବ୍ୟ ପୀଠ ତୁଲ୍ୟ ପାନ୍ତେ ବସାଇ । ହରିଦ୍ରା ଲେପ ଦେଇ ଉଚ୍ଛୁ ଠାଇ ।
ପତନ ସେ ରେଣୁ । କର-କରତେ ଘରଷଣି ଯେଣୁ ॥ ୩
ନୂତନେ ଦହିତ ବିରହାନଳେ । ହେବାର ଜାଣି ମଜ୍ଜାଇଲେ ଜଳେ ।
ତୈଳ-ଯୋଗ-ତେଲ ଛଳ ବଖାଣି । ପାଇ କାନ୍ତି ମହୋଜ୍ଜ୍ୱଳ ଦ୍ୱିଗୁଣି ।
ତହୁଁ ନେଇ ପୁରେ । ବସାଇ ବେଶ କରିବା ବଗୃହରେ ॥ ୪
ଶିଳ୍ପକାରିକା ଏ କହିଲେ ତହିଁ । ମହାମହୀପତି-କୁମାରୀ ତୁହି ।
ନିନ୍ଦା ଅଲଙ୍କାରେ ହେବାର ଶୂନ୍ୟ । ଅଲଙ୍କାରେତ ହୋଇଲୁଣି ଧନ୍ୟ ।
ଅଳକାରେ ତୋତେ । ଅଲଙ୍କାର କରି ଲେଖୁଁ ସମସ୍ତେ ॥ ୫

---

୨—ଉତ୍ପ୍ରେକ୍ଷା, ଉପମା ଓ ରୂପକ ଏହି ତିନିଅଲଙ୍କାର ବକ୍ରୋକ୍ତି ଓ ଶ୍ଳେଷାଲଙ୍କାରର ଅଭିପ୍ରାୟ ଘେନି ରହିଅଛନ୍ତି । କୌଣସି ୨ ଠାରେ ମଧ୍ୟ ଦତ୍ତଚ୍ୟୁତାକ୍ଷର ଉଦିତ ହୋଇଛି । ହେ ସଂଖ୍ୟାବାନ ( ପଣ୍ଡିତମାନେ ) ବୁଝ । ଅନ୍ୟମାନଙ୍କର ବୁଝିବାର ଆୟତ୍ତ ନାହିଁ । ନିତ୍ୟକର୍ମ ସାରିବାପାଇଁ ସଖୀମାନେ ରାଜନନ୍ଦିନୀକୁ ବେଢ଼ିଗଲେ ।

୩—ସୁଉରଙ୍ଗା (ସୁସ୍ତନୀ) ସଖୀମାନେ ଭାବିଲେ ଏ ବାଳା ବିଶୁଦ୍ଧ ସୁବର୍ଣ୍ଣ ନିର୍ମିତ ପୂରଟ ( ପୂର୍ଣ୍ଣାବୟବ ଯୁକ୍ତ ) ପିତୁଳାଟିଏ, ତେଣୁ ତାହାକୁ ଦିବ୍ୟ ପୀଠ ( ଆସନ ) ରୂପ ନିକଟରେ ବସାଇ ହଳଦୀ ଲେପଦେଇ ଉଚ୍ଛୁଟାଇଲେ ( ଛଡ଼ାଇଲେ ) । ହସ୍ତରୂପ କରତରେ ଘଷିବାରୁ ସେ ରେଣୁ ( ସ୍ୱର୍ଣ୍ଣ ରେଣୁ ପରି ହରିଦ୍ରା ଗୁଣ୍ଡି ) ପଡ଼ିଲା ।

୪—ବିରହାଗ୍ନିରେ ନୂଆ ଦହି ହେବାର ଜାଣି ଜଳରେ ନେଇ ବୁଡ଼ାଇଲେ । ସେ ସ୍ୱର୍ଣ୍ଣ ପିତୁଳା ତୈଳ ଯୋଗ ତେଲ ( ଗାମୁଛା ) ଛଳରେ ରସାଣକୁ ପାଇବାରୁ (ଗାମୁଛାରେ ପୋଛି ହେବାରୁ) ତାହାର କାନ୍ତି ଦୁଇଗୁଣ ଉଜ୍ଜ୍ୱଳ ହେଲା, ତତ୍ପରେ ସଖୀମାନେ ବେଶ କରିବା ଗୃହ ପୁରକୁ ନେଇ ବସାଇଲେ ।

୫—ସେଠାରେ କେହି ଶିଳ୍ପକାରିକା (ବେଶକାରୀ) କହିଲେ—ତୁ'ତ ରାଜାଧିରାଜ ନନ୍ଦିନୀ, ପୁଣି ଯୌବନ ଲଭି ଅଲଙ୍କାର ଶାସ୍ତ୍ରରେ ଧନ୍ୟ ହେଲୁଣି, ଅଲଙ୍କାରରେ ( ଭୂଷଣରେ ) ଶୂନ୍ୟହେବା ତୋହ ପକ୍ଷରେ ନିନ୍ଦାହେବ । ଆମ୍ଭେ ସମସ୍ତେ ତୋତେ ଅଳକାରେ ( କୁବେର ପୁରୀରେ ଥିବା ସୁନ୍ଦରୀମାନଙ୍କ ମଧ୍ୟରେ ) ଅଲଙ୍କାର କରି ଲେଖୁଁ ।

ତଥାପି ଭୂଷଣ ନୋହେ ଦୂଷଣ । ତୁହି ଚନ୍ଦ୍ରମା ସେ ରଜନୀ ଜାଣ ।
ପରସ୍ପରେ କରେ ଶୋଭା ଅଧିକା । ସୁକୁମାରୀ ବୋଲି ନ କର ଶଙ୍କା ।
ଏଥୁଁ ହେବ ଭାର । ପୟୋଧର ତୋ ଧରାଧର ପରି ॥ ୬
ତାର ଏମନ୍ତ କହୁଁ ଭଙ୍ଗୀ-ଆଳୀ । ବେଶ ସମ୍ଭାରମାନ ଘେନି ମିଳି ।
କେ କରେ ମାଜି ମୁକୁର ଦେଖାଇ । ମୁଖ ବିମ୍ବ ଧରି ବିମ୍ବ ବୋଲାଇ ।
ବୋଇଲା ଯେ ଜଣେ । ଦରପଣ ସିନା ବହେ ଈକ୍ଷଣେ ॥ ୭
ଏ କଥା କହିବାର ତାତପର୍ଯ୍ୟ । ଅଧିକ ବକ୍ତ୍ର ବାସେ ଶିରୋଧାର୍ଯ୍ୟ ।
ଫେଇ ସୁଗନ୍ଧ ଧୂମେ ଧୂପ ଦେଇ । ଗଜଦନ୍ତ-କଙ୍କତିକା ଚଳାଇ ।
ସେ ଏମନ୍ତ ଦିଶି । ଜଳଦ ପରେ ଧାମେ ଅର୍ଦ୍ଧଶଶୀ ॥ ୮
କଲା ଭଲି ବେଣୀ ହେଲା ଏ ଦୃଷ୍ଟି । କୁରୁଣ୍ଟକ ଗଣ୍ଠି କହ୍ଲାର ଫୁଟି ।
ରାଜହଂସ ପନ୍ତି ମୋତି-ସୀମନ୍ତ । ହୀରା-ପିହାଣିଆ ଅଗ୍ରରେ ତଥି ।
ବଣା ଏକ ହଂସୀ । କାଳନ୍ଦୀ ସ୍ରୋତେ ଯାଉଅଛି ଭାସି ॥ ୯

---

୬—ତଥାପି ଅଳଙ୍କାର ଦୋଷାବହ ନୁହେ, କାରଣ, ତୁହି ଚନ୍ଦ୍ରମା, ଅଳଙ୍କାର ସବୁ ରାତ୍ରି; ଚନ୍ଦ୍ର ଓ ରାତ୍ରି ପରସ୍ପର ଶୋଭାକୁ ଅଧିକ କରନ୍ତି, ତୁ ସୁକୁମାରୀ ହେଲେହେଁ ଅଳଙ୍କାର ଭାର ହେବ ବୋଲି ଶଙ୍କା କରନା, ତୋହର ସ୍ତନପରି ଧରାଧର (ପର୍ବତ) ପରି ତାକୁ ତୁ ବହିଅଛୁ, ଅଳଙ୍କାର କଣ ତାଠାରୁ ଭାରିହେବ ।

୭—ବେଶକାରୀ ଏପରି କହନ୍ତେ ଭଙ୍ଗୀ ଆଳୀ (ଚତୁର ସଖୀ) ବେଶ ସମ୍ଭାର ମାନ (ଉପକରଣ ସବୁ) ଘେନି ପହଞ୍ଚିଲେ, କେହି ଦର୍ପଣକୁ ହାତରେ ମାଜି ଦେଖାଇ କହିଲା ଏ ସୁନ୍ଦରୀ ମୁଖ ବିମ୍ବକୁ ଧରି ଦର୍ପଣବିମ୍ବ ନାମ ବୋଲାଇଲା, ଆଉଜଣେ କହିଲା ଦର୍ପଣ ଈକ୍ଷଣେ (ଦର୍ଶନମାତ୍ରେ) ଦରପଣ (ଭୟ ପଣ)କୁ ବହିବାରୁ ସିନା ଦର୍ପଣ ନାମକୁ ବହିଛି ।

୮—ଏକଥା କହିବାର ତାପର୍ଯ୍ୟ ଏହି ଯେ ଦର୍ପଣ ଝଲ୍ସି ଘେନି ମୁଖ ସଙ୍ଗେ ସମାନ ହେଲା ମାତ୍ର ବକ୍ତ୍ର (ମୁଖ) ବାସେ (ସୁଗନ୍ଧରେ) ଅଧିକ ହେଲା । ତଦନନ୍ତର ଶିରୋଧାର୍ଯ୍ୟ (କେଶ) ଫିଟାଇ ସୁଗନ୍ଧ ଧୂମରେ ଧୂପ ଦେଇ ତହିଁରେ ହାତୀ ଦାନ୍ତର କଙ୍କତିକା (ପାନିଆ) ଚଳାଇଲେ ସେ ଏପରି ଦିଶିଲା—ମେଘ ଉପରେ ଅର୍ଦ୍ଧଶଶୀ (ଅଷ୍ଟମୀଚନ୍ଦ୍ର) ଧାଏଁ । ଜଳଦ (ମେଘ) ପରି କେଶ, ଅର୍ଦ୍ଧଚନ୍ଦ୍ର ପରି ପାନିଆ ।

୯—ବେଶକାରୀ କଲା ବେଣୀକଲା, ତହିଁରେ ଏ ସବୁ ଦେଖାଗଲା,—କାଳନ୍ଦୀଧାରା ସଦୃଶ ବେଣୀରେ କୁରୁଣ୍ଟକ ଗଣ୍ଠି (ଦାସକେରଣ୍ଟା ଫୁଲରେ କରିଥିବା ଗଣ୍ଠି) ରୂପକ କହ୍ଲାର (ଶ୍ୱେତ ଉତ୍ପଳ) ଫୁଟିଛି, ମୋତି ସୀମନ୍ତ, ରାଜହଂସ ଶ୍ରେଣୀ ପରି ତାହା ଆଗରେ ଥିବା ହୀରା ପିହାଣିଆ ଏକ ହଂସୀ ସେ ବଣା ହୋଇ କାଳନ୍ଦୀ ସ୍ରୋତରେ ଭାସି ଯାଉଛି ।

ସୁନାରୀମାନେ ଝିଲ୍‌ମିଲ୍‌ମାଳୀ । ବେନି ପାଶେ କଲେ ଉତ୍ତଂସ ଝଲ ।
କଲେ ଅଳକା-ଦାଣ୍ଡେ ହାଟ ପରି । ପ୍ରସରାଇ ସ୍ୱର୍ଣ୍ଣ ରତ୍ନ ପସରା ।
ଚନ୍ଦ୍ର-ଝୁମ୍ପା ତହିଁ । କାହା ମାନସ ହର ନେଉ ନାହିଁ ॥ ୧୦
ଭ୍ରୂରୁ ନୟନ ହାବ ଅଳଙ୍କାର । ବଶୀକରଣ ମଣି ଡୋଲା ତାର ।
ଅସ୍ତ୍ର ଭାବେ ଦେଲେ କଜ୍ଜ୍ୱଳ ଆଣି । କେତେ ଅପୂର୍ବ କଲେ ବପେ ଜାଣି ।
ସେ ମହା ଉଜ୍ଜ୍ୱଳ । ହେଲା ମୋହିବ ଭୁବନ-ମଣ୍ଡଳ ॥ ୧୧
ଘେନିଲେ ଦ୍ୱିଜ-ଶୋଭନୀ ଏ ବାମା । ସର୍ବ-ରିପୁ ପର୍ବ-ପୂଜା-ପ୍ରତିମା ।
କଲେ ମଲ୍ଲୀକଢ଼ୀ ଫୁଲେ ଅର୍ଚ୍ଚନା । କର୍ଣ୍ଣ-ତାଟଙ୍କ ଆଲତି ରଚନା ।
ସୁବାସ ଚନ୍ଦନ । ଗନ୍ଧ ମିଶ୍ରିତ ତିଳକେ ବନ୍ଦନ ॥ ୧୨
କରି ସେ ଅତି ଜ୍ୟୋତି-ମୋତି ଗୁଚ୍ଛ । ନାସା ଛୁଇଁମାରୁ ହୋଇଲେ ସ୍ୱଚ୍ଛ ।
ପାଣି ଅଞ୍ଜଳି କରି ମୁଦ୍ରାମାନ । ଦେଖାଇ ଅଙ୍ଗୁଳି ଧଇଲେ ପୁନ ।
ଭୋଗ କରି ତହିଁ । ତାମ୍ବୁଳ ବଟିକା ହରଷେ ଦେଇ ॥ ୧୩

---

୧୦—ଉତ୍ତମ ନାରୀ ସଖୀମାନେ ଝିଲ୍‌ମିଲ୍ ମାଳୀର ଦୁଇ ପାଖରେ ଉତ୍ତଂସ ( କର୍ଣ୍ଣ ଭୂଷଣ ) ଝଲ ( ଉଜ୍ଜ୍ୱଳ ) କଲେ, ତହିଁରେ ଏପରି ଅନୁମାନ ହେଲା — ସ୍ୱର୍ଣ୍ଣ ରତ୍ନର ପସରା ସଦୃଶ ଅଳଙ୍କାର ମାନଙ୍କ ପ୍ରସାର କରି ଅଳକା ( ଚୂର୍ଣ୍ଣ କୁନ୍ତଳ ) ଦାଣ୍ଡରେ ହାଟ କଲେ ପରି । ତହିଁରେ ଥିବା ଚନ୍ଦ୍ରଝୁମ୍ପା କାହାର ମନ ହରୁ ନାହିଁ ।

୧୧—ଏ ଭ୍ରୂରୁ ( ଲକ୍ଷ୍ମୀଶୀଳା ) ସୁନ୍ଦରୀର ନୟନର ହାବ ( ବକ୍ରଦୃଷ୍ଟି, ଭ୍ରୂଭଙ୍ଗ ପ୍ରଭୃତି ) ଅଳଙ୍କାର, ତାହାର ଡୋଲା ବଶୀ କରଣ ମଣି, ପୁଣି ଏ କାମଦେବର ଅସ୍ତ୍ର-ଏହି ଭାବରେ କଜ୍ଜ୍ୱଳ ଆଣିଦେଲେ, ସଖୀମାନେ ଜାଣିପାରି କଜ୍ଜ୍ୱଳରୂପ ବପରେ କେତେ ଅପୂର୍ବ କଲେ, ସେ ମହା ଉଜ୍ଜ୍ୱଳ ହେଲା ଭୁବନ ମଣ୍ଡଳ ମୋହିବ ।

୧୨—ଦ୍ୱିଜ ଶୋଭନୀ (ଦନ୍ତଶୋଭନୀ) ସଖୀମାନେ ମନରେ ଘେନିଲେ ଅଥବା ଶୋଭନୀମାନେ ମନେ ଘେନିଲେ ଆମ୍ଭେମାନେ ଦ୍ୱିଜ (ବ୍ରାହ୍ମଣ) ଏ ବାମା ସର୍ବରିପୁ ( କାମ )ର ପର୍ବ ( ଆଶ୍ୱିନପର୍ବ ) ପୂଜାପ୍ରତିମା, ମଲ୍ଲୀକଢ଼ୀ ( ମଲ୍ଲିକାକଢ଼ୀ ) ଓ କର୍ଣ୍ଣଫୁଲ୍ କାନରେ ଦେଲେ । ( ପୂଜା ପ୍ରତିମାକୁ ମଲ୍ଲୀକଢ଼ୀ ଫୁଲରେ ପୂଜାକଲେ ), କର୍ଣ୍ଣ ତାଟଙ୍କ ରୂପ ଆଲତି ରଚନା କଲେ (କାନରେ ତାଟଙ୍କ ଦେଲେ), ସୁଗନ୍ଧ ମିଶ୍ରିତ ତିଳକରୂପ ସୁବାସ ଚନ୍ଦନରେ ପୂଜାକଲେ ।

୧୩—ଅତି ଉଜ୍ଜ୍ୱଳ ମୋତିର ଗୁଚ୍ଛ କଲେ ସେ ନାସା ଛୁଇଁବାରୁ (ନାକରେ ଯୁକ୍ତ ହେବାରୁ ) ମନୋହର ହେଲା, (ତାହା ପୂଜା ପଣ୍ଡାର ଅଙ୍ଗନ୍ୟାସ ବେଳେ ନାକଛୁଇଁବା ହେଲା ) କେଉଁ ସଖୀ ପାଣି (ହାତ) ଅଞ୍ଜଳି କରି ମୁଦ୍ରା

ଉରଜ ମହେଶ ଜନ୍ମାନ୍ତ ପାଇ । ନୀଳ-ଚୈଳ ଗଜ-କୃତ୍ତି ଘୋଡ଼ାଇ ।
ହାର ଦେଖି ଗଙ୍ଗାଧର ହୋଇଲା । କେ ବୋଲନ୍ତି କେ ବୋଲେ କେବେଁ ନୋହିଲା ।
ଏ ପୁଂନାଗ-ମାଳା । ସମ୍ଭାବତ ଯହିଁ ତହିଁ ରହିଲା ॥ ୧୪
କଣ୍ଠ କମ୍ବୁ ଦେନି ବହୁତ ମାଳୀ । ପୁଣି ସନ୍ନିଧେ କରାଇଲେ ଝଲି ।
କେ ଭାଷେ ଏ ଶମ୍ଭୁ ତଳେ ବିଧାତା । ଉଲଟାଇଛି ଜଘନ-ପାର୍ବୀତା ।
ବାନ୍ଧିବା କି ପୁଚ୍ଛେ । ଏହା ଡମ୍ବରୁ ମଧ୍ୟେ ଘଣ୍ଟି ସ୍ୱଚ୍ଛେ ॥ ୧୫
ଜ୍ୟୋତିର୍ବିଦା ଭାଷି ଏ ଶୋଭା-ରାଶି । ନକ୍ଷତ୍ର-ମାଳା ଯୋଗେ ଶୋଭା ଦିଶି ।
ପୁଣି ଚନ୍ଦ୍ର ଭୋଗ କରେ ଏ ନିତ୍ୟ । ଶଉରି ସଙ୍ଗରେ ସଭେଦ କୃତ ।
ଦେବ ତାଡ଼ ଭୂଜେ । ଉଦିତ ହେବ କବି ଦୃଷ୍ଟି ଉର୍ଜେ ॥ ୧୬

---

(ମୁଦ୍ର) ମାନଅଣି ଦେଖାଇଲା (ସେ ଅଞ୍ଜଳି ମୁଦ୍ରା ଦେଖାଇବା ହେଲା) ପୁଣି ମୁଦ୍ରଦେବାକୁ ଅଙ୍ଗୁଳି ଧରିଲେ (ସେ ଅଙ୍ଗୁଳି ମୁଦ୍ରା ହେଲା) ତହିଁ ଭୋଗ (ନୈବେଦ୍ୟ)କର ଆନନ୍ଦରେ ତାମ୍ବୁଲ ବଟିକା ଦେଲେ ।

୧୪—ଉରଜ (ସ୍ତନ) ରୂପ ଶିବଙ୍କର ଜନ୍ମାନ୍ତ ପାଇଁ (ପ୍ରକୃତରୂପ ଦେଖାଇବା ନିମିତ୍ତ) ନୀଳ ଚୈଳ (ନୀଳକାଞ୍ଚଳି) ରୂପକ ଗଜକୃତ୍ତି (ହସ୍ତୀଚର୍ମ) ଘୋଡ଼ାଇମୁକ୍ତାହାର ଦେଖି ଶିବ ଗଙ୍ଗାଧର ହେଲେ ବୋଲି କେଉଁ ସଖୀ କହିବାରୁ କେହି କହିଲା-କେବେଁ ନୋହିଲା ଏ ପୁଂନାଗ ମାଳା (ସର୍ପମାଳା) ଯେଉଁଠାରେ ସର୍ପମାଳା ରହିବା ସମ୍ଭାବତ ସେହିଠାରେ (ସ୍ତନଶିବଉପରେ) ରହିଲା ।

୧୫—ପୁଣି ସ୍ତନ ଶିବ ସମୀପରେ ବହୁତ ମାଳୀ (ହାର) ଦେବାଦ୍ୱାରା କଣ୍ଠକମ୍ବୁକୁ (ଶଙ୍ଖତୁଲ୍ୟ କଣ୍ଠକୁ) ଝଲି କରାଇଲା, (ଶିବଙ୍କର କଣ୍ଠମଧ୍ୟ ଶଙ୍ଖ ମାଳାରେ ଝଲିଥାଏ)କିଏ କହିଲା ଏଶମ୍ଭୁଙ୍କ ତଳେ ବିଧାତା ଜଘନରୂପରେ ତାହାଙ୍କର ପାର୍ବୀକି ଉଲଟାଇ ଥୋଇଛି । କେହି ପଚାରିଲେ-ଶିବ ଡମ୍ବରୁ ତୁଲ୍ୟ ଏହାର ମଧ୍ୟ-ଦେଶରେ ସ୍ୱଚ୍ଛ (ସୁନ୍ଦର ଦିଶିବାପାଇଁ) ଘଣ୍ଟିକି ବାନ୍ଧିବା କି ।

୧୬—ଜ୍ୟୋତିର୍ବିଦା (ଜ୍ୟୋତିଷ ଦୁହିତା) ଭାଷିଲା-ଏ ଶୋଭାରାଶି (ସୁନ୍ଦରୀ) ଶୋଭାରାଶି (ମେଷାଦ ଦ୍ୱାଦଶ ରାଶି) ପରି-ସୁନ୍ଦରୀର ନକ୍ଷତ୍ରମାଳା (ମୁକ୍ତା ମାଳା) ଯୋଗରେ ଶୋଭା ଦିଶଇ ନକ୍ଷତ୍ରମାଳା ଯୋଗରେ (ସପ୍ତବିଂଶ ନକ୍ଷତ୍ର ଚକ୍ରରେ) ବାରରାଶିର ଶୋଭା (ଆକୃତି) ଦେଖାଯାଏ, (ପ୍ରତ୍ୟେକ ନକ୍ଷତ୍ର ଚତୁଷ୍ପାଦ କରି, ନଅ ପାଦରେ, ଗୋଟିଏ ରାଶି ହୁଏ; ଯେପରି ଅଶ୍ୱିନୀ ୪ପାଦ, ଦ୍ୱିତୀୟା ୪ପାଦ ଓ କୃତ୍ତିକାର ୧ପାଦ ଏହି ୯ପାଦରେ ମେଷରାଶିର ଆକୃତି ଦିଶେ, ଏହିପରି ମଧ୍ୟ ଅନ୍ୟାନ୍ୟ ରାଶି ମାନଙ୍କର ଆକୃତି (୨୭ ନକ୍ଷତ୍ରରେ ଦିଶେ) । ପୁଣି ଏ ରାଶିରେ ଶଉରି (ଶନି) ସଙ୍ଗରେ ଚନ୍ଦ୍ର ଭୋଗକରେ, ଦେବତାଡ଼ (ରାହୁ) ଭୁଜେ (ମଙ୍ଗଳଠାରେ) କବି (ଶୁକ୍ର)

କା ଦୃଷ୍ଟିବୋଲ୍ ପଗ୍ଟରିଲା କେହି । ବୋଇଲ ମରକତେ ନିର୍ମିତ ସେହି ।
ଘନାଲିଙ୍ଗନେ ଶମ୍ପା ସ୍ଥିର ପରି । ଦଶି ହୋଇବ ଯେ ନୟନ କାରି ।
ଟଙ୍କ କର ଦେଲେ । ସେହି ଶୋଭାକୁ ପ୍ରତ୍ୟକ୍ଷେ ଦେଖିଲେ ॥ ୧୭
ସୁମନାମାନେ ମାନସେ ବଗ୍ଟରି । ଲବଣ୍ୟ-ସିନ୍ଧୁ ନିଶ୍ଚେ ଏ ନାଗରୀ ।
କରି ମକର ଭୁରିତେ ରାଜିତ । ଭରମ କଙ୍କେ କରେ ସଂଯୁତ ।
ପୁଣି ସେ ସତ୍ୱର । ପୟରେ ଲୀଳା ଦେଇ ହଂସକର ॥ ୧୮
ବୋଇଲେ ଧୁନି ମେଳ ହେବା ବେଳେ । ଦେବ ଯୁବା-ଧୈର୍ଯ୍ୟ ବୁଡ଼ାଇ ହେଲେ
ଗମ୍ଭୀର-ଗୁଣା ନିପୁଣା ଏ ପୁଣି । ମୀନ ନୟନ ତରଙ୍ଗ ଗୃହିଣୀ ।
କମନୀୟ ଶିରୀ । ସବୁ ପ୍ରକାରେ ଅଛୁ ଜାତ କରି ॥ ୧୯

---

ଦୃଷ୍ଟି ଭର୍ଙ୍ଗେ( ରଙ୍ଗରେ ) ଉଦିତ ହୁଏ । ଏ ସୁନ୍ଦରୀସ କରୀ (କର ସହିତ) ସ୍ତନସଙ୍ଗରେ ଚନ୍ଦ୍ର ( ସୁବର୍ଣ୍ଣହାର ) ଭୋଗକରେ, ଏଠାରେ "ସ"ର ଭେଦ କରାଗଲା ( ଅର୍ଥାତ ଶଭରୀ ତାଲବ୍ୟ "ଶ", ସଭରୀ ଦନ୍ତ୍ୟ "ସ" ) ଏ ଭୂରେ (ପୃଥ୍ୱୀବାରେ) ତାଡ଼ନ ଦେବ (ଏଠାରେ 'ଭୂଜେ" ପଦରୁ "ଜ", ଚ୍ୟୁତ ଓ "ତାଡ଼" ପଦରେ "ନ" ଦତ୍ତ ହେଲା) । କବିମାନଙ୍କର ବର୍ଣ୍ଣନା ଦୃଷ୍ଟି ଭଙ୍ଗିରେ ଉଦିତ ହେବ ଅର୍ଥାତ୍ ଏ ସୁନ୍ଦରୀର ଭୂଜରେ ତାଡ଼ଦେବ ସେ ଶୋଭାରେ ପୃଥ୍ୱୀ କମ୍ପିବ ।

୧୭—କା ଦୃଷ୍ଟିବୋଲ୍ କେହି ସଖୀ ପଗ୍ଟରିଲା, କେହି କେହି ଉତ୍ତର କଲେ ସେହି ତାଡ଼ ମରକତରେ ନିର୍ମିତ, ଘନ ( ମେଘ ) ଆଲିଙ୍ଗନରେ ଶମ୍ପା ( ବିଜୁଳି ) ସ୍ଥିର ହେଲାପରି ଦଶି ନୟନର କାରି ( ବନ୍ଦୀଗୃହ ) ହୋଇ ଯିବ, ଏମନ୍ତ କହି, ଟଙ୍କକରି ବାହୁରେ ତାଡ଼ ଦେଲେ ସେହି ଶୋଭାକୁ ( ଘନପରି ତାଡ଼ ଓ ବିଜୁଳିପରି ବାହୁ ) ପ୍ରତ୍ୟକ୍ଷରେ ଦେଖିଲେ ।

୧୮—ସୁମନା ( ପଣ୍ଡିତା ) ସଖୀମାନେ ମନରେ ବିଗ୍ଟରିଲେ ଏ ନାଗରୀ ନିଶ୍ଚୟ ଲାବଣ୍ୟସିନ୍ଧୁ ଅଟେ, ସମୁଦ୍ରର ମକର ମତ୍ସ୍ୟ ବିରାଜିଲାପରି ଏହାର ଗଣ୍ଡରେ ମକରୀଚିହ୍ନକୁ ଭୁରିତେ ବିରାଜିତ କଲେ, ସମୁଦ୍ର ଭରମ ( ଜଳ ଭଉଁରୀ ) ଓ କଙ୍କେ ( ଲବଣରେ ) ସଂଯୁକ୍ତ ହେଲାପରି ହସ୍ତକୁ ଭ୍ରମର କଙ୍କେ ( ସୁବର୍ଣ୍ଣକଙ୍କଣରେ ) ସଂଯୁକ୍ତ କଲେ ପୁଣି ସମୁଦ୍ରର ପୟରେ ( ଜଳରେ ) ହଂସକର ( ରାଜହଂସର ) ଲୀଳା ପରି ଏହାର ପୟରେ ( ପାଦରେ ) ଶୀଘ୍ର ହଂସକ ( ନୂପୁର ) ଦେଇ ତାହାର ଲୀଳା କରାଇଲେ ।

୧୯—କହିଲେ ସମୁଦ୍ରରେ ଧୁନି ( ନଦୀ ) ମେଳ ହେଲାବେଳେ ( ବର୍ଷାକାଳରେ ସମୁଦ୍ରରେ ନଦୀ ମିଳନ୍ତି ) ସୃଷ୍ଟି କି ବୁଡ଼ାଇ ଦେଲାପରି ଏହାର ପାଦରେ ନୂପୁର ଧ୍ୱନି ମେଳ ହେଲାବେଳେ ଏ ଲାବଣ୍ୟସିନ୍ଧୁ ଯୁବକମାନଙ୍କର

ଚତୁରୀ ସଖୀଏ ମଞ୍ଜୁ ମଞ୍ଜିର । ଖଞ୍ଜି ପାଦେ ବୋଲେ ଅନ୍ଦୁ ଏହାର ।
ହେମ-କରେଣୀ ଏ ତରୁଣୀ ସତ । ଯଉବନ-ମଦେ ହେଲା ଏ ମତ୍ତ ।
ଲଜ୍ଜା-ଅଙ୍କୁଶରେ । ଶାନ୍ତ ଭଜିବ ସିନା ଅନାଶରେ ॥ ୨୦
ଦେଇ କେ କହେ ଏ ମୁଦ୍ଧର ନାଦେ । ନୀଳକଣ୍ଠ ବଶ ହେବେ ପ୍ରମୋଦେ ।
ଯୋଗ ବିନା ଭୋଗେ କରିବେ ମତ୍ତ । ଉଦ୍ଦୀପନକାରୀ କାଳର ରୀତ ।
ଅଲମ୍ବନ ଭାବ । ଛୁଇଁଛୁ କେମନ୍ତେ ଦମ୍ଭ ରହିବ ॥ ୨୧
ପଶ୍ଚିମା ବେଶ ଯଥୋଚିତ ବାସ । ପିନ୍ଧାଇ ସଜନୀ ହୋଇଲେ ତୋଷ ।
ବୋଇଲେ ଦେଖିଲା ଜନ ନୟନ । ହେବତ ନଟନ-ନିକେତନ ।
ଛଳିଲା କେ ଭାବେ । ଲସିକା ରସିକା ହୋଇଲା ତେବେ ॥ ୨୨

---

ଧୈର୍ଯ୍ୟକୁ ବୁଡ଼ାଇଦେବ, ସମୁଦ୍ରଗଭୀର, ଏ ଗଭୀର ଗୁଣ ନିପୁଣୀ, ଏହାର ନୟନ ମୀନପରି, ଛଟକ ଗୁହାଁଣି ତରଙ୍ଗପରି, ଶିରୀ ( ଲକ୍ଷ୍ମୀ ) ପରି କମନୀୟ ଶିରୀ ( ମନୋହର ଶୋଭା ) ସୁତରାଂ ସମୁଦ୍ର ଲକ୍ଷଣକୁ ସବୁ ପ୍ରକାର ଜାତ କରୁଛି ।

୨୦—କେହି ଚତୁରୀ ସଖୀ ମନୋହର ମଞ୍ଜିରକୁ ପାଦରେ ଖଞ୍ଜି କହେ—ଏହାର ଏ ଅନ୍ଦୁ ( ହସ୍ତୀବନ୍ଧନ ଶିକୁଳି ), ଏ ତରୁଣୀ ହେମ କରେଣୀ ( ସୁବର୍ଣ୍ଣ-ହସ୍ତିନୀ ) ସତ୍ୟ ଏ ଯୌବନ ମଦରେ ମତ୍ତ ହେଲା, ଲଜ୍ଜାରୂପ ଅଙ୍କୁଶରେ ସିନା ଅନାଶରେ ( ସର୍ବଦା ) ଶାନ୍ତକୁ ଭଜିବ ।

୨୧—କେହି ପାଦରେ ମୁଦ୍ଧଦେଇ କହେ—ମୁଦିର ( ମେଘ ) ନାଦରେ ନୀଳକଣ୍ଠ ( ମୟୂର ) ପ୍ରମୋଦରେ ( ଆନନ୍ଦରେ ) ବଶ ହେଲାପରି ଏ ମୁଦ୍ଧର ନାଦରେ ନୀଳକଣ୍ଠ ( ଶିବ ) ଆନନ୍ଦରେ ବଶହେବେ । ଯୋଗକୁ ଛାଡ଼ି ଭୋଗରେ ମତ୍ତ କରିବେ, ଉଦ୍ଦୀପନ କାରି କାଳର ( ବର୍ଷାକାଳର ଓ ଯୌବନସ୍ଥାର ) ଏହି ରୀତ ଅଟେ । ଅଲମ୍ବନଭାବ ଶିବପ୍ରଭୃତିଙ୍କର ମଧ୍ୟ ଚିତ୍ତକୁ ଛୁଁଇବ; ଦମ୍ଭ କିପରି ଭାବରେ ରହିବ । ଉଦ୍ଦୀପନଭାବ ( ଚନ୍ଦ୍ର,-ଚନ୍ଦନ, ବର୍ଷା, ବସନ୍ତ ପ୍ରଭୃତିରେ ରସଉଦ୍ଦୀପିତ ହେବାରୁ ଏ ହସକୁ ଉଦ୍ଦୀପନଭାବ ) ଅଲମ୍ବନଭାବ, ( ନାୟିକା ପ୍ରଭୃତିଙ୍କୁ ଅବଲମ୍ବନକରି ରସ ଜନ୍ମିବାରୁ ଏହା ଅଲମ୍ବନଭାବ ) ।

୨୨—ପଶ୍ଚିମା ସ୍ତ୍ରୀମାନେ ଯେପରି ଲୁଗା ପିନ୍ଧନ୍ତି ସେହିପରି ଲୁଗା ପିନ୍ଧାଇ ସଜନୀମାନେ ସନ୍ତୁଷ୍ଟାହେଲେ ଏବଂ କହିଲେ—ଏହାକୁ ଦେଖିବାଲୋକର ଚକ୍ଷୁ ନଟନ ନିକେତନ ( ନାଟଗୃହ ) ହେବ । କେହି ସଖୀ ଛଳେଇକରି କହିଲା—ତେବେ ତ ରସିକା ଲସିକା ( ନର୍ତ୍ତକୀ ) ହେଲା ।

ନୋହିଲ କିମ୍ପା ସେ କହିଲ ଭାବେ । ନୂପୁର ବାନ୍ଧିଛୁ ଚରଣ-ଯୁଗେ ।
ଲୋଡ଼ୁଅଛୁ ଶଠେ ରହସ୍ୟ-ସ୍ଥଳ । ଶୈଳ-ଖୋଳେ ରଖି କୁଚ-ମର୍ଦ୍ଦଳ ।
ଜାଣି ଭାଗ୍ୟବନ୍ତ । ସଙ୍ଗୀତ-ପ୍ରବୀଣେ କରବ ଦତ୍ତ ॥ ୨୩
ଏ ବିଧି ରସନିଧି ବେଶ ସାରି । ନିଜ ବ୍ୟାପାରେ ଗଲେ ଶିଳ୍ପକାରୀ ।
ଏକାଳେ ଦ୍ୱିଜେ ଭାଷି ରାମ ଘୋଷ । ବନ-ବିହାରେ ହୋଇଲେ ଲାଳସ
ଉପଇନ୍ଦ୍ର ଘୋଷେ । ଶ୍ରୀରାମ-ଇନ ଅଘ ନାଶେ ॥ ୨୪

—※—

# ତ୍ରୟୋଦଶ ଛାନ୍ଦ

[ ସାକ୍ଷାତ୍ ଦର୍ଶନ ]

ରାଗ—କାମୋଦ



ସିକେ ରସିକରେ ଏଥି ପଦାଳିକର ସୁଧା ଶିକର ପାନ ତୋଷେ ।
ପ୍ରାତେ ନବବୟସୀ ବୟସୀ ପାଶେବସିବଶୀଭୂତ ଦର୍ଶନ ଆସେ ସେ ।
ଅନୁପମା । ଯେସନେ ଦୀନଜନ ମତ୍ତ । ଧନ ଲଭିବା ଲୋଭ ଅତ୍ତ ।
କୃଷ୍ଣାହ୍ୱ ଘନ ଘନ ଅସଇ ପୁନଃପୁନଃ ଭାଷଇ ଆନ ଆନ ରୀତି ସେ ॥ ୧

---

୨୩ । ୨୪ ସେ ସଖୀ ଭାବରେ କହିଲ-କାହିଁକି ନୋହିବ ? ନର୍ତ୍ତକୀ ପରି ଚରଣ ଯୁଗଳରେ ନୂପୁର ବାନ୍ଧିଛୁ, ହେ ରହସ୍ୟ ସ୍ଥଳ ( ନୃତ୍ୟ ଯୋଗ୍ୟ ସ୍ଥାନ ) ଲୋଡ଼ିଲା ପରି ଏ ମଧ୍ୟ ରହସ୍ୟ ସ୍ଥଳ (କାନ୍ତ ସଂଯୋଗ ଯୋଗ୍ୟ ଏକାନ୍ତସ୍ଥାନ ) ଲୋଡ଼ୁଛୁ । ନର୍ତ୍ତକୀ ଯେପରି ଖୋଳରେ ପୂରେଇ ମର୍ଦ୍ଦଳକୁ ରଖିଥାଏ, ଯାହାକୁ ଭାଗ୍ୟବନ୍ତ ଜାଣେ ତାହା ଆଗରେ ସଙ୍ଗୀତଜ୍ଞ ଲୋକକୁ ମର୍ଦ୍ଦଳ ଦେଇ ନୃତ୍ୟକରେ ଏ ମଧ୍ୟ ଶୈଳ ( କାଞ୍ଚୁଲି ) ରୂପ ଖୋଳରେ କୁଚରୂପ ମର୍ଦ୍ଦଳକୁ ରଖିଛୁ, ଜାଣି ( ଯାହାଙ୍କର ଭାଗ୍ୟବାନ୍ ଓ ସଙ୍ଗୀତଜ୍ଞ ପତିକୁ ମର୍ଦ୍ଦଳ ଦେଇ ନୃତ୍ୟ କରିବ ) । ଏହାପରେ ବିଧିରେ ରସନିଧି ସୁନ୍ଦରୀର ବେଶ ସାରି ବେଶକାରୀ ମାନେ ନିଜ ନିଜ କାର୍ଯ୍ୟରେ ଗଲେ, ଏହି ସମୟରେ ଦ୍ୱିଜ ( ପକ୍ଷୀ ) ମାନେ ରାମ ( ମନୋରମ ) ଘୋଷ ( ଶବ୍ଦ ) କରି ବନବିହାରରେ ଲାଳସ ହେଲେ, ବା ଦ୍ୱିଜେ ( ବ୍ରାହ୍ମଣମାନେ ) ରାମଘୋଷ ( ରାମନାମ ) ଉଚ୍ଚାରଣ କରି ବନବିହାରରେ ( ଜଳକ୍ରୀଡ଼ାର-ସ୍ଥାନରେ ) ଲାଳସ ହେଲେ, ଉପେନ୍ଦ୍ରଭଞ୍ଜ ଘୋଷେ, ଶ୍ରୀରାମଚନ୍ଦ୍ର, ଇନ ( ସୂର୍ଯ୍ୟ ) ଅନ୍ଧକାରକୁ ନାଶିଲା ପରି ଅଘ ( ପାପ ) କୁ ନାଶ କରିବେ ।

---

୧—ହେ ରସିକମାନେ ଏ ଛାନ୍ଦରେ ଥିବା ପଦସମୂହ ସୁଧାଶିକର ( ଅମୃତବିନ୍ଦୁ ) ଅଟେ, ଆପଣମାନେ ରସ ଆନନ୍ଦରେ ପାନ କର । ଯେପରି ଦୀନଜନର

ଅରୁଣୀ-ଧର ଧରା-ଭୂଷାପଞ୍ଜରୀ-ଧରା ଶାରୀ ପରଙ୍କରେ ଲେଖକ ।
ବୋଲେ ବିମନା-ମନ -ନନ୍ଦଦାୟିନୀ ଅନା ନଭେ ଶୋଭେଣ ଶମଶାନରେ
କାଦମ୍ବିନୀ । କାଷ୍ଠା-ବଳୀରେ ଚିତା ଜଳି । କେ ଦଗ୍ଧ ହେବ ଭାଷେ ଆଳୀ !
ଅନୁଗତା ପଦ୍ମିନୀ ଅନୁରାଗକୁ ଘେନି ଅନୁସରଣେ ଭାନୁ ମିଳି ସେ ॥ ୨
କିସ ବିଗୁରୁଛୁ ଗୁରୁ-ଶୀଳା ଭାଗ୍ୟବଶରୁ ସ୍ୱରୂପେ ଏପର ଉତ୍ସବ ।
ହୋଇବ ବିହି ବହିଅଛି ରେ ସହି ସହିଥାଅ କାଛି କପଟୀ ଭାବରେ ।
ଅନୁପମା । ମଧୁର ମଧୂ-କଣ୍ଠ-ରବ । ଏଣିକି ବଜ୍ରପାତ ହେବ ।
ସୂର୍ଯ୍ୟ ଅନଳ ବୃଦ୍ଧିକି କଥା କଳାନିଧି ବିଧିରେ ସେ ବିଧି ବାଧିବରେ ॥ ୩
ରାଗ ଜନାଇ ନିତମ୍ବିନୀ ଉଚିତ ଚିତ୍ତ ଭାବାଣ ମାଙ୍ଗଲ୍ୟା ବଚନ ।
ମିଳେ ଏକ ଜଟିଳା ଅର୍ଦ୍ଧଚନ୍ଦ୍ର-ନିଟିଳା-ଶୋଭିନୀ କର ବିଲୋକନ ସେ ।
ବିଗୁରୁଛି । ଜବାଧରୀ ଧରଣୀ-ଶିରୀ । ଧନ୍ୟ ଏହାର ଶିଳ୍ପକାରୀ ।
ସୁବେଶକୁ ସୁବେଶ ଯେହ୍ନ ତାକୁ ସୁବେଶ କଲେ କି ଅନୁମାନ କର ସେ ॥ ୪

ମତ ଧନ ଲଭିବାକୁ ଅତ୍ୟନ୍ତ ଲାଳସୀ, ସେହିପରି ନବଯୌବନ ସମ୍ପନ୍ନା ନିରୁପମା ସେହି ସୁନ୍ଦରୀ ବୟସୀ ( ସଖୀ ) ପାଖରେ ବସି ଦର୍ଶନ ଆଶାରେ ବଶୀଭୂତା ହେଲା । ଘନ ଘନ ଜୃମ୍ଭା ( ହାଇ ) ଆସେ, ସେ ପୁନଃ ପୁନଃ ଭିନ୍ନ ୨ ରୀତିରେ କଥା କହେ ।

୨—ଅରୁଣୀଧରା ଧରାଭୂଷା ( ପୃଥ୍ୱୀମଣ୍ଡନା ) ପଞ୍ଜରୀଧରା ଶାରୀ ପର ଏବେ ତେବେ ରହେଁ । ସେ ମନାନନ୍ଦଦାୟିନୀ ସୂର୍ଯ୍ୟଙ୍କୁ ଦେଖି ବିମନା ( ବ୍ୟାକୁଳା ) ହୋଇ ବୋଲଇ—ରେ କାଦମ୍ବିନୀ । ଅନାଇଲୁ, ନଭେ ( ଆକାଶରେ ) ଶ୍ମଶାନ ଶୋଭଇ, ଶ୍ମଶାନରେ କାଷ୍ଠାବଳୀରେ ( କାଷ୍ଠସମୂହ ଯୋଗେ ) ଚିତାଗ୍ନି ଜଳିଲା ପରି କାଷ୍ଠାବଳୀରେ ( ଦିଗମାନଙ୍କରେ ) ଅଗ୍ନି ଜଳଇ, କିଏ ଦଗ୍ଧ ହେବକି ? ଏହା ଶୁଣି ସଖୀ କହିଲା—ଏହା ଚିତାଗ୍ନି ନୁହେଁ, ଅନୁଗତା ପଦ୍ମିନୀର ଅନୁରାଗ ( ସ୍ନେହ ) ଘେନି ତାହାର ଅନୁସରଣରେ ଭାନୁ ( ସୂର୍ଯ୍ୟଦେବ ) ମିଳିଛନ୍ତି ;

୩—ରେ ଗୁରୁଶୀଳା । କଣ ବିଗୁରୁଛୁ, ତୋ ଭାଗ୍ୟ ବଶରୁ ସ୍ୱରୂପେ (ପ୍ରକୃତରେ ) ଏପରି ଉତ୍ସବ ( ପଦ୍ମିନୀ ଅନୁସରଣରେ ସୂର୍ଯ୍ୟ ମିଳିଲା ପରି ) ହୋଇବ, ବିଧାତା ଏହା ବହିଛି, ରେ ସଖି କାଛିଦନ କପଣ ଭାବ ସହିଥାଅ, ରେ ଅନୁପମା । ଏଣିକି ମଧୁର ମଧୁକଣ୍ଠରବ ( କୋକିଳଧ୍ୱନି ) ବଜ୍ରପାତ ପରି କଷ୍ଟ ଦେବ । ସୂର୍ଯ୍ୟଙ୍କଠାରେ ତୋର ଅନଳ ବୃଦ୍ଧିହେବା କି ଆଶ୍ଚର୍ଯ୍ୟ କଥା ବିଧିରେ କଳାନିଧି ( ଚନ୍ଦ୍ର ) ସେ ବିଧିରେ ଅଗ୍ନି ହୋଇ ବାଧାଦେବ ।

୪—କାଦମ୍ବିନୀ ଭାବିଲା-ମାଙ୍ଗଲ୍ୟାଙ୍କ ବଚନ ଅନୁସାରେ ନିତମ୍ବିନୀ ଚିତ୍ତରେ ଉଚିତ ରୂପେ ପୁରୁଷ ପ୍ରତି ରାଗ ( ସ୍ନେହ ) ଜନ୍ମିଲାଣି । ଏହି ସମୟରେ

କି ଗୁଣେ ସେ କି ଗୁଣେ ଗୁନ୍ଥିଲେ ଗ୍ରନ୍ଥିଗୁଣେ ରଖିଲେ ଗୃନ୍ଥ କୁନ୍ଦଣ୍ଣିକେ ।
ବେଣୀ ନଳୀ ଫୁଟିକେ ଗୁଣା କରି ହାଟକେ ମୁଠା ବାନ୍ଧିଲେ କି ଛଟିକେ ସେ ।
ପିହାଣିଆ । ହୀରା କି ରଜତ-ନକସ । କାହାକୁ ଜିଣି ନେବ ଯଶ ।
ମନୁଜ ଦନୁଜରେ ଅଦଗି ତନୁଜରେ କେ ନୋହିଅଛି ଏହା ବଶ ସେ ॥ ୫
ଏ ଛବି ବହେ ଅହିକେ କବି ଲକ୍ଷ୍ୟ ଦେଇ ହେଠ କରି କି ବାଲା ଟହେଜେ ।
ଭୁଛି ହେଲାକୁ କାଳ ବ୍ୟାଳଟି କାଳକାଳ ବଳରେ ଲୁଚିଲା ଯେ ଲାଜେ ସେ ।
ଗୁଳ ଯୋଗ । ନ କଲା କି ଯଶ ସୁମର । ଯେହୁ ନିସତ ତାକୁ ମାର ।
ମନୋରମ ଚରମଦେଶେ ଡେରିଛି ଝାମଯିବେ ଦାମ୍ଭିକେ ଦେଖି କରି ସେ ॥ ୬

---

ଏକ ଜଟିଳା ( ତପସ୍ବିନୀ ) ଅସି ମିଳିଲା, ସେ ଅର୍ଦ୍ଧଚନ୍ଦ୍ର ନିଟିଲା ଶୋଭନୀ ( ଯାହାର ଭାଲପଟ ଅର୍ଦ୍ଧଚନ୍ଦ୍ର ପ୍ରାୟ ସୁନ୍ଦର ) ସୁନ୍ଦରୀଙ୍କ ଗୃହଁ ବରୁଛି ଏ ଜବାଧରୀ ଧରଣୀ ଶିରୀ ( ମର୍ତ୍ତ୍ୟପୁର ଲକ୍ଷ୍ମୀ ) ଏହାର ଶିଳ୍ପକାରୀ ( ବେଶ କାରୀ ) ମାନେ ଧନ୍ୟ, ଯେଉଁ ସୁନ୍ଦରୀ ସୁବେଶକୁ ( ଉତ୍ତମ ଅଲଙ୍କାରକୁ ) ସୁବେଶ ( ଉତ୍ତମ ଅଲଙ୍କାର ) ପରି ତାକୁ କି ଅନୁମାନ କରି ବେଶ କଲେ ।

୫—ସେ ( ଶିଳ୍ପକାରୀ ମାନେ ) କି ଗୁଣେ (କି ହେତୁରେ) କି ଗୁଣେ ( କେଉଁ ରଜ୍ଜୁରେ ) ଗୁନ୍ଥିଲେ, ଗୃନ୍ଥ କୁନ୍ଦଣ୍ଣିକେ ( ସୁନ୍ଦର ଦାସ କେବଣ୍ଟା ଫୁଲକୁ ) ବେଣୀରେ ଗ୍ରନ୍ଥି ଗୁଣେ ( ଗଣ୍ଠି ସ୍ୱରୂପରେ ) ରଖିଲେ । ସେ ଏପରି ଦଶିଲା ବେଣୀ ନଳୀ ( ବନ୍ଧୁକ ନଳୀ ) ପରି ଫୁଟିକରି, ତହିଁରେ ହାଟକେ ( ସୁବର୍ଣ୍ଣରେ ) ଗୁଣା ( ବନ୍ଧୁକର ଗୁଣା ) କରି କି ଛଟିକରେ ମୁଠା-ବାନ୍ଧିଲେ । ହୀରା ପିହାଣିଆ ରଜତ ( ରୂପା ) ନକସ ହେଲା । ସୁନ୍ଦରୀ ଏ ନଳୀଦ୍ୱାରା କାହାକୁ ଜିଣି ଯଶନେବ କେ ଜାଣି । ମନୁଜ ( ମନୁଷ୍ୟ) ଦନୁଜ ( ରାକ୍ଷସ ) ଅଦଗି ତନୁଜରେ ( ଦେବତା ମଧ୍ୟରେ ) ଏହା ବଶ ନ ହୋଇ କିଏବା ଅଛି ।

୬—ଅହି ( ସର୍ପ ) ଏ ବେଣୀ ଛବିକି ବହୁଛି, କୌଣସି କବି ଏପରି ଲକ୍ଷ୍ୟ ଦଅନ୍ତେ ବାଳା ମୁଖକୁ ହେଠକରି ( ନୁଆଁଇଁ ) ହେଜଇ ବେଣୀ-ଶୋଭାକୁ ଭୁଛି ହେଲାରୁ କାଳବ୍ୟାଳ ( କାଳସର୍ପ ) ଲାଜରେ କାଳ କାଳ ( କାଳକ-ଯାକ ) ବଳ ( ଗର୍ତ୍ତ ) ରେ ଲୁଚିଲା, ଯେ ନିସତ ( ଭୀତ ) ତାକୁ ମାରି କେଉଁ ଯଶ ହେବ ? ଏହା ସୁମର ବେଣୀରୂପ ନଳୀରେ ଗୁଳ ଯୋଗ କଲା ନାହିଁ, ମନୋରମ ଚରମ ଦେଶରେ ( ପୃଷ୍ଠଭାଗରେ ) ତାହାକୁ ଡେରି ଥୋଇଛି, ଯାହାକୁ ଦେଖି ଦାମ୍ଭିକମାନେ ଝାମ ଯିବେ ( ମୂର୍ଚ୍ଛିତ ହେବେ )

ପୁଣି ମୁଖ ଚାହିଁଲା ଗୁଣି ସୁଖ ପାଇଲା ପାଞ୍ଚିଲା ଚନ୍ଦ୍ର ରଥ ଏହି ।
ତାଙ୍କ ଚନ୍ଦବେକ ବଜିର ଚିବ ଯେନ କପୋଳ-ବସ୍ନେ ବିମ୍ବ ଚାହିଁ ସେ ।
ଚିପସରୀ । ହୀରା ଠେକରି ପରି ରାଜ । ଝଲକା ସୁମଣିଶି ହେଜ ।
ଜଡ଼ାଂସ ଝିଲିମିଲିମାଳୀ ଏମନ୍ତ ଝଲି ଯେମନ୍ତେ କୋଣାଦ୍ୱାର ସାଜ ସେ ॥ ୭
ମୋତି-ସୀମନ୍ତ ବଇଜୟନ୍ତୀ ବିରାଜନ୍ତି ସିନ୍ଦୂର ଚନ୍ଦନ କସ୍ତୁରୀ ।
ଏ ବନକେ ଶବଳିତ ଶବଳେ କି ବଶକ ସ୍ୱଭାବେ ଦଶେ ଶନ ପରି ସେ ।
ମଲ୍ଲୀକଢ଼ୀ । ଶିଖର କଲଶ ସୁଢଳେ । ନାସା-ମୋତି ରୋହିଣୀ କୋଳେ ।
ନୀଳ-ଚୈଳ ତମାଳବନ ଗହ୍ୱଲସ୍ଥଳ କୁଚ-ପୂର୍ବାଦ୍ରି ଚୂଳେ ମିଳେ ସେ ॥ ୮
ନୋହିଲା ବାର ବାରିଜାକ୍ଷୀ ଦାନବାରି-ମୋହିନୀ ଅଙ୍ଗ ଅଙ୍ଗଭୂଷା ।
ସେ କଟିଳା ପ୍ରବେଶ ସଜ ହୋଇ ଅବେଶ ପ୍ରକାଶ କଲା ଏହି ଭାଷା ସେ ।
ଅନୁପମା । କଲ୍ୟାଣୀ ହୋଇ ତୋଷମତି । ଯାବା କରି ତା ରଚିଛନ୍ତି ।
ମାଧବରେ ସଲଳେ ମାଧବର ସଲିଳେ ଚନ୍ଦନୋତ୍ସବ ଯେଉଁ ମତିରେ ॥ ୯

---

୭—ପୁଣି ସେ କଟିଳା ସୁନ୍ଦରୀ ମୁଖକୁ ଚାହିଁଲା, ଗୁଣି ( ବିଚାରି ) ସୁଖ ପାଇଲା ପାଞ୍ଚିଲା ଏ ଚନ୍ଦ୍ରରଥ, କିନ୍ତୁ ତାଙ୍କ ବେକ ଚକ ( ଚକ ) ଏବଂ କପୋଳ ବସ୍ନେ (ଗଣ୍ଡ ମଣ୍ଡଳରେ) ତହିଁର ବିମ୍ବ (ପ୍ରତିବିମ୍ବ) ଦୁଇକୁ ଚାହିଁ ବିଚାରି ରଥର ଚିବଚକ ବୋଲି ମନେକଲା, ହୀରା ଚିପସରୀ ରଥର ହୀରା ଠେକରି ପରି ରାଜନ୍ତି, ଝଲକାକୁ ରଥର ସୁମଣି କରି ହେଜିଲା ଜଡ଼ାଂସ ( ଝିଲିମିଲି ମାଳ ପ୍ରାନ୍ତରେ ଥିବା ଷିରେ ଭୂଷଣ ) ଓ ଝିଲିମିଲି ମାଳ ଏପରି ଝଲୁଛି ଯେ ଯେପରି ( କୋଣଦ୍ୱାର ) ସାଜୁଛି ।

୮—ମୋତି ନିର୍ମିତ ହୀମନ୍ତ ବୈଜୟନ୍ତୀ ( ପତାକା ) ବିରାଜଇ, ସିନ୍ଦୂର ଚନ୍ଦନ, କସ୍ତୁରୀ, ବନକରେ ( ବର୍ଣ୍ଣ ମାନଙ୍କରେ ) ଶବଳିତ ହୋଇଛି, ବଶଜ ସ୍ୱଭାବେ ( ଅଷ୍ଟାଙ୍ଗ ରୂପେ ) ଶବଳେ ( ଛବଦ୍ୱାରା ) ରଥ ଶନ ହେଲା ପରି ଦଶୁଛି ( ସୁଢଳେ ) ( ସୁନ୍ଦର ରୂପେ ) ମଲ୍ଲୀକଢ଼ୀ ରଥର ଶିଖର କଲଶ, ନାସା ମୋତି ରୋହିଣୀ ନକ୍ଷତ୍ର, ତାକୁ କୋଳରେ ଘେନି ଚନ୍ଦ୍ର ରଥରେ ବସିଛି, ନୀଳଚୈଳ ( ନୀଳ କାଞ୍ଚୁଲି ) ତମାଳବନ, ଗହ୍ୱଲ ସ୍ଥଳ, କୁଚ ପୂର୍ବାଦ୍ରି ( ଉଦୟ ପର୍ବତ ) ତାହାର ଚୂଳରେ ଚନ୍ଦ୍ରରଥ ଆସି ମିଳଇ କି ( ସ୍ତନ ସ୍ଥିତ ମୁଖ ଶୋଭା ) ।

୯—ସେ ବାରିଜାକ୍ଷୀ (ପଦ୍ମଲୋଚନା) ଦାନବାରି ମୋହିନୀ (ଦେବ ମୋହିନୀ)ର ଅଙ୍ଗଭୂଷା ମାନ ବାରି ହେଲା ନାହିଁ, ସେ କଟିଳା ପାଖରେ ପ୍ରବେଶ କରି "ସଜହୋଇ ଅବେଶ (ବସିଛ) ?" ଏହି ଭାଷା ପ୍ରକାଶ କରି କହିଲା—ରେ ଅନୁପମା । କଲ୍ୟାଣୀ ( ମଙ୍ଗଳ୍ୟା ) ତୋଠାରେ ତୋଷ ମତି ହୋଇ ତା ( ସୁନ୍ଦର ସଙ୍ଗେ ତୋତେ ସାକ୍ଷାତ କରିବାକୁ ଯାବାକରି ) ରଚନା

ଭାବରେ ସଭତରେ ନାବରେ ସରିତରେ ଆନ ସେ ଉତ୍ସବକୁ ନାହିଁ ।
ଜଗଜ୍ଜନ-ମୋହନ ରୂପେ ମିଳି ବହନ ବିହାର କରିବେ ଯେ ତହିଁ ସେ ।
ଅନୁପମା । ସଖା ସହିତ ହୋଇଥିବେ । ନୟନ-ଦୁଃଖକୁ ମଣ୍ଟିବେ ।
ତୋ ଯିବାର ଇଚ୍ଛନ୍ତି ମୋତେ ପେଷିଅଛନ୍ତି ମୋସଙ୍ଗେ ବିଜେ କର ଏବେ ॥ ୧୦

ଏମନ୍ତ କହୁଁ କହୁଁ ସମସ୍ତେ ଶୁହୁଁ ଶୁହୁଁ କେମନ୍ତ କପଟ ସୁରଙ୍ଗେ ।
ମଠ ବନ ଜଗତୀ ମଧ୍ୟ ପୀଠ ଜଗତୀ-ଶୋଭିନୀ ତିନି ସଖୀ ସଙ୍ଗେ ସେ ।
ପ୍ରବେଶିତ । ଅଧିକା ନିଦ୍ରା ବଶ ପର । ମଣ୍ଡିଅଛନ୍ତି ସେହି ପୁରୀ ।
ଉପାଧ୍ୟାୟୀ ତହିଁରେ ଉପାୟ ପ୍ରଭାବରେ ବିହରେ ଦେଖିଲେ ସେ ନାରୀ ॥ ୧୧

---

କରିଛନ୍ତି । ଯେଉଁପରି ମାଧବରେ (ବୈଶାଖ ମାସରେ) ସଲିଳେ (ଜଳରେ) ମାଧବଙ୍କର ( ମଦନ ମୋହନଙ୍କର ) ସଲୀଳେ ( ଲୀଳାସହ ) ଚନ୍ଦନୋତ୍ସବ ହୁଏ ।

୧୦—ରେ ସୁନ୍ଦରୀ ! ଭାବ, ସରିତରେ ( ନଦୀରେ ) ନାବରେ ( ନୌକାରେ ) ସେ ଉତ୍ସବ ( ଚନ୍ଦନୋତ୍ସବ ) ହୁଏ, ସେ ଉତ୍ସବକୁ ଆନ ( ଅନ୍ୟ ଉତ୍ସବ ) ସରି ( ସମାନ ) ତ ନାହିଁ, ସେହିପରି ଭାବରେ ( ପ୍ରେମରେ ) ସରିତ ନା—ବରେ ( ସେ ବରକୁ ନାହିଁ, ) ସେ ମିଳନୋତ୍ସବ ପରି ଆଉ ଉତ୍ସବ ନାହିଁ । ରେ ଅନୁପମା ! (ଚନ୍ଦନୋତ୍ସବରେ) ବିଷ୍ଣୁ ଜଗଜ୍ଜନ ମୋହନ ରୂପରେ ବହନ ମିଳି ନୌକା ବିହାର କରନ୍ତି, ସଖା ( ଭ୍ରାତା ) ସହିତ ହୋଇଥାନ୍ତି, ଏବଂ ଲୋକମାନଙ୍କର ନୟନ ଦୁଃଖକୁ ମଣ୍ଟନ୍ତି, ମିଳନୋତ୍ସବରେ ରାଜପୁତ୍ର ଜଗଜ୍ଜନ ମୋହନ ରୂପେ ବହନ ମିଳି ବିହାର କରିବେ, ସଖାମାନଙ୍କ ସହିତ ହୋଇଥିବେ ସମସ୍ତଙ୍କର, ବିଶେଷତଃ ତୋହର ନୟନ ଦୁଃଖକୁ ମଣ୍ଟିବେ, ଅତଏବ ମାଙ୍କଲ୍ୟା ତୋ ଯିବା ଇଚ୍ଛା କରନ୍ତି ମୋତେ ପେଷିଛନ୍ତି, ମୋ ସଙ୍ଗରେ ଏବେ ବିଜେ କର ।

୧୧—ଏମନ୍ତ କହୁ କହୁ ସମସ୍ତେ ଶୁହୁଁ ଶୁହୁଁ ସୁରଙ୍ଗେ କିପରି କପଟ ହେଲ ଯେ ମାଙ୍କଲ୍ୟାଙ୍କ ମଠବନ ଜଗତୀ ( ଅଟ୍ଟାଳିକା )ର ମଧ୍ୟପୀଠ [ଆସନ] ରେ ଜଗତୀ ଶୋଭିନୀ ( ଜଗତ୍‌ସୁନ୍ଦରୀ ) ରାଜକନ୍ୟା ତିନିସଖୀଙ୍କ ସହ ପ୍ରବେଶିତା ହେଲ । ସେ ନାରୀମାନେ ଅଧିକ ନିଦ୍ରା ବଶ ପରି ଅର୍ଥାତ୍ ସ୍ୱପ୍ନ ଦେଖିଲା ପରି ଦେଖିଲେ ଉପାଧ୍ୟାୟୀ ଉପାୟପ୍ରଭାବରେ ସେହି ପୁରୀ ମଣ୍ଡି ଅଛନ୍ତି ଏବଂ ତହିଁରେ ବିହାର କରୁ ଅଛନ୍ତି ।

କିଂଭୂତ ଅଦଭୁତ ପୁଂସ କଲା ସମ୍ଭୃତ ମାୟା ଭୂତ-ଭବିଷ୍ୟ-ଜ୍ଞାତା ।
ନୃପ-ସୁତ ସହିତ ମନ୍ତ୍ରୀ-ଜ ପୁରୋହିତ-ସୁତ ବିମାନେ କରି ସ୍ଥିତା ସେ ।
ତପଲରେ । ସେ ବନେ କଲା ପରବେଶ । ଜନ ଯଥା ମାଦକ ବଶ ।
ସ୍ୱପୁରେ ଥିଲା ପୋଠା ଗୋଠାକ ଭେଟାଇଲା ବୋଇଲା ସେ ଏମନ୍ତ ଭାଷ ॥ ୧୨
ହୈମବତୀ ରେବତୀ ବିଧୂଙ୍କ ପ୍ରିୟବତୀ ଶଚୀ ସଞ୍ଚିତ ଏକମୂର୍ତ୍ତି ।
ଏ କାନନେ ଯୁବତୀ ଅଛି ବୟସ ବତିଶାର୍ଦ୍ଧରୁ ଉତ୍ତୀର୍ଣ୍ଣପରି ମତ ମୋ ।
ନୃପ-ସୁତ । ଶିବପ୍ରମୋଦ-ଜାତ-ସ୍ଥାନୀ । ସେ ରାମ-ନୟନ-ଶୋଭିନୀ ।
ହରି ଆନନ୍ଦ-ଦାନୀ ମଧ୍ୟେ ଗୁଣ-ନିଧାନୀ ବିବେକ କର ଏହା ଘେନି ହେ ॥ ୧୩
ଏହି ସମୟ ମୟ-ମାୟା ଉପାୟ ପ୍ରାୟ ମିଳିତ ହୋଇଲା ବିମାନ ।
ଅଟବୀ ଅମ୍ବୁନିଧି-ପ୍ରତିମା ରସ-ନିଧି ସନ୍ନିଧି ସେ ଭାବିଲେ ମନ ସେ ।

---

୧୨—ଯେଣେ ଭୂତ ଭବିଷ୍ୟତ ଜ୍ଞାତା ଅଦ୍ଭୁତ ପୁରୁଷଙ୍କ ଭୂତ ମାୟା ସମ୍ଭୃତ ( ଜାତ ) କଲା ସେ, ନୃପସୁତକୁ ମନ୍ତ୍ରୀଜ ( ମନ୍ତ୍ରୀପୁତ୍ର ) ଓ ପୁରୋହିତ ପୁତ୍ର ସହ ବିମାନରେ ସ୍ଥିତି କରାଇ ରଖଲେ ସେହି ବନରେ ପ୍ରବେଶ କରା-ଇଲା । ଜନ ମାଦକଦ୍ରବ୍ୟରେ ବଶ ହେଲାପରି ସେମାନେ ଭ୍ରମ ହେଲେ । ସ୍ୱପୁରେ ଥିଲା ଯେଉଁ ପୋଠା ଗୋଠାକ ତାକୁ ଆଣି ମଧ୍ୟ ଭେଟାଇଲା ସେ ପୋଠା ଏମନ୍ତ ଭାଷା କହିଲା ।

୧୩—ହୈମବତୀ ( ପାର୍ବତୀ ) ରେବତୀ, ବିଧୂଙ୍କପ୍ରିୟବତୀ ( ରୋହିଣୀ ) ଏବଂ ଶଚୀ ଏମାନଙ୍କ ଶୋଭା ସଞ୍ଚିତ ହୋଇ ଏକମୂର୍ତ୍ତି ହେଲାପରି ଏ କାନନରେ ଗୋଟିଏ ଯୁବତୀ ଅଛି; ତାହାର ବୟସ ବତିଶାର୍ଦ୍ଧରୁ ( ଷୋହଳରୁ ) ଉଣା ହେଲାପରି ମତରେ ଅନୁମାନ ହେଉଛି । ହେ ରାଜପୁତ୍ର । ହୈମବତୀ ଶିବଙ୍କର ପ୍ରମୋଦଜାତସ୍ଥାନୀ, ଏ ସୁନ୍ଦରୀ ଶିବ ( ମଙ୍ଗଳ ) ଓ ପ୍ରମୋଦର ଜାତସ୍ଥାନୀ । ରେବତୀ ରାମ ( ବଳରାମ ) ଙ୍କର ନୟନ ଶୋଭିନୀ, ଏ ସୁନ୍ଦରୀ ରାମନୟନଶୋଭିନୀ ( ମୃଗନେତ୍ରୀ ) ରୋହିଣୀ ଓ ଶଚୀ ହରି ( ଚନ୍ଦ୍ର ଓ ଇନ୍ଦ୍ରଙ୍କର ) ଆନନ୍ଦଦାୟିନୀ, ତୁମ୍ଭେ ହରି (ସିଂହ ପୁରୁଷସିଂହ) ଏ ସୁନ୍ଦରୀ ତୁମ୍ଭର ଆନନ୍ଦ ଦାନୀ ହେବ, ଅତଏବ ଏହି ବିବେକ କର ( ବିଚାର ) ମଧ୍ୟେ ( ମଧ୍ୟପୁରପୃଥିବୀରେ ) ଗୁଣନିଧାନୀ ଏ ସୁନ୍ଦରୀ ଘେନି ତୁମ୍ଭେ ଶିବ ( ମଙ୍ଗଳ ) ଯୁକ୍ତ ହେବ, ରାମ ( ସୁନ୍ଦରୀ ) ହରି ( ଚନ୍ଦ୍ର ) ପରି ଦୀପ୍ତିମନ୍ତ ହେବ, ଓ ହରି ( ଇନ୍ଦ୍ର ) ପରି ସ୍ୱର୍ଗସମ୍ପଦ ଭୋଗ କରିବ ।

୧୪—ଏହି ସମୟରେ ମୟରାକ୍ଷସର ମାୟାଉପାୟପରି ରାଜପୁତ୍ରର ବିମାନ ମିଳିତ ହେଲା, ରାଜପୁତ୍ର ରସନିଧି ସୁନ୍ଦରୀର ସନ୍ନିଧି ହେଉଁ ଦେଖି, ଭାବିଲେ ଏ ଅଟବୀ

ଶବପୁଂସେ । ଇନ୍ଦ୍ରଜାଲିକ ରୁଦ୍ଧି କଲେ । ଅର୍ଜନେ ଅଣି ଯାତ୍ରା ଛଳେ ।
ଚମତ୍କାର ପ୍ରକାର ଦେଖାଇ କି ଆକାର କାରଣି କାରକ ଏ ତୋଳେ ସେ ॥ ୧୪
ଏ ନୋହୁଛି ନୋହିବ ଏ ଉଦ୍ଭବ ବହିବ ସଜୀବ ରାଜୀବ ଲୋଚନ ।
ଏହି ମୁନି ମନ୍ତ୍ରର କରଅଛି ଅନ୍ତର ଗତରୁ ମାତର ଭାବନ ସେ ।
ଅନୁପମା । ହୃଦରେ ଆଦର ଉଚ୍ଛନ୍ନ । କିଏ ସେ ଭୂପତି-ନନ୍ଦନ ।
ରାମା-ରତନ ରମ୍ୟ ଯତନରେ ପତନ ସେ କାଳେ କୁମାର ନୟନ ସେ ॥ ୧୫
ଭାଳେ ଧନଦା-ଚଳେ ଚଳେ କିଛି ଚଞ୍ଚଳେ ସ୍ଥାନ କି ଶମ୍ପା ସମ୍ପାଦୁଛି ।
ଝଟକ ଉପୁଜାଇ ଝଟିତି ମିଶିଯାଇ ଆଖି ବୁଜି ହୋଇ ଯାଉଛି ସେ ।
ଅନୁପମା । ଶରପ୍ରଭା ପୁଣି ସହଜେ । ଅସିଦ୍ଧ ପୂର୍ବରୁ ସେ ଭଜେ ।
ଗଣି-ଈଶ୍ୱର ସ୍ୱରଭଙ୍ଗ ହୋଇ ପାସୋର ଉପମାହେବ ଏ ଆଶ୍ଚର୍ଯ୍ୟେ ସେ ॥ ୧୬

---

(ଅରଣ୍ୟ)ର ଅଷ୍ଟନାଥ ପ୍ରତିମା ଶବପୁଂସଠାରେ ଇନ୍ଦ୍ରଜାଲିକ (ବାଜିକର) ରୁଦ୍ଧିକଲେ-ବାଜିକର ଉପାର୍ଜନ ପାଇଁ ଚମତ୍କାର କଥାମାନ ଦେଖାଇଲା ପରି ଏ ଯାତ୍ରା ଛଳରେ ଆମ୍ଭଙ୍କୁ ଆଣି କି ଚମତ୍କାର ପ୍ରକାର ଆକାର (ରୂପ) କୁ କାରଣି କାରକ ( ହେତୁକାରକ ) ରୂପେ ଦେଖାଇଲା ।

୧୫—ରାଜୀବଲୋଚନ ବିଷ୍ଣୁଙ୍କର କୌଣସି ଅବତାରରେ ଏପରି ଉଦ୍ଭବ ହୋଇ ନାହିଁ ଆଉ ସଜୀବହେଲେ ମଧ୍ୟ ( ଅବତାର ହେଲେହେଁ ) ହେବନାହିଁ, ଅତଏବ ଅନ୍ତର୍ଗତରେ ଏହିମାନ ଭାବନା ହେଉଛି—ଏହି ମୁନି ମନ୍ତ୍ର-କରିଛି । ଏହି ସମୟରେ ପୁରୁଷକୁ ଦେଖି ଅନୁପମା ରାଜଜେମା ହୃଦୟରେ ଆଦର ଉଚ୍ଛନ୍ନ ( ଚଞ୍ଚଳଭାବ ) ଧଇଲା, ଭାବିଲା ସେ ଭୂପତିନନ୍ଦନ ଏହି କି ? ସେ କାଳେ ରାମାରତ୍ନର ରମ୍ୟରେ ( ଶୋଭାରେ ) କୁମାର ନୟନ ଯତ୍ନରେ ପଡ଼ିଲା ।

୧୬—କୁମାର ଭାଳିଲା, ଧନଦାଚଳେ ( କୈଳାସପର୍ବତରେ ) ଶମ୍ପା ( ବିଜୁଳି ) ସ୍ଥାନ ସମ୍ପାଦୁଛି, ଏବଂ କିଛି କିଛି ( ଅଳ୍ପଅଳ୍ପ ) ଚଞ୍ଚଳେ ଚଳୁଛି କି ? ଅତଏବ ଝଟକ ଉପୁଜାଉଛି, ସେ ତେଜ ଆଖିରେ ମିଶି ଯିବାରୁ ଆଖି ବୁଜି ହୋଇ ଯାଉଛି । ଏ ଅନୁପମା ସୁନ୍ଦରୀ ଶରପ୍ରଭା, କିନ୍ତୁ ବିଜୁଳି ଅଚିରପ୍ରଭା, ଅତଏବ ସହଜେ ସେ ପୂର୍ବରୁ ଉପମାରେ ଅସିଦ୍ଧି ଭଜୁଛି । କବିବର ଗଣି ଈଶ୍ୱର ( ଗଣେଶଙ୍କର ) ଏ ଆଶ୍ଚର୍ଯ୍ୟରୂପ ବର୍ଣ୍ଣନରେ ସ୍ୱରଭଙ୍ଗ ହେବ, ଏବଂ ଏହାକୁ ଲକ୍ଷ୍ୟ ଦେବା ଉପମାମାନ ପାସୋର ଯିବ ।

ସେ ନଗେ ଜାତ ଜାତରୂପ୍ୟ ସର ଉଚିତ ମୋ ଚିତ୍ତ-ହଂସ ବଶ ହୋଇ ।
ସ୍ୱର୍ଣ୍ଣ-ସାରସ ରସ ପୂର୍ଣ୍ଣ ସୁବାସ-ବାସ ମତ୍ତ ରୋଲମ୍ବ ଚୁମ୍ବ ଦେଇ ସେ ।
ଚକ୍ରଯୁଗ । ବୁଡ଼ି ଉଠେ ଶୈବାଳ ଯେସନ । ପୁଣି ତରଙ୍ଗ ରଙ୍ଗସ୍ଥାନୀ ।
ମୁଖ ଚିବୁକ-ଶିଖା ସ୍ତନ ନୀଳ-ଚୋଳିଲତା ଅଙ୍ଗଭଙ୍ଗ ଏ ଅନୁମାନି ସେ ॥ ୧୭
ଯାମିନୀଶ କାମିନୀ ଅବନୀରେ ଏ ଯେସନ ପାର୍ବତୀ ବନୀ ଗୁଣ ଧରେ ?
ମୁଁ ହେବି ପରି ନାରୀ ନାରିକେଳ ଗୁଡ଼ୁରୀ ଭୁରତେ କୁଚ ଜନ୍ମି ଉରେ ସେ ।
ହେଲେ ଶୁଭ । କ୍ଷୋଭ ନାହିଁ ଏ ସେବା ଦେବ । ସୁ-ପତ୍ର ଲେଖା ଲେଖାଇବ ।
ପ୍ରଶଂସି ପୁନଃପୁନଃ ଅନୁଗ୍ରହାଲିଙ୍ଗନ ଦେଇଁ ଗାତ୍ର ପବିତ୍ର ହେବ ସେ ॥ ୧୮
ମନେ କଲି ଏ ଦେବସଖୀ ମୋତେ ତ ଦେବ ଗତି ଜଗତୀ ବ୍ୟାଜ ମେରୁ
ଖେଳାଇ ମନୋରମା ତୋଳା ନୋହି ଉପମା ନଖୁଇ ଚିତ୍ର ରେଖା ଭ୍ରୁରୁ ସେ ।

---

୧୭—ସେ ନଗେ ( କୈଳାସ ପର୍ବତରେ ) ଏ ଜାତରୂପ୍ୟସର ( ସୁବର୍ଣ୍ଣପୁଷ୍କରିଣୀ ) ଜାତ ହୋଇଛି, ମୋ ଚିତ୍ତ ଉଚିତରେ ହଂସପରି ବଶହୁଅଇ, ପୁଷ୍କରିଣୀର ରସ, ( ଜଳ ) ସାରସ ( ପଦ୍ମ )ରେ ପୂର୍ଣ୍ଣ, ଏ ସୁନ୍ଦରୀ ରସ ( ଲାବଣ୍ୟ ବା ଶୃଙ୍ଗାର ରସ ) ରେ ପୂର୍ଣ୍ଣ, ମୁଖ ସ୍ୱର୍ଣ୍ଣସାରସପରି ( ସୁବର୍ଣ୍ଣ ପଦ୍ମପରି ) ସେ ମୁଖ ସୁବାସର ବାସସ୍ଥାନ, ମତ୍ତ ରୋଲମ୍ବ ( ଭ୍ରମର ) ଚୁମ୍ବ ଦେଲାପରି ଚିବୁକରେ ଚିତ୍ରିତ ଭ୍ରମର ଶୋଭାପାଉଛି । ଚକ୍ରବାକଯୁଗପରି ସ୍ତନଦ୍ୱୟ, ସେ ବୁଡ଼ି ଶୈବାଳ ( ଜଳନୀଳ ) ଯେସନ ଉଠିଲା ପରି ନୀଳ କାଞ୍ଚୁଲି ପୁଣି ପୁଷ୍କରିଣୀ ତରଙ୍ଗର ରଙ୍ଗ ( କ୍ରୀଡ଼ା ) ସ୍ଥାନ ହେଲାପରି ଏ ଅଙ୍ଗଭଙ୍ଗୀର ସ୍ଥାନୀ । ଏ ଉପମା ମାନ ମୁଖ, ଚିବୁକ, ଶିଖା, ସ୍ତନ, ଚୋଳିର ନୀଳତା ଏବଂ ଅଙ୍ଗଭଙ୍ଗୀରେ ଅନୁମାନ ହେଉଛି ।

୧୮—ଅବନୀରେ ଏ ବନ ପାର୍ବତୀ ବନୀ ( ସ୍କନ୍ଦବନ ) ଗୁଣକୁ ଧରିଅଛି, ଏ ଯେସନ ଯାମିନୀଶ (ଚନ୍ଦ୍ର) ଏଠାକୁ ଆସି କାମିନୀ ହୋଇ ଅଛନ୍ତି କି ? (ସ୍କନ୍ଦବନକୁ ପୁରୁଷ ଗଲେ ସ୍ତ୍ରୀ ହୋଇ ଯାଏ) । ତେବେ ମୁଁ ନାରୀ ହୋଇ ଯିବିପରି ? ମୋହର ଉରେ ( ବକ୍ଷଃସ୍ଥଳରେ ) ନାରିକେଳ ଗୁଡ଼ୁରୀରେ ଭୁରତେ କୁଚ ଜନ୍ମିବ ଏମନ୍ତ ହେଲେ ଶୁଭ ହେବ, ତହିଁକି ମୋର କ୍ଷୋଭ ( ଦୁଃଖ ) ନାହିଁ କାରଣ ଏ ମୋତେ ସେବା କରିବାକୁ ଦେବ, ମୋ ହାତରେ ସୁପତ୍ର ଲେଖା ( ଉତ୍ତମ ସ୍ତନ ଚିତ୍ରାବଳୀ ) ଲେଖାଇବ ଚିତ୍ର ଦେଖି ବାରମ୍ବାର ପ୍ରଶଂସା କରି ଆଲିଙ୍ଗନ ଦେଇଁ ମୋ ଗାତ୍ର (ଦେହ) ପବିତ୍ର ହେବ ।

୧୯—ମନେ କଲି-ଏ ସୁନ୍ଦରୀ ମୋତେ ଗତି ( ମୋକ୍ଷ ) ଦେବ, କାରଣ ଏ ସ୍ୱର୍ଗର ଦେବସଖୀ, ଜଗତୀ ( ଅଟ୍ଟାଳିକା ) ବ୍ୟାଜରେ ଏ ମେରୁ (ସ୍ୱର୍ଗ), ସ୍ୱର୍ଗରେ ମନୋରମାନାମ୍ନୀ ଅପ୍‌ସରୀ ଅଛି ତାହାର ଉପମା ନାହିଁ

ଗୁପ୍ତ ବାସ । ପିଧାନେ ରମ୍ଭାଙ୍କର ଉରୁ । ପାରିଜାତଙ୍କ ଗନ୍ଧହରୁ ।
ସ୍ୱର୍ଗ ଅନେକ ନେତ୍ରେ ଦେଖୁଅଛୁ ବଚନେ ମୁଁ ମିଳେ କି ଭାଗ୍ୟବଶରୁ ସେ ॥ ୧୯
ନେତ୍ର ଭୁଜଙ୍କୁ ଦର୍ଶିଲ ଗୃହଶୀଳା ଆସିଲା ନବପ୍ରତିମାରୂପେ ପାଶେ ।
କୁନ୍ତଳ ଇନ୍ଦ୍ରନୀଳ ଅବନ୍ଧ କି ମଞ୍ଜୁଳ ମୁଖ ମହାପଦ୍ମ ବିକାଶେ ସେ ।
ଗଣ୍ଡଚନ୍ଦ୍ର । ମକର ଶୋଭା ଖର ଅତି । ଈକ୍ଷଣ ପଦ୍ମ ଯେ ଚଳନ୍ତି ।
କଣ୍ଠ ଶଙ୍ଖ ସୁଦନ୍ତ ମୁକୁନ୍ଦ ମତ ସତ ପାଦପର କଚ୍ଛପାକୃତି ସେ ॥ ୨୦
ପାଣି ଧର ଅଣିମା କୋଳେ ନଷ୍ଟେ ଅଣିମା ଦୀର୍ଘ ନୋହିଲା ହ୍ରସ୍ୱଭାବ ।
ଲଘିମା ଭଜି ତାପ ଯିବ ସୁଖ କଳାପ ପ୍ରକାଶ ବିକାଶ ସର୍ଜିବ ସେ ।
ପ୍ରାପ୍ତି ହୋଇ । ମହିମା ନିଷ୍ଠଳେ ରହିବ । ଈଷିତାଳାପ ଜନିଥିବ ।
ନାରତ ବଶିତାରେ କାମ ବଶାଯୁତାରେ ଐଶ୍ୱର୍ଯ୍ୟ ପର୍ଯ୍ୟନ୍ତେ ହେବ ଶିବ ସେ ॥ ୨୧

---

ଏ ମନୋରମା ସୁନ୍ଦରୀ ଖେଳାଉଥିବା ଡୋଳାକୁ ଉପମା ନାହିଁ ସ୍ୱର୍ଗରେ ଶଶିଲେଖା ନାମ୍ନୀ ଅପ୍‌ସରୀ ନାଚଇ ଏ ଶଶିରେଖା ( ଶଶିରେ ଲେଖା ) ତୁଲ୍ୟ ଭୂରୁ ( ଭ୍ରୂଲତାକୁ ) ନମୁଁକରୁଛୁ, ସେଠାରେ ରମ୍ଭା ନାମ୍ନୀ ଅପ୍‌ସରୀ ଅଛୁ ଏ ରମ୍ଭା ( କଦଳୀ ବୃକ୍ଷ ଓ କରଭ ) ହସ୍ତୀ ଶାବକର ଶୁଣ୍ଡ ସଦୃଶ ଉରୁକୁ ବାସ ପିଧାନେ ( ବସ୍ତ୍ରାଚ୍ଛାଦନରେ ) ଗୁପ୍ତ କରୁଛୁ, ପାରିଜାତଙ୍କ ପୁଷ୍ପପରି ଏହାର ଦେହ ସୁବାସ, ସ୍ୱର୍ଗ ଅନେକ ନେତ୍ରେ ( ଇନ୍ଦ୍ରଙ୍କୁ ) ସୁଖ ଦିଏ ଏ ବଚନ ରୂପ ଅନେକ ନେତ୍ରେ ( ଅନେକ ଲୋକ ଚକ୍ଷୁରେ ) ସୁଖ ଦେଉଛୁ, ମୁଁ କି ଭାଗ୍ୟବଶରୁ ଏଠାରେ ମିଳିଲି ।

୨୦—ନେତ୍ର ଭୁଜନ୍ତେ ଏପରି ଦର୍ଶିଲି-ଗୃହଶୀଳା ( ସୁଶୀଳା ) ନବବଧୂ ପ୍ରତିମା ରୂପେ ପାଖକୁ ଆସିଲା । କୁନ୍ତଳ ( କେଶ ) ଅବନ୍ଧ (ବନ୍ଧହୋଇ ନ ଥିବା) ଇନ୍ଦ୍ର ନୀଳମଣି ପରି କି ମଞ୍ଜୁଳ ( ମନୋରମ ) ମହା ପଦ୍ମପରି ବିକଶିତ ମୁଖ ମହାପଦ୍ମନିଧି, ଗଣ୍ଡରେ ଥିବା ମକରୀ ଶଶି ମକର ନିଧି ଈକ୍ଷଣ ( ନୟନ ) ଅତିଖର ( ଚଞ୍ଚଳ ) ହେତୁ ଖରନିଧି, ଏବଂ ପଦ୍ମପରି ଚଳୁ-ଥିବାରୁ ପଦ୍ମନିଧି କଣ୍ଠ ଶଙ୍ଖନିଧି ସୁଦନ୍ତ ମୁକୁନ୍ଦନିଧି ଏବଂ କଚ୍ଛପ ଆକୃତି ପାଦ ଉପରି କଚ୍ଛପନିଧି ।

୨୧—ପାଣି ( ହାତ ) ଧର ଅଣିକା ଦ୍ୱାରା ମୋହର ଅଣିମା ( ଲଘୁତା ) ଦୀର୍ଘ ନ ହୋଇ ହ୍ରସ୍ୱଭାବ ଧରିବ, ( ଏଥିରେ ମୋର ଅଣିମା ଐଶ୍ୱର୍ଯ୍ୟ ଲାଭହେଲା) ତାପ ( ସନ୍ତାପ ) ଲଘିମା ( ଲଘୁତା ) କୁ ଭଜିବ, ( ଏଥିରେ ଲଘିମା ଐଶ୍ୱର୍ଯ୍ୟ ) ସୁଖ କଳାପ ( ସୁଖ ସମୂହ ) ପ୍ରକାଶରେ ବିକାଶ ( ଉଲ୍ଲାସ ) ସର୍ଜିବ, ( ଏଥିରେ ପ୍ରକାଶ ଐଶ୍ୱର୍ଯ୍ୟ ) ତାକୁ ପ୍ରାପ୍ତହୋଇ ମୋ ମହିମା ( ଗୌରବ ) ନିଷ୍ଠଳରେ ରହିବ, ( ଏଥିରେ ମହିମା ଓ ପ୍ରାପ୍ତି ଐଶ୍ୱର୍ଯ୍ୟ ) ସେ ସୁନ୍ଦରୀ ସମୟରେ ଈଷିତାଳାପ ( ଅଳ୍ପ ଅଳ୍ପ ଆଳାପ ) ଜନ୍ମାଉ ଥିବ,

ଶଙ୍କେ ସେହି ଆଦର ଦରିଦ୍ର ଦଶା ହର ହରିଲେ ଏହି ଭେଟାଇଲେ ।
ପୁଣ ଗୃହିଁଲ ସେହିମତେ ରହିଲ ମହାମଣ୍ଡନା ମହିଳା ନିଶ୍ଚଳେ ସେ ।
ଘେନେ ସ୍ୱପ୍ନ । ଦେଖିଲି ମେଢ଼େ ଅଛି ଯେହି । ପିତୁଳା ସେ ଅବଳା ନୋହି !
କି ଅଭିରାମ ରାମ ଭର୍ମସୀତା ଏ ଭ୍ରମ ଏଠାରେ ଗଲେ କିମ୍ପା ଥୋଇ ସେ ॥ ୨୨
ପ୍ରତିମାରୂପେ ଦାସନିସ୍ତାରକାରୀ ଦାସହିତେ ଦାଶରଥି ଉତ୍ସବେ ।
ପ୍ରତିବରଷେ ରସେ ରସିରୁଁ ବୋଲି ବଶେ କାହାକୁ ବର ଦେଇଥିବେ ସେ ।
ଯୁବାବର । ପାଞ୍ଚ ରାମମୂର୍ତ୍ତି କାହିଁକି । ଏ କଥା ନୁହଇ ଯେ କିଛି ।
ଭୋଜବିଦ୍ୟା-ବିଦ୍ୟକ-ବୃନ୍ଦଙ୍କ କଉତୁକ କପଟ ଲମ୍ପଟ କରୁଛି ହେ ॥ ୨୩
ଗୃହୁଁ ଦୁହେଁ ଦୁହିଙ୍କି ମନ ନେନ କାହିଁକି ନ ଯାଇ ଉପୁଜାଇ ସ୍ନେହ ।
ଅଲୋକିତ ଲୋକିତ ବର୍ଣ୍ଣ ଭଜ ଚକିତ ସ୍ତମ୍ଭିତ ହୋଇଗଲ ଦେହ ସେ ।

---

( ଏହାଦ୍ୱାରା ଈଶିତା ଐଶ୍ୱର୍ଯ୍ୟ ) ମୁଁ ନିରତ ( ସର୍ବଦା ) ବଶିତାରେ ( ବଶ କରିବା କ୍ଷମତାରେ ) ତାକୁ କାମ ବଶାୟିତା ( କାମ କ୍ରୀଡ଼ାରେ ବଶକରି ) କାମ ବଶାୟିତା ଐଶ୍ୱର୍ଯ୍ୟ ଲଭ କରିବି । ଏହିପରି ମୁଁ ଅଣିମାଦି ( ଅଣିମା ଲଘିମା, ପ୍ରକାଶ୍ୟ ପ୍ରାପ୍ତି, ମହିମା, ଈଶିତା ଓ ବଶିତା କାମ ବଶାୟିତା ) ଅଷ୍ଟ ଐଶ୍ୱର୍ଯ୍ୟରେ ପୂର୍ଣ୍ଣହୋଇ ଶିବଙ୍କ ପରି ହେବି, (ଶିବ ଏ ଅଷ୍ଟ ଐଶ୍ୱର୍ଯ୍ୟରେ ଅଧିକାରୀ ) ।

୨୨—ଶଙ୍କରେ ଏହି କଥାକୁ ଆଦରିଲ-ହରି ମୋ ଦରିଦ୍ରଦଶା ହରିଲେ, ଏହି ନବନିଧି ଓ ଅଷ୍ଟ ଐଶ୍ୱର୍ଯ୍ୟକୁ ଭେଟାଇଲେ, ପୁଣି ମହାମଣ୍ଡନା ମହିଳା ( କୋଟିବ୍ରହ୍ମାଣ୍ଡ ସୁନ୍ଦରୀ (ସେହିପରି ପୁରୁଷକୁ ଗୃହିଁଲ, ଦେଖି ନିଶ୍ଚଳହୋଇ ରହିଲ, ପୁରୁଷ ବିଚାରିଲ—ମୁଁ ସ୍ୱପ୍ନଦେଖିଲି ମେଢ଼ରେ ( ଅଟ୍ଟାଳିକାସ୍ଥିତ ଆସନରେ ) ଯେ ଅଛି ସେ ଅବଳା ନୁହେଁ ଗୋଟିଏ ପିତୁଳା । କି ଅଭିରାମ ( ସୁନ୍ଦର ) ଏ ରାମଚନ୍ଦ୍ରଙ୍କର ଭର୍ମସୀତା ( ସୁବର୍ଣ୍ଣ ସୀତା ) କାହିଁପାଇଁ ଭ୍ରମହୋଇ ଏଠାରେ ଥୋଇଗଲେ ।

୨୩—ଦାସ ( ଧୀବର ) ନିସ୍ତାର କାରୀ ଦାଶରଥି ( ରାମଚନ୍ଦ୍ର ) ଦାସ ହିତେ ( ଭକ୍ତମାନଙ୍କର ମଙ୍ଗଳ ନିମିତ୍ତ ) ପ୍ରତିମାରୂପେ ପ୍ରତିବର୍ଷ ଉତ୍ସବରେ ରସରେ ରସିରୁଁ ଏହାକହି ବଶହୋଇ କେଉଁ ଭକ୍ତକୁ ବର ଦେଇଥିବେ । ପୁଣି ଯୁବାବର ରାଜପୁତ୍ର ପାଞ୍ଚିଲ ତେବେ ରାମ ମୂର୍ତ୍ତି କେଉଁଠାରେ ଅଛି ? ଏ କଥା କିଛିନୁହେଁ, ଭୋଜବିଦ୍ୟା ବିଦ୍ୟକ ବୃନ୍ଦଙ୍କ ( ଭୋଜବାଜିପ୍ରକାଶକ ମାନଙ୍କର ) କପଟ କୌତୁକ ଏ, ଦେଖିବା ଲୋକକୁ ଲମ୍ପଟ ( ସ୍ନେହୀ ) କରୁଛି ।

୨୪—ଦୁହେଁ ଦୁହିଁଙ୍କି, ଗୃହିଁଲେ ସେମାନଙ୍କର ମନ ଓ ନେନ ଆଉ କୁଆଡ଼େ ଟଳିନାହିଁ, କେବଳ ପରସ୍ପରପ୍ରତି ସ୍ନେହଉପୁଜାଇଲ, ପରସ୍ପରର ଅଲୋ-

ଯୁବା ରାମା । ହାସେ ଝଲକ କିଛି ରହି । ହାସ୍ୟେ ପଲକ କିଛି ନାହିଁ ।
ନାସେ ଶ୍ୱାସ ରହିଲା ନାଶେ ମୋର ତାହିଲା ମୂର୍ଚ୍ଛା ମୂର୍ଚ୍ଛିତ ଚଳି କାହିଁ ସେ ।୨୪।
ପଟ୍ଟ କରି ମଣିଲେ ଝଟ୍ଟ କରି ଗୁଣିଲେ ଲେଖା ଏ ଗଲା ଦେଖାଗଲା ।
ଅଜୀବରେ ସଜୀବ କରୁଅଛି ରାଜୀବ-ଶରକୁ ଚିତେ ଚିତ୍ର ହେଲା ସେ ।
ଯୁବାରାମା । ଆଶ୍ଚର୍ଯ୍ୟ ହୋଇଛନ୍ତି ପାଞ୍ଚ । ବର୍ଣ୍ଣ ସମବର୍ଣ୍ଣକ ରୁଚି ।
ପଡ଼ିଗଲା କି କାଳ କି କାଳ ହରିତାଳ ଶଙ୍ଖ ହିଙ୍ଗୁଳ ଥିଲା ସଞ୍ଚି ସେ ॥ ୨୫
ଶୁଣିଥିଲା ସଦୃଶ ପରି ହେଉଛି ଦୃଶ ଇଦୃଶ ନାହିଁ ସଂସାରେତ ।
ମୁହୁର୍ମୁହୁ ଲୋଚନ ଦଶେ ଦଶେ ମୋଚନ କରଇ ସନ୍ତାପ ବହୁତ ସେ ।
ଯୁବାରାମା । ଭାବନ୍ତି ଆଗ ଇନ୍ଦ୍ରଜାଲ । କ୍ଷଣକେ ହୁଏ ଚିତ୍ରମେଳ ।
ସ୍ୱପନ ନ ବସ୍ତୁରେ ସାକ୍ଷାତ ପରସ୍ତୁରେ ଈଶ୍ୱର ହେବେ ଅନୁକୂଳ ସେ ॥ ୨୬

---

—କାନ୍ତ ( ଶୋଭା ) ଲୋକୋତ୍ତର ବସ୍ତୁ (ଦେଖିବା ହେତୁ) ଚକିତକୁ ଭଜିଲେ ସେମାନଙ୍କର ଦେହ ସ୍ତମ୍ଭିତ ହୋଇଗଲା । ସେ ଯୁବା ଓ ରାମା [ ଯୁବତୀ ] ଦୁହିଁଙ୍କର ହାସ୍ୟରେ କିଛି ଝଲକ ରହିଲା, ହାସ୍ୟ । ସେମାନଙ୍କର ପଲକ କିଛିମାତ୍ର ପଡ଼ୁନାହିଁ । କେବଳ ନାସାରେ ନିଶ୍ୱାସମାତ୍ର ରହିଲା ନାଶକରିବାରେ ମାର ତାହିଲା ( କୋପକଲା ) ମୂର୍ଚ୍ଛାରେ ମୂର୍ଚ୍ଛିତ ହେବା ଭାବ କାହିଁ ଗଲା (ଅର୍ଥାତ ମୂର୍ଚ୍ଛିତ ନ ହୋଇ) ସେହିକ୍ଷଣି ଚେତନା ପାଇଲେ ।

୨୫—ଚେତନା ପାଇ ଝଟକରି ମନରେ ଗୁଣିଲେ, ପରସ୍ପର ପରସ୍ପରକୁ ଚିତ୍ରକୂଟ କରି ମଣିଲେ—ଏ କପଟ ଲେଖାଗଲା ଯେ ଦେଖାଗଲା । ଏ ଚିତ୍ରରେ କନ୍ଦର୍ପର ରାଜୀବ ଶରକୁ [ ପଦ୍ମଶରକୁ—ପଦ୍ମଶରର ସମ୍ମୋହନ ଗୁଣକୁ ] ଦେଇ ଅଜୀବ ପ୍ରତିମାରେ ସଜୀବର ଭ୍ରମ କରୁଛି ଏ କଥା ଚିତ୍ର [ ବିଚିତ୍ର] ହେଲା । ଯୁବା ରାମା ଦୁହେଁ ଏହିପରି ଭାବ ଆଶ୍ଚର୍ଯ୍ୟ ହୋଇଅଛନ୍ତି ଏବଂ ସେ ଦୁହିଁଙ୍କର ବର୍ଣ୍ଣକ [ ଦେହରଙ୍ଗ ] ଓ ରୁଚି ( ଶରୀରକାନ୍ତି ) ବର୍ଣ୍ଣସମ ( ସାଧାରଣଲୋକର ଦେହ ବର୍ଣ୍ଣ ସହିତ ସମାନ ) ହୋଇଛି ସେ ସମୟରେ ବୈବର୍ଣ୍ଣ୍ୟ ଦଶା ଦୁହିଁଙ୍କ ଗୌର ବର୍ଣ୍ଣକୁ କାଞ୍ଚନ କଳା କରି ଦେବାରୁ ଅନୁମାନ ହେଲା ଚିତ୍ରକର ଚିତ୍ର କରି ସାରି କାଳ ( କଳା ) ହରିତାଳ, ଶଙ୍ଖ ଓ ହେଙ୍ଗୁଳ ସଞ୍ଚି ରଖିଥିଲା କି ? ତହିଁରୁ କାଳି କପର ଚିତ୍ର ଉପରେ ପଡ଼ିଗଲା କି ?

୨୬—ଶୁଣିଥିଲା ସଦୃଶ ( ଅନୁରୂପ ) ମୂର୍ତ୍ତିପରି ଦୃଶ୍ୟ ହେଉଛି [ ଦେଖାଯାଉଛି ] କିନ୍ତୁ ଈଦୃଶ ମୂର୍ତ୍ତିତ ସଂସାରରେ ନାହିଁ । ମୁହୁର୍ମୁହୁ ଲୋଚନ ସନ୍ତାପକୁ ଦଶେ୨ [ ପ୍ରତିଦିଗକୁ ବା ପ୍ରତି ଦର୍ଶନରେ ] ମୋଚନ କରଇ । ଯୁବା ଓ ରାମା ଆଗ ଭାବନ୍ତି—ଏ ଇନ୍ଦ୍ରଜାଲ ମାୟା, ପୁଣି କ୍ଷଣକେ ଏ ଚିତ୍ରର ମେଳହୁଏ - ଏ ଚିତ୍ର ପ୍ରତିମା, ସାକ୍ଷାତ ପ୍ରତ୍ୟକ୍ଷ ହେବାରେ (ଦେଖାଯିବାରୁ)

ଯେ ସର୍ବଭୂତପତି ତାଙ୍କୁ ଭଜି ବିପତ୍ତି ନିପାତି ନୋହିବ କିପାଁଇ ।
ମେଘ-ଉପଳ ଶୀତକାନ୍ତିରେ ବିରାଜିତ ଜ୍ଞାନ ପ୍ରସରି ଗଲି ଧାଇଁ ସେ ।
ଯୁବା ରାମା । କୁମାର ଭାବେ ଏ କୁମାରୀ । ଜେମା ଜାଣେ ନୃପଜ କରି ।
ଗଲା ସନ୍ଦେହ ଦେହବନ୍ତ ଏ ଜନ୍ମି ସ୍ନେହ ବିଦେହ-ବିକାର ସଞ୍ଚରି ସେ ॥ ୨୭
ମନାସି ଜଗଦୀଶ ଦିଗବାସେ ଅଶେଷ ଭୋଗକୁ ଅତ୍ୟନ୍ତ ପ୍ରମୋଦେ ।
ଯାହା ରଚିତ ରସ କବିବାଣୀରେ ଶେଷ ନୋହେ ସେ ଦେବ ଚିନ୍ତି ହୃଦେ ସେ ।
ସୁମନା ଏ । ପାଅ ଏ ଛନ୍ଦର ବିସ୍ତର । ନୁହଇ ଆନର ପ୍ରକାର ।
କହେ ଉପେନ୍ଦ୍ରଭଞ୍ଜ ଉତ୍ତମକବି ପୁଞ୍ଜ ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର ସେ । ୨୮

---

## ଚତୁର୍ଦ୍ଦଶ ଛାନ୍ଦ

ରାଗ—ଘଣ୍ଟାରବ


ଶ୍ରୀ ପିନସ୍ତନୀ ଶୋଭା । ମଞ୍ଜୁ ବିଦ୍ୟୁତଜିତପ୍ରଭା ।
ବୀର ବିସ୍ତରଇ ମୋହିନୀ ଏ ବେନି ସୁଧାକୁମ୍ଭ ଘେନି ଉଭା । ୧

---

ସ୍ୱପ୍ନ ବୋଲି ବିସ୍ତରନ୍ତି ନାହିଁ । ଅନୁମାନ କରନ୍ତି ଈଶ୍ୱର ଆମ୍ଭର (ଶିବ ଓ ବିଷ୍ଣୁ) ଅନୁକୂଳ ହେବେ ।

୨୭—ଯେ ସର୍ବ ଭୂତ ପତି (ପ୍ରେତପତି=ଶିବ) ଏବଂ ଯେ ସର୍ବ ଭୂତପତି (ସମସ୍ତ ଜୀବ ମାନଙ୍କର ପାଳକ କର୍ତ୍ତା—ବିଷ୍ଣୁ) ତାଙ୍କୁ ଭଜି ବିପତ୍ତିକୁ କାହିଁକି ନିପାତି (ବିନାଶ କରି) ନୋହିବ । ମେଘ ଉପଳ (କୁଆପଥର) ଶିତ (ଶୁକ୍ଳ) କାନ୍ତିରେ ବିରାଜିତ ହୋଇ ତରଳିଲା ପରି ଝାଳ ବହିଲା, ମୂର୍ଚ୍ଛା ନଷ୍ଟହୋଇ ଜ୍ଞାନ ପ୍ରସରିଲା, ତହୁଁ ଯୁବା ଓ ରାମାଧାଇଁଲେ=କୁମାର ଏ କୁମାରୀ ବୋଲି ଭାବିଲା, ଜେମା ନୃପଜ (ରାଜପୁତ୍ର) ବୋଲି ଜାଣିଲା । ଏ ଦେହବନ୍ତ (ମନୁଷ୍ୟ) ଏହା ଉଭୟେ ବୁଝି ପାରିବାରୁ ସନ୍ଦେହ ଗଲା ପରସ୍ପର ପ୍ରତି ସ୍ନେହ ଜନ୍ମି ବିଦେହ (କାମ) ବିକାର ସଞ୍ଚରିଲା ।

୨୮—ଜଗଦୀଶ ଦିଗବାସ (ଦିଗମ୍ବର=ମହାଦେବ) ଙ୍କୁ ଅତ୍ୟନ୍ତ ପ୍ରମୋଦରେ ଅଶେଷଭୋଗକୁ ମନାସିକଲେ । ଯାହାଙ୍କର ରଚିତ ରସମାନ କବିବାଣୀରେ ମଧ୍ୟ ଶେଷ ହେବ ନାହିଁ ସେହି ଦେବ (ରାମଚନ୍ଦ୍ରଙ୍କୁ) ଉପେନ୍ଦ୍ର ଭଞ୍ଜ ହୃଦୟରେ ଚିନ୍ତାକରି କହଇ—ସେ ପ୍ରଭୁଙ୍କ ଦୟାରୁ ଉତ୍ତମ କବିପୁଞ୍ଜ (କବିମାନଙ୍କର) ଦୁର୍ଲ୍ଲଭ ଯେ ମାର୍ଗ ତହିଁରେ ମୋର ସଞ୍ଚାର ହୋଇଅଛି ହେ ସୁମନାଏ (ପଣ୍ଡିତମାନେ) ଏ ଛନ୍ଦର ବିସ୍ତରକୁ ପାଅ ଏହା ଅନ୍ୟପ୍ରକାର ନୁହେ ।

---

ଅଣ୍ଟର୍ଯ୍ୟ ଦଇବ୍ରୀମାୟ୍ବା । ଅଶେଷ ଲବଣ୍ୟ କାୟ୍ବା ।
ବଲ୍ଲଭ୍ରୀ କର ମୁଁ କପଟ ଲଭିବ ଶିବେ କର ନାହିଁ ଦୟ୍ବା ॥ ୨
ଦୁର୍ଲ୍ଲଭ ଏହାକୁ କହୁ । ହରଷ ସ୍ବରୂପ ଏହୁ ।
ଦେଖିଲ ଲେଖିଲ ଲେଚନେ ବଚନେ ଉପମା ଦେବାକୁ ନାହିଁ ॥ ୩
ଗଣ୍ଠି ଶିର ବିବର୍ଜ୍ଜିତ । ତନୁରେ ମାପ ଆୟୃତ ।
ପକ୍ବରସାଲକୁ କୃତାର୍ଥ କରିବା କାନ୍ତିତ କର ଲକ୍ଷିତ ॥ ୪
ପାନକଲ ପୂର ତୁଣ୍ଡେ । ଫଟି ଦିଶୁଅଛୁ ଗଣ୍ଡେ ।
ଜବା କୁସୁମ ପ୍ରତିବିମ୍ବି ଅଛୁ କି ନିର୍ମଳ ମୁକୁରଖଣ୍ଡେ ॥ ୫
ହରିତାଳ କାଳ ଚିତା । ଭୁଜ ପଦେ କି ଶୋଭିତା ।
ସୁବର୍ଣ୍ଣଭୂମିରେ ଅଙ୍କୁର ଅଛୁ କି ମରକତ ମିହ୍ନା ଲତା । ୬

---

୧—ମଞ୍ଜୁ ବିବୃଂକଡ ପ୍ରଭା (ଯାହାର ଦେହ ଶୋଭା ମନୋହର ବକୁଲ ଶୋଭାକୁ ଜିଣିଛୁ) ଓ ପୀନସ୍ତନୀ ( ସ୍ଥୂଳସ୍ତନୀ ) ସୁନ୍ଦରୀର ସ୍ତନଶୋଭା ଦେଖି ବୀର ସୁନ୍ଦର ମନରେ ବିଚାରିଲ, ( ବିଷ୍ଣୁ ମୋହିନୀ ରୂପ ଧରି ଅମୃତ କୁମ୍ଭ ଘେନି ଦେବତାମାନଙ୍କୁ ଅମୃତ ପରଶି ଥିଲେ ) ଏ ମୋହିନୀ ଯୋଡ଼ିଏ ସୁଧାକୁମ୍ଭ ଘେନି ଉଭା ହୋଇଛୁ କି ?

୨—ଦୈବୀମାୟ୍ବା ଅଣ୍ଟର୍ଯ୍ୟ ଏ ଅଶେଷ ଲବଣ୍ୟ କାୟ୍ବା ( ଲବଣ୍ୟ ମୂର୍ତ୍ତି ) କୁ ମୁଁ କପଟ ବଲ୍ଲଭ୍ରୀ (ସ୍ତ୍ରୀ) ରୂପେ ଲଭିବି, ମୋହିନୀ ତ ଶିବଙ୍କୁ ଦୟ୍ବା କରି ନାହିଁ ଏ ମୋତେ ଦୟ୍ବା କରିବ କି ନାହିଁ କେ ଜାଣେ ।

୩—ଜଗତରେ ଏହାକୁ ଏକା ଦୁର୍ଲ୍ଲଭ କହନ୍ତି, ଏହୁ ମଧ୍ୟ ହର୍ଷସ୍ବରୂପ, ଆଖିରେ ଦେଖିଲ ଓ ଲେଖି ରଖିଲ, ଏହାକୁ ବାକ୍ୟରେ ଉପମା ଦେବାକୁ ନାହିଁ ।

୪—ତନୁରେ ( ଦେହରେ ) ଗଣ୍ଠି ଶିର ବା କିଛି ନାହିଁ, ଏବଂ ଦେହର ମାପ ଆୟୃତ ( ଉପଯୁକ୍ତ—ଯେତେ ହେବା ଉଚିତ ) ହୋଇଛୁ । ପକ୍ବ ରସାଲକୁ ( ପାଚିଲା ଆମ୍ବକୁ ) ଦେହ ବର୍ଣ୍ଣ ସହିତ କାନ୍ତିତ ଲକ୍ଷ୍ୟ କରି ତାହାକୁ କୃତାର୍ଥ କରିବା ।

୫—ତୁଣ୍ଡରେ ପାନକଲ ପୂର ଗଣ୍ଡରେ ଦେଖା ଯାଉଅଛୁ ସେ ଶୋଭା ଜବାକୁସୁମ ( ମନ୍ଦାରଫୁଲ ) ନିର୍ମଳ ଦର୍ପଣରେ ପ୍ରତି ବିମ୍ବିତ ହେଲା ପରି ହୋଇଛୁ ।

୬—ହରିତାଳ କାଳର ଚିତା ଭୁଜ ଓ ପଦରେ କେଡ଼େ ଶୋଭା ପାଉଛୁ ? ମରକତ ମିହ୍ନା ଲତା ସୁବର୍ଣ୍ଣ ଭୂମିରେ ଜନ୍ମିଛି କି ?

ଏହା ଶ୍ରୀଅଙ୍ଗକୁ ଛୁଇଁ । ରତନ ଯତନ ହୋଇ ।
ମହା ଅଦଭୁତ ପ୍ରଶଂସା ସଂସାରେ ଭୂଷଣ ଅଛନ୍ତି ପାଇ ॥ ୭
ଚନ୍ଦ୍ରଝୁମ୍ପି ଚନ୍ଦ୍ର ଝଲା । କେଶରାହୁ ଅର୍ଦ୍ଧେ ଗଲା ।
ବେଣୀଅଗ୍ର ସ୍ଥାନ ପିହାଣିଆ ଶୋଭା ସୁଧା ପଡ଼ୁଅଛୁ ଗଲା ॥ ୮
ଉତ୍ତମାଙ୍ଗ ମାଙ୍ଗଭାଙ୍ଗ । ଏଥିକି କି ଦେଲାଭାଗ ।
ଶୋଭା ଅଧିକୁ ତମାଲ ଖଡମାଲ ନୁହନ୍ତି ଉପମାଯୋଗ୍ୟ ॥ ୯
ତାର ଯେ ତାର ସୀମନ୍ତ । ତାରପନ୍ତ ପରପନ୍ଥି ।
ଯେଉଁକି ନୀଳ ନିର୍ମଳ ନଭ କେତେ ପ୍ରଭା ପ୍ରକାଶିଛୁ ଅତ ॥ ୧୦
କେତକୀ ତୃତୀୟ ଦଳ । ରଖିଲ ପ୍ରବେଣୀମୂଳ ।
ଚତୁରୀ ସିଂହାସୀ ନିପୁର ସୁନ୍ଦରୀ ନାହିଁ ବୋଲି ବାଲା ତୁଲ ॥ ୧୧
ସେ ଫଣୀ କି ଶୋଭା ପାଇ । ଶିର ଗ୍ଳଲନ ଲଳଇ ।
ମୋତି ଜାଲି ଛଲେ ସୁଧା ସିଞ୍ଚୁଛି କି ବଚନ ବକୁଳି ଉଇଁ ॥ ୧୨

---

୭—ରତ୍ନମାନେ ଏହାର ଶ୍ରୀଅଙ୍ଗକୁ ଛୁଇଁବାରୁ ଯତନ ( ସୁନ୍ଦର ) ହୋଇ ମହା ଅଦ୍ଭୁତ ପ୍ରଶଂସାକୁ ପାଇ ସଂସାରରେ ଅଳଙ୍କାର ହୋଇ ଅଛନ୍ତି ।

୮—ଚନ୍ଦ୍ରଝୁମ୍ପ ଅଳଙ୍କାର ଚନ୍ଦ୍ରଙ୍କପରି ଝଲକି ପାଉଛି, ତାକୁ କେଶ ରାହୁ ଅଧେ ଗିଳୁଛି, ବେଣୀ ଅଗ୍ରସ୍ଥିତ ସ୍ଥାନକ ନିର୍ମିତ ପିହାଣିଆ ( ରାହୁର ଶିର ଛିଣ୍ଡି ଯିବାରୁ ଗଳଦେଶରୁ ) ଅମୃତ ଗଳି ପଡ଼ିଲା ପରି ଦିଶୁଛି ।

୯—ଉତ୍ତମାଙ୍ଗ ( ମସ୍ତକ )ର ମାଙ୍ଗଭାଙ୍ଗ ( ସୁନ୍ଥା ) ଏଥିପାଇଁ ଦୁଇଭାଗ ହୋଇଛି କି ? ତାହାର ଅଧିକ ଶୋଭାକୁ ଖଡମାଳ ( ମେଲ ) ଅଧିକ ଶୋଭାକୁ ତମାଳ ଉପମା ଯୋଗୀ ନୁହନ୍ତି ।

୧୦—ତାହାର ଯେଉଁ ତାର ସୀମନ୍ତ ( ମୁକ୍ତାସୀମନ୍ତ ) ସେ ତାର ପନ୍ତର ( ନକ୍ଷତ୍ର ସମୂହର ) ପରପନ୍ଥି ( ଶତ୍ରୁ ) ହୋଇଛି ( ନକ୍ଷତ୍ର ପନ୍ତିକି ଜିଣି ଯାଉଛି ) ନଭ ( ଆକାଶ ) ଯେତେ ନିର୍ମଳ ହୁଏ ନକ୍ଷତ୍ରମାନେ ତେତେ ଶୋଭା ପ୍ରକାଶନ୍ତି ସେହିପରି କେଶରେ ନିର୍ମଳତା ଯୋଗୁ ମୁକ୍ତାସୀମନ୍ତ ଅତ୍ୟନ୍ତ ଜ୍ୟୋତି ପ୍ରକାଶିଛି ।

୧୧—ଚତୁରୀ ସିଂହାସୀ ( ବେଶକାରୀ ) ବାଳାତୁଲ୍ୟ ସୁନ୍ଦରୀ ତିନିପୁରେ ନାହିଁ ବୋଲି କେତକୀର ତିନୋଟି ପାଖୁଡ଼ା ପ୍ରକୃଷ୍ଟରେ ( ଉତ୍ତମରୂପେ ) ବେଣୀ ମୂଳରେ ରଖିଛି ।

୧୨—ଶିର ଗ୍ଳଲନରେ ହଲି ସେ ଫଣୀ ( କେତକୀ ଫଣୀ ) କି ଶୋଭାପାଉଛନ୍ତି ? ବଚନ ବକୁଳି ଉଇଁ ମୋତିଜାଲି ଛଳରେ ଅମୃତ ସିଞ୍ଚୁଛି କି ? ।

ଶ୍ରୁତି ବର୍ଣ୍ଣନେ ଅଶେଷ । ମନୋରମ ଧେବନ ପାଶ ।
ମନ ବନ୍ଦ ହୋଇ ତହିଁରେ ରହଇ ଯେଣୁ ସେ ବନ୍ଦଅବାସ ॥ ୧୩
ଫୁଲ୍‌ଝଲକା ଝଲକ । ସୁର କଳ୍ପ ଅପଲକ ।
ମଲ୍ଲୀକଢ଼ୀ ଚୁମ୍ବ ଆଶେ ପାଶେ କିବା ଅବତଂସ ଚଞ୍ଚରୀକ ॥ ୧୪
ବିଚିତ୍ର ତିଲକ ଭାଲେ । ସ୍ତମ୍ଭ ଜନମେ ଗୃହିଁଲେ ।
ଏଣୁ ଝିଲ୍‌ମିଲ୍‌ମାଳୀ ରତ୍ନତୋରଣ ଧାରଣା ସ୍ତମ୍ଭ ଏ ଭାଲେ ॥ ୧୫
ଚଞ୍ଚୁଲ ଭ୍ରୂକୁ ନଭିନୁ । ଏ ଲକ୍ଷ୍ୟ ନ ଛାଡ଼େ ମନୁ ।
କି ପାଶ୍ୱ ଆଞ୍ଚ କଜ୍ଜ୍ୱଳଗୁଣେ ରଚି ଅତନୁ ଅତସିଧନୁ ॥ ୧୬
ଏ ଯେଣୁ ଚଞ୍ଚଳଦୃଷ୍ଟି । ଛଳେ ନୀଳୋତ୍ପଳ ବୃଷ୍ଟି ।
ଅନ୍ତରଙ୍ଗରୁ ଉରକୁ ଅନାଇଲ ଭାବ କି ଗଲଣି ଫୁଟି ॥ ୧୭
ଭାବେ ଏ କୃପାଗୃହାଣି । ମୋ ମନ କୃପଣ ଜାଣି ।
ଅଞ୍ଜନସୂତ୍ରରୁ ଖସାଇ ଦେଉଛୁ ପୁନଃପୁନଃ ନୀଳମଣି ॥ ୧୮

---

୧୩—ଶ୍ରୁତି ( କର୍ଣ୍ଣ ) ବର୍ଣ୍ଣନାରେ ଅତିଶୟ ମନୋରମପାଶଦ୍ୱୟକୁ ଉପମା ଦିଅନ୍ତି, କିନ୍ତୁ ଏ କର୍ଣ୍ଣ ବନ୍ଦଅ ବାସ (ବନ୍ଦଅ ନାମକ ଭୂଷଣର ବାସସ୍ଥାନ ହେତୁ) ବନ୍ଦଅବାସ ( ବନ୍ଦୀଗୃହ ) ତହିଁରେ ମନ ବନ୍ଦୀହୋଇ ରହଇ ।

୧୪—ଫୁଲ୍ ଝଲକାର ଝଲକ ( ଶୋଭା ) ସୁର ( ଦେବତା ) ମାନଙ୍କ ଅପଲକ ( ପଲକଶୂନ୍ୟ ) କଳ୍ପ । ମଲ୍ଲୀକଢ଼ୀ କିମ୍ବା ଅବତଂସ (କର୍ଣ୍ଣଫୁଲ) ଚୁମ୍ବିବା ଆଶାରେ ଚଞ୍ଚରୀକ (ଭ୍ରମର) ପାଶକୁ ଆସଇ ।

୧୫—ଭାଲରେ ଥିବା ବିଚିତ୍ର ତିଲକକୁ ଗୃହିଁଲେ ସ୍ତମ୍ଭ (କାଷ୍ଠଲତା ଓ ସ୍ତମ୍ଭଭ୍ରମ) ମନରେ ଜାତହୁଏ । ଅତଏବ ଝିଲ୍‌ମିଲ୍‌ମାଳୀ ରତ୍ନନିର୍ମିତ ତୋରଣ ତାହାର ଧାରଣ ପାଇଁ ଭାଲରେ ଏ ( ତିଲକ) ସ୍ତମ୍ଭ ( ଖୁଣ୍ଟ ) ।

୧୬—ଚଞ୍ଚୁଲ ( ଚଞ୍ଚଳ ) ଭ୍ରୂକୁ ( ଭ୍ରୂଲତା )ର ନଭିନ ହେତୁ ମନରୁ ଏ ଲକ୍ଷ୍ୟ ଛାଡ଼େ ନାହିଁ । ଅତନୁ ( କାମ ) ମନରେ କି ପାଶ୍ୱଙ୍କର ଏହି ଭ୍ରୂଲତା-ରୂପକ ଅତସି (ଅପରାଜିତା) ପୁଷ୍ପନିର୍ମିତଧନୁକୁ କଜ୍ଜ୍ୱଳରୂପକ ଗୁଣଦେଇ ଆଞ୍ଚ ( ଆକର୍ଷଣ କରିଛୁ ) ।

୧୭—ଏଣୁ ସେହି ଧନୁରେ ଚଞ୍ଚଳ ଦୃଷ୍ଟିପାତ ଛଳରେ ନୀଳୋତ୍ପଳ ଶରକୁ ବୃଷ୍ଟି କରୁଅଛୁ କି ? ନେତ୍ର ଅନ୍ତରଙ୍ଗ ହୋଇଥିବାରୁ ରାଜପୁତ୍ର ଆପଣ ଉରକୁ ଗୃହିଁ ଭାବଇ ମୋ ଉର ଏ ଶରରେ ଫୁଟି ଗଲଣି କି ?

୧୮—ପୁଣି ରାଜପୁତ୍ର ଭାବେ ଏ କୃପାଗୃହାଣି ମୋ'ମନକୁ କୃପଣ ଜାଣି ଅଞ୍ଜନରୂପ ସୂତ୍ରରୁ ନୀଳମଣି ସଦୃଶ ତୋଳାକୁ ପୁନଃ ପୁନଃ ଖସାଇ ଦେଉଛୁ ।

ନେତ୍ରମୟ କଲା ତନୁ । ମୋତେ ଦେଲା ଶତମନ୍ୟୁ ।
ସମ୍ପତ୍ତି ସମର୍ପି କ୍ଷଣକେ ଭିତରେ କେଡ଼େ ଦୟାଳୁ ସୁତନୁ ॥ ୧୯
ବଦନ ଲାବଣ୍ୟଜଳେ । ସଦନ ସର୍ବଦା କାଳେ ।
ନିବଦ୍ଧ ବନକଚବ ତରଣୀକି ଏଣିକି ତେଣିକି ଚଳେ ॥ ୨୦
ନାସାରେ ବିରାଜେ ମୋତି । ଧରି ତୋଳା ଓଷ୍ଠ ଜ୍ୟୋତି ।
କ୍ଷଣଦା ଆରଦ୍ରା ଚନ୍ଦ୍ରେ ରହିଲେ କି ତୁଟାଇ ରୋହଣୀ ପ୍ରୀତି ॥ ୨୧
ପଦ୍ମରାଗ ଖଣ୍ଡେ ଖୋଲ । ରଖିଛୁ ହୀରାଆବଳୀ ।
ଫୁଲ ଫୁଟଫୁଟ ହେଉଛୁ ପ୍ରକଟ କପଟରେ ହାସ ବୋଲି ॥ ୨୨
କସ୍ତୁରୀମକ୍ଷିକା ଅଛୁ । ଏମନ୍ତ ଲକ୍ଷି ହେଉଛୁ ।
ଅଧରେ ମଧୁର ମଧୁ ସଞ୍ଚି ସାରି ଚିବୁକେ କିବା ରହିଛୁ ॥ ୨୩
ମକରୀ ଗଣ୍ଡଦେଶରେ । ନିର୍ମଳ ଆଦରଶରେ ।
ସଂସାରସାର ଶୋଭା ଚିତ୍ରପଟଳ ପ୍ରତିବିମ୍ବକୁ କି ଧରେ ॥ ୨୪
ମାଳାରେ ପୂରିତ ଗଳା । କଳକଣ୍ଠ କି ପଡ଼ିଲା ।
ବଚନ ପାଶରେ ମୋହନବଶରେ ମନ୍ଦର ପରି ମଣିଲା ॥ ୨୫

---

୧୯—ସୁନ୍ଦରୀ ପୂର୍ବପର ଶରୀରକୁ ବାରମ୍ବାର ଚାହିଁବାରୁ ପୁରୁଷ ବିଚାରିଲା ଏ ମୋ ତନୁକୁ ନେତ୍ରମୟ କଲା, କ୍ଷଣକେ ମଧ୍ୟରେ ମୋତେ ଶତମନ୍ୟୁ ( ଇନ୍ଦ୍ର ) ସମ୍ପତ୍ତି ସମର୍ପିଦେଲା, ତେବେ ଏ ସୁତନୁ ( ସୁନ୍ଦରୀ ) କେଡ଼େ ଦୟାଳୁ । ଇନ୍ଦ୍ର ସହସ୍ର ନେତ୍ର ।

୨୦—ମୁଖ ଲାବଣ୍ୟରୂପ ଜଳରେ ସର୍ବଦା ସଦନ (ବାସ) କରିଛୁ; ତେଣୁ ପ୍ରତୀତ ହେଉଅଛୁ ଯେ ନିବଦ୍ଧ ବର୍ତ୍ତିରେ ଚିତ୍ରିତ ତରଣୀ ( ନୌକା ) ଏଣିକି ତେଣିକି ଚାଲୁଅଛୁ କି ?

୨୧—ନାସାରେ ମୋତି ତୋଳା ଓ ଓଷ୍ଠର ଜ୍ୟୋତିଧରି ବିରାଜଇ, ତେଣୁ କ୍ଷଣଦା ( ରବି-କୃଷ୍ଣ ବର୍ଣ୍ଣ ହେତୁ ତୋଳା ସମାନ ) ଆରଦ୍ରା ନକ୍ଷତ୍ର ( ରକ୍ତବର୍ଣ୍ଣ ହେତୁ ଓଷ୍ଠ ସମାନ ) ବୁହେଁ ରୋହଣୀର ପ୍ରୀତି ତୁଟାଇ ଚନ୍ଦ୍ରଠାରେ ରହିଲେ କି ?

୨୨—ଖୋଲ ( ଖୋଦିତ ) ପଦ୍ମରାଗ ଖଣ୍ଡରେ ହୀରାପନ୍ତି ରଖା ହେଲାପରି ରକ୍ତ-ବର୍ଣ୍ଣ ଅଧରରେ ଶୁକ୍ଳ ହାସର ଫୁଲ ଫୁଟ ଫୁଟ ହୋଇ ପ୍ରକଟ ହେଉଛୁ ।

୨୩—କସ୍ତୁରୀରେ ଲେଖା ଯାଇଥିବା ମାଛି ଏପରି ଲକ୍ଷି ହେଉଛୁ ଯେ-ମହୁମାଛି ଅଧରରେ ମଧୁର ମଧୁ ସଞ୍ଚୟ କରି ସାରି ଚିବୁକରେ ଆସି ରହିଛୁ ।

୨୪—ଗଣ୍ଡରେ ମକରୀ ଚିତ୍ର ଏପରି ଦିଶୁଛୁ ନିର୍ମଳ ଆଦରଶରେ ( ଦର୍ପଣରେ ) ସଂସାର ସାର ଶୋଭାର ଚିତ୍ରପଟଳ ( ଚିତ୍ର ସମୂହ ) ର ପ୍ରତିବିମ୍ବକି ଧରି ଅଛୁ କି ?

ଭୁଜ କରିକି ମାଧୁରୀ । ଶତ୍ରୁକୁ ହରି ଲହରୀ
ତହୁଁ କୁବଳୟ ଏଥି ସୁବଳୟ ସମୁଦ୍ରାଲିଙ୍ଗନ ସରି ॥ ୨୬
ଓଷ୍ଠାରୁଣେ ବାଦକୃତ । କୁଚ ମନ୍ଦର ପର୍ବତ ।
ହାର ମଧ୍ୟମଣି ଅଗସ୍ତି ନିୟମୁଁ ଆଜି ନ ବଢ଼ିଲେ ସତ ॥ ୨୭
କଳାକାଞ୍ଚୁଲି ଗରାସି । ଅଛି ସ୍ତନ ଶୋଭା ଦିଶି ।
ବିଷଜ୍ୱାଳା ଶାନ୍ତି ସ୍ନାନ କି କରନ୍ତି ଶମ୍ଭୁ କାଳିନ୍ଦୀରେ ପଶି ॥ ୨୮
ଶୁକ ପଦକ ରଞ୍ଜିତ । ଶିକୁଳିରେ ଏଣୁ ଯୁତ ।
ଉରଜ-ପଞ୍ଜୁରୀ ପରେ ରହୁଛି କି ସଦା ସେ ସ୍ଥାନ ବାଞ୍ଛିତ ॥ ୨୯
ମନୋରମ ରୋମଶ୍ରେଣୀ । ପୟୋଧର ପେଡ଼ା ଜାଣି
ଧୈର୍ଯ୍ୟପବନ ପାନ ପାଇଁ କିବା ବାହାରୁଛି କାଳୀଫଣୀ ୩୦

---

୨୫—ମାଳାରେ ଗଳା ପୂରି ଯାଇଛି, କଳକଣ୍ଠ ( କପୋତ ) ବିଚାରି ପାଶରେ ପଡ଼ି ମୋହନ ବଶରେ ତାହାକୁ ଘରପରି ମଣିଲା କି ?

୨୬—ଭୁଜ କି ମାଧୁରୀକି କରିଛି, ଲହରୀ ତୁଲ୍ୟ ଶୋଭାରେ ଶତ୍ରୁକୁ ହରି ନେଉଛି । ଲହରୀରେ କୁବଳୟ ( ପଦ୍ମ ) ଥାଏ ଭୁଜରେ କୁବଳୟ ( ଉତ୍ତମ ସ୍ୱର୍ଣ୍ଣ କଙ୍କଣ ) ଅଛି, ସେ ଲହରୀ ସମୁଦ୍ରକୁ ଆଲିଙ୍ଗନ କରିଥାଏ, ଏ ସମୁଦ୍ର ( ମୁଦ୍ରା ସହିତ ଅଙ୍ଗୁଳିକି ) ଆଲିଙ୍ଗନ କରିଛି ।

୨୭—ମନ୍ଦରଗିରି ସଦୃଶ କୁଚ ଓଷ୍ଠ ରୂପୀ ଅରୁଣ ( ସୂର୍ଯ୍ୟ ) ଙ୍କ ସହିତ ବାଦକରି ବଢ଼ୁଥିଲା, କିନ୍ତୁ ହାର ମଧ୍ୟସ୍ଥିତ ମଣିରୂପୀ ଅଗସ୍ତିମୁନିଙ୍କର ନିୟମରୁ ଆଜି ବଢ଼ୁଇ ନାହିଁ ଏହା ସତ୍ୟ । ମନ୍ଦରଗିରି ସୂର୍ଯ୍ୟଙ୍କର ଗତି ରୋଧକରିବାକୁ ବଢ଼ୁଥିଲା, ଅଗସ୍ତିଋଷି କପଟରେ ଯାଇ ତାହା ନିକଟରେ ପହୁଞ୍ଚିବାରୁ ସେ ସାଷ୍ଟାଙ୍ଗ ପ୍ରଣାମ କଲା, "ତୁ ଏପରି ପଡ଼ିଥା ମୁଁ ଆସିଲେ ଉଠିବୁ" ଏହା କହି ମୁନି ଚାଲିଗଲେ, ସେ ସେହିପରି ପଡ଼ି ରହିଛି ।

୨୮— କଳା କାଞ୍ଚୁଲି ସ୍ତନକୁ ଗ୍ରାସକରିବାରୁ ସେ ସ୍ତନ ଏମନ୍ତ ଦିଶୁଛି—ଶମ୍ଭୁ ବିଷ ଜ୍ୱାଳା ଶାନ୍ତି ପାଇଁ କାଳିନ୍ଦୀରେ ପଶି ସ୍ନାନ କରନ୍ତି'କି ?

୨୯—ପଦକ ଶୁକ ପକ୍ଷୀପରି ରଞ୍ଜିତ ହେବାରୁ ଶିକୁଳିରେ ଯୁକ୍ତ ହୋଇଅଛି । ସେ ସର୍ବଦା ସେ ସ୍ଥାନରେ ରହିବାକୁ ଇଚ୍ଛା କରିବାରୁ ଉରଜ ( ସ୍ତନ ) ରୂପକ ପଞ୍ଜୁରୀରେ ରହି ଅଛି କି ? ପଦକମଣି ଶୁକପରି ସବୁଜବର୍ଣ୍ଣ ।

୩୦—ମନୋହର ରୋମାବଳି କାଳୀନାଗୁଣୀ ପରି, ପୟୋଧର ( ସ୍ତନ ) ପେଡ଼ା, ସେ ଲୋକମାନଙ୍କର ଧୈର୍ଯ୍ୟରୂପୀ ପବନ ପାନ କରିବା ପାଇଁ ପେଡ଼ିରୁ ବାହାରୁଛି କି । ସର୍ପମାନେ ପବନାହାରୀ ।

ଭଲ ସାଜେଣି ବାଜେଣି । କଙ୍କିଣି କଟିରେ ପୁଣି ।
କଣି କଣି ନେବ ମାନସୁଁ ମାନକୁ କଣି କଣି ହେଲାଷଣି ॥ ୩୧
ପିନ୍ଧିଲା ବସନ ଜରି । ଶ୍ରୀଅଙ୍ଗେ ଯାଇଛି ଜରି ।
କାମକଳ୍ପତରୁ ପିଧାନ ପରି କି ଜଡ଼ିତ ହେମମଞ୍ଜରୀ ॥ ୩୨
ହଂସକ-ନୂପୁର ପାଦେ । ଚୁଲିଝୁଣ୍ଟିଆ ପ୍ରପଦେ ।
ଚେତନା ଚମକ ପକାଇ ଦେବ ଏ ଝମକ ଚମକ ନାଦେ ॥ ୩୩
ଚରଣେ ରଚ ଅଲତା । ହୋଇଛି କି ମଞ୍ଜୁଲତା ।
ଏ ରାଗ ଅନାଇଁ ସରାଗ ବଢ଼ାଇ ମୁଁ ହେବି ଏରୂପେ ରଜା ॥ ୩୪
ଅମୂଲ୍ୟ ରାମାରତନ । ହରଷ ରସ ଯତନ ।
କେଉଁକାଳେ କେତେ ପୁଣ୍ୟ କରିଥିଲି ସେ ଭାଗ୍ୟେଁ ନେତ୍ରେ ପତନ ॥ ୩୫
ମୋହନ ବୋଲାଇ ଯେହୁ । ସେହୁ ସ୍ୱରୂପତ ଏହୁ ।
ସମସ୍ତରୂପେ ମସ୍ତକମଣି ବୋଲି ସୁନ୍ଦରୀସଂସାରେ କହୁ ॥ ୩୬
ରସିକ ଏମନ୍ତ ଭାବେ । ଦଇବେ ସୁଭାଗ୍ୟବଳେ ।
ରାମା ନୟନ ଅୟନରେ ପଥିକ ପୁରୁଷଶୋଭା ଏକାଳେ ॥ ୩୭

---

୩୧—ପୁଣି କଟିରେ ବାଜେଣି ( ବାଜୁଥିବା ) କଙ୍କିଣି ଭଲ ସାଜେଣି ହୋଇଛି । ତାହାର କଣି ( ଶବ୍ଦ ) କଣି ୨ ହେଲାଷଣି ମନରୁ ମାନକୁ କଣିନେବ ।

୩୨—ପିନ୍ଧିଲା ବସନର ଜରି ଶ୍ରୀଅଙ୍ଗରେ ଜରି ( ଜଡ଼ି ) ଯାଇଁ ଏପରି ଦିଶୁଛି—କାମ କଳ୍ପତରୁ ( ବାଞ୍ଛା କଳ୍ପତରୁ )ରେ ପିଧାନ ( ଆଚ୍ଛାଦନ ପରି ) ହେମ ମଞ୍ଜରୀ ଜଡ଼ିତ ହୋଇଛି କି ?

୩୩—ପାଦରେ ହଂସକ ନୂପୁର, ପ୍ରପଦରେ ( ଅଙ୍ଗୁଳିରେ ) ଚୁଲି ଝୁଣ୍ଟିଆ, ଏମାନେ ଝମକ ଚମକ ନାଦରେ ଚେତନାରେ ଚମକ ପକାଇ ଦେବେ ।

୩୪—ଚରଣରେ ଅଲତାରଚା କେଡ଼େ ମନୋହର ହୋଇଛି, ଏ ରାଗ (ରକ୍ତିମା) କୁ ଦେଖିଲେ "ମୁଁ ଏହିରୂପେ (ଅଲତାରୂପେ) ରଞ୍ଜାହେବି" ଏହିପରି ସରାଗ ( ସ୍ନେହ ) ବଢ଼ଇ ।

୩୫—ଏ ରାମାରତ୍ନ ଅମୂଲ୍ୟ ହର୍ଷ ଓ ରସର ଯତ୍ନପୂର୍ବକ ଏକତ୍ର ହେବାର ସ୍ଥାନ ସ୍ୱରୂପ, ମୁଁ କେଉଁ କାଳରେ କେତେ ପୁଣ୍ୟ କରିଥିଲି, ସେ ଭାଗ୍ୟରୁ ଆଖି ପଡ଼ିଲି ।

୩୬—ଯାହାକୁ ମୋହନ କହନ୍ତି ଏହି ରାମାତ ସେହି ସବୁରୂପେ ସୁନ୍ଦରୀ ସଂସାରରେ ମସ୍ତକମଣି ବୋଲି କହନ୍ତି ।

୩୭—ରସିକ ଏପରି ଭାବେ । ଦୈବଯୋଗେ ଏହି ସମୟରେ ସୁଭାଗ୍ୟବଶୁଁ ପୁରୁଷ ଶୋଭା ରାମାର ନୟନ ଅୟନରେ ( ନେତ୍ର ପଥରେ ) ପଥିକ ହେଲା ।

ତରଣିକୁଳର ସାର । ଆଶ୍ରଯ଼ୁଁ ନିରନ୍ତର ।
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭୁଛି ଶବ୍ଦସମୁଦ୍ର ପାର ॥ ୩୮

—ः( * ):—

## ପଞ୍ଚଦଶ ଛାନ୍ଦ

ରାଗ—ନଳିନୀଗୌଡ଼ା


ଖି ରାମା କୁମାର ସୁଷମାକୁ ଭାଳିଲା ।
ଅତନୁ ସୁତନୁବନ୍ତ ବେନି କାମ ଥିଲା ଯେ । ୧

ତାହାର ଶସ୍ତ୍ର କୁସୁମ ଏହା ଶସ୍ତ୍ର ରୂପ ।
ରତିମତି କଲେ ହେବ ମୋ ପୁଣ୍ୟ ଅମାପ ଯେ । ୨
ମୀନ ମକର ଲକ୍ଷଣନିକର ଦେଖିଲା ।
ଆନନ୍ଦ-ସମୁଦ୍ର କରି ପୁଣି ସେ ଯୋଖିଲା ଯେ ॥ ୩
ସରିତ ସରିରେ ସେ ଶରୀରେ ମନ ମିଶି ।
ଅଙ୍ଗସଙ୍ଗ ଏରୂପେ ହୁଅନ୍ତା ହେଲା ଘୋଷି ଯେ ॥ ୪

---

୩୮—ତରଣୀ ( ସୂର୍ଯ୍ୟ ) କୁଳର ସାର ( ରାମଚନ୍ଦ୍ର )ଙ୍କର ଆଶ୍ରଯ଼ୁଁ ମୁଁ ଶବ୍ଦ ସମୁଦ୍ରର ପାର ଲଭୁଛି ଉପେନ୍ଦ୍ର ଭଞ୍ଜ ଏହା କହେ ।

---

୧—ରାମା କୁମାରର ସୁଷମା ( ପରମଶୋଭା ) ଦେଖି ଭାବିଲା—ଏ ସଂସାରରେ କାମ ଦୁଇଜଣ ଥିଲେ କି ? ଜଣେ ଅତନୁ ଅଦେହ ( ଜଣେ ଅତନୁ ସୁନ୍ଦର ଦେହଧାରୀ ) ।

୨—ତାହାର ( ଅଦେହ କାମର ) ଶସ୍ତ୍ର ପୁଷ୍ପ ଏହାଙ୍କର ଶସ୍ତ୍ରରୂପ ( ସଦ୍‌ଗୁଣ ) । ଏ ମୋଠାରେ ରତିମତି ( ରତିବୁଦ୍ଧି ) କଲେ ମୋହର ପୁଣ୍ୟ ଅମାପ ହେବ ।

୩—ସେ ସୁନ୍ଦରୀ ପୁରୁଷଠାରେ ମୀନ, ମକର, ପ୍ରଭୃତି ମହାପୁରୁଷ ଲକ୍ଷଣମାନ ଦେଖି ମନରେ ଏହାଙ୍କୁ ଆନନ୍ଦ ସମୁଦ୍ର କରି ଯୋଖିଲା । ସମୁଦ୍ରରେ ମୀନ ମକର ପ୍ରଭୃତି ଥାନ୍ତି ।

୪—ସମୁଦ୍ରରେ ସରିତ (ନଦୀ) ସରିରେ (ତୁଳନାରେ) ସେ ସୁନ୍ଦରର ଶରୀରରେ ତାହାର ମନ ମିଶିଗଲା । ଏରୂପେ ( ମନମିଶିଲାପରି ) ଅଙ୍ଗସଙ୍ଗ ହୁଅନ୍ତା ବୋଲି ସେ ଘୋଷିହେଲା ।

କଳାନିଧି ସନ୍ନିଧି ପ୍ରକାଶ କି ବଶଯ୍ୟେ ।
କୁମୁଦିନୀ ପାଶେ ଜଳେ ପ୍ରତିବିମ୍ବ ପ୍ରାୟେ ଯେ । ୫
ଏ ବନ ଗଗନ କିବା ମୋହ ଭାଗ୍ୟ ରାଶି ।
ଯୋଗକୁ ହୋଇଛୁ କିବା ସନ୍ନିକଟ ଆସି ଯେ ॥ ୬
ଏମନ୍ତ ବିଚାରୁ ଗୁରୁଜଘନା ଚତୁର ।
ହୋଏ ନିକଟ ନିକଟ ପ୍ରକଟ କୁମର ଯେ ॥ ୭
ପାବଛେ ପାବଛେ ମଣ୍ଡିମଣ୍ଡନା ଓହ୍ଲାଇ ।
କରପଇଠି ବିମ୍ବୋଷ୍ଠୀ ସଖୀଙ୍କରେ ଦେଇ ଯେ ॥
କର ଯାଉଅଛୁ ସେ ନାଗର ଏହି ସ୍ତବ ।
ହେ ବାଳେ । ନର୍ମଦା ସୁରତରଙ୍ଗିଣୀ ଭାବ ଯେ ॥ ୯
କାଳିନ୍ଦୀ ରୁଚିର କୃଷ୍ଣବେଣୀ ପୁଣି ଲକ୍ଷ୍ୟ ।
ଚନ୍ଦ୍ରଭାଗାଳିକଶୋଭା ଶତ୍ରୁ ଉତ୍ପଳାକ୍ଷୀ ଯେ ॥ ୧୦
ହୋଇଥିବ ଯୁକ୍ତ ରସ ସରସ୍ୱତୀ ସଦା ।
କରତ ପବିତ୍ର ହୋଇ ରେ ବାଳେ ବାହୁଦା ଯେ ॥ ୧୧

---

୫—ଜଳରେ କୁମୁଦିନୀ ପାଖରେ ଚନ୍ଦ୍ର ପ୍ରତିବିମ୍ବପରି କଳାନିଧି (ଚନ୍ଦ୍ର) କି ବିଷୟରେ (କି ଇଚ୍ଛାରେ) ମୋ ନିକଟରେ ପ୍ରକାଶ ହେଲା କି ?

୬—କିବା ଏ ବନଗଗନ (ଆକାଶ) ମୋ ଭାଗ୍ୟ ରାଶି (ଦ୍ୱାଦଶରାଶି) ତହିଁରେ ଯୋଗ ହେବାକୁ ଚନ୍ଦ୍ର ଆସି ନିକଟବର୍ତ୍ତୀ ହୋଇଅଛୁ କି ?

୭—ଗୁରୁଜଘନା ସୁନ୍ଦରୀ ଚତୁରେ ଏମନ୍ତ ବିଚାରୁ କୁମାର ନିକଟରେ ୨ ପ୍ରକାଶପାଏ

୮—ମଣ୍ଡିମଣ୍ଡନା, ବିମ୍ବୋଷ୍ଠୀ, ସୁନ୍ଦରୀ ସଖୀଙ୍କରେ (ହସ୍ତେ) କର ପଇଠି (ହାତଭରା) ଦେଇ ପାବଚ୍ଛେ ପାବଚ୍ଛେ (ପାହାଚେ ପାହାଚେ) ଓହ୍ଲାଇଲେ ।

୯—ସେ ନାଗର ଏହି ସ୍ତବ କର ପାଖକୁ ୨ ଯାଉଛୁ—ହେ ବାଳେ । ମନରେ ଭାବ ତୁ ନର୍ମଦା (ସୁଖଦାୟିନୀ) ସୁତରାଂ ନର୍ମଦା ନଦୀ, ସୁରତ ରଙ୍ଗିଣୀ (ସୁରତ ପ୍ରବୀଣା) ସୁତରାଂ ସୁର-ତରଙ୍ଗିଣୀ (ସ୍ୱର୍ଗଙ୍ଗା) ।

୧୦—ପୁଣି ତୋଠାରେ କାଳିନ୍ଦୀ ପରି ରୁଚିର (ମନୋହର) କୃଷ୍ଣବର୍ଣ୍ଣ ବେଣୀ ଲକ୍ଷିତ ହେଉଛି, ଅତଏବ ତୁ କାଳିନ୍ଦୀ ଓ କୃଷ୍ଣ ବେଣୀ ନଦୀ, ପୁଣି ଚନ୍ଦ୍ରଭାଗାଳିକ ଶୋଭା (ଅର୍ଦ୍ଧଚନ୍ଦ୍ର ସଦୃଶ ଭାଲ ପଟରେ ଶୋଭିତା) ସୁତରାଂ ଚନ୍ଦ୍ରଭାଗା ନଦୀ ଶତ୍ରୁ ଉତ୍ପଳାକ୍ଷୀ (ଅଷ୍ଟର୍ଦ୍ଧ ପଦ୍ମାକ୍ଷୀ) ସୁତରାଂ ଶତଦ୍ରୋପଳା ।

୧୧—ତୋ ସରସ୍ୱତୀ (ବାଣୀ) ସଦା ରସ ଯୁକ୍ତ ହୋଇଥିବ । ସୁତରାଂ ରସ (ଜଳ) ଯୁକ୍ତ ସରସ୍ୱତୀ ନଦୀରେ (ସୁନ୍ଦରୀ) ବାଳେ ବାହୁଦା ହୋଇ (ଆଲିଙ୍ଗନ କରି) ପବିତ୍ରକର, ସୁତରାଂ ରେବା ଓ ବାହୁଦା ନଦୀ ।

ତୀର୍ଥମୟ କଳପନା ମୋ ଅନ ନ କର ।
ବୋଲି ଅଭ୍ର ଗୁହ୍ଣୁ କହିବାକୁ ଯୋଡ଼ୁଁ କର ଯେ ॥ ୧୨
କନକ-ଚମ୍ପାମାଳାକୁ କାଢ଼ି ଶମ୍ପାଗୋରୀ ॥
ଅଳକରେ ଦେଲା ରଚି କଟାକ୍ଷ-ଗୁଚ୍ଛୁରୀ ଯେ । ୧୩
ଏକାଳେ ଉଦୟ ଲଭେ ସେହି ସ୍ଥାନ-ନଭେ ।
ମାଙ୍ଗଲ୍ୟା ତାରକା ହୋଇ ଯୁକ୍ତ ଯୋଗ ଶୁଭେ ଯେ ॥ ୧୪
ଅବଧୂତୀ ଉପାଧ୍ୟାୟୀ ପୋଟା କଚ୍ଛହୁ୍ରେ ।
ଝଟକି ଅସନ୍ତି ସେ ଶ୍ରବଣା ପରକାରେ ଯେ ॥ ୧୫
ଅଗସ୍ତି ଉଦୟ ପରି ଦିଶି ଚନ୍ଦ୍ରହଂସ ।
ଆଶା ଅଚ୍ଛାଦଲା ଲଙ୍କା-ନଶା ପରକାଶ ଯେ ॥ ୧୬
ଘନ-ରସ-ମୟ କାଳ ପୁରୁଷ କୋକିଳ ।
ମଧୁରତର ଭାଷକୁ ବିରୋଧୀ ଚପଳ ଯେ ॥ ୧୭

---

୧୨—ମୋହର ତୀର୍ଥମୟ କଳ୍ପନାକୁ ଅନ୍ୟଥା କରନା ଏହା କହି ଅଭ୍ର ଗୁହ୍ଣୁ କହିବାକୁ କର ଯୋଡ଼ିଲେ ।

୧୩—ଶମ୍ପା ( ବିଦ୍ୟୁତ୍ ) ପରି ଗୌରୀ ସୁନ୍ଦରୀ କନକ ନିର୍ମିତ ଚମ୍ପାମାଳାକୁ କାଢ଼ି କଟାକ୍ଷ ଗୁଚ୍ଛୁରୀ ରଚନା କରି ସଖି ହାତରେ ଦେଲା ।

୧୪—ଏ ସମୟରେ ମାଙ୍ଗଲ୍ୟ ତାରକା ପରି ଶୁଭ ଯୋଗରେ ଯୁକ୍ତ ହୋଇ ସେହି ସ୍ଥାନ ରୂପକ ନଭେ ( ଆକାଶରେ ) ଉଦୟ ଲଭିଲେ ।

୧୫—ଅବଧୂତୀ, ଉପାଧ୍ୟାୟୀ ଓ ପୋଟା, ତନିଜଣ କଚ୍ଛ ଦୂରରୁ ଶ୍ରବଣା ନକ୍ଷତ୍ର ପରି ଝଟକି ଅସନ୍ତି । ( ଶ୍ରବଣାନକ୍ଷତ୍ର ଗୋଟିଏ )

୧୬—ଚନ୍ଦ୍ରହଂସ ଅଗସ୍ତି ନକ୍ଷତ୍ରର ଉଦୟ ପରି ଦେଖାଗଲେ, ଅଗସ୍ତି ଉଦୟରେ ଆଶା ( ଦିଗମାନେ ) ଅଚ୍ଛନ୍ନଥାନ୍ତି କିନ୍ତୁ ରବି ପ୍ରକାଶ ପାଏ । ଚନ୍ଦ୍ରହଂସ ପ୍ରବେଶରେ ମାଙ୍ଗଲ୍ୟା ପ୍ରଭୃତିଙ୍କର ମଳିନ ଆଶା ଅଚ୍ଛନ୍ନ ହେଲା ଏବଂ ଲଙ୍କା ରୂପ ନିଶା ପ୍ରକାଶ ପାଇଲା ।

୧୭—ସେ ଘନର ସମୟ ( ନିବିଡ଼ର ସମୟ ) କାଳ ଘନର ସମୟ କାଳ ( ବର୍ଷାକାଳ ) ପରି ଚପଳ କୋକିଳ ସଦୃଶ ପୁରୁଷର ଅତି ମଧୁର ଭାଷାର ବିରୋଧୀ ହେଲା । ବର୍ଷାକାଳରେ କୋକିଳ ଶବ୍ଦ ବନ୍ଦ ହେଲାପରି ଏ ସମୟରେ ରସୋଦ୍ରେକ ହେତୁ ପୁରୁଷ ବାକ୍ୟ ବନ୍ଦ ହେଲା ।

ବିପତ୍ତି-ନାଶନ ଅଗେ ବି-ପତି ପ୍ରକାର ।
ଥିଲ କୁମାର ଭଜିଲ ସ୍ୱର୍ଭାନୁ ସଙ୍ଗୁର ଯେ ॥ ୧୮
ଅନୁଗ୍ରହ ଘେନିଲ ପରିରେ କର କର ।
ବାଲା ମାଲା ପ୍ରଦାନ ଭାବକୁ ଅନୁସର ଯେ ॥ ୧୯
ଚିନ୍ତା ଜନମାଇ ଗୃହୁଁ ଅଛି କୃଶୋଦରୀ ।
ବାରୁଣି-ଗତ ଭାନୁରେ ଚକ୍ରବାକୀ ପରି ଯେ ॥ ୨୦
ନ ଲଙ୍ଘିଲ ସେ ସୋପାନ ଲୋକାଲୋକ ମତ ।
ପଦ ଅରୁଣ-ଅମ୍ବୁଜେ ହେବାରୁ ଲକ୍ଷିତ ଯେ ॥ ୨୧
କେଣେ ଗଲ ପରି ଭ୍ରମି ବାଲା ସହଚରୀ ।
ସୁବର୍ଣ୍ଣ-ଚମ୍ପକମାଲା କରେ ଅଛି ଧରି ଯେ ॥ ୨୨
ଅତି ଦୁର୍ଲ୍ଲଭ ଅଷ୍ଟର୍ଘ ବଚନକୁ ଛନ୍ଦି ।
ପୁରୁଷ ପାରୁଶ ଭଜୁଁ ଗଲ କହି ହୋଇ ଯେ ॥ ୨୩
କେମନ୍ତ ହେବ ଏ ମତ୍ତକୁଞ୍ଜର ଯୁବାକୁ ॥
ଆଶା କରିଅଛି ଆଶାବନ୍ଧେ ବାନ୍ଧିବାକୁ ଯେ ॥ ୨୪

---

୧୮—ବିପତ୍ତିନାଶନ ( ଭଗବାନ ) ଙ୍କ ଅଗରେ ବିପତି ( ଗରୁଡ଼ ) ପରି ସୁନ୍ଦରୀ ଅଗରେ କୁମାର ଥିଲ, ମାଙ୍ଗଳ୍ୟାପ୍ରଭୃତିଙ୍କୁ ଦେଖି ସ୍ୱର୍ଭାନୁ ସଙ୍ଗୁର ଲଭିଲ ଅର୍ଥାତ୍ ରାହୁ ପରି ଅଦୃଶ୍ୟ ରହିଲ ।

୧୯—ଅନୁଗ୍ରହ ଘେନିଲ ପରି ହସ୍ତ ଅଞ୍ଜୁଳି କରି ବାଲା ମାଲା ଦେବା ଭାବକୁ ଗୋପନରେ ଅନୁସରି ରହିଲ ।

୨୦—କୃଶୋଦରୀ ( କ୍ଷୀଣୋଦରୀ ) ଚିନ୍ତା ଜନ୍ମାଇ ବାରୁଣି ( ପଶ୍ଚିମଦଗ ) ଗତ ଭାନୁରେ ( ସୂର୍ଯ୍ୟ ଅସ୍ତହେଲେ ) ଚକ୍ରବାକୀ ପରି କାତର ଭାବରେ ଗୃହୁଁ ଅଛି । ରାତିରେ ଚକ୍ରବାକୀର ବିଚ୍ଛେଦ ହୁଏ ।

୨୧—ସୁନ୍ଦରୀର ପଦ ଅରୁଣ ଅମ୍ବୁଜେ ( ରକ୍ତପଦ୍ମ ଚିହ୍ନିତ ) ଲକ୍ଷିତ ହେବାରୁ ଅରୁଣ ( ସୂର୍ଯ୍ୟ ) ଅମ୍ବୁଜ ( ଚନ୍ଦ୍ର ) ଲୋକାଲୋକ ପର୍ବତକୁ ନ ଲଙ୍ଘିଲ ପରି ସେ ପଦ ସୋପାନକୁ ( ପାବଚ୍ଛକୁ ) ଲଙ୍ଘିଲ ନାହିଁ ।

୨୨—ବାଲାର ସହଚରୀ ଭ୍ରମିହୋଇ କେଉଁଆଡ଼େ ଚାଲିଗଲ ପରି,ସେ ହାତରେ ସୁବର୍ଣ୍ଣ ଚମ୍ପକ ମାଲା ଧରିଅଛି ।

୨୩—ପୁରୁଷ ପାରୁଶ ଭଜୁଁ ( ନିକଟବର୍ତ୍ତୀ ହେଉଁ ) ସଖୀ ମୁଖରେ ଏହି ଅତି ଦୁର୍ଲ୍ଲଭ ଅଷ୍ଟର୍ଘ ବଚନ କହି ହୋଇଗଲ ।

୨୪—ଏ ଯୁବା ମତ୍ତକୁଞ୍ଜର ( ହସ୍ତୀ ) ଏହାଙ୍କୁ ଆଶାବନ୍ଧେ ( ଦୁଡ଼ିଅଣି ସୂତାରେ) ବାନ୍ଧିବାକୁ ଆଶା କରିଅଛି ଏହା କିପରି ହେବ ?

ଶୁଣି ମିତ୍ର ମୃଦୁଳର ଉତ୍ତରକୁ କଲା ।
ଯେତେବେଳୁଁ ଗୃହାଣି-ଅଙ୍କୁଶ ଲଗାଇଲା ଯେ ॥ ୨୫
ନ ବାନ୍ଧିଲେ ବାନ୍ଧିଲେ ରହିଲାଣି ସ୍ଥକିତେ ।
ମୋହନ-ଝୋପରେ ପଡ଼ିବାରେ ଅନାୟତ୍ତେ ଯେ ॥ ୨୬
ହୀରା ଲୁବ୍ଧ ଅତି ଚନ୍ଦ୍ରବିମ୍ବ ଚୁମ୍ବାଇଚ୍ଛି ।
କେମନ୍ତେ ହୋଇବ ଏ ସମ୍ପତେ ନ ଆସୁଚ୍ଛି ଯେ ॥ ୨୭
ଈଶ୍ୱର-ଶିରମଣ୍ଡନ ଉନ୍ମତ୍ତ ସୁମନ ।
ଯୋଗେ ଥାଇଁ ଚୁମ୍ବିଥିଲା ପରା ମନେ ଘେନ ଯେ ॥ ୨୮
ବୋଲି ମାଳା ଦେଲା କିଛି ଦୂରେ ଥାଇଁ ସଖୀ ।
ବୀର ଗଳାକୁ ମଣ୍ଡିଲା ଦେଲା ପ୍ରାୟେ ରଖି ଯେ ॥ ୨୯
ସୁଗ୍ରୀବ ହୋଇଲି ଆଜ କା ତପ-ବଶରୁ ।
ଅଦ୍ଭୁତ ଆକାରବନ୍ତ ରାମ କରୁଣାରୁ ଯେ ॥ ୩୦
ଏ ପଦକ କହି ସେ ପଦକ ଦେଲା ବେଗେ ।
ମିତ୍ର ନେଇ ଦେଇ ଆଳୀ କରେ ଅନୁରାଗେ ଯେ ॥ ୩୧

---

୨୫।୨୬—ରାଜପୁତ୍ରର ମିତ୍ର ଏହାଶୁଣି ଅତି କୋମଳ ଉତ୍ତର କଲା-ଯେତେବେଳୁ ଗୃହାଁଣିରୂପ ଅଙ୍କୁଶ ଲଗାଇଲାଣି ସେତେବେଳୁଁ ବାନ୍ଧିଲେ ବା ନ ବାନ୍ଧିଲେ ମୋହନରୂପ ଝୋପରେ ପଡ଼ି ଅଣଅଯତ୍ତ ହୋଇ ସ୍ଥକିତ ହୋଇ ରହିଲାଣି

୨୭—ହୀରା (ପିପିଲିକା) ଅତିଶଯ୍ୟ ଲୁବ୍ଧ ହୋଇ ଚନ୍ଦ୍ରବିମ୍ବକୁ ଚୁମ୍ବିବାପାଇଁ ଇଚ୍ଛା କରୁଅଛି ଏହା କିପରି ହେବ ମନକୁ ଆସୁନାହିଁ ।

୨୮—ମହାଦେବଙ୍କର ଶିରେମଣ୍ଡନ ହୋଇଥିବା ଉନ୍ମତ୍ତ ସୁମନ ( ଦୁଦୁରାଫୁଲ ) ଯୋଗରେ ପିପିଲିକାବହି ସେଠାରେ ଥିବା ଚନ୍ଦ୍ରଙ୍କୁ ଚୁମ୍ବିଥିଲା ପରା ଏହା ମନକୁ ଆଣ ।

୨୯—ଏହାକହି ସଖୀ କିଛିଦୂରେ ରହି ବୀର ଗଳାକୁ ମଣ୍ଡି ଦେଲାପରି ମାଳା ରଖି ଦେଲା ।

୩୦—ଆଜି ମୁଁ କା ତପୋବଳରୁ ଅଦ୍ଭୁତ ଆକାରବନ୍ତ ( ଅଦ୍ଭୁତ ସୁନ୍ଦରୀ ) ଏହି ରାମାର କରୁଣାରୁ ସୁଗ୍ରୀବ ସୁନ୍ଦର ଗ୍ରୀବ ଓ ତନ୍ନାମକ କପିରାଜ ) ହେଲି, ସୁଗ୍ରୀବଠାରେ ଦୟାକରି ଦେହଧାରୀ ରାମ ସ୍ୱହସ୍ତରେ ତାହାର ଗଳାରେ ଫୁଲମାଳ ଦେଇଥିବାରୁ ସେ ଧନ୍ୟ ହୋଇଥିଲା ।

୩୧—ସେ ବୀର ଏ ପଦକ କହି ପଦକ ନେଇ ମିତ୍ରକୁ ଦେଲା, ମିତ୍ର ନେଇ ସଖୀହସ୍ତରେ ଅନୁରାଗରେ ( ସ୍ନେହରେ ) ଦେଲା ।

ବୋଇଲା ଜଣାଇବଟି କେମାକୁ ରେ ଭ୍ରାନ୍ତ ।
ଅଙ୍କୁ ଏ ସ୍ଥାନ ଛାଡ଼ିଲା ପୁରୁଷ ହୃଦରୁ ଯେ ॥ ୩୨
ହସିଲା ହସିଲା ହୋଇ ସଜନୀ ଅସିଲା ।
ସେ ମଣ୍ଡନେ ରାମା ହୃଦ ଶୋଭା ପ୍ରକାଶିଲା ଯେ ॥ ୩୩
ଯତନ ନାୟକ-ରତ୍ନ ବ୍ୟାଜେ କି ଅଣିଲା ।
ରମଣୀମଣି ଏମନ୍ତ ମନରେ ମଣିଲା ଯେ ॥ ୩୪
ପରସ୍ପର ବରଣ ଉଦ୍ଭବ ମହାରସ ।
ଭାବନା ଏ ଗଲା ହେଲା କଲେ ତ ଅଶ୍ଳେଷ ଯେ ॥ ୩୫
ଲଭିବା ଏ ଭରସା ସହଜେ ଦିଶି ଗଲା ।
ଯୋଗୀ ଯୋଗିନୀ ବେନି କରଣି ଭଲା ଭଲା ଯେ । ୩୬
କଲେ ତାହା ବାଳକ ସାରଣିଖେଳ ପରି ।
ସୂତ୍ର-ଯୋଗେ ନେବଲେ କ୍ରମେ କରକୁ ଓଟାରି ଯେ ॥ ୩୭
ଦେଖୁ ଦେଖୁ ଦରଶନ କଲା ଅବାଦାତ ।
ସଞ୍ଚାର ଯେମନ୍ତ ଚନ୍ଦ୍ରକଳା ହୁଏ ଗତ ଯେ ॥ ୩୮

---

୩୨—ମିତ୍ର ସଖୀକୁ କହିଲା ରେ ଭ୍ରାନ୍ତ । କେମାକୁ ଜଣାଇବୁଟି ଏ ପଦକ ଅଙ୍କଠାରୁ ପୁରୁଷ ହୃଦରୁ ସ୍ଥାନ ଛାଡ଼ିଲା ।

୩୩—ସଜନୀ ହସିଲା ୨ ହୋଇ ଅସିଲା, ସେ ପଦକ ମଣ୍ଡନରେ ରାମା ହୃଦରେ ଶୋଭା ପ୍ରକାଶ ପାଇଲା ।

୩୪—ରମଣୀମଣି ପଦକଙ୍କେନି ମନରେ ଏପରି ମଣିଲା ଯେ ପଦକର ମଧ୍ୟରେ ଯତ୍ନସହିତ ଖଚିତ ନାୟକରତ୍ନ (ମଧ୍ୟମଣି) ବ୍ୟାଜରେ ନାୟକରତ୍ନ ( ପୁରୁଷ ଶ୍ରେଷ୍ଠକୁ ) ସଖୀ ଅଣିଲା କି ?

୩୫—ପରସ୍ପର ପରସ୍ପରକୁ ବରଣକରିବାରେ ଉଦ୍ଭବ ମହାରସ ପୂର୍ଣ୍ଣହେଲା, ଏବେ ଏ ବରଣ ଭାବନା ଗଲା, ଅଶ୍ଳେଷ ( ମିଳନ ) ହେଲା ପରସ୍ପରକୁ ଅଶ୍ଳେଷ ( ଆଲିଙ୍ଗନ ) କଲେ ।

୩୬—ପରସ୍ପରକୁ ପରସ୍ପର ଲାଭକରିବାର ଭରସା ସହଜରେ ଦେଖାଗଲା, ଭଲା ଭଲା ରେ ଯୋଗୀ (ଶିବପୁଂସ) ଯୋଗିନୀ ( ମାଙ୍ଗଲ୍ୟା ) ଏ ଦୁହିଁଙ୍କର କରଣି ।

୩୭—ବାଳକମାନେ ସାରଣି ଖେଳ ଖେଳିଲା ପରି ସେ ତାହା କଲେ । ସାରଣିକି ସୂତ୍ରଯୋଗେ ହାତକୁ ଓଟାରି ନେଲାପରି ସେ ସୂତ୍ର ( କୌଶଳ ) ଯୋଗେ ମାୟା ସଂହାରିଲେ ।

୩୮—ଯେପରି ଚନ୍ଦ୍ରକଳା ( ଶୁକ୍ଳ ପକ୍ଷ ବୃଦ୍ଧି ) ସଞ୍ଚାରକର ପୁଣି ଲୁଚିଯାଏ ସେହିପରି ଦେଖୁ ଦେଖୁ ସେ ଦୁହିଁଙ୍କର ଦର୍ଶନ ଅବାଦାତ ( ଅପ୍ରକାଶିତ ) ହେଲା ।

ବେନି ମନ ବେନି ତନୁ ସୁଖସ୍ଥାନ ସ୍ମର ।
ପାଲଟି କି ରହିଲେ ରଚନ କର ପୂର୍ବ ଯେ ॥ ୩୯
ଚକ୍ର-ଦମ୍ପତି ବିଯୋଗ କାଳ ପ୍ରକଟିଲା ।
ଦମ୍ପତିଚକ୍ର ସଂଯୋଗ ହେବାକୁ ଘଟିଲା ଯେ ॥ ୪୦
ଦରବଶେ କୁଳାୟକୁ ଗଲେ ମନ୍ଦପତ୍ରୀ ।
ଦର-ଘୋଷେ ସଙ୍କେତ-ଆଶାୟୀ ମନ୍ଦଗତି ଯେ ॥ ୪୧
ନୃପଜା ପ୍ରବେଶ ପୁରେ ସଙ୍ଗ ନୀ ସଙ୍ଗରେ ।
ନୃପଜ ମିତ୍ର ସହିତେ ସ୍ଥିତ ସ୍ୱନଗରେ ଯେ ॥ ୪୨
ଆଲମ୍ବନ ଭାବ ଅବଲମ୍ବନ ସହଜେ ।
ଏପ୍ରକାରେ ଉଦ୍ଦୀପନ ଭାବେ ଧୈର୍ଯ୍ୟ ଭଜେ ଯେ ॥ ୪୩
ଦ୍ୱିତୀୟାତିଥି ରଜନୀ-ମୁଖକୁ ଦେଖନ୍ତି ।
ଗୃହିଁ ଏକଦନ୍ତେ ଶୋଭି କି ଗଣେଶ ମୂର୍ତ୍ତି ଯେ ॥ ୪୪
ଯେଣୁ ସେ କଳାପ୍ରବୀଣା ତେଣୁ ରାଗମୟ ।
ସର୍ବହୃଦେ ରତିମନ୍ଥ କରେ ସେ ଉଦୟ ଯେ ॥ ୪୫

---

୩୯—ଦୁହିଁଙ୍କର ମନ ଓ ତନୁ (ଶରୀର) ସୁଖସ୍ଥାନ ସ୍ମରଣକର ପାଲଟିଯାଇ ପୂର୍ବ ରଚନାକର ରହିଲେ କି ?

୪୦—ଚକ୍ର ଦମ୍ପତି ( ଚକ୍ରବାକ ଚକ୍ରବାକୀ ) ଙ୍କର ବିଯୋଗକାଳ ( ରାତ୍ରି) ପ୍ରବେଶ କଲା, ଦମ୍ପତିଚକ୍ର ( ସ୍ତ୍ରୀପୁରୁଷମାନଙ୍କର ) ସଂଯୋଗପାଇଁ ରାତ୍ରି ଘଟିଲା ।

୪୧—ମନ୍ଦପତ୍ରୀ ( କାକମାନେ ) ଦରବଶେ ( ଭୟହେତୁ ) କୁଳାୟକୁ ( ବସାକୁ ) ଗମନକଲେ । ଦର-ଘୋଷେ ( ଶଙ୍ଖଶବ୍ଦ ) ଶୁଣି ସଙ୍କେତ ଆଶାୟୀ ସ୍ତ୍ରୀ ପୁରୁଷମାନେ ସଙ୍କେତ ସ୍ଥାନକୁ ମନ୍ଦଗତି କଲେ ।

୪୨—ରାଜକନ୍ୟା ସଖୀସହ ନିଜପୁରରେ ପ୍ରବେଶ ହେଲେ, ରାଜପୁତ୍ର ମଧ୍ୟ ମିତ୍ରସହ ନିଜ ନଗରରେ ରହିଲେ ।

୪୩—କୁମାର କୁମାରୀ ଦୁହେଁ ଆଲମ୍ବନ ଭାବକୁ ସହଜରେ ଅବଲମ୍ବନ କରିଥିଲେ ଏହିପ୍ରକାର ଦର୍ଶନରେ ଉଦ୍ଦୀପନ ଭାବରୁ ଧୈର୍ଯ୍ୟକୁ ଭଜିଲେ ।

୪୪—ସେ ଦୁହେଁ ଦ୍ୱିତୀୟା ତିଥିର ରଜନୀମୁଖ ( ସନ୍ଧ୍ୟାକୁ ) ଦେଖନ୍ତି, ସେକାଳ ଏକଦନ୍ତ ସଦୃଶ ଦ୍ୱିତୀୟାଚନ୍ଦ୍ରରେ ଶୋଭିତ ହୋଇଥିବାରୁ 'ବିଚାରନ୍ତି ଏକାଳ କଣ ଏକଦନ୍ତଧାରୀ ଗଣେଶ ମୂର୍ତ୍ତି ?

୪୫—ଯେଣୁ ଗଣେଶ କଳାପ୍ରବୀଣ ( ନୃତ୍ୟଗୀତାଦି କଳାରେ ନିପୁଣ ) ତେଣୁ ରାଗମୟ ( ସ୍ନେହମୟ ଓ ରକ୍ତବର୍ଣ୍ଣ ଶରୀର ) ଏବଂ ସମସ୍ତଙ୍କ ହୃଦୟରେ ରତି (ସ୍ନେହ) ରୂପ ମନ୍ଥକୁ ଉଦୟ କରନ୍ତି । ସନ୍ଧ୍ୟାକାଳ ମଧ୍ୟ କଳାପ୍ରବୀଣା ( କୃଷ୍ଣବର୍ଣ୍ଣରେ ନିପୁଣ ) ରାଗମୟ (ରକ୍ତବର୍ଣ୍ଣ) ହେତୁ ସମସ୍ତଙ୍କ ହୃଦୟରେ ରତିମନ୍ଥକୁ ଉଦୟ କରୁଛି ।

ସୁନୀଳ ପୃଷ୍ଠରେ କର୍ଣ୍ଣ-ବୃଶ୍ଚିକ-ରୁଧିରେ ।
ତାରଳୀ ବର୍ଣ୍ଣାବଳୀକି ଲେଖିଛୁ କମରେ ଯେ ॥ ୪୬

ରଜନୀରେ ଦୃଶ ଦିବସରେ ନ ଦିଶଇ ।
ଏ ଉପଲକ୍ଷଣା ସେ ସଂଶୟ କିଛି ନାହିଁ ଯେ ॥ ୪୭

କୁମାର କୁମାରୀ ଗୃହିଁ ମିତ ମିତଣୀକି ।
ହାସିଲ ହୋଇ ଭାଷିଲେ ଗୋଟିଏ ବାଣୀକି ଯେ ॥ ୪୮

ମାର ତାର ତାତର ସିଦ୍ଧିକି ବିଘ୍ନବଳି ।
ଆମ୍ଭ ବିଦାରଣେ ଚନ୍ଦ୍ର ବରାହ ହୋଇଲା ଯେ ॥ ୪୯

ଏତେ ବୋଲି ହିରଣ୍ୟ ସୋଦର ଅଳଙ୍କାର ।
ଏ ଥିଲେ ମରିବ ବୋଲି ତେଜିଲେ ସତ୍ୱର ଯେ ॥ ୫୦

ସଖା ସଖୀ କହିଲେ ନ ଘେନ ଭୟ ମନ ।
ବିଧି ଦଣ୍ଡବଶେ ନାଶ ଭଜିବ ବଦନ ଯେ ॥ ୫୧

ଗୃହିଁ ତେମନ୍ତ ହୋଇଲା ଠାକୋରଲା ପ୍ରେମ ।
ତମ ଶ୍ୟାମଳ ଘୋଟିଲା ଏ ଦର ଜନମ ଯେ ॥ ୫୨

---

୪୬—ସୁନୀଳ ପୃଷ୍ଠରେ ( ଆକାଶରେ ) କର୍ଣ୍ଣବୃଶ୍ଚିକର ( କାନବିଛାର ) ରକ୍ତରେ, ତାରଳୀ (ତାରକାପନ୍ତି) ରୂପକ ବର୍ଣ୍ଣାବଳୀକି ସନ୍ଧ୍ୟା କମରେ ଲେଖିଛୁ କି ?

୪୭—ରାତ୍ରିରେ ଏପରି ଦୃଶ ( ଦେଖାଯାଏ) ଦିବସରେ ଦିଶେନା, ଏ ଉପଲକ୍ଷଣ ସେଥିରେ କିଛି ସଂଶୟ ନାହିଁ ।

୪୮—କୁମାର କୁମାରୀ ଦୁହେଁ ମିତ ଓ ମିତଣୀକୁ ଗୃହିଁ ପ୍ରୀତ ହୋଇ ଗୋଟିଏ କଥା କହିଲେ ।

୪୯—କାମଦେବ ତାହାଙ୍କର ତାତର (ପିତା, ବିଷ୍ଣୁଙ୍କର) ସିଦ୍ଧିକି ବିଘ୍ନବଳି, ଆମ୍ଭଙ୍କୁ ବିଦାରିବାକୁ ଚନ୍ଦ୍ର ( ଆଶ୍ଚର୍ଯ୍ୟ ) ବରାହ ହୋଇଲା କି ? ବିଷ୍ଣୁ ବରାହ ମୂର୍ତ୍ତି ଧରିଥିଲେ, ସନ୍ଧ୍ୟାକାଳ ଦ୍ୱିତୀୟ ଚନ୍ଦ୍ରରୂପ ଦନ୍ତଧର ବରାହ ପରି ଦିଶିଲା ।

୫୦—ବିଷ୍ଣୁ ବରାହାବତାରେ ହିରଣ୍ୟର ସହୋଦର ହିରଣ୍ୟାକ୍ଷକୁ ମାରିଥିଲେ, ଏ କାମ ବରାହ କାଳେ ଆମ୍ଭଠାରେ ହିରଣ୍ୟ ( ସ୍ୱର୍ଣ୍ଣ ) ଅଳଙ୍କାର ଥିଲେ ଆମ୍ଭଙ୍କୁ ତାହାର ସହୋଦର ବିଚାରି ମାରିବ ଏହା କହି ସ୍ୱର୍ଣ୍ଣାଳଙ୍କାରମାନ ସତ୍ୱର ଫିଙ୍ଗିଦେଲେ ।

୫୧—ସଖା ଓ ସଖୀ ଦୁହେଁ କହିଲେ ମନରେ ଭୟ କରନା ବିଧିଦଣ୍ଡରୁ ଏ ବଦନ (ଚନ୍ଦ୍ରରୂପବନ୍ତ) ଏହିକ୍ଷଣି ନଷ୍ଟ ହୋଇଯିବ ।

୫୨—ଗୃହିଁ ଗୃହିଁ ସେହିପରି ହେଲା ( ଚନ୍ଦ୍ର ଅସ୍ତହେଲେ ) ତମ ( ଅନ୍ଧକାର ) ଘୋଟିବାରୁ ଶ୍ୟାମଳ (କାମ) ଘୋଟି ଆସିଲା କି ? ଏ ଦର ( ଭୟ ) ଜନ୍ମିବାରୁ ପ୍ରେମ ଠାକୁର ଗଲା ।

ଚତୁର ଚତୁରୀ ତର୍କ ଭାବିଲେ କି ହେବ ।
କାମ-ପ୍ରେତ-ଝଡ଼ା ମନ୍ତ୍ର-ଲେଖା କେବା ଦେବ ଯେ ॥ ୫୩
ଭୂବି ରାମପଦ କହେ ଉପଇନ୍ଦ୍ର ଭଞ୍ଜ ।
ଜାଣ ସୁଜନେ ଏମନ୍ତ ମୋହର ଗୀତପୁଞ୍ଜ ହେ ॥ ୫୪

---

## ଷୋଡ଼ଶ ଛାନ୍ଦ

( ଅନୁଚନ୍ଦ୍ରା )

ରାଗ—ଚନ୍ଦ୍ରା କୌଶିକ



ଲା ରାତି ନାଶ ଗଲା ଦିଶି ଦିଶ କି ପ୍ରାଚୀ ନାଗରୀବର ।
ନୀଳଶାଢ଼ୀ ଛାଡ଼ି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର ।
କି ଝଲ । କଞ୍ଜୁ ଉଡ଼ିଯିବା ଇଚ୍ଛୁ ଅଲି ॥
ସେହି ପଦ୍ମିନୀ ସୁରସଶାଳୀ । କାନ୍ତ ଉପରକୁ କି ଡୋଳା ଢାଳି ॥ ୧

---

୫୩—ନାଗର ଓ ନାଗରୀ ଦୁହେଁ ଏପରି ତର୍କଣା କରି ଭାବିଲେ ଯେ କାମରୂପ ପ୍ରେତକୁ ଝାଡ଼ିବା ପାଇଁ ମନ୍ତ୍ର ଲେଖା କିଏ ଆଣି ଦେବ ? ପରସ୍ପର ପ୍ରୀତି ଓ ଲେଖା କାମ ପ୍ରେତଝଡ଼ା ମନ୍ତ୍ର ପରି ।

୫୪—ଉପଇନ୍ଦ୍ର ଭଞ୍ଜ ରାମଚନ୍ଦ୍ରଙ୍କର ପାଦପଦ୍ମ ଚିନ୍ତାକରି କହେ ହେ ସୁଜନମାନେ ମୋହର ଗୀତ ପୁଞ୍ଜକୁ ଏହିପରି ଜାଣ ।

---

୧—ରାତି ପାହିଗଲା ଦିଗମାନେ ଦିଶିଲେ, ପ୍ରାଚୀ (ପୂର୍ବଦିଗ) ନାଗରୀବର କି ? ସେ ନାଗରୀବର, ପୂର୍ବଦିକ୍ ନୀଳଶାଢ଼ୀ ପରି ରାତିକୁ ଛାଡ଼ି ଅରୁଣ ସରାଗେ ( ରଙ୍ଗବର୍ଣ୍ଣ ସ୍ନେହରେ ) ଲୋହିତାମ୍ବର ( ରଙ୍ଗପାଟ ) ପିନ୍ଧିଲା ଆହା କି ଝଲ ( କେଡ଼େଶୋଭା ) ଦିଶିଲା । ଅଲି ( ଭ୍ରମର ) କଞ୍ଜୁ ( ପଦ୍ମରୁ ) ଉଡ଼ି ଯିବାକୁ ଇଚ୍ଛା କରନ୍ତେ ବୋଧ ହେଲା ଯେ ସେହି ପଦ୍ମିନୀସୁରସଶାଳୀ (ରସିକ) କାନ୍ତ (ସୂର୍ଯ୍ୟ) ଉପରକୁ ଭ୍ରମର ରୂପକ ଡୋଳାଢାଳି ରହିଁଲା କି ?

ଭୁଜଙ୍ଗ-ଅଙ୍ଗ-ନଗାଦ୍ରି-ପୁରନ୍ଦର-ନାଦ-ଦର-ପ୍ରଦ ହୋଇ ।
ଭୁଜଙ୍ଗ ବନ୍ଦକୀ ବନ୍ଦସଂଯୋଗକୁ ଚକ୍ରଯୁଗେ ଗଲେ ଥୋଇ ।
ସେ ଧନ୍ୟ । ତାଙ୍କଠାରୁ ଘେନି ଗଲେ ଭିନ୍ନ ।
ବେନି ପ୍ରୀତି କେବେ ନୋହେ ଭିନ୍ନ । ଏହିମତି ପ୍ରତି ରାତିଦିନ ॥
କୁକ୍କୁଟ କୁଟ-ରଟରେ ପଳାୟିତ ଚୋରରୁ ଅଭିସାରିକା ।
ଲଭିଲ ଧନ ଚିହ୍ନ ବର୍ଣ୍ଣ ଲୁଚାଇଁ ନିଶାଦରେ କରି ଦିଙ୍ଗା ।
ସେ ଭଲେ । ତାରା ବାସକସଜ୍ଜା ଫୁଟଲେ ।
ପ୍ରଭାବତୀ ମ୍ଳାନି ଏକାବେଳେ । ଭଲା ଘେନାଘେନି ହୋଇଥିଲେ ॥ ୩
ଗୃହ-କପୋତ ହୁଁ କୁତେ ପତିକୋଳୁଁ ନବୀନସଙ୍ଗମା ଯାଇ ।
ଦେଖଇ କର ଆଦର ଆଦରଶେ ସ୍ନେହ ଲଜ୍ଜା ଉପୁଜାଇଁ ।
ସେ ବାଳୀ । ଦେଖି ଗଣ୍ଡପର ଶୋଭାବଳୀ ।
ଚୁମ୍ବ ଦେବ କି ପୋଛିବ ଭଲି । ଛନ୍ଦଚିତ୍ତ ମିଳିବାକୁ ଆଳୀ ॥ ୪

---

୨—ଭୁଜଙ୍ଗ ଅଙ୍ଗ ( ଶିବଙ୍କର ) ନଗାଦ୍ରି ପୁର ( କୈଳାସପର୍ବତରେ ) ଦରନାଦ ( ଶଙ୍ଖଧ୍ୱନି ) ହୋଇ ଦରପ୍ରଦ ( ଭୟପ୍ରଦ ) ହେଲା । ଭୁଜଙ୍ଗ ( ବାଠ୍-ପୁରୁଷମାନେ ) ଓ ବନ୍ଦକୀ ( ବାଠପୀ ସ୍ତ୍ରୀ ମାନେ ) ବନ୍ଦସଂଯୋଗକୁ ( ମିଳନ ଅବସ୍ଥାକୁ ) ଚକ୍ରଯୁଗେ ( ଚକ୍ରବାକ ଚକ୍ରବାକୀଠାରେ ) ରଖି କଲେ । (ଦିନରେ ଚକ୍ରବାକଯୁଗର ମିଳନ ଓ ରାତିରେ ବିଚ୍ଛେଦ) ତେଣୁ ସେ ଧନ୍ୟ ହେଲେ । ଏ ଦୁହେଁ ତାଙ୍କଠାରୁ ( ଚକ୍ରବାକ ଯୁଗରୁ ) ଭିନ୍ନ (ବିଚ୍ଛେଦ) କୁ ଘେନିଗଲେ । ଦୁହିଙ୍କର ଏପରି ପ୍ରୀତି କେବେ ଭିନ୍ନ ହେଉ ନାହିଁ ପ୍ରତିଦିନ ରାତିରେ ଏପରି ସେ ତାଙ୍କୁ ଦେଇ ତାଙ୍କଠାରୁ ନେଇ ଅଛନ୍ତି ।

୩—କୁକ୍କୁଟମାନଙ୍କର କୁଟ ରଟନରେ ଅଭିସାରିକାମାନେ (ଯେଉଁମାନେ କାନ୍ତ ନିମିତ୍ତ ସଂକେତ ସ୍ଥାନକୁ ଯାନ୍ତି ) ଚୋରପରି ପଳାଇଲେ, ଚୋର ଲଭିଲା ଧନକୁ ଲୁଚାଇଲା ପରି ଏମାନେ କାନ୍ତଠାରୁ ପାଇଥିବା ନଖକ୍ଷତାଦି ଚିହ୍ନ ଓ ବର୍ଣ୍ଣମାନଙ୍କୁ ଲୁଚାଇଲେ ଏବଂ ନିଶାଦରେ ( ଚୌକିଅକୁ ) ଭଲେ (ଉତ୍ତମ ରୂପେ ) ଭୟ କଲେ । ତାରା ଏବଂ ବାସକସଜ୍ଜା ( ଯେଉଁ ସ୍ତ୍ରୀମାନେ ବେଶ ଭୂଷା ହୋଇ ବାସଗୃହ ସଜାଇ କାନ୍ତର ଆଗମନ ଅପେକ୍ଷାରେ ଥାଏ ) ଏ ଦୁହେଁ ଏକାବେଳକେ ( ଏକ ସମୟରେ ) ପ୍ରଭାବତୀ ( ସୁନ୍ଦରୀ ) ହୋଇ ଥିଲେ ଏବଂ ଏକାବେଳେ ମ୍ଳାନିକୁ ଭଜିଲେ । ସନ୍ଧ୍ୟାରେ ପ୍ରଭାବତୀ ଓ ପ୍ରାତଃକାଳରେ ମଳିନା ହେଲେ । ଭଲା ଘେନା ଘେନି ହୋଇଥିଲେ ।

୪— ନବୀନ ସଙ୍ଗମା ସ୍ତ୍ରୀମାନେ ଗୃହପାଳିତ କପୋତମାନଙ୍କର ହୁଂକାର ରବ ଶୁଣି ପତିକୋଳରୁ ଯାଇ ଆଦରଶେ ( ଦର୍ପଣରେ ) ଆଦର କରି ସ୍ନେହ ଓ ଲଜ୍ଜା ଉପୁଜାଇ ନିଜମୁଖ ଦେଖନ୍ତି । ସେ କାଳ ନିଜଗଣ୍ଡରେ ଶୋଭା-

ହାର ଶୀତଳରୁ ବିପ୍ରଲବ୍‌ଧା ଭ୍ରାନ୍ତ ଯାତକ କୃପଣଦ୍ୱାରୁ ।
କାରଣ ପାଇଁ ନିଃଶ୍ୱାସକୁ ପକାଇ ବାହୁଡ଼ିଲା ସଙ୍କେତରୁ ।
ସେ ତହିଁ । ସଙ୍ଗେ ପରୁଷ ବଚନ କହି ।
ଅଷ୍ଟମଙ୍ଗଳା ବର ମୋ ସେହି । ମୋତେ କି କଲା ଆଶା ଦେଖାଇ ॥ ୫
ମନ୍ଦ-ଶବଦେ ସ୍ତ୍ରବଧେ ମନ୍ଦେ ମନ୍ଦେ ସ୍ଥାନକୁ ବଧୂ ବାହାର ।
ପିଣ୍ଡାରେ ଥିଲା ପଥିକ ଭାବେ ମଳି ହେବାରୁ ହୃଦ ତାହାର ।
ମୁଁ ମଲି । କେଉଁ ବୁଦ୍ଧିରେ ବିଦେଶ କଲି ।
ପ୍ରିୟା ଏ ଛବିକି ନ ଦେଖିଲି । ତାକୁ ମନମଥ ଶରେ ଦେଲି ॥ ୬
ଏସନ ସମୟେ ପ୍ରସନ୍ନବଦନା ମହାମହୀନ୍ଦ୍ର ନନ୍ଦନୀ ।
ଯାଇ ଅଭିରାମେ ଅଗ୍ରମେ କହଇ ବସାଇ ସଜନୀ ତିନି ।
ରେ ଅଳି । କେଉଁ ଯୋଗ ହୋଇଥିଲା କାଲି ।
ମୁଁ ଯେ କି ଶୋଭା ଦର୍ଶନ କଲି । ଏହି ଦେହରେ କୃତାର୍ଥ ହେଲି ॥ ୭

---

ବଳୀ ( ତାମ୍ବୁଳବୋଳ ଦନ୍ତ କ୍ଷତାଦି ) ଦେଖି ପ୍ରତିବିମ୍ବରେ ଚୁମ୍ବ ଦେବାକୁ ଗଣ୍ଡରୁ ପୋଛି ପକାଇବ ଏହା ଭଲ ଅଳୀ ( ସଖୀ ) ମିଳିବାକୁ ( ପହଞ୍ଚିବାକୁ ) ଭାବ ଛଳନ ଚଉ ହେଲା ।

୫—ହାର ଶୀତଳ ହେବାରୁ ( ପ୍ରଭାତରେ ହାର ସ୍ଥିତ ମଣିମାନଙ୍କର ତେଜ କମି ଯିବାରୁ ) ବିପ୍ରଲବ୍‌ଧା ( ଯେଉଁ ନାୟିକା ସଂକେତ ସ୍ଥାନରେ ନାୟକଙ୍କୁ ନପାଇ ହତାଶ ହୁଏ ) କୃପଣଦ୍ୱାରୁ ଯାଚକ ଫେରିଲାପରି ନିରାଶହୋଇ ଦୀର୍ଘନିଃଶ୍ୱାସ ପକାଇ ଭୟରେ ସଙ୍କେତ ସ୍ଥାନରୁ ବାହୁଡ଼ିଲା । ସେ ସେଠାରେ ସଙ୍ଗେ ( ସଖୀରେ ) ପରୁଷ (କର୍କଶ) ବାକ୍ୟ କହିଲା—ଆଜଠାରୁ ସେ ମୋର ଅଷ୍ଟମଙ୍ଗଳାବର (ଅଷ୍ଟମଙ୍ଗଳାରେ କନ୍ୟା ବର ମୁଖ ଚାହେଁ ନାହିଁ ), ମୁଁ ସେହିପରି ତା ମୁହଁ ଚାହିଁବି ନାହିଁ ସେ ମୋତେ ଆଶାଦେଖାଇ କି କଲାଟି ?

୬—ମନ୍ଦ (କାକ) ଶବ୍ଦ ଶୁଣି ସ୍ତ୍ରବ୍‌ଧେ (ରାତ୍ରି ପାହିଯିବା ଭୟରେ) ବଧୂ (ନୂତନା ସ୍ତ୍ରୀ) ସ୍ଥାନକୁ ମନ୍ଦେ ମନ୍ଦେ ବାହାରିଲେ । ପିଣ୍ଡାରେ ଯେଉଁ ପଥିକ ରାତିରେ ଥିଲା ତାହାର ହୃଦୟ ଏହା ଦେଖି ମଳି ହୋଇ ଯିବାରୁ ସେ ଭାବିଲା-ମୁଁ ମଲି କେଉଁ ବୁଦ୍ଧିରେ ବିଦେଶ କଲି ପ୍ରିୟାର ଏ ଛବିକି ଯାହା ନ ଦେଖିଲି, ତାକୁ ( ପ୍ରିୟାକୁ ) ମନମଥ ( କାମ ) ଶରେ ଦେଲି ।

୭—ଏ ସମୟରେ ( ପ୍ରଭାତରେ ) ପ୍ରସନ୍ନମୁଖୀ ମହାମହେନ୍ଦ୍ର ନନ୍ଦନୀ ( ରାଜାଧିରାଜକେମା ) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ତିନି ସଖୀଙ୍କୁ ବସାଇ କହଇ—ରେ ଅଳି । କାଲି ମୋର କେଉଁ ସୁଯୋଗ ହୋଇ ଥିଲା, ମୁଁ କି ଶୋଭା ଦର୍ଶନ କଲିଟି ଏହି ଦେହରେ କୃତାର୍ଥ ହୋଇଗଲି ।

କନକପର୍ବତ ଉପରେ ମର୍କତ-ଶୃଙ୍ଗ ପ୍ରାୟେ ଦିବ୍ୟ ଜୁଡ଼ା ।
ସୁମନାବଳୀ ବେଷ୍ଟିତ ରମ୍ଭା-ଉରୁ-ଶୋଭନୀ ବିବେକ ଗୁଡ଼ା ।
ରେ ସହି ! ମଧ୍ୟେ ନୀଳଚେଲ ଘନ ରହି
ଧାରା ପରା ଅଗ କୁଞ୍ଚା ଶୋହି । ଚିତ୍ତ-ଚାତକ ହୋଇଲା ସ୍ନେହୀ ॥ ୮
ରଞ୍ଜିତ ସମ ସୁଅଳକ ବେଢ଼ରେ ଶ୍ରୀମୁଖ ଶୋଭା ବିଧିରେ ।
ମଝୁଁ କଳଙ୍କ ପୋଛି ବିଧି ପରିଧି କରିଛି କଳାନିଧିରେ ।
ରେ ସଖି ! ମତ୍ତ ଚକୋର ମୋ ହର ଆଖି ।
ହାସ ସୁଧାପାନେ ହେଲା ସୁଖୀ । ଏଡ଼େ ବିଚିତ୍ର ନ ଥିଲା ଦେଖି ॥ ୯
ଶ୍ରବଣଯୁଗଳେ ହୀରକକୁଣ୍ଡଳ ଶିରଚୂଳନରେ ଚଳି ।
କଉତୁକେ ବାଦ ରଚନା କରି କି ଗୁରୁ ଶୁକ୍ର ଖେଳେ ଦୋଳି ।
ରେ ମିତ ! କିସେ ମୋ ରାଶି ଉଚ୍ଚେ ଉଦିତ ।
କଲା ଭଲଦଶା ଉପସ୍ଥିତ । ଅଛି ମଙ୍ଗଳ ଘାତରେ ଖ୍ୟାତ ॥ ୧୦

---

୮—କନକପର୍ବତ (ମେରୁ) ରୂପରେ ମର୍କତଶୃଙ୍ଗ ପରି ସେ ସୁନ୍ଦର ଦେହରେ ଦିବ୍ୟ ଜୁଡ଼ା ଶୋଭା ପାଉଥିଲା ଯେପରି ମେରୁଶୃଙ୍ଗ ରମ୍ଭା ଉରୁ (ଉର୍ବଶୀ) ପ୍ରଭୃତି ଶୋଭନୀ (ସୁନ୍ଦରୀ ଅପ୍‌ସରା) ମାନଙ୍କର ବିବେକକୁ ଭୁଲାଉଥିବା ସୁମନାବଳୀ (ଦେବତା ମାନଙ୍କରେ) ବେଷ୍ଟିତ ସେହିପରି ଏ ଜୁଡ଼ା ସୁମନାବଳୀ (ପୁଷ୍ପସମୂହରେ) ବେଷ୍ଟିତ ହୋଇ ରମ୍ଭା (କଦଳୀ ବୃକ୍ଷ) ସଦୃଶ ଉରୁରେ ଶୋଭନୀ ସୁନ୍ଦରୀମାନଙ୍କର ବିବେକକୁ ଭୁଲାଉଛି । ରେ ସଖି, ମେରୁପର୍ବତ ମଧ୍ୟଭାଗରେ ମେଘ ରହିଲାପରି ଏହାଙ୍କର ମଧ୍ୟରେ (କଟିରେ) ନୀଳ ଚେଲ (ବସ୍ତ୍ର) ରହିଅଛି । ମେଘରୁ ଜଳଧାରା ଗଳିଲାପରି ଆଗରେ ପଡ଼ିଥିବା ଲୁଗା କୁଞ୍ଚ ଶୋଭା ପାଉଥିଲା । ଚାତକ ମେଘ ଜଳରେ ସ୍ନେହୀ, ମୋର ଚିତ୍ତରୂପ ଚାତକ ତହିଁରେ ସ୍ନେହୀ ହେଲା ।
୯—ରଞ୍ଜିତ ଓ ସମାନ ସୁଅଳକ (କୁଞ୍ଚିତ କ୍ଷୁଦ୍ରକେଶ) ବେଢ଼ରେ ବିଧିପୂର୍ବକ ଶ୍ରୀମୁଖ ଶୋଭା ହୋଇଛି । ବୋଧହୁଏ ବିଧାତା ଚନ୍ଦ୍ରଙ୍କମଧ୍ୟରୁ କଳଙ୍କକୁ ପୋଛି ନେଇ ସେହି କଳଙ୍କରେ ପରିଧି କରିଛି (ଚନ୍ଦ୍ରଙ୍କ ଚାରି ପାଖରେ ବେଢ଼ା ଭୁଲାଇଛି)। ରେ ସଖି ! ମୋହର ଆଖି ମତ୍ତ ଚକୋରପକ୍ଷୀ ସଦୃଶ ହୋଇ ସେହି ଶ୍ରୀମୁଖଚନ୍ଦ୍ରର ହାସ ରୂପ ସୁଧାପାନ କରି ସୁଖୀହେଲା । ଏଡ଼େ ବିଚିତ୍ର କେବେ ଦେଖି ନ ଥିଲା ।
୧୦—କର୍ଣ୍ଣଦ୍ୱୟରେ ହୀରାନିର୍ମିତ କୁଣ୍ଡଳ ଶିରଚୂଳନରେ ଚଳି ଏପରି ଶୋଭା ପାଇଲା ଯେ ଗୁରୁ ଶୁକ୍ର ଦୁହେଁ କୌତୁକରେ ବାଦରଚନା କରି ଦୋଳି ଖେଳନ୍ତି କି ?। ରେ ମିତ, ସେ ଗୁରୁ ଓ କବି ଦୁହେଁ କଣ ମୋର ଉଚ୍ଚ ରାଶିରେ ଉଦିତ ହୋଇ ଭଲଦଶା ଉପସ୍ଥିତ କଲେ ? କିନ୍ତୁ ମଙ୍ଗଳା ଥିବାରୁ କିଛିତ୍ ବାଧା ଘଟିଲା ।

ଉଚ୍ଚ ଘ୍ରାଣ ବ୍ୟାଜେ ଚଞ୍ଚୁ କୁ ଠେକି କି ସ୍ୱରୂପ ରମ୍ୟକଦ୍ୱୀପ ।
ରାମ ନାଗପାଶ ତ୍ରାସ ନାଶ ଲଗ୍ନେ ବାନ୍ଧିଅଛି ଖଗାଧିପ ।
ରେ ସଖି । ଲୋକେ ମୁଁ ପୁଣି ରାମା ବୋଲାଇ ।
ମୋତେ ଘୋଟିଛି ବିରହ ଅହି । ବାଞ୍ଛା କଲେ ନ କରିବ ତ୍ରାହି ॥ ୧୧
କପାଳ ଭୁରୁ ନେତ୍ର ଯେନି ସେ ତନୁବନ୍ତ କାମ ନୁହେଁ ଛଦ୍ମ ।
ଶମ୍ପାକ ଧନୁରେ ସଙ୍ଗ ଭୃଙ୍ଗ ଗୁଣ ବାଣ ନୀଳାବ୍ଜ କି ପଦ୍ମ ।
ରେ ସଖି । ଅନଠାକୁ ନ ବିନ୍ଧିଲା ଯୋଖି ।
ହୃଦ ଲଖି କଲା କିସ ଦେଖି । ସଖୀ ବୋଲେ ଶମ୍ଭୁ ଅଛୁ ରଖି ॥ ୧୨
ବନ୍ଧୁ ପଞ୍ଚଲା ପ୍ରାୟେ ରଙ୍ଗ ଅଧର କି ଚିତ୍ର ମନ୍ଦାରଫୁଲ ।
ଗର୍ଭେ ଖଞ୍ଜିଛି କେଉଁ ଧାତା ରଦନ ବ୍ୟାଜେ କୁନ୍ଦକଢ଼ିମାଳ ।
ରେ ମିତ । ସଦା ସ୍ଫୁଟ ଅସ୍ଫୁଟ ଅଦ୍ଭୁତ ।
ନ ପାଇଲେ ତହୁଁ ମଧୁ ସତ । ଉଡ଼ି ଯିବ ପ୍ରାଣ-ମଧୁବ୍ରତ ॥ ୧୩

---

୧୧—ସେ ସୁନ୍ଦରଙ୍କର ସ୍ୱରୂପ ରମ୍ୟକଦ୍ୱୀପ ସଦୃଶ, ସେ ରମ୍ୟକଦ୍ୱୀପରେ ଖଗାଧିପ ( ଗରୁଡ଼ ) ଉଚ୍ଚ ଘ୍ରାଣ ( ନାସା ) ବ୍ୟାଜରେ ଚଞ୍ଚୁକୁ ଠେକିଛି କି ? ସେ ଗରୁଡ଼ ଶ୍ରୀରାମଙ୍କର ନାଗପାଶ ତ୍ରାସ ( ଭୟ ) ନାଶ କରିବା ଲଗ୍ନେ ( ସମୟରେ ) ବାନ୍ଧିଅଛି । ରେ ସଖି । ମୁଁ ପୁଣି ଜଗତରେ ରାମା ବୋଲାଏ, ମୋତେ ବିରହ ଅହି ( ସର୍ପ ) ଘୋଟିଛି; ବାଞ୍ଛାକଲେ ତ୍ରାହି କରିବନାହିଁ କି ?

୧୨—ସେ, ସୁନ୍ଦର କପାଳ ( ଲଲାଟପଟ ) ଭୁରୁ ଏବଂ ନେତ୍ର ଏମାନଙ୍କ ଯୋଗ୍ୟ ଦେହଧାରୀ କନ୍ଦର୍ପପରି ଶୋଭା ପାଉଅଛନ୍ତି, ଏହା ଛଦ୍ମ ( ମିଥ୍ୟାକଥା ) ନୁହେଁ । କାରଣ କପାଳରୂପ ଶମ୍ପାକ ( ସୁନାରିଫୁଲ ) ଧନୁରେ ଭ୍ରୂଲତା ରୂପ ଭୃଙ୍ଗଗୁଣ ସଙ୍ଗକରି ନୟନରୂପ ନୀଳାବ୍ଜ ( ନୀଳପଦ୍ମ )କୁ ପଦ୍ମବାଣ ରୂପେ ଯୋଖି ରଖିଛି କି ? ରେ ସଖି । ସେ ଶର ଯୋଖି ଅନ୍ୟଠାକୁ ବିନ୍ଧିଲା ନାହିଁ, କିସ ଦେଖି ମୋ ହୃଦକୁ ଲଖି କରି ବିନ୍ଧିଲା ? ସଖି କହିଲା, ତୁ ପରି କାମଶତ୍ରୁ କୁଟିଳରୂପକ ଶମ୍ଭୁଙ୍କ ହୃଦୟରେ ରଖିଛୁ ।

୧୩—ରଙ୍ଗ ବନ୍ଧୁ ପଞ୍ଚଲା ପରି ଅଧର କି ଚିତ୍ରିତ ହୋଇଛନ୍ତି ? କେଉଁ ବିଧାତା ମନ୍ଦାର ଫୁଲ ଗର୍ଭରେ ଦନ୍ତ ଛଳରେ କୁନ୍ଦକଢ଼ି ମାଳକରି ଖଞ୍ଜିଛି । ରେ ମିତ । ଅଧରରୂପ ମନ୍ଦାରଫୁଲ ସବୁବେଳେ ସ୍ଫୁଟ ହୋଇଛି ( ଫୁଟିଅଛି ) । କିନ୍ତୁ ଦନ୍ତରୂପ କୁନ୍ଦକଢ଼ି ସବୁବେଳେ ଅସ୍ଫୁଟ ଏହା ଅଦ୍ଭୁତ କଥା ତହିଁ ମଧୁ ନ ପାଇଲେ ସତ ( ନିଶ୍ଚୟ ) ମୋ ପ୍ରାଣରୂପ ମଧୁବ୍ରତ ( ଭ୍ରମର ) ପିଣ୍ଡରୁ ଉଡ଼ିଯିବ ।

ବିସ୍ତାର ଉର କି ଦ୍ୱିପୁଟ କପାଟ ରମା-ଶତ-ବନ୍ଦୀ-ଦୁର୍ଗ ।
ବୟସୀ ଭାଷି ମନସି ଅସିଥିଲି ତୋ ସ୍ତନ ସଂପୁଟ ଯୋଗ ।
ରେ ବାଳା । ଅଛୁ ପ୍ରବାଳ ବଉଳମାଳା ।
ଦେଇ ଗଲି ପଦଙ୍କ ପିତୁଳା । ଶୁଣି ହସିଲି ଆନ କହିଲି ॥ ୧୪
ଏ କଥା ମିଥ୍ୟା ନୁହଇ ମନୋହର ସୁବର୍ଣ୍ଣଶିକୁଳୀ ଯୋଗେ ।
ଶରଭାକାର ଯୌବନ-କରୀ କର ଦେଖାଇଛୁ ଦୁଇଦଗେ ।
ରେ ଅଳି । କେହି ବୋଲେ ସେ କଥାକୁ ଛଳି ।
ମୁଖପଦ୍ମ ତୋ ଧରବ ତୋଳି । ନମ୍ରମୁଖେ କହେ ଗୁଣଶଳୀ ॥ ୧୫
ବକ୍ଷ ତଳରୁ ଉଦରଶେଷଯାଏ ପ୍ରଣବବାଦ୍ୟ ସଦୃଶେ ।
ବଢ଼ିବା କାଳେ ଧାତା ଦୃଢ଼େ ଧରନ୍ତେ ସେ ଭଡ଼େ ମଧ୍ୟ କି ବେକେ
ରେ ସଖି । ସ୍ଫିତ ପୃଥୁଳ ସେ ଘେନି ହୋଇ ।
ନାଭିଛଳେ କୁଶମୁଦ୍ରା ଥୋଇ । ହସ୍ତେ ଧରିବାର ସାକ୍ଷୀ ଦୁଇ । ୧୬

---

୧୪—ତାହାଙ୍କର ବିସ୍ତାର ( ପ୍ରଶସ୍ତ ) ଉର ( ବକ୍ଷସ୍ଥଳ ) ରମଣୀମାନଙ୍କ ଶତ ବନ୍ଦୀ ହୋଇଥିବା ଦୁର୍ଗର ( କରୀ ବାସର ) ଦ୍ୱିପୁଟକପାଟ ( ଯାଉଁଳି କବାଟ ) କି ? ସଖୀ କହିଲା ସେ ଯାଉଁଳି କବାଟ ସଦୃଶ ବକ୍ଷଃସ୍ଥଳ ତୋ ସ୍ତନରୂପ ସମ୍ପୁଟ (ଫରୁଆ)ର ଯୋଗକୁ ମନାସ କରି ଆସିଥିଲା । କବାଟରେ ବଉଳମାଳା ଥିଲାପରି ବକ୍ଷଃସ୍ଥଳରେ ପ୍ରବାଳ ( ପୋହଳା ) ମାଳ ଅଛି, ପିତୁଳା-ସଦୃଶ ପଦଙ୍କୁ ତୋତେ ଦେଇ ଗଲା, ଏହା ଶୁଣି ସୁନ୍ଦରୀ ହସିଲା ଏବଂ ଆନକଥା କହିଲା । କବାଟରେ ଫରୁଆ ବଉଳମାଳା ଓ ପିତୁଳା ଥାଏ ।

୧୫—ମନୋହର ସୁବର୍ଣ୍ଣ ଶିକୁଳୀ ଯୋଗୁଁ ଶରଭ ( ଦୋମୁହାଁ ପଶୁ ) ଆକାର ( ସଦୃଶ ) ଯୌବନରୂପ କରୀ ( ହସ୍ତୀ ) ଦୁଇ ଦଗରେ କର ( ଦୁଇ ଶୁଣ୍ଢ ) ଦେଖାଇଛି, କେହି ଏ କଥାକୁ ଛଳି କହିଲା, ସେ ଯେବେ ହସ୍ତୀ, ତେବେ ତୋ ମୁଖପଦ୍ମକୁ କରରେ ତୋଳି ଧରିବ, ଏ କଥା ଶୁଣି ଗୁଣବତୀ ସୁନ୍ଦରୀ ନମ୍ରମୁଖରେ କହିଲା ।

୧୬—ବକ୍ଷ ତଳରୁ ଉଦର ଶେଷ ପର୍ଯ୍ୟନ୍ତ ପ୍ରଣବ ବାଦ୍ୟ ( କ୍ଷୁଦ୍ର ଢକ୍କା ) ପ୍ରାପ୍ତ ହୋଇଛି । ବିଧାତା ଗଢ଼ିବାବେଳେ ଦୃଢ଼ରୂପେ ଧରନ୍ତେ ସେ ଭଡ଼େ ମଧ୍ୟ ( କଟି ) ରେକେ ( ବେକାଏ ) ହୋଇଛି କି ? ସେ ଘେନି ସ୍ଫୀତ ( ନିତମ୍ବ ) ପୃଥୁଳ ହୋଇଛି । ବିଧାତା ନାଭି ଛଳରେ ନିଜହସ୍ତରେ ଥିବା କୁଶମୁଦ୍ରା ଥୋଇଛି । ତେବେ ଏ ଦୁଇକଥା ହାତରେ ଧରି ଥିବାର ସାକ୍ଷୀହେଲା ।

ଜଙ୍ଘ ଜାନୁ ଊରୁ କି ରୁଚିରୁ ଅର୍ଗଳ-ସ୍ତମ୍ଭ ଆରମ୍ଭକୁ ପାଇ ।
କୁରଙ୍ଗନୟନା ମନ-ସାରଙ୍ଗକୁ ବାନ୍ଧି ପକାଇଛି ନେଇ ।
ରେ ନାରୀ । ଆଉ ପାଦକୁ କି ଦେବା ସରି ।
ଯାହା ପ୍ରଚଳିତ ଗୃହିଁ କରି । ହସ୍ତ ଠେକି ଓଳଗଇ କରୀ ॥ ୧୭

ଭଣ୍ଡ ଶଙ୍ଖ-ଜିତ ମନ୍ଦର- ତାଡ଼ନ ବରାହବର ଅଭୀତ ।
ସେ ନର-କେଶରୀ ବଳୀ ଧ୍ୱଂସୀ ତେଜେ ସହସ୍ରକର ବିଜିତ ।
ରେ ସହି । ମୂର୍ତ୍ତି ରାମ ବଳ ଖ୍ୟାତ ମହୀ ।
ବୁଧ ଗୁଣେ ଚନ୍ଦ୍ରହାସେ ଶୋହି । ବିଷ୍ଣୁ ଦଶରୂପ ଏକେ ବହି ॥ ୧୮

---

୧୭—ଜଙ୍ଘ ( ଆଣ୍ଠୁର ତଳଭାଗ ) ଜାନୁ ( ଆଣ୍ଠୁ ) ଊରୁ ( ଆଣ୍ଠୁ ଉପର ଭାଗ ) ଅର୍ଗଳ ସ୍ତମ୍ଭ ଆରମ୍ଭ ( ଆଡ଼ମ୍ବର ) କୁ ପାଇ କି ରୁଚିରୁ ( ମନୋହର ) ହୋଇଛି, ତହିଁରେ କୁରଙ୍ଗ ନୟନା ସ୍ତ୍ରୀମାନଙ୍କର ମନରୂପ ସାରଙ୍ଗ ( ମୃଗ ) କୁ ନେଇ ବାନ୍ଧି ପକାଇଛି । କରୀ ( ହସ୍ତୀ ) ଯାହାଙ୍କର ପ୍ରଚଳିତ ( ଗତି ) କୁ ଗୃହିଁକରି ( ନିଜଗତି ତାହା ସହିତ ସମାନ ନ ହେବାରୁ ) ହସ୍ତ ଠେକି ଓଳଗଇ ।

୧୮—ଏ ସୁନ୍ଦରୀ ଏକେ ( ଏକାବେଳେକେ ) ବିଷ୍ଣୁଙ୍କର ଦଶ ଅବତାରକୁ ବହି ଅଛନ୍ତି ।—ବିଷ୍ଣୁ ମୀନାବତାରରେ ଶଙ୍ଖାସୁରକୁ ଜିଣିଥିଲେ, ଏହାଙ୍କର କଣ୍ଠ ଶଙ୍ଖକୁ ଜିଣିଅଛି । ବିଷ୍ଣୁ କଚ୍ଛପାବତାରରେ ମନ୍ଦରାଦ୍ରିକୁ ପିଠିରେ ଧରିବାରୁ ତାହାଦ୍ୱାରା ତାଡ଼ନ ପାଇଥିଲେ ଏ ମନ୍ଦର ( କୁଞ୍ଚିଲୋକର ) ତାଡ଼ନକାରୀ । ସେ ଅଭୀତ ବରାହବର ( ନିର୍ଭୀକ ବରାହ ଶ୍ରେଷ୍ଠ ) ଏ ବର (ଶ୍ରେଷ୍ଠ) ଆହବର ( ଯୁଦ୍ଧର ) ଅଭୀତ ( ନିର୍ଭୀକ ) ସେ ନର କେଶରୀ ( ନୃସିଂହ ରୂପ ) ଧରି ଥିଲେ ଏ ନରକେଶରୀ ( ମନୁଷ୍ୟ ଶ୍ରେଷ୍ଠ ) ସେ ବଳୀଧ୍ୱଂସୀ ( ବାମନାବତାରରେ ବଳୀର ଗର୍ବ ଖର୍ବ କରିଥିଲେ ) ଏ ( ବଳିଷ୍ଠ ମାନଙ୍କର ଦର୍ପହାରୀ ) ସେ ତେଜେ ( ବୀର ତେଜରେ ) ସହସ୍ର କର ( ସହସ୍ର ହସ୍ତ ସହସ୍ରାର୍ଜୁନଙ୍କୁ ପର୍ଶୁରାମାବତାରରେ ଜିଣିଥିଲେ ) ଏ ତେଜରେ ସୂର୍ଯ୍ୟଙ୍କୁ ଜିଣିଅଛନ୍ତି । ସେ ରାମମୂର୍ତ୍ତି ଧରିଥିଲେ ଏ ରାମ ( ରମଣୀୟ ) ମୂର୍ତ୍ତି ଧରିଅଛନ୍ତି । ସେ ବଳରାମାବତାରରେ ମହୀରେ ( ପୃଥିବୀରେ ) ବଳଖ୍ୟାତ କରିଥିଲେ, ଏ ଜଗତରେ ବଳ ପ୍ରକାଶ କରି ଅଛନ୍ତି, ସେ ବୁଦ୍ଧାବତାର ଧରିଥିଲେ ଏ ଗୁଣରେ ବୁଧ (ପଣ୍ଡିତ) ଅଟନ୍ତି । ସେ କଳ୍କୀଅବତାରରେ ଚନ୍ଦ୍ରହାସେ (ଖଡ୍‌ଗରେ) ଶୋଭିତ ହୋଇଥିଲେ । ଏ ଚନ୍ଦ୍ରହାସେ ( ଚନ୍ଦ୍ର ତୁଲ୍ୟ ହାସରେ ବା ଖଡ୍‌ଗରେ ) ଶୋଭିତ ଅଟନ୍ତି ।

ସଜନୀ କହଇଲା ତୁ ସକଳ ବଧୂ ମୋହନରେ ଏକମୂର୍ତ୍ତି ।
ଶ୍ରୀଅଙ୍ଗ ସୁବାସେ ଗନ୍ଧବତୀ ଭାଷେ ରଞ୍ଜିଲା ହୋଇଛୁ କାନ୍ତି ।
ରେ ଶ୍ୟାମା ! ସୀତା ମାଧୁର୍ଯ୍ୟ ଗିରେ ସୁଷମା ।
ତୁରେ ବତିଶ-ଲକ୍ଷଣ-ସୀମା । କାମପରଶୁ ତୋ ଭୁରୁ ଉପମା ॥ ୧୯
ହୋଇଛୁ ଏ ହେତୁ ସେ ତୁ କାନ୍ତ କାନ୍ତା ହୋଇ ନେବ ଦବା ଲାଗି ।
ଶୁଣି ପୁଲକିତ କି ତନୁ-ଲତାରେ କଳିକା-ଅଙ୍କୁର ଦଶି ।
ସେ ବାମା । ସହଜେତ ଅନୁରାଗ ଧାମା ।
ହେଲା ଗଦ୍‌ଗଦବାଣୀ ଜନମା । ପୁଣି ହୋଇଲା ଚିତ୍ତ ବିଭ୍ରମା ॥ ୨୦
ଦୃଷ୍ଟିକୃତ କୁସୁମିତ କୁତମାଳେ କପୋତ ରୁତକୁ କରି ।
କୃଶୋଦରୀ ଦରୀଭୂତ ହୋଇ ଭାଷେ ଏତ କାମ-ପ୍ରତିହାରୀ ।
ରେ ମିତ ! ଦୁର୍ବା-କାନ୍ତି ଅଙ୍ଗ ଅଙ୍ଗୀକୃତ ।
ମହାରଜତ ଲଗୁଡ଼ ଧୃତ । ଉଚ୍ଚଡାକରେ ହୋଇଛୁ ରତ । ୨୧

---

୧୯—ସଖୀ କହୁଅଛି ତୁ ସକଳ ବଧୂ ( କୃଷ୍ଣଙ୍କ ( ମୋହନରେ ଏକ ମୂର୍ତ୍ତି ଅଟୁ । ଭାଷେ ( ଜଗତରେ କହନ୍ତି ) ତୁ ଶ୍ରୀଅଙ୍ଗ ସୁବାସରେ ଗନ୍ଧବତୀ ( ବାସନା-ଯୁକ୍ତା, ସୁତରାଂ ପୃଥ୍ୱୀ ) ତୋହର ଦେହ କାନ୍ତି ବାହ୍ୟତତ୍ପର ହୋଇଥିବାରୁ ସେ ରଞ୍ଜିଲା ( ଲକ୍ଷ୍ମୀ ) ରେ ଶ୍ୟାମା ତୋହର ମଧୁର ଗିରେ ( ବାଣୀରେ ) ସିତା ( ଶର୍କରା ) ରେ ସୁଷମା ( ତୁଳନା ) ଅଛି ତେଣୁ ତୁ ସୀତା, ରେ ସଖୀ ତୁ ବତିଶ ଲକ୍ଷଣର ସୀମା ( ତୋପରି ବତିଶ ଲକ୍ଷଣ ଯୁକ୍ତା ) ନାରୀ ନାହିଁ, ସୁତରାଂ ତୁ ସୁଲକ୍ଷଣ ସୀମା ରେ କାମପରଶୁ ( କନ୍ଦର୍ପର ପରଶୁ ) ତୋ ଭୁରୁର ତୁଳନା ହୋଇଥିବାରୁ ତୁ କାମପରଶୁ ( ରୁକ୍ମିଣୀ ) ।

୨୦—ଏ ହେତୁ ସେ ଓ ତୁ କୁହେଁ କାନ୍ତ ଓ କାନ୍ତାହୋଇ ଦବା ଲାଗି ନେବ । ଏହା ଶୁଣି ସୁନ୍ଦରୀ ପୁଲକିତା ହେଲା ତନୁ ( ଦେହ ) ଲତାରେ ରୋମାଙ୍କୁରି ଯାଇ କଳିକା ଅଙ୍କୁର ( ପ୍ରଥମ ଜାତ କଢ଼ି) ଜାତହେଲା ପରି ଦଶିଲା । ସେ ବାମା (ସ୍ତ୍ରୀ) ସହଜେ ଅନୁରାଗ ଧାମା ( ସ୍ନେହର ଆଧାର ) ଅତଏବ (ପୁଲକିତା ହେବାରୁ) ଗଦ୍‌ଗଦବାଣୀ ଜନ୍ମହେଲା, ପୁଣି ଚିତ୍ତରେ ବିଭ୍ରମା (ଉନ୍ମାଦନା ) ହେଲା ।

୨୧— ଏହିସମୟରେ କୁସୁମିତ (ପୁଷ୍ପିତ) କୁଡମାଳ (ସୁନାରୀ) ବୃକ୍ଷରେ କପୋତ ରୁତ (ଧ୍ୱନି) କରିବାରୁ କୃଶୋଦରୀ ସେ ବୃକ୍ଷପ୍ରତି ଦୃଷ୍ଟିକୃତ ( ଦୃଷ୍ଟି କରି ) ଦରୀଭୂତ (ଭୟଯୁକ୍ତ) ହୋଇ ଭାଷଇ-ରେ ମିତ ! ଏତ କାମର ପ୍ରତିହାରୀ ( ପ୍ରହରୀ ) ଦୁର୍ବା ( ଦୁବ ) ତୁଲ୍ୟ ଶ୍ୟାମଳ କାନ୍ତିକି ଅଙ୍ଗୀକାର କରିଛି, ମହାରଜତ (ସୁବର୍ଣ୍ଣ) ନିର୍ମିତ ଲଗୁଡ଼ ( ଯଷ୍ଟି ) ଧରିଛି, ଉଚ୍ଚଡାକରେ ରତ ହୋଇଛି । ସୁବର୍ଣ୍ଣ ଯଷ୍ଟିପରି ସୁନାରୀ ଫୁଲପେଣ୍ଡା ।

ଯେଣୁ ଅନଙ୍ଗ ସେ ତେଣୁ ଦିଶୁ ନାହିଁ ଚୂତ ନାଆଳୀ ତା ବାଣ
ଗୁପ୍ତ ହେଲେ ଚ୍ୟୁତ ଅବଳୀ ହେଜ ମୁଁ ଅଜ କା ରହିବ ପ୍ରାଣ ।
ରେ ଅଳି ! ତନୁ କୋମଳେ ଶିରୀଷ ତୁଳି ।
ଯିବ ଈଷତ ମାନଙ୍କେ ଗଳି । ଜହ କେହ ହୋଇବ ସମ୍ଭାଳି ॥ ୨୨

ଏ ସମୟେ ଅଙ୍ଗେ ସୁମନ ପଡନେ ଚମକି ଭାବିଲି ମଲି ।
ପୁଷ୍ପିତ କିଂଶୁକପନ୍ତି ବିଲୋକିତ ମିଳିତ ମିଳିନ୍ଦ ମାଳୀ ।
ସେ ଭାଳି । ଏତ ସଧୂମ ଅନଳ ଜଳି ।
ଦେଲ ମୋ କେଳିବନ କେ ଜାଳି । ଅଜ କାହିଁ ମୁଁ କରିବ କେଳି ॥ ୨୩

ଅକୂଳେ ଗୁଳୁ କୁକୁଳ ଝାଡ଼ିଦେଲି ବାତେ ସେ ରେଣୁ ପଡନେ ।
ସ୍ଫୁଲିଙ୍ଗେ ସ୍ଫୋଟକ ହେଲା ପରି ଘେନ ପୁଣି ଅନାଇଲି ଘନେ ।
ସେ ବାଳା । ଘେନି ତମାଳକୁ ମେଘମାଳା ।
ପିକରଡ଼ି ଘଡ଼ ଘଡ଼ି କଲା । ତାପ ନାଶେ ସେ ଦିଗକୁ ଗଲା ॥ ୨୪

---

୨୨—ଯେଣୁ ସେ କାମ ଅନଙ୍ଗ ତେଣୁ ଦିଶୁନାହିଁ ତାହାର ବାଣଚୂତ (ଅମ୍ବକୁଳ) ଓ ନାଆଳୀ ଦେଖାଯାଉଛନ୍ତି, ସେ ଅବଳୀ (ବାଣ ସମୂହ) ଗୁପ୍ତ (ଧନରୁ) ଚ୍ୟୁତ ହେଲେ ମୁଁ ହେଜୁଛି ମୋର କା ଅଜ ରହିବ ? ରେ ଅଳି ! ମୋହର ତନୁ (ଶରୀର) କୋମଳତାରେ ଶିରୀଷ ପୁଷ୍ପର ତୁଳି (ତୁଳନୀୟ) ତେବେ ଈଷତ୍ ମାନଙ୍କେ ଗଳିଯିବ କେହ (କପର) ମୁଁ ସମ୍ଭାଳି ହୋଇବ ।

୨୩—ଏହି ସମୟରେ ଅଙ୍ଗେ ସୁମନ (ପୁଷ୍ପ) ପଡ଼ିବାରୁ ଚମକି ଉଠି କହିଲି ମୁଁ ମଲି, ପୁଣି ମିଳିନ୍ଦ ମାଳୀ (ଭ୍ରମର ପନ୍ତି)ରେ ମିଳିତ (ଯୁକ୍ତ) ପୁଷ୍ପିତ କିଂଶୁକପନ୍ତି (ପ୍ରସ୍ଫୁଟିତ ପଳାଶ ବୃକ୍ଷ ସବୁ) ବିଲୋକନ କରି ସେ ଭାବିଲି ଏତ ସଧୂମ (ଧୂଆଁ ସହ) ଅନଳ (ଅଗ୍ନି)ଜଳୁଛି, କିଏ ମୋ କେଳିବନକୁ ଜାଳିଦେଲି ମୁଁ ଅଜ କେଉଁଠାରେ କ୍ରୀଡ଼ା କରିବି । ଭ୍ରମରପନ୍ତି ଧୂମ ପଳାଶ କୁସୁମ ଅଗ୍ନି ।

୨୪—ବାତେ (ବାୟୁଯୋଗେ) ସେ ରେଣୁ (ପୁଷ୍ପରେଣୁ) ପଡ଼ନ୍ତେ ଅକୁଳ ଭାବରେ ଗୁଳୁ କୁକୁଳ (ବକ୍ଷସ୍ଥଳର ଲୁଗା)କୁ ଝାଡ଼ିଦେଲି ସ୍ଫୁଲିଙ୍ଗେ (ଅଗ୍ନିକଣାରେ) ସ୍ଫୋଟକ (ଫୋଟକା) ହେଲା ପରି ମନରେ ଏପରି ଘେନି ଘନକୁ ଅନାଇଲି ପୁଣି ସେ ବାଳା ତମାଳ ବୃକ୍ଷମାନଙ୍କୁ ମେଘମାଳା କରି ଘେନି ପିକରଡ଼ିକି ମେଘ ଘଡ଼ଘଡ଼ି କଲା, ଯେଉଁ ଦିଗରେ ତମାଳବୃକ୍ଷ ସେ ଦିଗକୁ ତାପନାଶ ନିମିତ୍ତ ଚାଲିଗଲା ।

ବଙ୍କସେନ ତରୁ ତରୁଣୀ ଅନାଇ ତାହା ନିଜ ନାମ କହି ।
ବୋଲେ ଯେବେ ତୁମ୍ଭେ ସାକ୍ଷାତେ ମିଳିଲ ଦମ୍ଭୋଳି ଭୟ ମୋ କାହିଁ ।
ସେ ଯୋଷା । ଭଲି କହିବାରେ ମୃଦୁଭାଷା ।
ମିତ୍ର ଶ୍ଳେଷ ହୋଇଅଛି ମିଶା । ସଙ୍ଗେ ଗୋଡ଼ାଇଛନ୍ତି ବୟସ୍ୟା ॥ ୨୫
ଦେଖାଇ ଫୁଲ ମନ୍ଦାର ଭଣେ ମାର ନାଶି ଅଖେଠାକୁ ସର୍ଜି ।
ମଧୁ-ଶିରେ ଦେଇ ଜ୍ୱଳିତ ହସନ୍ତି ମୁଁ ହରିଣୀ ମୋତେ ଖୋଜି ।
ସେ ରସ । ଯେଣୁ ନୃପସୁତ ଦଣେ ଦିଶି ।
ବୀର ଶାର୍ଦ୍ଦୂଳ ହେଲେଣି ଆସି । ପଳା ଧନୁ ଅଗ୍ନି ଥୋଇ ଭାଷି ॥ ୨୬
ଭ୍ରୂଭଙ୍ଗିନୀ ଯୋଗଭଙ୍ଗିନୀରେ ପ୍ରିୟସଙ୍ଗିନୀ ରଚେ ଭାରତୀ ।
ରାଜାତନୁଜା କୁସ୍ମରଜା ତୁ ଲଜ୍ଜାବନ୍ତୀ ହୋଇ ଏକ ରୀତି ।
ରେ ମିତ । ମନ୍ତ୍ର ପୀରତି ବେନି ଗୁପତ ।
ତେବେ ବାଞ୍ଛିତ କାର୍ଯ୍ୟ ପ୍ରାପତ । ଜଣାଗଲେ ସରବ ମହତ ॥ ୨୭

---

୨୫—ବଙ୍କସେନ ତରୁ ( ଅଗସ୍ତିବୃକ୍ଷ )କୁ ତରୁଣୀ ଅନାଇ ତାହାର (ଅଗସ୍ତିବୃକ୍ଷର ) ନିଜନାମ (ଅଗସ୍ତିଋଷି?) କହି ହୋଇ ବୋଇଲା-ଯେବେତୁମ୍ଭେ ସାକ୍ଷାତରେ ଆସି ମିଳିଲ ତେବେ ମୋର ଦମ୍ଭୋଳି ( ବଜ୍ର ) ଭୟ କାହିଁ । ସେ ଯୋଷା ଭଲି (ଭ୍ରମହୋଇ ) ମୃଦୁଭାଷା (କୋମଳବାଣୀ) କହିବାରେ ମିତ୍ରମାନଙ୍କର ଶ୍ଳେଷବାଣୀ (ଭଙ୍ଗ ବଚନ) ମିଶା ହୋଇଛି ? ବୟସ୍ୟା (ସଖୀମାନେ) ସଙ୍ଗରେ ଗୋଡ଼ାଇଛନ୍ତି । ଅଗସ୍ତିଋଷିଙ୍କ ନାମସ୍ମରଣରେ ବଜ୍ରଭୟଦୂରହୁଏ ।

୨୬—ସେ ସୁନ୍ଦରୀ ମନ୍ଦାର ଫୁଲକୁ ଦେଖାଇ ଭଣଇ—ମୋର ନାଶି ଅଖେଠକୁ ( ରବିରେ ଅଗ୍ନିଜାଳି ପାରିଧି କରିବାକୁ ) ସର୍ଜି ମଧୁଶିରେ ( ବସନ୍ତ ମସ୍ତକରେ ) ଜ୍ୱଳିତ ହସନ୍ତି ( ଜଳନ୍ତା ଉହ୍ମାଇ ) ଦେଇ ମୁଁ ହରିଣୀ ( ସୁବର୍ଣ୍ଣ ପ୍ରତିମା ସ୍ୱରୂପା ସୁତରାଂ ମୃଗୁଣୀ ) ମୋତେ ମାରିବାକୁ ଖୋଜୁଛି । ଯେଣୁ ସେ ନୃପସୁତଠାରେ ରସିଥିଲା ତେଣୁ ଦଣେ ( ସେ ଦଣ୍ଡରେ ) ରାଜପୁତ୍ର ଦେଖାଯିବାରୁ ଭାଷିଲା—ବୀର ଶାର୍ଦ୍ଦୂଳ ( ବୀର ଶ୍ରେଷ୍ଠ ରାଜପୁତ୍ର ) ଶାର୍ଦ୍ଦୂଳ (ବ୍ୟାଘ୍ର) ସେ ଆସି ପ୍ରବେଶ ହେଲେଣି, ଅତଏବ ରେ କ ମ । ତୁ ଧନୁ ଅଗ୍ନି ଥୋଇ ପଳା । ମନ୍ଦାର ଫୁଲ ଜ୍ୱଳନ୍ତା ଉହ୍ମେଇ ପରି ।

୨୭—ଭ୍ରୂଭଙ୍ଗିନୀ (କଟାକ୍ଷ ଗୃଢ଼ୁଭ ଶୀଳା )ଯୋଗଭଙ୍ଗିନୀ (ଯୋଗଧ୍ୱଂସିନୀ) ସୁନ୍ଦରୀ ପ୍ରତି ପ୍ରିୟସଙ୍ଗିନୀ ଏହି ଭାରତୀ (ବାଣୀ) ରଚନା କଲା—ତୁ ରାଜତନୁଜା ( ରାଜକନ୍ୟା ) କୁସ୍ମରଜା ( ପ୍ରାପ୍ତବୟସ୍କା ) ଲଜ୍ଜାବତୀ ହୋଇ ତୋର ଏ କ ନର୍ଲ୍ଲଜା ରୀତି । ରେ ମିତ । ମନ୍ତ୍ର ଏବଂ ପ୍ରୀତି ଏ ବେନିକି ଗୁପ୍ତରଖିଲେ ବାଞ୍ଛିତ କାର୍ଯ୍ୟପ୍ରାପ୍ତ ହୁଏ । ତୋର ଏ କଥା ଜଣାଗଲେ ମହତ ସରବ ।

ସ୍ଫୀତ ଜନମାଇ ଦେବାରୁ ସେ ସ୍ଫୀତ ଅଚ୍ଛନ୍ନ କରେ ସୁନ୍ଦରୀ ।
ଅନାସୃତେ ଖ୍ୟାତ ବାସ ଘୋଡ଼ାଇଲେ ତୁଙ୍ଗ ପୟୋଧର ପରି ।
ସେ ଯୋଷା । ବୃଦ୍ଧି କରଇ ବିରହ ଦଶା ।
ଦେଇ କୁମାରେ ନିରତେ ଅଶା । ଦୂର କରଦେଲା କ୍ଷୁଧା ତୃଷା ॥ ୨୮
କୁମର ମାର ମାରଣେ ତାପୀ ହୋଇ କୁମାରୀ ଦର୍ଶନ ଘୋଷି ।
ପ୍ରତିକ୍ଷଣେ ଯେତେଣେ ଚାହିଁଲେ ଈକ୍ଷଣେ ଯେଣୁ ତା ପ୍ରସନ୍ନ ଦିଶି ।
ସେ ସତ । ମଣି ଚାଟୁ ଭଣି ଭ୍ରମଚିତ୍ତ ।
ଆର ଛନ୍ଦେ ତା ହେବ ରଚିତ । ଚଉତିଶାରେ ଯମକ ଯୁତ ॥ ୨୯
କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।
ଜାତ କଲେ କ୍ଷୀରାର୍ଣ୍ଣବରୁଁ ସୁଧା ମୋର ଗୀରାର୍ଣ୍ଣବରୁଁ ରସଗୀତ ।
ସେ ସତ । ସେ ବିବୁଧ ଏ ବୁଧ ରଞ୍ଜିତ ।
ଦୈତ୍ୟ ଖଳରେ ଅଧର୍ଷିତ । ଯେ ଗ୍ରାସିବ ହେବ ରାହୁ ମତ ॥ ୩୦

---

୨୮—ସ୍ଫୀତ (ଭୟ) ଜନ୍ମାଇ ଦେବାରୁ ସୁନ୍ଦରୀ ସେ ସ୍ଫୀତକୁ ଅଚ୍ଛନ୍ନ କଲା (ଘୋଡ଼ାଇ ପକାଇଲା), କିନ୍ତୁ ସେ ସ୍ଫୀତ ବାସ (ବସ୍ତ୍ର) ଘୋଡ଼ାଇଲେ ମଧ୍ୟ ତୁଙ୍ଗପୟୋଧର (ଉନ୍ନତ ସ୍ତନ) ଦେଖାଗଲା ପରି ଅନାସୃତେ ଖ୍ୟାତ ହେଲା । ସେ ଯୋଷା ବିରହଦଶାକୁ ବୃଦ୍ଧି କରାଇଲା, କୁମାର ଠାରେ ନିରତେ ଅଶାରଖି କ୍ଷୁଧା ତୃଷା ଦୂରକରି ଦେଲା ।

୨୯—କୁମାର ପ୍ରତିକ୍ଷଣରେ ଯେତେଣେ ଈକ୍ଷଣେ (ନୟନରେ) ଚାହିଁଲେ ତା (ସେ ସୁନ୍ଦରୀର) ପ୍ରସନ୍ନରୂପେ ଦେଖାଯାଉଛି, ତେଣୁ ସେ ସତମଣି ବିଭ୍ରମ-ହୋଇ ଚାଟୁକଥା ଭଣୁଛି, ଆର ଛନ୍ଦରେ ସେ ସବୁ ଚାଟୁବାଣୀ ପ୍ରକାଶ ପାଇବ । ସେ ଛନ୍ଦ ୩୪ ପଦ ଓ ଯମକ ଯୁକ୍ତ ।

୩୦—ଉପେନ୍ଦ୍ର ଭଞ୍ଜ କହଇ, ମୋ ପ୍ରଭୁ ଶ୍ରୀରାମ ସାକ୍ଷାତ୍ ବୈକୁଣ୍ଠନାଥ, ସେ ପ୍ରଭୁ କ୍ଷୀରସାଗରରୁ ସୁଧାପରି ମୋ ଗିରାର୍ଣ୍ଣବରୁ ରସଗୀତ ଜାତକଲେ ଏହାସତ ଅଟେ । ସେ ସୁଧା ବିବୁଧ (ଦେବ) ରଞ୍ଜିତ ଏ ବୁଧ (ପଣ୍ଡିତ) ରଞ୍ଜିତ । ସେ ଦୈତ୍ୟମାନଙ୍କ ଦ୍ୱାରା ଧର୍ଷିତ ହୋଇନାହିଁ, ଏ ଗୀତ ମଧ୍ୟ ଖଳଲୋକ ଦ୍ୱାରା ଧର୍ଷିତ (ଅବମାନିତ) ନୁହେ । ଯେଉଁ ଲୋକ ଏ ଗୀତକୁ ଗ୍ରାସ କରିବ ସେ ରାହୁ ପରି ହେବ । (ସୁଧାପାନରେ ରାହୁର ଶିରଚ୍ଛେଦନ ହେଲାପରି ତାହାର ଦୋଷଦିଆ ଯୁକ୍ତି ଖଣ୍ଡିତ ହେବ )

# ସପ୍ତଦଶ ଛାନ୍ଦ

ରାଗ—କାଳୀ



ମଳଗଞ୍ଜଣେ କମଳ ଗଣେ ମରୀଚିକାକୁ ଯଥା ।

କାମିନୀ-ରତ କାମୀ ନୃପସୁତ ଦିଶେ ଦିଶନ୍ତେ ତଥା ॥ ୧

କ୍ଷିତିରେ ଆସ କ୍ଷିତିରେ ଅଶ ତୋତେ ଏ ଗୃହୁଁ ଭାଷେ ।
କ୍ଷଣି ରୁଚିର କ୍ଷଣ-ରୁଚିର ପ୍ରାୟେ ଲୀନ କି ବଶେ ॥ ୨
ଖର-କରଜା ଖରକର ଜା-ବୀଚି-କୁଞ୍ଚିତ-କେଶି ।
ଖଣ୍ଡ ପରଶୁ ଖଣ୍ଡ ପରଶୁ-ପର-ତାପକୁ ହସି ॥ ୩
ହରିତବାସୀ ହରିତ ବାସୀ ହୋଇ ନ ଆସୁ ପାଖ ।
ହର ସୁମତି ହର ସୁମତି କଳଙ୍କୀ ଶଶୀ ଦେଖ ॥ ୪

---

୧—ଯେପରି କମଳଗଣେ (ମୃଗପାଳେ) ମରୀଚିକାକୁ କମଳ (ଜଳ) ଗଣେ (ଜ୍ଞାନକରନ୍ତି) ସେହିପରି କାମିନୀ ରତ (କାମିନୀ ସ୍ନେହୀ) କାମୀ ରାଜପୁତ୍ର ଦିଶେ (ଦିଗମାନଙ୍କରେ) ଦିଶନ୍ତେ (ସୁନ୍ଦରୀରୂପ ଦେଖାଯାଆନ୍ତେ) ସେ ରୂପକୁ ସତ ମନେ କଲେ ।

୨—ରାଜପୁତ୍ର ଏହିପରି ଗୃହୁଁ କଥା ଭାଷେ କ୍ଷିତିରେ (ପୃଥିବୀରେ) ତୋତେ ମୋର ଅଶ, ତୁ କ୍ଷିତିରେ (ଭୂମିରେ) ଗୃହି ମୋ ପାଖକୁ ଆସ । କି ବଶେ (କି ହେତୁରୁ) କ୍ଷଣରୁଚିର (ବିଜୁଳୀ) ପରି ରୁଚିର (ମନୋହର) ରୂପକୁ କ୍ଷଣମାତ୍ରକେ ଲୀନ କରୁଛୁ ।

୩—ରେ ଖର କରଜା (ତୀକ୍ଷ୍ଣ ନଖରୀ) ରେ ଖର କରଜା ବୀଚିକୁଞ୍ଚିତ କେଶି ଖରକର ସେ ସୂର୍ଯ୍ୟ ତାହାଙ୍କଠାରୁ ଜାତ ହୋଇଥିବା ଯମୁନାର ବୀଚି (ଲହରୀ) ପରି କୁଞ୍ଚିତ କେଶ ଯାହାର. ତୁ ହସି ପରଶୁ (ସ୍ପର୍ଶକର) ଖଣ୍ଡ ପରଶୁ (ମହାଦେବଙ୍କର) ପର (ଶତ୍ରୁ କାମର) ତାପକୁ ଖଣ୍ଡ (ଖଣ୍ଡନ କର) ।

୪—ରେ ହରିତବାସୀ (ନୀଳବସନା) ତୁ ହରିତ(ଦିକ୍) ବାସୀ ହୋଇ (ଦିଗମାନଙ୍କରେ) ଦେଖାଦେଇ ପାଖକୁ ଆସୁନାହୁଁ, ରେ ସୁମତି (ବୁଦ୍ଧି ମତି) ଦେଖ କଳଙ୍କୀ ଶଶୀ ହର (କିରଣ) ଦ୍ୱାରା ମୋ ସୁମତି (ଭଲବୁଦ୍ଧିକୁ) ହରି (ହରଣ କରୁଛି)

ଗଉରୀ-ବର-ଗଉର ବରନୀତମ୍ବା ବିମ୍ବାଧରୀ ।
ଗଉରୀ-ବର ଗଉରୀ ବର କୃପାରୁ ମୁଁ ତୋହର ॥ ୫
ସାରସଦୃଶା ସାର ସଦୃଶା କାହିଁ ପାଇବା ଗୁଣେ ।
ସୁମନାବର ସୁମନାବରପୁରେ ନ ଥିବ ଜଣେ ॥ ୬
ଘନକେଶିନି ଘନ କେଶିନୀ-ସୂଦନ ସେବିଥିଲି ।
ଘନ ରସରେ ଘନରସରେ ଗୃତଙ୍କ ପ୍ରାପ୍ତ ହେଲି ॥ ୭
ଷଢ଼ିଲ ତନୁ ଷଢ଼ିଲ ତନୁ ପୁନଃପୁନଃ ମୁଁ ବୋଲି ।
ଷଡ଼ଜନିତ ଷଡ-ଜନିତ ବାହନ କଲେ ମଲି ॥ ୮
ନାଗରୀ-ପୁର ନାଗ-ରିପୁର ଗରବହାରୀ କଟି ।
ନତନୁ ମତ୍ତ ନ-ତନୁ ମତେ କରିବା ଅର୍ଥେ ଘୋଟି ॥ ୯
ଶୁଭ୍ର-କିରଣ ଶୁଭ୍ର କିରଣ ପଡନ ସୁଧାପୁର ।
ଶୟନ କର ଶୟନ କରିବାରେ ମୁଁ ଦେବି ଉର ॥ ୧୦

---

୫—ରେ ଗୌରୀବର ଗୌର (ଗୋରୋଚନା ଶ୍ରେଷ୍ଠ ପରି ଗୌରାଙ୍ଗୀ)ବର ନିତମ୍ବା ବିମ୍ବାଧରି । ଗୌରୀବର (ଶିବ) ଏବଂ ଗୌରୀ (ପାର୍ବତୀ)ଙ୍କ କୃପାରୁ ମୁଁ ତୋହର ବରଯୋଗ୍ୟ ହୋଇଛି ।

୬—ରେ ସାରସ-ଦୃଶା (ପଦ୍ମନେତ୍ରା) ସାରସ (ପଦ୍ମ) ଦୃଶ (ନେତ୍ରୀ) ସାର (ଶ୍ରେଷ୍ଠଗୁଣ) ରେ ତୋ ସଦୃଶା (ସମାନ) ଅନ୍ୟ କାହିଁ ପାଇବା । ରେ ସୁମନାବର (ରମଣୀମଣି) ସୁମନାବର ପୁରେ (ଇନ୍ଦ୍ରପୁରେ) ତୋ ସମାନ ଜଣେ ନଥିବ ।

୭—ରେ ଘନକେଶିନି ଘନ (ଦୃଢ଼ ଭାବରେ) କେଶୀ ସୂଦନ (କେଶୀହନ୍ତା, କୃଷ୍ଣଙ୍କୁ) ସେବିଥିଲି । ଘନରସରେ (ମେଘଜଳରେ) ଗୃତଙ୍କ ପରି ତୋ ଘନ (ନିବିଡ଼) ରସରେ ଅଶାପ୍ତି ହେଲି ।

୮—ତୋ ବିଚ୍ଛେଦରେ ମୋ ତନୁ (ଦେହ) ସଢ଼ିଲା ସଢ଼ିଲା ବୋଲି ମୁଁ ପୁନଃ ପୁନଃ କହୁଛି ଜଡ଼ଜନିତ (କାର୍ତ୍ତିକେୟ, ତାହାଙ୍କର ଛମାତା) ଙ୍କର ବାହନ (ମୟୂର) ଷଡ଼ଜନିତ (ଷଡ଼୍‌ଜ ସ୍ୱର) କଲେ ମୁଁ ମଲି ।

୯—ରେ ନାଗରୀପୁର (ନାଗରୀମାନଙ୍କର ଅଗ୍ର ଗଣ୍ୟା) ତୋହର କଟି ନାଗରିପୁ (ସିଂହ)ର ଗର୍ବହାରି । ନତନୁ (ଅନଙ୍ଗ) ମତ୍ତହୋଇ ମତେ ନତନୁ (ବିନାଶ) କରିବା ଅର୍ଥରେ ଘୋଟିଛି ରକ୍ଷାକର ।

୧୦—ଶୁଭ୍ରକିରଣ (ଚନ୍ଦ୍ର)ର ଶୁଭ୍ର (ଶୁକ୍ଳ) କିରଣ ପଡ଼ିଥିବା ସୁଧାପୁର (ଚୂର୍ଣ୍ଣଲିପ୍ତ ଗୃହରେ) ମୁଁ ଶୟନକର ତୋ ଶୟନ ନିମିତ୍ତ ମୋ ଉର (ବକ୍ଷଃସ୍ଥଳ) କୁ ଦେବି ।

ଚନ୍ଦ୍ରମା ଭାନୁ ଚନ୍ଦ୍ରମା ଭାନୁ ସମାନ ତାପୁଅଛୁ ।
ଚରତେଶୀଳା ଚରତେ ଶିଳା ହେବାର ନୋହେ କଛୁ ॥ ୧୧
ବାସନ୍ତୀଅଳୀ ବାସନ୍ତୀ ଅଳି ପର ଗୁନ୍ଥିବି ତୋଳି ।
ବାରେକ ବରବାରେ କବରୀ ହେବି ପବିତ୍ର ବାଳ ॥ ୧୨
ଛନ୍ଦ ନ କର ଛନ୍ଦନ କର କର ଗଳାରେ ମୋର ।
ଛଡ଼ା-ସୁମନ ଛଡ଼ା ସୁମନତାପ କରବି ହାର ॥ ୧୩
ଲକ୍ଷ୍ୟ ରସାଳ ଲକ୍ଷ୍ୟ ରସାଳ ହୃଦରେ କମ୍ପା ଧରୁ ।
ଲଳିତ-ଅଙ୍ଗି ଲଳିତ ଅଙ୍ଗୀକାର କଲୁ କିପାଇଁ ॥ ୧୪
ଜୀବନ ବିନା ଜୀବ ନବୀନା ମୀନ କି ଧରି ପାରେ ।
ଜଗତୀ ମଣ୍ଡ ଜଗତୀ-ମଣ୍ଡନା ତୁ ମୋ ସଙ୍ଗେ ବାରେ ୧୫
ରସାଳସିରେ ରସାଳଶିରେ କରେ କୋକିଳ ଘୋଷ ।
ରତି-ରତନ ରତି ରତନସୁବେଶି ଦେଇ ତୋଷ ॥ ୧୬

---

୧୧—ତୋ ବିଚ୍ଛେଦରେ ଚନ୍ଦ୍ରମାର ଭାନୁ (କିରଣ) ଓ ଚନ୍ଦ୍ରମା [କର୍ପୂର] ଭାନୁସମାନ (ସୂର୍ଯ୍ୟ ତୁଲ୍ୟ) ତାପୁଅଛୁ । ରେ ଚରିତଶୀଳା (ଶୁଦ୍ଧସ୍ୱଭାବା) ଏ ଅବସ୍ଥାରେ ଚରିତେ (ଆଚରଣରେ) ଶିଳା [ପ୍ରସ୍ତର ତୁଲ୍ୟ ନିଷ୍ଠୁର] ହେବାର କିଛୁ ଭଲ ନୁହେଁ ।

୧୨—ମୁଁ ତୋହର ବାସନ୍ତୀ ଅଳୀ (ଭଲପାଉଥିବା ସଖୀ) ପରି ବାସନ୍ତୀ ଅଳି (ବସନ୍ତ କାଳୀନ ପୁଷ୍ପସମୂହ) ତୋଳି ଗୁନ୍ଥିବି । ରେ ବାଳ । ତୋ କବରୀ (କେଶ) ବାରେକ (ଥରେ) ବରବାରେ (ମଣ୍ଡନ କରିବା ଦ୍ୱାରା) ମୁଁ ପବିତ୍ର ହେବି ।

୧୩—ରେ ସୁନ୍ଦରି । ମୋଠାରେ ଛନ୍ଦ (କପଟ) କରନା । ମୋ ଗଳାରେ କରକୁ ଛନ୍ଦନକର । ମୋ ସୁମନ ତାପ (ମନୋବେଦନା) କୁ ଛଡ଼ାଅ । ଛଡ଼ା ସୁମନ (ଛଡ଼ା ପୁଷ୍ପ) କୁ ମୁଁ ହାର କରିବି ।

୧୪—ରେ ଲଳିତ ଅଙ୍ଗି । (କୋମଳାଙ୍ଗି) ଲଳିତ (ସୁନ୍ଦର) ରୂପେ ଅଙ୍ଗୀକାର କଲୁ କିପାଇଁ ରସାଳ (ସରସ) ହୃଦୟରେ ରସାଳ (ଅମ୍ବ) ଲକ୍ଷ୍ୟ (ତୁଲ୍ୟ) ଲକ୍ଷ୍ୟ (ଗୁଠୁଲିକ) କମ୍ପା ଧରିଛୁ ଅମ୍ବ ପରି ଗୁଠୁଲି ଅନ୍ତରରେ କାଠିନ୍ୟ ।

୧୫—ରେ ନବୀନା । ଜୀବନ (ଜଳ) ବିନା ମୀନ ଜୀବ ଧରିପାରେ କି ? ରେ ଜଗତୀ ମଣ୍ଡନା । (ସଂସାର ମଣ୍ଡନା) ତୁ ବାରେ ମୋ ସଙ୍ଗରେ ଜଗତୀ (ଅଟ୍ଟାଳିକା) କୁ ମଣ୍ଡନକର ।

୧୬—ରେ ରସାଳସି । ରସାଳ ଶିରେ (ଅମ୍ବ ବୃକ୍ଷ ଉପରେ କୋକିଳ) ଘୋଷ (ଶବ୍ଦ) କରଇ ଏ ସମୟରେ ରେ ରତ୍ନ ସୁବେଶି । (ଅଷ୍ଟରତ୍ନ ମଣ୍ଡିତା) ମୁଁ ଦରିଦ୍ର ମୋତେ ରତି (ସ୍ନେହ) ରେ ରତିରତ୍ନ ଦେଇ ତୋଷକର ।

ଝଲକାଜତ ଝଲକା ଉତ୍ତଂସକୁ କର କି ମଜା ।
ଝଲସୁବର୍ଣ୍ଣା ଝଲ ସୁବର୍ଣ୍ଣାବଳୀ ଘଣ୍ଟିକା ବଜା ॥ ୧୭
ଯୁତବିଳାସ ଯୁତ ବିଳାସବତି ହୋଇବା ଯାମେ ।
ଯୁବାକୁ ରଙ୍ଗେ ଯୁବାକୁରଙ୍ଗେ କର ନ ବନ୍ଧା କାମେ । ୧୮
ନୀଳ ଲୋହିତ ନୀଳ-ଲୋହିତ ଶୁଭ୍ର ନୟନେ ମୋହ ।
ନିଗମ ବନ ନିଗମ-ବନବାସୀ କମ୍ପିବେ ଗୁହୁଁ ॥ ୧୯
ମତ୍ତେଭଗତି ମତେ ଭଗତି ଘେନି ନିର୍ଭୟ କର ।
ମାନସ ମାନ ମାନ ସମାନ ନୋହିଲେ ମୁଁ ତୋହର ॥ ୨୦
ଠେକ-ଆନନ ଠେକ ଆନ ନ ବାଞ୍ଛା ପରାଣସହି ।
ଟିକାଏ ରସ ଠୀକାଏ ରସଶାସ୍ତ୍ରର ପରା ତୁହି ॥ ୨୧
ଭାବବତୀଶ ଭାବ ବତିଶଲକ୍ଷଣା କର୍ତ୍ତା ପର
ଭଲ୍ଲ ମନ୍ଦକୁ ଭଲ ମନ୍ଦକୁ ଗୁହାଣି ହାସେ ଧର ॥ ୨୨

---

୧୭—ଝଲକା ଉତ୍ତଂସକୁ ( ଝରା ଲଗିଥିବା ଶିରେ ଭୂଷଣକୁ ) କି ମଜା କର ଝଲକାଜ ( କମ୍ପାଜ ) ତାରେ ଝଲ ସୁବର୍ଣ୍ଣା । ( ଝଟକ କାନ୍ତି ) ଝଲ ସୁବର୍ଣ୍ଣା ବଳୀ ( ଝଟକ-ସୁବର୍ଣ୍ଣ ସମୂହରେ ନିର୍ମିତ ) ଘଣ୍ଟିକା ବଜା । (ରୂପ-ସ୍ତୁତି ପ୍ରାର୍ଥନା ) ।

୧୮—ରେ ବିଳାସ-ବତି ( ବିଳାସିନି ) । ଯୁତ ବିଳାସରେ ( ଯୁଗ୍ମ କ୍ରୀଡ଼ାରେ ) ଯାମେ ( ପ୍ରହରେ ) ଯୁତ ( ଯୁକ୍ତ ) ହୋଇବା । ଏ ଯୁବାକୁ ( ମୋତେ ) ରଙ୍ଗେ ( କୌତୁକରେ ) ଯୁବାକୁ ରଙ୍ଗ କର କାମେ ( କାମ ବ୍ୟାଧ ହାତରେ ) ବନ୍ଧାନା ।

୧୯—ତୁ ନୀଳ ଲୋହିତ ଶୁଭ୍ର ( କଳା, ନାଲ, ଓ ଶୁକ୍ଳବର୍ଣ୍ଣ ଯୁକ୍ତ ) ନୟନରେ ନୀଳ ଲୋହିତ ( ଶିବ )ଙ୍କୁ ମୋହିତ କରୁ । ନିଗମ ( ବେଦ ) ଯେଉଁ-ମାନଙ୍କ ହୃଦୟରେ ବନ (ବାସ) କରିଛି ସେହି ନିଗମ ବନବାସୀ ( ଗହନ କ ନନ ବାସୀ ଋଷିମାନେ ) ମୋତେ ଗୁହୁଁ କମ୍ପିବେ ।

୨୦—ରେ ମତ୍ତେଭଗତି ( ମତ୍ତଗଜଗାମିନି ) ମୋହର ଭଗତି ( ଭକ୍ତି ) ଘେନି ମତେ ନିର୍ଭୟ କର । ମାନସରେ ଏ କଥାକୁ ମାନ ମୁଁ ମାନରେ ତୋ ସମାନ ନୋହିଲେହେଁ ତୋହର ଅଟେ ।

୨୧—ରେ ପ୍ରାଣସହି । ତୋହର ଠେକ ଆନନ (ଶ୍ରେଷ୍ଠ ମୁଖକୁ ) ଠେକ, ମୋହର ଆନ ବାଞ୍ଛା ନ (ନାହିଁ) । ତୁ ପରା ରସଶାସ୍ତ୍ରରେ ଗୋଟିଏ ଠୀକା ? ତେଣୁ ମୋ ସଙ୍ଗରେ ଟିକାଏ ( ଅଳ୍ପକ୍ଷଣ ମାନ ) ରସରେ ରସ ।

୨୨—ରେ ଭାବବତୀଶ (ପ୍ରୀତିବତୀମାନଙ୍କମଧ୍ୟରେ ଈଶ—ଶ୍ରେଷ୍ଠା ) । ବତିଶଲକ୍ଷଣା ତୁ ଏ କଥାକୁ ମନରେ ଭାବ—ତୁ କର୍ତ୍ତା ( ବିଧାତା ) ପର, ଭଲ୍ଲ (ଭଲ୍ଲାସ୍ତ୍ରୀ)

ଠିକେ କାରତ ଠିକେ କି ରତ ଜାତ ବର୍ତ୍ତୁଳ କୁଚେ ।
ଠକାର ପର ଠକାର ପରହର ନ ପାରୁ କିଷ୍ଟେ ॥ ୨୩
ବରବର୍ଣ୍ଣନା ବର ବର୍ଣ୍ଣନା କରୁଁ ଏ ଊଣା ତୋତେ ।
ବାଣକୁ ମାର ବାଣ କୁମାରୀ-ପତିଜନକ ମୋତେ ॥ ୨୪
ଡାଳିମ୍ବ-ବିଜ ଡାଳିମ୍ବ-ବି-ଜ ଦନ୍ତକୁ ସମ ନୋହି ।
ତୋଳାପ୍ରତିମା ତୋଳା ପ୍ରତିମା ଘଉଡ଼ି ହେଲୁ ତୁହି ॥ ୨୫
ଫଳ କଳପ ଫଳ କଳପତରୁ ତୁ ଯା ମନାସି ।
ଫୁଟେ ହୃଦୟ ଫୁଟେ ହୃଦୟ କରରେ ମଦାଳସି ॥ ୨୬
ତାଲେ ବଗୁର ତାଲେ ବଗୁରଦଶନ ବେଳୁଁ କରେ ।
ତଳହଳ ମୁଁ ତଳହଳ ମୁଁ ନୟନେ ଅଶ୍ରୁ ଧରେ ॥ ୨୭

---

ଗୁଣକୁ ଗୃହାଁଣିରେ, ଓ ମନ୍ଦ ( ମୃଦୁ ) ଗୁଣକୁ ହାସରେ ଧରି ଭଲ ମନ୍ଦ ଉଭୟ କରିପାରୁ ।

୨୩—ଠିକରେ ( ସ୍ଥୂଳରେ ) ପ୍ରକାଶ ପାଉଥିବା ତୋହର ଶୋଭା କାହିଁ ଅଗରେ ରତି ଠକେ କି ? ( ରହିପାରେ କି ? ) ତୋ ହୃଦରେ ଠକାରପରି ବର୍ତ୍ତୁଳ କୁଚେ ଜାତ ହୋଇଛନ୍ତି, ଏଣୁ ତୁ ଠକାର (ଠକପଣ) ପରିହରି ( ଛାଡ଼ି ) ନ ପାରୁଛୁ, ମୋତେ ଠକୁଛୁ ।

୨୪—ରେ ବରବର୍ଣ୍ଣନା ! ବର ( ଶ୍ରେଷ୍ଠ ) ବର୍ଣ୍ଣନାକୁ ମୁଁ କରୁଁ ତୋଠାରେ ତାହା ଊଣା ହେଲା, ଏଣୁ ମତେ ବାଣ କୁମାରୀ ପତି ଜନକ ( କାମ ) ବାଣକୁ ମାରୁଛି । ବାଣକୁମାରୀ ( ଊଷା ) ତାହାର ପତି ( ଅନିରୁଦ୍ଧ ) ତାହାର ଜନକ ( କାମ ) ।

୨୫—ଡାଳିମ୍ବବୀଜ ( ଡାଳିମ୍ବମଞ୍ଜି ) ଡାଳିମ୍ବ—ବି—ଜ (ଡାଳିମ୍ବ ଯେ ଶାମୁକା ତହିଁରୁ ବି-ବିଶେଷରେ ଜ-ଜାତ-ମୁକ୍ତା ) ତୋ ଦନ୍ତକୁ ସମ ନୁହଇ । ମୋ ତୋଳାପ୍ରତିମାକୁ ଘଉଡ଼ିଦେଇ ତୁ ମୋ ତୋଳାକୁ ପ୍ରତିମା ହେଲୁଣି, ତୋ ଛଡ଼ା ଆଉ କିଛି ମୋତେ ଦିଶୁନାହିଁ ।

୨୬—ତୁ କଳ୍ପତରୁ, ମୁଁ ଯାହା ମନାସିଛି ସେ କଳ୍ପଫଳ ( ବାଞ୍ଛାରୂପ ଫଳ ) କୁ ତୁ ଫଳ ( ବାଞ୍ଛାସିଦ୍ଧ କର ) । ରେ ମଦାଳସି ତୋ ହୃଦୟକୁ ଫୁଟାଅ ( ମୋଠାରେ ଅନୁରାଗିଣୀ ହୁଅ ) ।

୨୭—ତୋହର ଦର୍ଶନ ବେଳୁଁ ମୁଁ ତାଲେ ( କିଷ୍ଟପ୍ରୁ ରୂପେ ) ଏହି ବଗୁର କରିଇଁ ଆଉ ମୋର ଗତିନାହିଁ, ତୁ ତାଲେ ବଗୁର ( ଥରେ ମୋ ପ୍ରତି ସୁବଗୁର କର ( ତୋ ବିଚ୍ଛେଦରେ ମୁଁ ତଳହଳ ( ଟଳଟଳ ) ହେଉଛି ଏବଂ ତହହଳ ଅଶ୍ରୁକୁ ନୟନରେ ଧରଛି ।

ପଦେ ଶରଣ ପଦେ ଶରଣ-ବତ୍ସଳା ବାଣୀ ଭଣ ।
ପୁଷ୍ପ ମାର୍ଗଣ ପୁଷ୍ପ-ମାର୍ଗଣ ଦଣ୍ଡୁ ରଖିଲ ପ୍ରାଣ ॥ ୨୮
ଅନ୍ତରଗତେ ଅନ୍ତର ଗତେ କି ଭାବ ପାଶେ ଅସି ।
ଅନାକୂଳରେ ଅନା କୂଳରେ ଭେଳା ଯାଉଛି ଭାସି ॥ ୨୯
ନିରଶକରୁ ନିରଶ କରୁଣାର ବୃକ୍ଷେ କି ଫଳେ ।
ନୂତନା ହିତ ନୁତ ନାହିଁତ ସମାନ ତୋହ ତୁଲେ ॥ ୩୦
ତାରକ ମଣି ତାରକ-ମଣି-ହାସୀକି ମୋ ଭରସା ।
ତାର ତରଳୁଁ ତାର ତରଳୁଁ ଅଧିକ ହେବୁ ଯୋଷା ॥ ୩୧
ଧନନିଚୟ ଧନ ନିଶ୍ଚୟ ଯେବେ ମୁଁ ନ ପାଇବ ।
ଧନି ଇସାରେ ଧନୀର ସାରେ କେମନ୍ତେ ବୋଲାଇବ ॥ ୩୨

---

୨୮—ରେ ଶରଣ ବତ୍ସଳା ! ତୋ ପଦରେ ଶରଣ ଗଲି, ପୁଷ୍ପମାର୍ଗଣ ( କାମ ) ର ପୁଷ୍ପମାର୍ଗଣ ( ଫୁଲଶର ) ଦଣ୍ଡରୁ ତୋ ପ୍ରାଣ ରଖିଲି ବୋଲି ପଦେ ବାଣୀ ଭଣ ( କହ ) ।

୨୯—ତୁ ପାଶେ ଆସି, ଅନ୍ତର୍ଗତେ କି ଭାବ ଅନ୍ତର ହୋଇ ଗତେ ( ଯାଉଛୁ ) । ଅନାକୂଳରେ ( ଅକୂଳ ନୋହି ) କୂଳରେ ରହି ଅନା ମୋ ଭେଳା ଦୁଃଖ ନଦୀରେ ଭାସି ଯାଉଛି ।

୩୦—କରୁଣା ବୃକ୍ଷରେ ନିରଶବୃକ୍ଷର ଫଳ ଫଳଇ କି ? ତୁ କରୁଣା ବୃକ୍ଷପରି, ମୋତେ କାହିଁକି ନିରଶ କରୁଛୁ ? ରେ ନୂତନା ! ତୁ ମୋର ହିତ ! ତୋହ ତୁଲେ ସମାନ ହେବାକୁ ନୁତ ( ପ୍ରଶଂସିତ ) ହୋଇ କେହି ନାହିଁତ ।

୩୧—ତାରକମଣି ( ରକ୍ଷାକାରୀ ମଣିପରି ) ତାରକମଣି ହାସିକି ( ଚନ୍ଦ୍ରହାସୀକି ଅର୍ଥାତ୍ ତୋତେ ) ମୋର ଭରସା । ରେ ଯୋଷା ! ମୋତେ ତରଳୁଁ ( କାମୁକ ହେବା ଦୁଃଖରୁ ) ତାର, ତାହାହେଲେ ତୁ ମୋର ତାର ତରଳୁଁ ( ଉଜ୍ଜ୍ୱଳହାର ମଧ୍ୟ ମଣିଠାରୁ ) ଅଧିକ ହୋଇ କଣ୍ଠ ଭୂଷଣ ହେବୁ ।

୩୨—ରେ ଧନ ! ତୁ ମୋର ଧନ ନିଚୟ ( ଧନସମୂହ ) ଯେବେ ମୁଁ ତୋତେ ନିଶ୍ଚୟ ନ ପାଇବ ଯେବେ ରେ ଧନି ଇସାରେ ( ପୃଥ୍ୱୀରେ ) ଧନୀମାନଙ୍କ ମଧ୍ୟରେ ଇସାରେ ( ଶ୍ରେଷ୍ଠ ବୋଲି ) କେମନ୍ତେ ବୋଲାଇବ ?

ଅରେ ସହ୍ଵ ଅରେ ସହ୍ଵତ ତାପ-ଜ୍ଵରକୁ ନାଶ ।
ଧରାସାର ଯେ ଧରା ସାର ଯେମନ୍ତେ କରିବା ଯଶ ॥ ୩୩
ଦନ ବାରହ ଦୀନ ବିରହୀ ହେବାରୁ ଯୁଗ ପ୍ରାୟେ ।
ଦାଶରଥିର ଦାସରଥିର ଭକ୍ତ ଉପେନ୍ଦ୍ର ଧାୟେ ॥ ୩୪

—:*:—

## ଅଷ୍ଟାଦଶ ଛାନ୍ଦ

( ଗ୍ରୀଷ୍ମକାଳ ଓ ସୁନ୍ଦରୀର ବିରହ ଦଶା ବର୍ଣ୍ଣନା )

ରାଗ—ରାମକେରୀ



ଣ ହେ ସାଧବ ମାଧବ ଶେଷେ ଝଲ୍‌କା କହ୍ନ ।
ଏ ଗ୍ରୀଷମଋତୁ ବିଷମ ସମ ନୁହନ୍ତି କେହ୍ନ ॥ ୧

ସତ ଏ ପରଶ ମାନଙ୍କୁ ଜାତ ଗାତ୍ରକୁ ସ୍ଵେଦ ।
ଭାନୁ ବୃହଦ୍‌ଭାନୁ ଯା ଯୋଗୁଁ କଲେ ତେଜସ୍ଵୀ ବାଦ ॥ ୨

---

୩୩—ରେ ସହ୍ଵ ! ମୋ ଦେହ ତ ଅରେ, ତୁ ଅରେ ମୋ ସଙ୍ଗେ ସହ୍ଵତ (ଯୁକ୍ତ) ହୋଇ କାମତାପ ଜ୍ଵରକୁ ନାଶ କର । ରେ ଧରାସାର ( ଧରା ଶ୍ରେଷ୍ଠ ) ଧରା ( ପୃଥ୍ଵୀ ) ସେ ଯେ ସାର ଯଶ ତାକୁ ଯେମନ୍ତେ ରକ୍ଷା କରିବାକୁ ହୁଏ ତାହା କର ।

୩୪—ଦନେ ଯେ ମୁଁ, ହିଁ ( ନିଶ୍ଚୟ ) ବିରହୀ ହେବାରୁ ଦୀନ ( ଦୁଃଖୀ ) ହୋଇ ଦନକୁ ଯେ ଯୁଗପ୍ରାୟ ବୋଧ କରୁଛି । ଦାଶରଥି ( ରାମଚନ୍ଦ୍ରଙ୍କର ) ଦାସର ( ସେବକ ମୋହର ) ତାଙ୍କଠାରେ ସ୍ଥିର ଭକ୍ତ ହେଉ ଏହା କବି ଉପେନ୍ଦ୍ର ଭଞ୍ଜ ଧ୍ୟାଉଛି ।

—:*:—

୧—ହେ ସାଧବ ମାନେ ! ଶୁଣ ମାଧବ ( ବସନ୍ତ ) ଶେଷରେ ଝଲ୍‌କା ( ହିଙ୍କାର ) କହ୍ନ ( କହନ୍ତି )—ଏ ବିଷମ ଗ୍ରୀଷ୍ମ ଋତୁ ସମାନ କେହ୍ନ ନୁହନ୍ତି ।

୨—ଏ ( କାଳ ) ସ୍ପର୍ଶ ମାନଙ୍କୁ ଗାତ୍ରକୁ (ଦେହକୁ) ସ୍ଵେଦ ( ଝାଳ ) ଜାତ ହୁଏ ଏହାସତ । ଯା ଯୋଗୁ ଭାନୁ ( ସୂର୍ଯ୍ୟ ) ଓ ବୃହଦ୍‌ଭାନୁ (ଅଗ୍ନି) ତେଜସ୍ଵୀ ହେବାରେ ବାଦ କଲେ ।

ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକରେ ଦିବସେ ।
ଜଳେ କୃଶାନୁ ସାନୁମାନ ମାନଙ୍କରେ ଅନିଶେ ॥ ୩
ଧରଣୀ ସରଣିଧୂଳିକି କଲା ତପତ ତହିଁ ।
ପଥିକ ପଦ ଶ୍ୱପଦକୁ ପଦପଦକେ ଦେଇ ॥ ୪
ତପ୍ତ କାଳ କଲା ତତ୍କାଳ ଗଲା ମାର୍ଗକୁ ଯେହୁ ।
ସକଳ ମୃଗରେ ବାକଳ ଅନୁବରତେ ବହୁ ॥ ୫
ଶୀତଳ ସଲିଳେ ଅନିଳେ ସଦା ରହୁ ଯେ ଥିଲା ।
ଦୂର ଦୁରନ୍ତ ଅର୍କ ରୁଚି ତହୁଁ ପ୍ରତାପେ କଲା ॥ ୬
ସେ ଚନ୍ଦନେ ଚନ୍ଦ୍ରସଦନେ ଚନ୍ଦ୍ର ଚନ୍ଦ୍ରେ ବଞ୍ଚିତ ।
ଜନରଞ୍ଜନକୁ ରଜନୀଦନେ କେତେ ରଚିତ ॥ ୭
ନଳିନବନ୍ଧୁ ଯେ ମଳିନ କର ଲୋଡ଼ନ୍ତେ କରେ ।
ଜ୍ୱଳନ ବଂଶ-ନଳୀ ଗ୍ରନ୍ଥି-ଗୁଳି ଫୁଟାଇ ଖରେ ॥ ୮

---

୩—ପ୍ରଭାକର ( ସୂର୍ଯ୍ୟ ) ଦିବସରେ ଆକାଶେ ପ୍ରଭାକୁ ପ୍ରକାଶନ୍ତି । କୃଶାନୁ ( ଅଗ୍ନି ) ଅନିଶେ ( ସର୍ବଦା ) ସାନୁମାନ ( ପର୍ବତ ) ମାନଙ୍କରେ ଜଳେ ।

୪—ଧରଣୀ ( ପୃଥିବୀ ) ର ସରଣି ମାର୍ଗର ଧୂଳିକି ତପତ କଲା । ତହିଁ ( ସେ ବାଟରେ ) ପଥିକ ପଦର ଶ୍ୱପଦକୁ ଦେପଦକେ ( ପ୍ରତିପଦରେ ) ଦେଲା ।

୫—ସେ କାଳ ତତ୍କାଳ ଗଲା ଲୋକର ମାର୍ଗକୁ ତପ୍ତ କଲା ଯେହୁ ସକଳ ମୃଗରେ ଅନବରତ ବାକଳକୁ ବହୁ ( କରଇ ) ।

୬—ଯେଉଁ ଶୀତଳତା ସର୍ବଦା ସଲିଳେ ( ଜଳରେ ) ଓ ଅନିଳେ ( ବାୟୁରେ ) ରହୁଥିଲା, ତାକୁ ଦୁରନ୍ତ ଅର୍କ ( ସୂର୍ଯ୍ୟ ) ଙ୍କର ରୁଚି ( ତେଜ ) ପ୍ରତାପ ଦ୍ୱାରା ତହୁଁ ( ଜଳ ଓ ପବନରୁ ) ଦୂର କଲା ।

୭—ସେ ଶୀତଳତା ଯାଇ ଚନ୍ଦନରେ, ଚନ୍ଦ୍ର ସଦନେ ( ଚୂନ ଲିପାଘରେ ) ଚନ୍ଦ୍ରଙ୍କଠାରେ ଏବଂ ଚନ୍ଦ୍ରେ ( କର୍ପୂରରେ ) ବଞ୍ଚି ରହି ରଜନୀଦନରେ କେତେପ୍ରକାର ଜନରଞ୍ଜନ ( ଲୋକମାନଙ୍କର ସନ୍ତୋଷ ) କୁ ରଚିତ ( ରଚନା କଲା ) ।

୮—ନଳିନବନ୍ଧୁ ( ସୂର୍ଯ୍ୟ ) କରେ ( କିରଣ ଦ୍ୱାରା ) ଅଗ୍ନିକି ମଳିନ କର ଲୋଡ଼ନ୍ତେ ( ଜିଣିବାକୁ ଖୋଜନ୍ତେ ) ଜ୍ୱଳନ ( ଅଗ୍ନି ) ବାଉଁଶକୁ ନଳୀ ( ବନ୍ଧୁକ ) ଏବଂ ଗ୍ରନ୍ଥି ( ବାଉଁଶ ଗଣ୍ଠିକି ) ଗୁଳିକର ଖରେ ( ଶୀଘ୍ର ) ଫୁଟାଇଲା । ଅରଣ୍ୟରେ ଅଗ୍ନି ଲାଗି ବାଉଁଶ ଗଣ୍ଠି ଫୁଟିଲା ।

ମନ୍ଦ ରଟନ୍ତି ମିତ୍ରଦ୍ୱନ୍ଦ୍ୱ ମନ୍ଦଦ୍ୱନ୍ଦ୍ୱ କରୁଛ ।
ଅହେ ବିଭାବସୁ କି ବଶୁଁ ବସୁଧାକୁ ଦହୁଛ ॥ ୯
କି ନିର୍ଦ୍ଦୟ କାଳ ଉଦୟ ଏହୁ ଅଶ୍ଚର୍ଯ୍ୟ ବଶୁଁ ।
ରସହୀନେ କଲେ ରସନା ଖ୍ୟାତ ବହୁତ ପଶୁ ॥ ୧୦
ଶଙ୍କାରେ ପଙ୍କରେ ଅଙ୍ଗକୁ ଲୋଟାଇଲେ ମହିଷ ।
ଘୂର୍ମିତ ଆତଙ୍କେ ପତଙ୍ଗେ ପିଇ ଖର୍ଜୁରରସ ॥ ୧୧
ଏଣୁ ଜୀବକୁଳ ଆକୁଳ ହେଲେ ସଂଜ୍ୱର ବଶ ।
ତେଣୁ ଦାହ ତୃଷ୍ଣା ଜନିତ ନିତ୍ୟ ଭ୍ରମ ମାନସ ॥ ୧୨
ଏ ବାରି ସୁମରି ଚମରୀ ମରୀଚିକାକୁ ଧାଇଁ ।
ତା ଚମରଂ ପାଇଁ ହଂସ-ଜା-ବୀଚି ହଂସ ଗୋଡ଼ାଇ ॥ ୧୩
ଶୁକଚଞ୍ଚୁ ଚୁମ୍ବି କିଂଶୁକକଳୀ ଭ୍ରମ ଭ୍ରମରେ ।
ସେ ପଙ୍କିଳ ଜଳଠୋପାଏ ଭାଲି ମୁଖ ବିସ୍ତାରେ ॥ ୧୪

---

୯—ମନ୍ଦ ( କାକମାନେ ) ରଟନ୍ତି ( ଶବ୍ଦଦ୍ୱାରା କହନ୍ତି ) ଅହେ ବିଭାବସୁ ( ସୂର୍ଯ୍ୟ ଓ ଅଗ୍ନି ) ତୁମ୍ଭେ ମିତ୍ର ଦ୍ୱନ୍ଦ୍ୱ ( ମିତ୍ରଦ୍ୱୟ ) କି ବଶୁଁ ( କି କାରଣରୁ ) ମନ୍ଦ ଦ୍ୱନ୍ଦ୍ୱ ( କଳହ ) କରୁଛ ଏବଂ ବସୁଧାକୁ ଦହୁଛ ।

୧୦—ଏହିସବୁ ଆଶ୍ଚର୍ଯ୍ୟ ଘଟଣା ବଶରୁ ଜଣା ପଡ଼ଇ କି ନିର୍ଦ୍ଦୟ କାଳ ଉଦୟ ହେଲା !—ରସ (ଜଳ) ହୀନହେବାରେ ବହୁତ ପଶୁ ରସନା ଖ୍ୟାତ କଲେ ( ଜିହ୍ୱା କାଢ଼ିଲେ )

୧୧—ମହିଷମାନେ ଶଙ୍କାରେ ( ଭୟରେ ) ପଙ୍କରେ ଅଙ୍ଗ ( ଶରୀର ) କୁ ଲୋଟାଇଲେ । ପତଙ୍ଗେ ତୃଷା ଆତଙ୍କେ ( ଯାତନାରେ ) ଖର୍ଜୁରରସ ପିଇ ଘୂର୍ମିତ ( ଘୁମାଇଲେ ) ।

୧୨—ଏଣୁ ଜୀବକୁଳ ସଂଜ୍ୱର ( ସନ୍ତାପ ) ବଶରେ ଆକୁଳ ହେଲେ, ସେ ସଂଜ୍ୱର ( ଜ୍ୱରରୋଗ ) ହେଲା, ତେଣୁ ନିତ୍ୟ ଦେହ ଦାହ ଓ ତୃଷ୍ଣା ଜନିତ ହେଲା ଏବଂ ମାନସ (ମନ) ଭ୍ରମହେଲା ।

୧୩—ଚମରୀ ମୃଗ ମରୀଚିକାକୁ "ଏ ବାରି" ( ଜଳ ) ସୁମରି ( ମନେକରି ) ଧାଇଁଲା, ହଂସ ତାହାର ଚମରକୁ ହଂସ ( ସୂର୍ଯ୍ୟ ) ଙ୍କ ଠାରୁ ଜାତ ( ଯମୁନା ) ର ବୀଚି ( ଲହରୀ ) ପାଇଁ ତାହା ପଛରେ ଗୋଡ଼ାଇଲା ।

୧୪—ଭ୍ରମରମାନେ କିଂଶୁକକଳୀ ( ପଳାଶକଢ଼ୀ ) ଭ୍ରମରେ ଶୁକଚଞ୍ଚୁକୁ ଚୁମ୍ବୁ ସେ ତାକୁ ପଙ୍କିଳ ଜଳଠୋପାଏ ଭାବି ମୁଖ ବିସ୍ତାରିଲା ।

କେକୀପୁଚ୍ଛ ତଳେ ତାପିଞ୍ଛ ସ୍ଥାଇ ବଗୁରେ ଅହି ।
ଗୋଞ୍ଜି ଅସି ବିଷ ବୁଦ୍ଧି ତା ଅଶୀବିଷରେ ରହି ॥ ୧୫
ଦରୀରେ ଶୋଇଲା କେଶରୀ ସୁରସରିତ ସରି ।
ବାର ବାର ପୁଚ୍ଛ ଗୁଳିବା କି ଲହରୀ ବିହରି । ୧୬
କରୀ ଅଶ କରି ଅସନ୍ତେ ଶୃଙ୍ଗୁ ସେ ଘନ ଭ୍ରମି ।
ଦାନଜଳ ଦାନ ଜଳ କି ଦନ୍ତ ବକାଳୀ ଝଳି ॥ ୧୭
ନଭରଙ୍ଗକାରୀ ସାରଙ୍ଗ ଅଧୋଗତି ଇଚ୍ଛଇ ।
ତପ ଖ୍ୟାତଠାରେ ବିହୀନ ହଂସା ବିଦିତ ହୋଇ ॥ ୧୮
ଏମନ୍ତ କାଳରେ ନୀରଜାନନୀ ନରବରଜା ।
ପଲଙ୍କେ ପଲଙ୍କେ ନ ରହି କଲା ସେ ମହୀଶଯ୍ୟା ॥ ୧୯
ଦେଖି ନୀରଜାକ୍ଷୀ ସ୍ୱିନ୍ନକ କାଦମ୍ବିନୀ ବାଣୀଜା ।
ଶରୀକଳା ସହ ବିକଳା କରି ଲୋତକ ତେଜ୍ୟା ॥ ୨୦

---

୧୫—ଅହି ( ସର୍ପ ) ତାପିଞ୍ଛ ( ତମାଳ ) ସ୍ଥାଇ ବଗୁରି କେକୀ ( ମୟୂର ) ପୁଚ୍ଛତଳେ ଅସି ଗୋଞ୍ଜି ଅଶୀବିଷରେ ( ସର୍ପଠାରେ ) ତାହାର ( ମୟୂରର ) ଏ ବିଷ ( ମୃଣାଳଖଣ୍ଡ) ଏ ବୁଦ୍ଧି ରହିଲା ।

୧୬—ଦରୀରେ ( ପର୍ବତ ଗୁହାରେ ) ଶୋଇଲା କେଶରୀ ( ସିଂହ ) ଶୁକ୍ଳବର୍ଣ୍ଣ ହେତୁ ସୁରସରିତ ସରି ( ସ୍ୱର୍ଗଙ୍ଗାସମାନ ) ଦିଶୁଛି । ତାହାର ବାର ବାର ପୁଚ୍ଛ ଗୁଳିବା ଲହରୀ ବିହରି ( ଖେଳଇ ) କି ?

୧୭—ଏମନ୍ତ ବିଗୁରି କରି କରୀ ( ହସ୍ତୀ ) ଅନ୍ନାକର ପର୍ବତ ଶୃଙ୍ଗରୁ ଅସନ୍ତେ ତାକୁ ସେ ସିଂହ ଘନ ( ମେଘ ) ବୋଲି ଭ୍ରମୁଛି । ଦାନଜଳ ( ମଦଜଳ ) ଦାନଜଳ ( ବର୍ଷିଲି ପାଣି ) କି ? ଦନ୍ତ ବକାଳଝଳି ( ବକ ପନ୍ତିର କାନ୍ତି ) ତୁଲ୍ୟ ।

୧୮—ତାହାକୁ ମେଘ ମନେ କରି ନଭରଙ୍ଗକାରୀ ( ଆକାଶ ବିହାରୀ ) ସାରଙ୍ଗ ( ଗୁତକ ) ଅଧୋଗତି ( ତଳକୁ ଆସିବାକୁ ) ଇଚ୍ଛା କରଇ । ତପ ଖ୍ୟାତ ହେବାଠାରେ ( ମୁନିମାନଙ୍କ ଆଶ୍ରମରେ ) ହଂସା ବିହୀନ ହେବା କଥା । ବିଦିତ ହୁଅଇ, ତପ [ ଗ୍ରୀଷ୍ମ ] ଖ୍ୟାତ ହେବାରୁ ସେହିପରି ହଂସା ରହିତ ହେଲା ।

୧୯—ଏମନ୍ତ କାଳ ( ଗ୍ରୀଷ୍ମକାଳରେ ) ନୀରଜାନନୀ ( ପଦ୍ମମୁଖୀ ) ସେ ନରବରଜା (ରାଜକନ୍ୟା ) ପଲଙ୍କେ ମାନ ପଲଙ୍କରେ ନ ରହି ମହୀଶଯ୍ୟା ( ଭୂମିରେ ଶୟନ ) କଲା ।

୨୦—କାଦମ୍ବିନୀ ଓ ବାଣୀଜା ସଖୀ ଦୁହେଁ ନୀରଜାକ୍ଷୀର ( ପଦ୍ମନେତ୍ରୀ ) ର ସ୍ୱିନ୍ନକ ଦେଖି ଶରୀକଳା ସଖୀ ସହ ବିକଳାହୋଇ ଲୋତକ ତ୍ୟାଗ କଲା ।

ଭାଳିଲା ପ୍ରଥମା ଛଳିଲା ନେବା ପଙ୍କଜଶେଯେ ।
ଅବନୀଶିରୀ ଶିରୀଷାଙ୍ଗୀ ପଦ୍ମବାସୀ ସହଜେ ॥ ୨୧
ସ୍ଖଳିତ ତନୁକୁ ଲେଖିକ କର ଦ୍ୱିତୀୟା ବୋଲେ ।
ହେମପିତୁଳା ତୁଳା ହେଲା ଜାନୁବର୍ତ୍ତୁଳା ତୁଲେ ॥ ୨୨
ଦେଖୁଁ ଦେଖୁଁ ଭଜେ ବିବର୍ଣ୍ଣ ବର୍ଣ୍ଣଇ ଯେ ଅପରୀ ।
ଏ ଶୋଭାସଦନ ମଦନ ସୁଧା ଲେପଇ ପରୀ ॥ ୨୩
ପୁଲକଜାଳକ ଗୃହିଁ ଯେ ଅନ୍ୟା କହିଲା ବେଗେ ।
କୁରବକତରୁ ତରୁଣୀ ପୁଷ୍ପାଙ୍କୁର ସର୍ବାଙ୍ଗେ ॥ ୨୪
ମଧ୍ୟା ଭାଷେ ସତ ଉତ୍ସନ୍ନ ନଭସ୍ୱତରେ ଥରୁ ।
ଶୋଭାକର କର ଅଧର ନବପଲ୍ଲବ ପରୁ ॥ ୨୫
ଅନ୍ୟା ବୋଲେ ଜାତ ବିରହ-ଜାତବେଦ ସଜୀବେ ।
ଜଳେ ପ୍ରଜ୍ୱଳେ ଆର୍ଦ୍ରଭାରୁଁ ଜଳେ ପୂର୍ଣ୍ଣ ତା ଏବେ ॥ ୨୬

---

୨୧—ପ୍ରଥମା ସଖୀ ( କାଦମ୍ବିନୀ ) ଭାଳିଲା ଏବଂ ଛଳ କରି କହିଲା—ଏ ଅବନୀ ଶିରୀ ( ପୃଥିବୀ ଶୋଭା ) ଶିରୀଷାଙ୍ଗୀ ସହଜେ ପଦ୍ମବାସୀ ( ପଦ୍ମଗନ୍ଧା ) ସୁତରାଂ ପଦ୍ମବନ ବାସିନୀ ଶିରୀ ( ଲକ୍ଷ୍ମୀ ) ହେଲା । ଏହାକୁ ପଙ୍କଜ (ପଦ୍ମ ପତ୍ର ) ଶେଯକୁ ନେବା ଉଚିତ ।

୨୨—ଦ୍ୱିତୀୟା ସଖୀ ବାଣୀକା ସ୍ଖଳିତ ( ନିଶ୍ଚଳ ହୋଇ ପଡ଼ିଥିବା ) ତନୁକୁ ( ସୁନ୍ଦରୀ ଶରୀରକୁ ) ଲେଖିକ କରି ( ଦେଖି ) ବୋଲେ—ଏ ଜାନୁ-ବର୍ତ୍ତୁଳା ( ବର୍ତ୍ତୁଳଜାନୁ ସୁନ୍ଦରୀର ) ତୁଲେ (ତୁଳନାରେ) ହେମପିତୁଳା ( ସୁବର୍ଣ୍ଣ ପ୍ରତିମା ) ତୁଳା ( ସମାନ ) ହେଲା ଏଥିରେ ସ୍ତମ୍ଭ ।

୨୩—ଦେଖୁ ଦେଖୁ ବିବର୍ଣ୍ଣ ଭଜିବାରୁ ଅପରୀ ସଖୀ ( ଶଶୀକଳା ) ବର୍ଣ୍ଣଇ-ଏ ସୁନ୍ଦରୀ ଶୋଭା ସଦନ ( ଶୋଭା ଗୃହ ) ହେତୁ ମଦନ ( କାମ ) ସୁଧା ( ଚୂର୍ଣ୍ଣ ) ଲେପଇ ପରି ? ଏଥିରେ ବୈବର୍ଣ୍ଣ୍ୟ ।

୨୪—ସୁନ୍ଦରୀର ପୁଲକ ଜାଳକ ( ଲୋମୋଦ୍‌ଗମସବୁକୁ ) ଗୃହିଁ ଅନ୍ୟା ସଖୀ ( କାଦମ୍ବିନୀ ) ବେଗରେ କହିଲା-ଏ ତରୁଣୀ କୁରବକତରୁ ( କୁରୁଅନା-ବୃକ୍ଷ ) ଏଣୁ ସର୍ବାଙ୍ଗେ ପୁଷ୍ପାଙ୍କୁର ( କଳିକା ) ଜାତ ହୋଇଛି ।

୨୫—ମଧ୍ୟା ସଖୀ ( ବାଣୀକା ) ଭାଷିଲା-ଏ କଥା ସତ, ବୃକ୍ଷ ଉତ୍ସନ୍ନ ନଭସ୍ୱତରେ ( ଚଞ୍ଚଳ ପବନରେ ) ଥରଇ, ଏମଧ୍ୟ ଥରୁଛି, ଏହାର କର ଏବଂ ଅଧର ନବ ପଲ୍ଲବ ( ନୂଆପତ୍ର ) ପରି ଶୋଭାକର ହୋଇଛି । ଏଥିରେ କମ୍ପ ।

୨୬—ଅନ୍ୟା ( ଶଶୀକଳା ) ବୋଇଲା ସଜୀବ ଦେହରେ ବିରହ ଜାତବେଦ ( ବିରହାଗ୍ନି ) ଜାତ ହୋଇଛି । ସେ ଅଗ୍ନି ପ୍ରଜ୍ୱଳେ ( ପ୍ରଖର ଭାବରେ ) ଜଳିବାରୁ ତା ( କାଷ୍ଠ ସଦୃଶ ଦେହ ) ଆର୍ଦ୍ରଭାରୁ ( କୋମଳ ଓ ଓଦା-

ନୋହୁ ନବାର ନେକବାର ଭକ୍ତ ପ୍ରଥମା କରେ ।
ନୀଳାବ୍‌ଜେ ମିଳନ୍ତି ମିଳନ୍ଦ ମକରନ୍ଦ ଉଦ୍‌ଗାରେ ॥ ୨୭
ବଚନ କରନ୍ତେ ରଚନ ଅଧେ ଦ୍ୱିଜାସ୍ୟା ଭ୍ରଷେ ।
କଳକଣ୍ଠ କଣ୍ଠ ଭଜନ୍ତି ଶୋକ-ଘନ ସଙ୍କାଶେ ॥ ୨୮
ଜ୍ଞାନବହୀନ ବିଧିବଶେ ତାହା ଉଡ୍ଡୀଶ୍ୟା ଗ୍ରହିଁ ।
ଫୁଙ୍କିଲ ଶ୍ରୁତିକି ଡାକିଲ କାନ୍ତି ଚେତନା ବହି ॥ ୨୯
ଜଗତୀକି ଗଜଗତିକି ଟେକି ସଖୀ ନେବାରେ ।
ଦିଶିଲା ଭଦ୍ରାକ୍ଷୀ ସୁଭଦ୍ରା ରଥ ବିଜେ ପ୍ରକାରେ ॥ ୩୦
ଦୁଃଖରେ ପ୍ରକଟେ ନିକଟେ ହେବ ସୁଖରେଁ ପୁଣି ।
ଏଅଷ୍ଟସାତ୍ତ୍ୱିକ ଇଷ୍ଟ ଯେ ଆଜୁଁ ହୋଇଲା ଭଣି ॥ ୩୧

---

ହେତୁ ) ଏବେ ଜଳରେ ପୂର୍ଣ୍ଣ ହୋଇଅଛି । ଓଦା କାଠରେ ନିଆଁ ଲାଗିଲେ ଯେପରି ତହିଁରୁ ପାଣି ବାହାରେ ସେହିପରି ବିରହ ହେତୁ ସୁନ୍ଦରୀ ଦେହରୁ ଝାଳ ବୋହୁଅଛି ଏଥିରେ ସ୍ୱେଦ ବର୍ଣ୍ଣିତ ।

୨୭—ନେକବାର ( ଲେଉଟକ ) ନବାର ନ ହେବାରୁ ପ୍ରଥମା ( କ.ଦମ୍ବିନୀ ) ଏହି ଉକ୍ତି କଲା—ନୀଳାବ୍‌ଜେ ( ନୀଳପଦ୍ମରେ ) ମିଳନ୍ଦ ( ଭ୍ରମର ) ମିଳିତ ହୋଇ ( ବସି ) ମକରନ୍ଦ ( ପୁଷ୍ପରସ ) କୁ ଉଦ୍‌ଗାର କରୁଛନ୍ତି କି ? ନେତ୍ର ନୀଳପଦ୍ମ ତୋଳା ଭ୍ରମର ଲେଉଟକ ମରକନ୍ଦ । ଏଥିରେ ଅଶ୍ରୁ ।

୨୮—ସୁନ୍ଦରୀ ବଚନ ରଚନା କରନ୍ତେ ଗୋଟିଏ ଶବ୍ଦରୁ ଅଧେମାନ ପ୍ରକାଶ ହେବାର ଦେଖି ଦ୍ୱିଜାସ୍ୟା ( ବାଣୀକା ) ଭାଷିଲା—ଶୋକ ଘନ ( ମେଘ ) ପରି ପ୍ରକାଶ ହେବାରୁ କଳକଣ୍ଠ ( କୋକିଳ ) ସଦୃଶ୍ୟ କଣ୍ଠ ଭଜନ୍ତି ( ପଡ଼ିଯାଇଅଛି ) ବର୍ଷାକାଳରେ କୋକିଳର କଣ୍ଠ ପଡ଼ିଯାଏ ଏଥିରେ ସ୍ୱରଭଙ୍ଗ ।

୨୯—ବିଧିବଶେ ( ଦୈବ ଯୋଗୁଁ ) ଜ୍ଞାନବହୀନ ( ଅଜ୍ଞାନ ) ହେବାର ଉଡ୍ଡୀଶ୍ୟ ( ଶଗୀକଳା ) ଗ୍ରହିଁ ଶ୍ରୁତିକି ( କାନକୁ ) ଫୁଙ୍କିଲା ଏବଂ ଡାକିଲା, ସୁନ୍ଦରୀ କାନ୍ତି ଚେତନାକୁ ବହି (ପାଇଲା) ଅଜ୍ଞାନଦ୍ୱାରା ପ୍ରଳୟସୂଚିତା ହେଲା ।

୩୦—ସଖୀମାନେ ଗଜଗତିକି ଜଗତୀକି (କୋଠା ଉପରକୁ) ଟେକି ନେବାବେଳେ ଭଦ୍ରାକ୍ଷୀ ସୁଭଦ୍ରାଙ୍କ ରଥରେ ବିଜେ କରାଇଲା ପ୍ରକାର ଦିଶିଲା । ସୁଭଦ୍ରାଙ୍କୁ ରଥରେ ବିଜେ କରାଇଲା ବେଳେ ଚଉ୍ କର ଟେକି ନିଅନ୍ତି ।

୩୧—ଏ ଅଷ୍ଟସାତ୍ତ୍ୱିକଭାବ ( ୧ ସ୍ତମ୍ଭ, ୨ ବୈବର୍ଣ୍ଣ୍ୟ, ୩ ରୋମାଞ୍ଚ, ୪ କମ୍ପ, ୫ ସ୍ୱେଦ, ୬ ଅଶ୍ରୁ, ୭ ସ୍ୱରଭଙ୍ଗ, ୮ ପ୍ରଳୟ ) ଏବେ ଦୁଃଖରେ ପ୍ରକଟ ହେଲା । ପୁଣି ନିକଟରେ (କାନ୍ତସଂଯୋଗ ହେଲେ) ସୁଖରେ ପ୍ରକଟ ହେବ । ଆଜଠାରୁ ଏହାର ଇଷ୍ଟ (ବାଞ୍ଛା) ସଫଳ ହେଲା ବୋଲି ସଖୀମାନେ ଭଣିଲେ ।

ଏକାନ୍ତ କାନ୍ତ ଆଲିଙ୍ଗନଭାବେ ମଗନ ହୋଇ ।
ଥିବ ପାଶବଦ୍ଧକୁରଙ୍ଗୀ ପରି ତରଙ୍ଗ ନୋହି ॥ ୩୨
କ୍ରୀଡ଼ା ପୀଡ଼ା ବଶେ ଅଙ୍ଗନା ଅଙ୍ଗ ରଙ୍ଗ ଛୁଇଁବ ।
ସୁପକ୍ୱ ସିନ୍ଦୁରୀ ରସାଳଫଳ ଲକ୍ଷ୍ୟ ହୋଇବ ॥ ୩୩
ବିନ୍ଦୁ ବିନ୍ଦୁ ଝାଳ ଝରିବ ଇନ୍ଦୁମୁଖରୁ ଶ୍ରମେ ।
ନଳିନେ ଭରି ମୋତିପନ୍ତି ରତି ବାନ୍ଧିଲା ସମେ ॥ ୩୪
ପ୍ରଖର ନଖର ଚାଳନେ ବନ୍ଧି ରୋମାଞ୍ଚ କାୟେ ।
ଯୁବତୀ ହେବ ନୀପଫୁଲେ ପୂଜା ପାର୍ବତୀ ପ୍ରାୟେ ॥ ୩୫
ଭଜି ସିତ୍କାର ଶିକାରି ଗାତ୍ର ଚମକୁଥିବ ।
ପ୍ରେମତରଙ୍ଗେ ପଦ୍ମଲତା ରଙ୍ଗେ ଚଳିଲା ଭଳି ॥ ୩୬
ବର ରଜନୀକର କର ହେବ ଚନ୍ଦନରଜ ।
ପଡନେ ଜୀବଞ୍ଜୀବ ନେତ୍ର ଦ୍ରବିଯିବ ସହଜ ॥ ୩୭

---

୩୨—କାନ୍ତ ସଂଯୋଗ ହେଲେ ପାଶବଦ୍ଧ କୁରଙ୍ଗୀ ( ହରିଣୀ ) ପରି ତରଙ୍ଗ ( ଚଞ୍ଚଳ ) ନ ହୋଇ ଏକାନ୍ତରେ କାନ୍ତ ଆଲିଙ୍ଗନ ଭାବରେ ମଗ୍ନ ହୋଇଥିବ । ସ୍ତମ୍ଭ ।

୩୩—କ୍ରୀଡ଼ା ପୀଡ଼ାବଶରୁ ଅଙ୍ଗନାର ଅଙ୍ଗକୁ ରଙ୍ଗ ( ଲାଲବର୍ଣ୍ଣ ) ଛୁଇଁବ, ଏବଂ ସେ ଲାଲ ଅଙ୍ଗ ସୁପକ୍ୱ ( ପାଚିଲା ) ସିନ୍ଦୁରୀ ରସାଳଫଳ ( ଆମ୍ବ ) ଲକ୍ଷ୍ୟ ( ସମାନ ) ହୋଇବ । ବୈବର୍ଣ୍ଣ୍ୟ ।

୩୪—ଇନ୍ଦୁମୁଖରୁ ( ଚନ୍ଦ୍ରବଦନରୁ ) ଶ୍ରମେ ( ରତିଶ୍ରମହେତୁ ) ବିନ୍ଦୁ ବିନ୍ଦୁ ହୋଇ ଝାଳଝରିବ ରତି ( କାମପତ୍ନୀ ) ନଳିନେ ( ପଦ୍ମରେ ) ମୋତିପନ୍ତି ଭରି ବାନ୍ଧିଲା ସମାନ ହେବ । ମୁଖ, ନଳିନ ବିନ୍ଦୁ ବିନ୍ଦୁ ଝାଳ ମୋତିପନ୍ତି ସ୍ୱେଦ ।

୩୫—ଯୁବତୀ ପ୍ରଖର (ତୀକ୍ଷ୍ଣ) ନଖର ଚାଳନରେ କାୟେ (ଶରୀରରେ) ରୋମାଞ୍ଚକୁ ବନ୍ଧି ନୀପଫୁଲେ ( କଦମ୍ବପୁଷ୍ପରେ ) ପୂଜା ପାଇଥିବା ପାର୍ବତୀଙ୍କ ପରି ହେବ । ରୋମାଞ୍ଚ ।

୩୬—ସୁନ୍ଦରୀର ଗାତ୍ର (ଦେହ) ଶିତ୍କାର ( କମ୍ପ ) ଶିକାରକୁ ଭଜି ଲହରୀରେ ପଦ୍ମଲତା ଚଳିଲା ପରି ପ୍ରେମତରଙ୍ଗରେ କେତେ ରଙ୍ଗରେ ଚମକୁ ଥିବ । ( କମ୍ପ )

୩୭—ଏହାର ବର ( କାନ୍ତ ) ରଜନୀକର ( ଚନ୍ଦ୍ର ) ପରି, ଏବଂ ଚନ୍ଦନ ରଜ ( କର୍ପୂରଧୂଳି ) କର ( କିରଣ ) ପରି, ସେ କିରଣ ପଡନରେ ନେତ୍ର ଜୀବଞ୍ଜୀବ ( ନୟନ ଚକୋର ) ସହଜରେ ଦ୍ରବିଯିବ । ଅଶ୍ରୁ ।

କେଳପ୍ରବୀଣା ବୀଣା ବାଜିଁ ଗୁଣା ହତ ମତରେ ।
ନା ରହିବ ନାହିଁ କହିବ ଯେବେ ଗାଢ଼ରତରେ ॥ ୩୮
ଲଲନା ଚନ୍ଦ୍ରମାଗୁଳନାବଶେ ଜ୍ଞାନ ହାରିବ ।
ରୋଚକ ଏ ବାଣୀ ଜେମାକୁ ଶୁଭସୂଚକ ଭାବ ॥ ୩୯
ଏକାଳେ ସେ ବନଭୂ ବନମାର୍ଗେ କୌଶିକୀସ୍ନାନେ ।
ମନ୍ତ୍ରୀମନୋହାରୀ ଭିଷକ୍‌ଜନ ସୀ ଧୀର ଗମନେ ॥ ୪୦
ରୁଚ୍ଚ ଫଂପୂଟକ ଛଟକେ ବେନି ଅବଟ ଦଶେ ।
ଧାଡ଼ି ଏକ ଦଲ ଦଳନ ପାକଶାକ ସଦୃଶେ ॥ ୪୧
ପର୍ଣ୍ଣଯୁଗଲେ ପୂର୍ଣ୍ଣ ହୋଇଅଛି ଅର୍ଣ୍ଣ ସହଜେ ।
ଅଯନେ ଦେଖିଲେ ନୟନେ ନବପଲ୍ଲବ ଶେଯେ ॥ ୪୨
ଇଚ୍ଛିଲ ସଚିବା ପୃଚ୍ଛିଲ ବୈଦ୍ୟବାମାକୁ ଏକ ।
କେହି ବିରହୀ ରହିଅଛି ସେହି କହିଲ ତର୍କି ॥ ୪୩

---

୩୮—ବୀଣା ବାଜିଁ (ବଜାଇଁ ୨) ଗୁଣା (ତାର) ହତ ମତରେ (ଛିଣ୍ଡିଗଲା ପ୍ରକାରେ) ଏ କେଳି ପ୍ରବୀଣା ଯେବେ ଗାଢ଼ରତରେ (ସୁରତରେ) "ନାହିଁ" ବୋଲି କହିବ ତେବେ ତହିଁରୁ "ନା" ମାତ୍ର ରହିବ ଅର୍ଥାତ ସେ ତେବେ ବେଣ ନାହିଁ ୨ କହି ନପାରି ନା ନା କହିବ । ସ୍ୱରଭଙ୍ଗ ।

୩୯—ଏ ଲଲନା (କାମିନୀ) ଚନ୍ଦ୍ରଗୁଳନା (ତଥିଭେଦରେ ଶରୀରର ବିଶେଷ ବିଶେଷ ଅଙ୍ଗଗୁଳନ ଦ୍ୱାରା ଉନ୍ମାଦ ଜନ୍ମାଇବା), ବଶରେ ଜ୍ଞାନ ହରାଇବ । ପ୍ରଲୟୀ ସଖୀମାନଙ୍କର ଏ ବାଣୀ ଜେମାକୁ ଶୁଭ ସୂଚକ ଭାବରେ ରୋଚକ ହେଲା ।

୪୦।୪୧—ଏହି ସମୟରେ ସେ ବନଭୂ (ବନଭୂମିର) ବନମାର୍ଗେ (ବଣ-ବାଟେ) କୌଶିକୀ ନଦୀରେ ସ୍ନାନ କରିବା ନିମିତ୍ତ ମନ୍ତ୍ରୀ ମନୋହାରୀ (ମନ୍ତ୍ରୀ ସ୍ତ୍ରୀ) ଏବଂ ଭିଷକ ନାରୀ (ବୈଦ୍ୟ ସ୍ତ୍ରୀ) ଧୀର ଗମନ କରନ୍ତେ ରୁଚ୍ଚ (ମନୋହର) ଫଂପୂଟକ (ଫଗୁଆ) ଛଟକରେ ବେନି ଅବଟ (ଯୋଡ଼ାଏ ଗଡ଼ି) ଦଶୁଛି ଏକ ଧାଡ଼ି ଦଲ (ପଦ୍ମପତ୍ର) ପାକ ହୋଇ ଥିବା ଶାକ (ଶାଗ) ସଦୃଶ ଦଳନ (ଦଳା) ହୋଇ ପଡ଼ିଛି ।

୪୨—ପର୍ଣ୍ଣଯୁଗଳେ (ଦୁଇଟି ପତ୍ରରେ) ଅର୍ଣ୍ଣ (ଜଳ) ସହଜେ ପୂର୍ଣ୍ଣ ହୋଇଛି । ଅୟନେ (ବାଟରେ) ସେମାନେ ନବପଲ୍ଲବ ଶେଯ (ଶେଯୁଟିଏ) ନୟନରେ ଦେଖିଲେ ।

୪୩—ସଚିବା (ମନ୍ତ୍ରୀ ସ୍ତ୍ରୀ) ତାହାଦେଖି ବୈଦ୍ୟବାମାକୁ ପଚାରିବାକୁ ଇଚ୍ଛିଲା (ଇଚ୍ଛାକଲା) ଏବଂ ଏ କଥା ପୃଚ୍ଛିଲା । ସେ ତର୍କି (ବିଚାରି) କହିଲା-ଏଠାରେ କେହି ବିରହୀ ରହିଛି ।

ଆନ ନ ଘେନ ସେ, ଆନନ ମାଡ଼ି ଦୁଃଖଶୟନା ।
ଉଚ୍ଚ କୁଚର ଏ ସୁସଙ୍ଗ ସଙ୍ଗା ରହିଛି ସିନା ॥ ୪୪
ନବସପତ୍ରବୟସୀର ଅତି ତପତ ଗାତ୍ର ।
ଯେତକ ଛୁଇଁଛି ତେତକ ଶୁଖି ଯାଇଛି ମାତ୍ର ॥ ୪୫
ଅବଲା ଯେ ଶୋକପ୍ରବଲା ହୋଇ ଲୋତକ ଜାତ ।
ଛଦନଯୁଗଳେ ସଦନ କରି ଅଛଇ ସତ ॥ ୪୬
ମୃଣାଳ ଶୈବାଳ ପତନ ତାହା କବଳ ଆଶେ ।
ରଥାଙ୍ଗ ଚକ୍ରବାକଚକ୍ର ମିଳେ ଏ ଶଯ୍ୟା ପାଶେ ॥ ୪୭
ଦେଖ ଫୁଟି ଫାଟି ପଡ଼ୁଛି ମୋତିହାରହିଁ ତୁଟି ।
ତଣ୍ଡୁଳବତ ପାରାବତ ଘେନି ଠୁଙ୍କନ୍ତି କୋଟି ॥ ୪୮
ରମଣୀ ଛୁନ୍ନମାଳା ମଣି ସ୍ଫୁଟି ନାହିଁକି ତାତ ।
ଭକ୍ଷଣେ କ୍ଷଣେକ୍ଷଣେ ଧରେ ତାହା ଚକୋରପନ୍ତି ॥ ୪୯

---

୪୪—ଆନ ( ଅନ୍ୟ ) ନ ଘେନ, ସେ ଆନନ ( ମୁଖ ) ମାଡ଼ି ଦୁଃଖ ଶୟନ ହୋଇଥିଲା, ଅତଏବ ତାହାର ଉଚ୍ଚ କୁଚର ସୁସଙ୍ଗ ( ସୁନ୍ଦର ) ସଙ୍ଗା ଏ ଗଣ୍ଡିଦ୍ୱୟ ରହିଛି ସିନା ।

୪୫ —ସେ ନବସପତ୍ର ( କପୋଳ ) ବୟସୀର ଅତି ତପତ ବିରହରୁ ଅତ୍ୟନ୍ତ ତାପ ଯୁକ୍ତ ଗାତ୍ର ଶରୀର ଏପରି ଶଯ୍ୟାକୁ ଯେତିକ ଛୁଇଁଛି ତେତିକ ମାତ୍ର ଶୁଖି ଯାଇଛି ।

୪୬—ସେ ଅବଳା ଶୋକପ୍ରବଳା ହୋଇ ଲୋତକ ଜାତ କରିଛି ଏଣୁ ଛଦନ ଯୁଗଳେ ( ପତ୍ରଦ୍ୱୟରେ ) ତାହା ( ସେ ଲୋତକ ) ସଦନ କରିଛି, ସଞ୍ଚିତ ହୋଇ ରହିଛି ।

୪୭—ମୃଣାଳ ( ପଦ୍ମନାଡ଼ ) ଶୈବାଳ (ଶିଉଳ) ପତନ (ଶେଯରେ ପଡ଼ିଥିବାରୁ) ତାହାକୁ କବଳ ( ଗ୍ରାସ ) କରିବା ଆଶାରେ ରଥାଙ୍ଗ (ହଂସ) ଓ ଚକ୍ରବାକ ଚକ୍ର ( ଚକ୍ରବାକ ସମୂହ ) ଶଯ୍ୟାପାଶରେ ମିଳୁଛନ୍ତି ।

୪୮— ଦେଖ ବିରହିଣୀର ଦେହ ତାପରେ ମୋତିହାର ହିଁ ଜାଣ୍ଡିଯ ଫୁଟିଫାଟି ତୁଟି (ଛିଡ଼ି) ପଡ଼ୁଛି । ପାରାବତ (ପାରାମାନେ) ତାକୁ ତଣ୍ଡୁଳବତ (ଗୁଉଳତୁଲ୍ୟ) ମନରେ ଘେନି (ବିଗୁରି) କୋଟି ଥଣ୍ଟରେ ଠୁକୁଛନ୍ତି ।

୪୯—ସେ ରମଣୀର ଛୁନ୍ନମାଳାର ମଣିସବୁରୁ ତାତଗ୍ଲଡ଼ ନାହିଁ କି ? ତାକୁ ଚକୋରପନ୍ତି ଅଗ୍ନିକଣା ବିଗୁରି ଭକ୍ଷଣ ପାଇଁ କ୍ଷଣେ କ୍ଷଣେ ଧରୁଛନ୍ତି ।

ସରୋଜଜନ୍ମା ସ୍ନେହମଜ୍ଜିମା ନେଇ ରଜନୀ ଦବା ।
ବିରହଣୀ ଜଗନ୍ମୋହନୀ ଅମ୍ଭ ନୃପଜା ଅବା ॥ ୫୦
ଧାର୍ମିଉପାଧ୍ୟାୟୀ ସଚିବା ପେଷେ କୁମାର ପାଶେ ।
ସେ ଯାଉଁ ଶେଯାଉଥିଲେ ଯେ ସଖୀ ଶଯ୍ୟା ପଲାଶେ ॥ ୫୧
କାତରେ ସତ୍ୱରେ ରୁଚିରଚରେ ସେ ଅଚ୍ଛାଦନ ।
ତନୂଦରୀ ତନୁପାଣ୍ଡୁର ଗୁପ୍ତେ ଲିପି ଚନ୍ଦନ ॥ ୫୨
ବିପୁଳ ପୁଲକ ଶଙ୍କାରେ ଗଣ୍ଡେ ମକରୀ କରି ।
ଗୃଳ ବ୍ୟଜନ ପ୍ରଭଞ୍ଜନବଶେ ସ୍ୱେଦ ନିବାରି ॥ ୫୩
ସେ ଦେଖି ବୋଲେ ଜାଣିଲିନି ଅଣିଲିନି ମାନସ ।
ଏ ମଗଧେଶ୍ୱର କୁମାର ଦେଖି ମାରେ ଅବଶ ॥ ୫୪
ସୁଗତର ଯହିଁ ଏ ଗତି ତାର କି ଗତି ଥିବ ।
ଦୁର୍ଲ୍ଲଭ ବାଳା କାନ୍ତପ୍ରାପ୍ତି ଯଥା ମୁକତି ଭାବ ॥ ୫୫

---

୫୦—ଯେଉଁ ସରୋଜଜନ୍ମା ( ପଦ୍ମିନୀ ) ପୁରୁଷଠାରେ ସ୍ନେହମଜ୍ଜିମା ( ଅନୁରାଗିଣୀ ) ହେତୁ ବିରହଣୀ ହୋଇ ରଜନୀ ଦବା ନିଅଇ ସେ ଜଗନ୍ମୋହନୀ ଅମ୍ଭ ନୃପଜା ( ରାଜକୁମା ) ଅବା ।

୫୧—ସଚିବା ( ମନ୍ତ୍ରୀ ସ୍ତ୍ରୀ ) ଧାର୍ମି ( ବିଜ୍ଞ ) ଉପାଧ୍ୟାୟୀ (ଅଧ୍ୟାପିକା)କୁ କୁମା ପାଖକୁ ପେଷେ ( ପଠାଇଲା ) । ସେ ଉପାଧ୍ୟାୟୀ ଯାଉଁ ସେ ସମୟରେ ସଖୀମାନେ ପଲାଶ ( ପଦ୍ମପତ୍ର )ରେ ଶଯ୍ୟା ଶେଯାଉ ଥିଲେ ।

୫୨—ଉପାଧ୍ୟାୟୀକୁ ଦେଖି କାତରେ (ଭୟରେ) ସତ୍ୱରେ ( ଶୀଘ୍ର ରୁଚିର ଚୀରେ ( ମନୋହର ବସନରେ ) ସେ ଶଯ୍ୟାକୁ ଅଚ୍ଛାଦନ କଲେ । ତନୂଦରୀ ( କ୍ଷୀଣ ମଧ୍ୟା ) ସୁନ୍ଦରୀର ତନୁ ( ଦେହ )ର ପାଣ୍ଡୁରବର୍ଣ୍ଣ ଗୁପ୍ତ ( ଗୋପନ ନିମିତ୍ତ ) ଚନ୍ଦନ ଲିପିଲେ ।

୫୩—ବିପୁଳ (ବଡ଼) ପୁଲକ (ରୋମାଞ୍ଚ) ଶଙ୍କାରେ (ଢୋଡ଼ାଇବା ପାଇଁ) ଗଣ୍ଡରେ ମକରୀ ( ଗଣ୍ଡଚିତ୍ର ) କରି ବ୍ୟଜନ ( ବିଚଣା ) ଗୃଳ ପ୍ରଭଞ୍ଜନ ବଶେ ( ପ୍ରବଳ ବିଚଣା ପବନରେ ) ସ୍ୱେଦ ଝାଳ ନିବାରିଲେ ।

୫୪—ସେ ଉପାଧ୍ୟାୟୀ ଏହାଦେଖି ବୋଲେ ମୁଁ ଜାଣିଲିଣି ଏ ସୁନ୍ଦରୀ ମଗଧେଶ୍ୱର କୁମାରକୁ ଦେଖି ମାରେ (କାମତାପରେ) ଅବଶ ହୋଇଛି ଏହା ମାନସକୁ ଆଣିଲିଣି ।

୫୫—ଏ ସୁଗତର (ସୁନ୍ଦର ଗମନାର) ଯହିଁ ( ଯେଉଁଠି ) ଏ ଗତି (ଏପରିଦଶା) ହେଲା ତାର ( ସେ ସୁନ୍ଦରର ) କି ଗତି ହୋଇଥିବ ଭାବ (ବିଚାରକର) ଲୋକେ ଯଥା ମୁକ୍ତିକି ବାଞ୍ଛାକରନ୍ତି ସେହିପରି ସେ ଦୁର୍ଲ୍ଲଭ ବାଳାର କାନ୍ତ ( ନିକଟ ) ପ୍ରାପ୍ତିକି ବାଞ୍ଛା କରୁଥିବ ।

ଶାରୁଣୀ ଅନୁରୁଣୀ ଭଣି କହେ ବିନୟମତରେ ।
ମତ୍ତେ ଭଗମନା କାମନା ପୂର୍ଣ୍ଣ ହେବ କେମନ୍ତେ ॥ ୫୬

ସେ ଉତ୍ତର କଲ୍ଲ କାତର ଧୀର ଅଭରସାରୁ ।
ନ ଭଜିବ ବା ବନ୍ଧୁଜୀବ-ବନ୍ଧୁ ଅଧରୀ ଭୀରୁ ॥ ୫୭

କି ଅବା ତା ଶତ୍ରୁ ଆବେଶେ ଦେଖା ସଂବେଶେ ହୋଇ ।
ରୁର ପ୍ରରୁର ଏ ଶାରୁରବଶୁ କରି ଯେ ନାହିଁ ॥ ୫୮

ଅମ୍ଭେ କରିବା ଉଦଯୋଗ ଯୋଗଭଙ୍ଗିମା ଚାର୍ଯ୍ୟେ ।
ଯାଇ ଉପୁଜାଇ ସ୍ନେହକୁ ବଙ୍କବଚନ ବ୍ୟାଜେ ॥ ୫୯

ଉଠୁ କହେ ସଖୀନିକର କର ଧରିଣ ବେଗେ ।
ଅଜନ୍ମସୁଖୀ କଥା ଆଜଠାରୁ ତୁମ୍ଭଙ୍କ ଲଗେ ॥ ୬୦

କ୍ଷମାଇଁ ନୋହିଲ କହି ସେ ଗଲ ମନ୍ତ୍ରୀ ମନ୍ଦରେ ।
ତା ବଲ୍ଲଭୀ ଲଭି ଏ ବାର୍ତ୍ତା କହେ କାନ୍ତ ଆଗରେ ॥ ୬୧

ଭାବେ ସ୍ୱପନରେ ଲପନ ଦେଖିଥିବ କାହାର ।
ବିମ୍ବଅଧରୀ ବିମ୍ବ ଥାୟୀ କରି ବିରହଭର । ୬୨

---

୫୬—ଭଣି ଅନୁରୁଣୀ ( ସଖୀମାନେ ) ବିରୁର ବିନୟମତେ କହିଲେ—ଏମତେ ଭ-ଗମନା (ଗଜଗମନା)ର କାମନା କେମନ୍ତେ ପୂର୍ଣ୍ଣହେବ ।

୫୭—ସେ ଉତ୍ତର କଲ—ବନ୍ଧୁଜୀବ-ବନ୍ଧୁଅଧରୀ ( ବନ୍ଧୁଲିପୁଷ୍ପ-ବନ୍ଧୁ ଓଷ୍ଠୀ ) ଭୀରୁ ( ନାଗରୀ ) ମୋତେ ନ ଭଜିବ ବା ଅଭରସାରୁ ସେ ଧୀର କାତର ହୋଇଛି ।

୫୮—କି ଅବା ସଂବେଶେ (ସ୍ୱପ୍ନରେ) ଯାହାଠାରେ ତା ଶତ୍ରୁ ଅବେଶ (ପ୍ରବେଶ) ହୋଇ ଦେଖା ଦେଇଛି, "ସେ ସୁନ୍ଦରୀ କିଏ" ଏବିରୁର ବଶୁଁ ରୁର ପ୍ରରୁର (ଦୂତ ପ୍ରେରଣ) କରିନାହିଁ । କେଉଁ ସୁନ୍ଦରୀ ତାହାକୁ ସ୍ୱପ୍ନରେ ଦେଖିଛି ଏହା ସ୍ଥିର କରି ନ ଥିବାରୁ ସେ ଦୂତପଠାଇ ନାହିଁ ।

୫୯—ଅମ୍ଭେ ଯୋଗଭଙ୍ଗିମା (ମୁନିମୋହିନୀ)ର ଚାର୍ଯ୍ୟରେ ଉଦ୍‌ଯୋଗ କରିବା, ସେଠାକୁ ଯାଇ ବଙ୍କବଚନ ବ୍ୟାଜେ (କପଟରେ) ସ୍ନେହକୁ ଉପୁଜାଇବା ।

୬୦—ଉଠୁଁ (ଏହାକହି ଉପାଧ୍ୟାୟୀ ଉଠନ୍ତେ ) ସଖୀନିକର (ସଖୀସମୂହ) ବେଗେ କର ଧରିଣ କହେ ଅଜନ୍ମସୁଖୀ ଆମ୍ଭ ସଖୀର କଥା ଆଜଠାରୁ ତୁମ୍ଭଙ୍କଲଗେ

୬୧—କ୍ଷମାଇଁ ନୋହିଲ ( ଏକଥା କାହିଁକି ନ ହେବ ) ଏହା କହି ସେ ଉପାଧ୍ୟାୟୀ ମନ୍ତ୍ରୀ ମନ୍ଦରେ ଗଲ, ତା ବଲ୍ଲଭୀ (ମନ୍ତ୍ରୀ ସ୍ତ୍ରୀ) ଏ ବାର୍ତ୍ତା ଲଭି କାନ୍ତ ଆଗରେ କହେ ।

୬୨—ମନ୍ତ୍ରୀ ଶୁଣି ଭାବିଲ ବିମ୍ବାଧରୀ ରାଜଜେମା ସ୍ୱପ୍ନରେ କାହାର ଲପନ ( ମୁଖ ) ଦେଖିଥିବ, ସେହି ବିମ୍ବ ( ସ୍ୱପ୍ନ ପ୍ରତିବିମ୍ବକୁ ) ଥାୟୀ କରି ବିରହ ଭର ( ଅତ୍ୟନ୍ତ ବିରହିଣୀ ) ହୋଇଛି ।

କିରୂପ ନିରୂପଣ କରି ବଶ ହୋଇଛନ୍ତି ସେହି ।
ଜାଣିମା ଆଣିମା ବ୍ରହ୍ମାଣ୍ଡ ଏକ ପଟେ ଲେଖାଇ ॥ ୭୩
ବିଚିତ୍ରକର୍ମୀ ଚିତ୍ରକାର ଥିଲା ଡକାଇ କହି ।
ସ୍ୱରୂପ ବିଧାନେ ବିଧାତା ଗଲା ସେ ପଟ ଲିହି । ୭୪
ଲକ୍ଷଣଯୁକ୍ତ ପଦ ଚିନ୍ତି ଉପଇନ୍ଦ୍ରର କୃତି ।
ଲକ୍ଷ୍ମଣସହିତ ସାହିତ୍ୟ ଏହି ଚିତ୍ତ ମୋହିତ ॥ ୭୫

---

## ଊନତ୍ରିଂଶ ଛାନ୍ଦ

ରାଗ—ମାଳବ



ଣ ହେ କଳ୍ପକଜନେ ଏ ଚରିତ ରସି ।
ମନ୍ତ୍ରୀ ପୁରୋହିତ ବୈଦ୍ୟ ଦନେ ଛନ୍ତି ବସି ।

ଚିତ୍ରକାର ଆଣି ଦେଖାଇଲା ପଟ ଫେଇ ।
ଆଶ୍ଚର୍ଯ୍ୟ ସେ ତିନି ଲୋକ ପଟକୁ ଅନାଇ ॥

---

୭୩—ସେହି ରାଜଜେମା କି ରୂପ ନିରୂପଣ କରି ବଶ ହୋଇଛନ୍ତି ଏହା ଜାଣିବା ପାଇଁ ବ୍ରହ୍ମାଣ୍ଡ ଯାକ ଏକପଟେ ( ଗୋଟିଏ ଚିତ୍ର ପଟରେ ) ଲେଖାଇ ଆଣିବା ।

୭୪—ସ୍ୱରୂପ (ଅନୁରୂପ ଆକୃତି) ବିଧାନେ_(ଚିତ୍ର କରିବା ବିଷୟରେ) ବିଧାତା-ପରି ଯେଉଁ ବିଚିତ୍ରକର୍ମା ଚିତ୍ରକାର ଥିଲା ତାକୁ ମନ୍ତ୍ରୀ ଡକାଇ କହିଲା ସେ ପଟ ଲିହି (ଲେଖିବାକୁ) ଗଲା ।

୭୫—ଲକ୍ଷ୍ମଣସହିତ ରାମଚନ୍ଦ୍ରଙ୍କର ଲକ୍ଷଣ ଯୁକ୍ତ ( ଅଷ୍ଟାଦଶ ଚିହ୍ନ ଯୁକ୍ତ ) ପଦକୁ ଚିନ୍ତି ଏହି ଚିତ୍ତ ମୋହିତ ସାହିତ୍ୟ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା କୃତ ହୋଇଅଛି ।

---

୧—ହେ କଳ୍ପକ ଜନେ ( କଳ୍ପନା କରି ଜାଣିବା ଲୋକମାନେ ) ରସି ଏ ଚରିତ ଶୁଣ । ମନ୍ତ୍ରୀ ପୁରୋହିତ ଓ ବୈଦ୍ୟ ଦନେ ବସିଛନ୍ତି ।

୨—ଚିତ୍ରକାର ଆଣି ପଟ ଫେଇ ଦେଖାଇଲା, ସେ ତିନିଲୋକ ପଟକୁ ଅନାଇ ଆଶ୍ଚର୍ଯ୍ୟ ହେଲେ ।

ଲେଖା ଲେଖାବଳୀ ଶୁଦ୍ଧ ସୁଧର୍ମା ସଭାରେ ।
ଖୋଜ ନ ଦେଖିଲେ ତହିଁ ପ୍ରଧାନ ସୁନ୍ଦରେ ॥ ୩
ବଳସଦ୍ମେ ପଡ଼ ବାହୁଡ଼ିଲା ବେଗେ ନେତ୍ର ।
ସର୍ପ ଅସ୍ରପ ସ୍ୱଭାବେ ଅନାଦର ପାତ୍ର ॥ ୪
ଧରାରେ ହୋଇଲା ପୁଷ୍ପପୁର ନେତ୍ରକାରା ।
ସ୍ୱର୍ଗେ ନଥିବା ସୁନ୍ଦର ପଡ଼ିବାରୁ ଧରା ॥ ୫
ପୁନଃପୁନଃ ଗୃହ୍ଣୁ ମନ୍ତ୍ରୀ ପୁରୋହିତ ତର୍କି ।
ବୋଲେ କାମନା ଯହିଁ କି ଏ ଯୋଗ୍ୟ ତହିଁକି ॥ ୬
ରହିବାକୁ ଅମୃତ ଚନ୍ଦ୍ରମା ସିନା ସ୍ଥାନ ।
ବୈଦ୍ୟୋକ୍ତ ଯେ ଯହିଁ ରସେ ସେହି ସେ ପ୍ରଧାନ ॥ ୭
ଉମାସ୍ୱସା ବସ୍ତୁପ୍ରଦ ଶିବ ଶିରସ୍ଥାୟୀ ।
ଦେଖ ଗଙ୍ଗା ଲବଣ ସାଗରେ ସଙ୍ଗ ପାଇ ॥ ୮

---

୩—ଲେଖାବଳୀ ( ଦେବତା ସମୂହ ) ଲେଖା ହୋଇଥିବା ଶୁଦ୍ଧ ( ପବିତ୍ର ) ସୁଧର୍ମା ସଭାରେ ( ଦେବ ସଭାରେ ) ଖୋଜିଲେ ମଧ୍ୟ ତହିଁ ( ସେଠାରେ ) ପ୍ରଧାନ ସୁନ୍ଦରେ ନ ଦେଖିଲେ ।

୪—ବଳସଦ୍ମ ( ପାତାଳ ପୁରେ ) ନେତ୍ର ପଡ଼ ବେଗେ ବାହୁଡ଼ିଲା । ପାତାଳ-ବାସୀମାନେ ସର୍ପ ଏବଂ ଅସ୍ରପ ( ରାକ୍ଷସ ) ହେତୁ ସ୍ୱଭାବରେ ଅନାଦର ପାତ୍ର ଅଟନ୍ତି ।

୫—ଧରାରେ ପୁଷ୍ପପୁର ନାମକ ନଗର ନେତ୍ରକାରା ( ନୟନର ବନ୍ଦଘର ) ହୋଇଲା, ସ୍ୱର୍ଗରେ ଯେଉଁ ସୁନ୍ଦର ନାହିଁ ସେ ସୁନ୍ଦର ସେଠାରେ ଧରା ପଡ଼ିବାରୁ ନୟନ ବନ୍ଦୀ ହୋଇ ରହିଲା ।

୬—ମନ୍ତ୍ରୀ ପୁନଃ ପୁନଃ ଗୃହ୍ଣୁ ପୁରୋହିତ ତର୍କି (ବିଚାରି) କହିଲା-ଅମ୍ଭମାନଙ୍କର ଯହିଁକି କାମନା ଅଛି ଏ ପୁରୁଷ ତହିଁକି ଯୋଗ୍ୟ ଅଟେ ।

୭—ଅମୃତ ରହିବାକୁ ଚନ୍ଦ୍ରମା ସିନା ଯୋଗ୍ୟସ୍ଥାନ । ସେହିପରି ଏ ସୁନ୍ଦର କେମାର ଅନୁରୂପ ପାତ୍ର । ବୈଦ୍ୟୋକ୍ତ ( ତାପରେ ବୈଦ୍ୟ କହିଲା ) ଯେ ଯହିଁରେ ( ଯାହାଠାରେ ) ରସେ ତାହାର ସେହି ପ୍ରଧାନ ଅଟେ । ଅର୍ଥାତ୍ ଅମର ବାଛିବାରେ କି ହେବ କେମା ମନ ଯାହାଠାରେ ରସିବ ସେହି ତାହାର ଯୋଗ୍ୟ ପାତ୍ର ହେବ ।

୮—ଦେଖ ଉମାସ୍ୱସା ( ଉମା ଭଗିନୀ ) ଗଙ୍ଗା ବସ୍ତୁପ୍ରଦ ଓ ଶିବ ଶିର ସ୍ଥାୟୀ ହେଲେହେଁ ଲବଣ ସାଗରରେ ସଙ୍ଗ ପାଇଲା ।

ପରମପାବନୀ ତୀର୍ଥମାନ ଯେତେ ଥିଲେ ।
ଗୃତକ ଶତ୍ରୁ ରସିତ ଘେନ ଘନଜଳେ ॥ ୯
ବିପ୍ର ବୋଲେ ଜଳ ଜଡ଼ ସବର୍ଣ୍ଣତ୍ୱ ଅଛି ।
ବିବେକଶୂନ୍ୟରେ ପଶୁ ପକ୍ଷୀ ସମେ ଲକ୍ଷି ॥ ୧୦
ଯେ ଉତ୍ତମ-ଉତ୍ତମାଙ୍ଗ-ଭୂଷଣ ରତନ ।
ଦୁର୍ଲ୍ଲଭ ବଲ୍ଲଭେ ସିନା ନିବେଶିବ ମନ ॥ ୧୧
ନାରଦ ପର୍ବତ ତାତ ବର କରିଥିଲା ।
ଇଳାକନ୍ୟା ବିଷ୍ଣୁ ଦରଶନେ ମାଳା ଦେଲା ॥ ୧୨
ବୈଦ୍ୟ ଭିକ୍ଷେ ସାଧ୍ୱୀ ଯାହା ଘେନ ବରଦ୍ଧଣୀ ।
ବାଣିଜ୍ୟ କରିବ ସେହି ସ୍ୱପ୍ନଧନ ଘେନ ॥ ୧୩
ଗନ୍ଧବତୀସାର ରସବତୀ ଯେ ପଦ୍ମିନୀ ।
କୋମଳା ଏ ପ୍ରଶଂସାରୁ ଅନ କି କାମିନୀ ॥ ୧୪

---

୯—ଘେନ ( ବିଗୃର ) ପରମ ପାବନୀ ( ଅତି ପବିତ୍ର କାରିଣୀ ) ତୀର୍ଥଜଳ ଯେତେ ଥିଲେ ମଧ୍ୟ ଗୃତକ ଶତ୍ରୁ ଘନଜଳରେ ରସିଲା ।

୧୦—ବିପ୍ର ( ପୁରୋହିତ ) କହିଲା—ଜଳ ଏବଂ ଜଡ଼ ଏ ଦୁହିଁଙ୍କର ସବର୍ଣ୍ଣତ୍ୱ ଡ ଓ ଲର ଭେଦ ନ ଥିବାରୁ ସମାନ ବର୍ଣ୍ଣତା ଅଛି, ସୁତରାଂ ଜଳ ଜଡ଼ ( ଜ୍ଞାନ ହୀନ ) ଅଟେ, ଆଉ ବିବେକ ଶୂନ୍ୟ ବିଷୟରେ ପଶୁ ଓ ପକ୍ଷୀ ସମାନ କରି ଲକ୍ଷ୍ୟକରିବା । ଗଙ୍ଗାଜଳ ଓ ଗୃତକ ପକ୍ଷୀ ବିଗୃର କରି ନ ପାରି ଭଲ ଗୁଡ଼ି ମନରେ ରସିଲେ ।

୧୧—ଯେ ରାଜକେମା ଉତ୍ତମା-ଉତ୍ତମାଙ୍ଗ-ଭୂଷଣ-ରତନ ( ଉତ୍ତମା ସ୍ତ୍ରୀମାନଙ୍କର ମସ୍ତକ ମଣ୍ଡନ ମଣି ) ପରି ସେ ଦୁର୍ଲ୍ଲଭ ବଲ୍ଲଭଠାରେ ( ପତି ଠାରେ ) ସିନା ମନ ନିବେଶିବ ।

୧୨—ଦେଖ ତାତ ( ପିତା ) ପର୍ବତ ନାରଦ ଋଷିଙ୍କୁ ବର କରିଥିଲା, କିନ୍ତୁ ଇଳା କନ୍ୟା ବିଷ୍ଣୁଙ୍କ ଦର୍ଶନରେ ତାଙ୍କୁ ( ବିଷ୍ଣୁଙ୍କୁ ) ବରମାଳା ଦେଲା ।

୧୩—ବୈଦ୍ୟ ଭିକ୍ଷେ ସାଧ୍ୱୀ ( ପତିବ୍ରତା ରାଜକେମା ) ଯାହା ଘେନ ବରଦ୍ଧଣୀ ହୋଇଛି ସେହି ସ୍ୱପ୍ନଧନ ( ସ୍ୱପ୍ନରେ ପାଇଥିବା ରତ୍ନ ) କୁ ଘେନ ବାଣିଜ୍ୟ ( ବ୍ୟବସାୟ ) କରିବ ।

୧୪—ଗନ୍ଧବତୀସାର, ରସବତୀ, ପଦ୍ମିନୀ, କୋମଳ, ଏ ପ୍ରଶଂସାରୁ କାମିନୀ ଅନ କି ? ( ଅନ୍ୟ ପ୍ରକାର କି ? )

ସେ ଚଣ୍ଡାଂଶୁ ସ୍ନେହବଶ ଥାଇ ଚନ୍ଦ୍ର ପ୍ରୀତି ।
ତାର ପ୍ରକାଶେ ପଦ୍ମିନୀ ନୟନ ମୁଦନ୍ତି ॥ ୧୫
ବୃନ୍ଦାବତୀ ଜଳନ୍ଧରେ ହେବାରୁ ଲୋଲୁପ ।
ଭଗବାନ ଦିବ୍ୟରୂପେ ଦେଖି ଦେଲା ଶାପ ॥ ୧୬
ମନ୍ତ୍ରୀ ବୋଲେ ଏ ବଣି ପସରା ପରି ପଟ ।
ସୁବର୍ଣ୍ଣ ଦୁର୍ବର୍ଣ୍ଣ ଅଛି ଜାଣିମା ଲମ୍ପଟ ॥ ୧୭
ଅହେ ରଙ୍ଗାଜୀବ ତବଜୀବ ବନ୍ଧୁ ଯିବ ।
ବନ୍ଧୁ ଜୀବ-ଅଧରୀକି ଏ ପଟ ଭେଟିବ । ୧୮
ସେ କାଳେ ନେତ୍ର କପାଳେ ଦୃଷ୍ଟିକି ନିବେଶି ।
ଜାଣିମ ଲୀଳାଭିଳାଷୀ ଯହିଁ ସାଭିଳାଷୀ ॥ ୧୯
କରିବା ବରି ଆଣିବା ଉଦ୍ୟମ ଶୁଣି ତା ।
ସେ ଯାଇଁ ପ୍ରେରଣି କଲା ଶୁଦ୍ଧାନ୍ତେ ବନିତା ॥ ୨୦

---

୧୫—ପଦ୍ମିନୀ ଚଣ୍ଡାଂଶୁ ( ସୂର୍ଯ୍ୟର ) ସ୍ନେହରେ ବଶୀଭୂତ ହୋଇ ଚନ୍ଦ୍ର ସଙ୍ଗରେ ପ୍ରୀତି କରିବା ହେତୁରେ ଥାଇ ତାର ( ଚନ୍ଦ୍ରର ) ପ୍ରକାଶରେ ନୟନ ମୁଦନ୍ତି ( ସଙ୍କୁଚିତ ହୁଅନ୍ତି ) ।

୧୬—ବୃନ୍ଦାବତୀ ଜଳନ୍ଧରଠାରେ ଲୋଲୁପ ( ଆସକ୍ତ ) ହେବାରୁ ଭଗବାନଙ୍କର ଦିବ୍ୟରୂପ ଦେଖି ଶୁଦ୍ଧା ତାହାଙ୍କୁ ଶାପ ଦେଲା ।

୧୭—ମନ୍ତ୍ରୀ କହିଲେ—ଏ ପଟଖଣ୍ଡି ବଣି ( ବୈଶ୍ୟ ବଣିଆଁ ) ର ପସରା ପରି । ତାହାର ପସରାରେ ସୁବର୍ଣ୍ଣ ( ସୁନା ) ଦୁର୍ବର୍ଣ୍ଣ ( ରୁପା ) ଥିଲା ପରି ଏ ପଟରେ ସୁବର୍ଣ୍ଣ ( ସୁରୂପ ) ଦୁର୍ବର୍ଣ୍ଣ ( କୁରୂପ ) ଚିତ୍ର ଅଛି, ଜାଣିବା ଜେମା କାହିଁରେ ଲମ୍ପଟ ( ସ୍ନେହନୀ ) ହେବ ।

୧୮—ଅହେ ରଙ୍ଗାଜୀବ ( ଚିତ୍ରକର ) ! ତୁମ୍ଭର ଜୀବବନ୍ଧୁ ( ଭାର୍ଯ୍ୟା ) ଯିବ ବନ୍ଧୁଜୀବ ଅଧରୀକି (ବଧୁଲୀ ପୁଷ୍ପ ସଦୃଶ ଅଧରୀକୁ) ଏ ପଟ ଭେଟି କରିବ ।

୧୯—ସେ କାଳେ ( ଚିତ୍ରପଟ ଦେଖିବା ସମୟେ) ଲୀଳାଭିଳାଷୀ (କ୍ରୀଡ଼ାଭିଳାଷୀ ରାଜଜେମା ) ନେତ୍ରକୁ କପାଳରେ ଖୋସି ଯହିଁ ( ଯେଉଁ ଚିତ୍ରରେ ) ଦୃଷ୍ଟିକି ନିବେଶିବ, ସେହି ରୂପରେ ସାଭିଳାଷୀ ଅନୁରାଗିଣୀ ବୋଲି ତୁମ୍ଭ ସ୍ତ୍ରୀ ଅନୁମାନରେ ଜାଣିବ ।

୨୦—ସେ କଥା ଅମ୍ଭଙ୍କୁ ଜଣାଇଲେ ଅମ୍ଭେ ଉଦ୍ୟମ କରି ସେ ବରକୁ ଆଣିବା । ତାହା ଶୁଣି ଚିତ୍ରକର ଯାଇ ନିଜ ବନିତା ( ସ୍ତ୍ରୀ ) କୁ ଶୁଦ୍ଧାନ୍ତେ ( ଅନ୍ତଃପୁରକୁ ) ପ୍ରେରଣି କଲା ।

ଦେଖେ ବାଳା ବାସାଞ୍ଚଳ ଦଶା ଗ୍ରହ କରି ।
ଛିଣ୍ଡାଉଛୁ ପରମପଣ୍ଡିତା ଗୁଣ ଧରି ॥ ୨୧
ପୂର୍ବ ଲୋକନ ଅପୂର୍ବପୁରୁଷ ବହନେ ।
ଆଶ୍ରୟ ନାହିଁ ବଞ୍ଚିତ ସଂଶୟ ଜୀବନେ ॥ ୨୨
ହୃଦୟଦୋଳିତ ପଦ୍ମ ପୁଷ୍ପମାଳ ମ୍ଳାନ ।
ରସାଳସୀ ଶିଶୁଶଶୀ ପ୍ରଭବ ରଞ୍ଜନ ॥ ୨୩
ରସାଳ ଡାଳମ୍ବ ବୀଜ ଅଶନେ ଡରଇ ।
ପାଣିସ୍ଥିତ କମଳ ଚୁମ୍ବିବା ଇଚ୍ଛା ହୋଇ ॥ ୨୪
ଅଗାଧ ଶୋକସାଗରେ ବୁଡ଼ି ଯାଇ ମନ ।
ଉଦିତ ମୁଦିତେ ଦେଖେ ମୁଦିଲ ନୟନ ॥ ୨୫
କଥା ପ୍ରସଙ୍ଗ ସ୍ୱଭାବେ ବଚନ ରଚଇ ।
ଚନ୍ଦନ-ଇନ୍ଧନ ନବାମ୍ବର ପାଶେ ସ୍ଥିତ ॥ ୨୬

---

୨୧—ସେ ଯାଇ ଦେଖିଲ ବାଳା, ପରମପଣ୍ଡିତା ଗୁଣଧର ବାସାଞ୍ଚଳ (କାନିପଣତ) ର ଦଶା (ଦଶିମାନଙ୍କୁ) ଗ୍ରହ (ଗ୍ରହଣ) କରି (ଗ୍ରହଦଶାଚ୍ଛନ୍ନ ହେବା ଅଭିପ୍ରାୟରେ) ଛିଣ୍ଡାଉଛୁ ।

୨୨—ପୂର୍ବରେ ଲୋକନ (ଦେଖିଥିବା) ଅପୂର୍ବ ପୁରୁଷ ବହିନେ (ବ୍ୟତୀତ) ଅନ୍ୟ ଆଶ୍ରୟ ନାହିଁ, ଜୀବନରେ ବଞ୍ଚିତ (ବଞ୍ଚିବାକୁ) ସଂଶୟ ହେଉଛୁ । ଦଶଦଶା ବର୍ଣ୍ଣନା । (ଅସୌଷ୍ଠବ) ।

୨୩—ବିରହ ତାପରୁ ହୃଦୟରେ ଦୋଳିତ (ଲମ୍ବିତ) ପଦ୍ମ ଓ ପୁଷ୍ପମାଳ ମ୍ଳାନ ହୋଇଛୁ (ତାପ) । ରସାଳସୀ ରାଜଜେମା ଶିଶୁ ଶଶୀ (ଦ୍ୱିତୀୟା ଚନ୍ଦ୍ରର) ପ୍ରଭବ (ଦୀପ୍ତିକ) ରଞ୍ଜନ ହୋଇଛୁ (ପାଣ୍ଡୁ ଓ କୃଶ ଦଶା) ।

୨୪—ରସାଳ (ଅମ୍ବ) ଓ ଡାଳମ୍ବବୀଜ ଅଶନେ (ଭକ୍ଷଣ କରିବାକୁ ଡର) (ଅରୁଚି) ପାଣିସ୍ଥିତ କମଳ (ହାତରେ ଥିବା ପଦ୍ମକୁ) ଚୁମ୍ବିବାକୁ ଇଚ୍ଛା ହୁଅଇ (ଅଧୃତି) ।

୨୫—ଅଗାଧ (ଅତଳ) ଶୋକ ସାଗରରେ ମନ ବୁଡ଼ିଯାଏ (ଅନାବଲମ୍ବ) । ନୟନ ମୁଦ୍ରିତେ (ମୁଦ୍ରିତ କରିବା ଦ୍ୱାରା) ପୂର୍ବରେ ଦେଖିଥିବା ପୁରୁଷଉଦିତ (ପ୍ରକାଶିତ) ହୋଇଥିବାର ଦେଖେ (ତନ୍ମୟ) ।

୨୬—କଥା ପ୍ରସଙ୍ଗ (ବାତୁଳ) ସ୍ୱଭାବରେ ବଚନ ରଚନା କରଇ (ଉନ୍ମାଦ) । ମୂର୍ଚ୍ଛାନ୍ତେ ଚନ୍ଦନଇନ୍ଧନ (ଚନ୍ଦନକାଷ୍ଠ) ନବାମ୍ବର (ନୂଆଲୁଗା) ପାଖରେ ଥିବାର ଦେଖି ବିଚାରଇ-ମୁଁ ମଲେ ଦାହ ପାଇଁ ଏ ସବୁ ରଖା ଯାଇଅଛୁ (ମୂର୍ଚ୍ଛା) ।

ରଙ୍ଗୋପଜୀବନୀ ପଟ ଭେଟେ ଏ ସମୟେ ।
ଦେଖେ ରେଖଣ ବର୍ତ୍ତିକଗଣ ଶୋଭା ପାଏ ॥ ୨୭
ସଖୀ ସଙ୍ଗେ ସୁମୁଖୀ ସେ ଚିତ୍ର ଦେଖି ଦେଖି ।
ଗତ ଦର୍ଶନ ପୁରୁଷେ ରଖିଲା ସେ ଆଖି ॥ ୨୮
ସେ ଖଞ୍ଜନ ରଞ୍ଜନ ସେ ପ୍ରତିମା ପିତୁଳା ।
ସାରଗାର ଗୁଣା ଅଠାକାଠିରେ ଲଗିଲା ॥ ୨୯
ପୁଲକିଲା କପୋଳ କି ସେ ନୀପକଳିକା ।
ଚୁମ୍ବବୋଲି ଦେଖାଇଲା କିଶୋର-ଅଳିକା ॥ ୩୦
ଅଳସ ବ୍ୟାଜେ ଛନ୍ଦିଲା ଊର୍ଦ୍ଧ୍ୱେ ବେନିକର ।
ଏ ପାଶେ ବାନ୍ଧି ରଖିବ ଅଭିପ୍ରାୟ କି ତାର ॥ ୩୧
ଘଞ୍ଚି କୁଚ ଉଚ ଦିଶିବାରୁ ଏହା ତର୍କି ।
କାରାଗୃହ ସ୍ଥଳେ ଅମ୍ବୁଜାକ୍ଷୀ ତମ୍ବୁ ଠେକି ॥ ୩୨
ସେ ଅନୁରାଗିଣୀ ସେ ବାମାକୁ ଅନୁଗ୍ରହ ।
କଲା ଅଣାଇ ବସନ ଭୂଷଣ ସନ୍ଦୋହ ॥ ୩୩

---

୨୭—ଏହି ସମୟରେ ରଙ୍ଗୋପଜୀବନୀ ( ଚିତ୍ରକର ସ୍ତ୍ରୀ ) ପଟ ନେଇ ଭେଟିଲା । କେମିତି ଦେଖିଲା—ରେଖଣ ବର୍ତ୍ତିକଗଣ ( ଚିତ୍ରିତ ଚିତ୍ରମୂର୍ତ୍ତି ସବୁ ) ସେ ପଟରେ ଶୋଭା ପାଏ ।

୨୮—ସୁମୁଖୀ ରାଜକନ୍ୟା ସଖୀ ସଙ୍ଗରେ ସେ ଚିତ୍ରକୁ ଦେଖି ୨ ପୂର୍ବେ ଦେଖିଥିବା ପୁରୁଷଠାରେ ଆଖି ରଖିଲା ।

୨୯—ସେ ସୁନ୍ଦରୀର ରଞ୍ଜନ ( ଅନୁରାଗଜନକ ) ଚକ୍ଷୁ ଖଞ୍ଜନପକ୍ଷୀ, ସେ ପୁରୁଷର ପ୍ରତିମା ପିତୁଳାର ( ପ୍ରତିମୂର୍ତ୍ତିର ) ଗୃହ ପାଖରେ ଥିବା ସାର ଗାରର ଗୁଣ (ଅନ୍ତର) ଅଠାକାଠି ତହିଁରେ ଲଗିଲା ।

୩୦—ସେ ସମୟରେ କପୋଳ ( ଗଣ୍ଡସ୍ଥଳ ) ପୁଲକିଲା, ସେ ନୀପକଳି କି ( କଦମ୍ବ କଳିକା ସଦୃଶ ପୁଲକିତ ଗଣ୍ଡକୁ) ଚୁମ୍ବବୋଲି ଚିତ୍ର ପୁରୁଷରୂପକ କିଶୋର ଅଳିକି ( ଯୁବାଭୃଙ୍ଗକୁ ) ଦେଖାଇଲା କି ?

୩୧—ଅଳସ ଭାଙ୍ଗିବା ବ୍ୟାଜେ ( କପଟରେ ) ବେନିକର ( ଦୁଇହାତ) ଉଠାଇ ଊର୍ଦ୍ଧ୍ୱରେ ଛନ୍ଦିଲା, ଏହି ବାହୁ ପାଶରେ ଚିତ୍ର ପୁରୁଷକୁ ବାନ୍ଧି ରଖିବା ତାର ଅଭିପ୍ରାୟ କି ?

୩୨—ଘଞ୍ଚିକୁଚ ଉଚ ଦିଶିବାରୁ ଏପରି ତର୍କଣା କରାଯାଉଛି ଯେ ଅମ୍ବୁଜାକ୍ଷୀ ( ପଦ୍ମନେତ୍ରୀ ) ତାହାକୁ କାରାଗୃହ (କଇଦ ଘର ) କରି ତହିଁରେ ତମ୍ବୁ ଠେକିଛି ।

୩୩—ସେ ଅନୁରାଗିଣୀ ରାଜକନ୍ୟା ବସନ ଭୂଷଣ ସନ୍ଦୋହ ( ସମୂହ ) ଅଣାଇ ସେ ଚିତ୍ରକାର ବାମାକୁ ଦାନ କରିବା ଦ୍ୱାରା ଅନୁଗ୍ରହ ପ୍ରକାଶ କଲା ।

ବନ୍ଧ-ଅବାସ କରଣ ପଣ୍ଠକୁ ଥୋଇଲା ।
କେବଳ ହସ୍ତରେ ଧରି ବାହାର ନ କଲା ॥ ୩୪
ବାହୁଡ଼େ ସେ ବାଲୀ କର ମନୋରଥ ପୂର୍ଣ୍ଣ ।
ତା ପତି ଶୁଣି ସମସ୍ତ ସଚିବେ କଥନ ॥ ୩୫
ଜାଣିଲା ପୁଷ୍ପ ପୁରେଶ କୁମାରେ ଲୋଭିତ ।
କହିବା ଶୁଣ କୋବିଦେ ଏବେ ତା ଚରିତ ॥ ୩୬
ତାପୀ ବିରହେ ଅଧିକେ ଉଷ୍ମାଗମ ଦହେ ।
ନୃପନନ୍ଦନ ଆରାମ-ସଦ୍ମେ ବସି କହେ ॥ ୩୭
ଏ ନିଦାଘ ଋତୁ ବ୍ୟାଘ୍ର ପ୍ରବେଶ ନଗରେ ।
ଦେଖ ରଙ୍ଗଣି ପାଟଳୀ ସରକ୍ତ କରେ ॥ ୩୮
ଖର-କରଜ ପ୍ରଭୁତ୍ୱ ଅତ୍ୟନ୍ତ ଦେଖାଇ ।
ଧୂନି କରି ବଦାରି ଜୀବନ ହରିନେଇ ॥ ୩୯

---

୩୪—ପଣ୍ଠକୁ ବନ୍ଧଅବାସ ( କାରାଗୃହ ) କରି ତହିଁରେ ମନକୁ ଥୋଇଲା, କେବଳ ହାତରେ ଧରି ବାହାରକୁ ବାହାରିଲା ନାହିଁ ।

୩୫—ସେ ବାଳୀ ନିଜକର ସ୍ତ୍ରୀ ମନୋରଥ ପୂର୍ଣ୍ଣକରି ବାହୁଡ଼େ, ତା ପତି ନିଜକର ତାହାଠାରୁ ସମସ୍ତ ଶୁଣି ସମସ୍ତ ବିଷୟ ସଚିବେ ( ମନ୍ତ୍ରୀ ) କୁ କହିଲା ।

୩୬—ମନ୍ତ୍ରୀ ଜାଣିଲା ରାଜଜେମା ପୁଷ୍ପପୁରେଶ ( ପୁଷ୍ପପୁର ରାଜାଙ୍କ ) କୁମାରଠାରେ ଲୋଭିତା । ହେ କୋବିଦେ ( ପଣ୍ଡିତମାନେ ) । ଏବେ ସେ କୁମାରର ଚରିତ କହିବା ଶୁଣ ।

୩୭—ସେ କୁମାର ଏକେ ବିରହରେ ତାପୀ ହୋଇଛି ତହିଁରେ ପୁଣି ଉଷ୍ମାଗମ ( ଗ୍ରୀଷ୍ମକାଳ ) ଅଧିକେ ଦହୁଛି, ଏ ଅବସ୍ଥାରେ ନୃପନନ୍ଦନ ଆରାମସଦ୍ମେ ( ଉପବନ ସ୍ଥିତ ଗୃହରେ ) ବସି କହଇ । ଆରାମ ( ଉପବନ ) ସଦ୍ମ ( ଗୃହ ) ।

୩୮—ଏ ନିଦାଘ (ଗ୍ରୀଷ୍ମ) ଋତୁ ବ୍ୟାଘ୍ର ନଗରରେ ପ୍ରବେଶ କଲେ ପା ( ପାଦ ) ଠେଲି ପଡ଼ି ଯିବା ଲୋକଙ୍କୁ ବିଦାରି ରଙ୍ଗଣୀ ଫୁଲପ୍ରାୟ ସରକ୍ତ ( ରକ୍ତ ଯୁକ୍ତ ) କରେ । ଏ ଗ୍ରୀଷ୍ମକାଳ ନଗ ( ପର୍ବତ ) ରେ ପ୍ରବେଶ ହୋଇ ରଙ୍ଗଣୀ ଓ ପାଟଳୀ ବୃକ୍ଷକୁ ପୁଷ୍ପଦ୍ୱାରା ସରକ୍ତ ( ରକ୍ତବର୍ଣ୍ଣ ) କରଇ ।

୩୯—ସିଂହ ଖର କରଜ ( ତୀକ୍ଷ୍ଣନଖ ) ର ପ୍ରଭୁତ୍ୱ (ପ୍ରଭାବ ) ଅତ୍ୟନ୍ତ ଦେଖାଇ ଧୂନି ( ଗର୍ଜନ ) କରି ପ୍ରାଣୀମାନଙ୍କୁ ବିଦାରି ଜୀବନ ହରି ନିଅଇ । ଏ କାଳ ମଧ୍ୟ ଖର କରଜ ପ୍ରଭୁତ୍ୱ ( ଖରକର ଯେ ସୂର୍ଯ୍ୟ ତାହାଙ୍କଠାରୁ ଜାତପ୍ରଭୁତ୍ୱ ପ୍ରଚଣ୍ଡ କିରଣକୁ ) ଅତ୍ୟନ୍ତ ଦେଖାଇ ଧୂନି (ନଦୀ) ମାନଙ୍କୁ ବିଦାରି କରି ( ବିଦାରିଲାପରି ଧାର ଧାର କରି ) ଜୀବନ ( ଜଳକୁ ) ହରି ନିଅଇ ।

କେତେ ରକ୍ଷା ଯେ ଅଭୟ ବାଡ଼ କରିଥିବେ ।
ବିଦ୍ୟାନିଧି ଯଶୋବନ୍ତ ଉତ୍ତର ଏ ଭାବେ ॥ ୪୦
ନବଚଣ୍ଡୀ ପ୍ରସନ୍ନେ ଏ ଭ୍ରାନ୍ତି ଯିବ ନାଶ ।
ମନ୍ତ୍ରର ଦେଇ ଅନ୍ତର ହୋଇ ଶଣ୍ଢପୁଂସ ॥ ୪୧
ସ୍ତ୍ରୀପୁଂସଲକ୍ଷଣା ବୋଲେ ଉଦ୍ୟମ କରିବା ।
ଉଦନ୍ତ ହେଉଥିବା କି ସେ କଟକେ ଯିବା ॥ ୪୨
ସ୍ୱର୍ଗ ଯେ ଦୁର୍ଲ୍ଲଭ ଯତ୍ନ କରି ଲଭେ ଜନ ।
ମନ୍ତ୍ରୀଜ ଉକ୍ତି ସେ ବାଳା କରୁଣାର ସ୍ଥାନ ॥ ୪୩
ଭଲ ଅଭିଳାଷ ପରିଚୟ ବିନା ବାଳା ।
କାମଶରେ ଗୁହାଁଣି ଛଟକେ ବିନ୍ଧିଦେଲା ॥ ୪୪
ସେ କମଳା ଏହାଙ୍କ ଏ ଚିନ୍ତା ସେହୁଦିନୁ ।
ମୁଁ ପୁରୁଷୋତ୍ତମ କେବେ ମଣ୍ଡିବ ମୋ ଜାନୁ ॥ ୪୫

---

୪୦—ଯେଉଁମାନେ ଅଭୟ ପାଇ ବାଡ଼ କରିଥିବେ ସେମାନେ କେତେ ବ୍ୟାଘ୍ର ଭୟରୁ ରକ୍ଷା ପାଇବେ ଯେଉଁମାନେ ଅଭୟ ( ବେଣାଚେର ) କୁ ବାଡ଼ କରିଥିବେ ସେମାନେ ମଧ୍ୟ କେତେ ଗ୍ରୀଷ୍ମରୁ ରକ୍ଷା ପାଇବେ ବିଦ୍ୟାନିଧି ( ଯଶୋବନ୍ତ ) ଏ ଭାବେ ଉତ୍ତର କଲେ ।

୪୧—ନବଚଣ୍ଡୀ (ନବଦୁର୍ଗା) ପ୍ରସନ୍ନ ହେଲେ ବ୍ୟାଘ୍ର ଭୟ ନାଶ ହୁଅଇ, ସେହିପରି ନବଚଣ୍ଡୀ ( ନୂତନା ରମଣୀ ) ପ୍ରସନ୍ନହେଲେ ତୁମ୍ଭ ଭ୍ରାନ୍ତିନାଶ ଯିବ । ଏ ବିଷୟରେ ମନ୍ତ୍ର ( ବିଗୁର ) ଦେଇ ଶଣ୍ଢପୁଂସ ଅନ୍ତର ହୋଇଛନ୍ତି ।

୪୨—ସ୍ତ୍ରୀ ପୁଂସ ଲକ୍ଷଣା—ପୋଟା ନପୁଂସକ ଆମ୍ଭେମାନେ ସେ ବିଷୟରେ ଉଦ୍ୟମ କରିବା । ଉଦନ୍ତ (ବାର୍ତ୍ତା) ଦେଉଥିବା କି ସେ କଟକେ (ନଗରକୁ) ଯିବା ।

୪୩—ସେ ସ୍ୱର୍ଗ ଦୁର୍ଲ୍ଲଭ ତାହାକୁ ଜନ ଯତ୍ନକରି ଲଭେ ( ଅର୍ଥାତ୍ ରାଜଜେମା ଦୁର୍ଲ୍ଲଭ ହେଲେ ଉଦ୍ୟମ କଲେ ଅବଶ୍ୟ ସୁଲଭ ହୋଇ ପାରିବ ) । ମନ୍ତ୍ରୀଜ ( ମନ୍ତ୍ରୀପୁତ୍ର ) ଉକ୍ତିକଲା—ସେ ବାଳା କରୁଣାର ( ଦୟାର ) ସ୍ଥାନ ଅଟେ ।

୪୪—ତାହାର ଅଭିଳାଷ ( ଅନୁରାଗ ) ଭଲ, ସେ ବାଳା ବିନାପରିଚୟରେ କାମଶର ସଦୃଶ ଗୁହାଁଣି ଛଟକରେ ଏପରି ବିନ୍ଧିଦେଲା ଯେ ରାଜପୁତ୍ର କେବଳ ତାହାକୁ ଧ୍ୟାନ କରୁଅଛନ୍ତି । ଏହିଠାରୁ ପ ୫୨ ଦ ପର୍ଯ୍ୟନ୍ତ କାମର ଦଶଦଶା ଅର୍ଥାତ୍-ଅଭିଳାଷ, ଚିନ୍ତା ସ୍ମୃତି, ଗୁଣକଥନ, ଉଦ୍‌ବେଗ,ପ୍ରଳାପ, ଉନ୍ମାଦ, ବ୍ୟାଧି, ଓ ମୃତ୍ୟୁ ପ୍ରଭୃତିର ବର୍ଣ୍ଣନ ।

୪୫—ସେହିଦିନୁ ଏହାଙ୍କର ଏ ଚିନ୍ତା—ସେ କମଳା (ପଦ୍ମିନୀ ସ୍ତ୍ରୀ) ସୁତରାଂ ଲକ୍ଷ୍ମୀ ମୁଁ ପୁରୁଷୋତ୍ତମ ( ଉତ୍ତମପୁରୁଷ ଓ ବିଷ୍ଣୁ ) ତେବେ କେବେ (କାଳର) ସେ ମୋ ଜାନୁ ମଣ୍ଡିବେ ।

ଶ୍ରୀମୁଖ ବଙ୍କ-ବିଜୃମ୍ଭ ତାରକ ପ୍ରସଙ୍ଗ ।
ସ୍ମୃତି ଯେଣୁ ପବନ ହୁଅଇ ପ୍ରତିଦିନ ॥ ୪୬
ମହୀମଣ୍ଡନା ମହିଳାମଣି ତୋ ବିହୀନ ।
ନ ଥିଲ ନୋହିବ ନାହିଁ ଏ ଗୁଣ କଥନ ॥ ୪୭
ବିଷୟ୍ ହେଲଣି ପ୍ରାନ୍ତ ହତ ଯେଉଁ ଦିନେ ।
ମୃଦୁଧ୍ୱନି ଶୁଭେ ଶ୍ରୁତି ଠେକଇ ଉଦ୍‌ବେଗେ ॥ ୪୮
ପ୍ରତିଆଶାରେ ସେ ଶ୍ୟାମାରୂପେ ଦିଶିଗଲେ ।
ଆସ ଆସ ବସ କୋଳେ ପ୍ରଳାପରେ ବୋଲେ ॥ ୪୯
କଳକଣ୍ଠ ଦୂତକରେ ଉଡ଼ିଗଲେ ସେହି ।
ଉନ୍ମାଦେ ହସି ଭାଷଇ ଗଲ ବାଉଁ କହି ॥ ୫୦
ବୋଲେ ତନୁ ହରଣକୁ ଗୃହିଁ ଯେବେ ପୃଚ୍ଛି ।
କ୍ଷତ୍ରିୟଜନ୍ୟ ଏ ବ୍ୟାଧି ପ୍ରସ୍କର କାହିଁଛି ॥ ୫୧
କଳ ଆନ ପ୍ରତିମା ପର୍ଯ୍ୟେ କ୍ଷଣେ କ୍ଷଣେ ।
ଶ୍ୱାସ ବଡ ଜଡଭାବ ନାହିଁ ଗତି ଭଣେ ॥ ୫୨

---

୪୬—ତାହାର ଶ୍ରୀମୁଖରେ ପ୍ରକାଶ ପାଉଥିବା ବଙ୍କବିଜୃମ୍ଭ (କପଟ ହୋଇ) ପ୍ରସଙ୍ଗ ତାରକମନ୍ତ୍ର ଅଟେ, ପ୍ରତିଦିନ ତାହା ସ୍ମୃତି (ସ୍ମରଣ) ହେଉଥିବା ଯେଣୁ ମୁଁ ପବିତ୍ର ହୁଅଇ ।

୪୭—ହେ ମହୀମଣ୍ଡନା ମହିଳାମଣି ତୋ ବିହୀନ ( ବିନା ) ଅନ୍ୟ ସ୍ତ୍ରୀ ନ ଥିଲ ନୋହିବ ନାହିଁ ଏହିପରି ଗୁଣ ଗାନ କଲେ ।

୪୮—ବିଷୟ୍ ଏହି ଶବ୍ଦ ପ୍ରାନ୍ତହତ ( ଶେଷ ଲୁପ୍ତ ଅର୍ଥାତ୍ ବିଷ ) ହେଲଣି । ଯେଉଁ ଦିନରେ ମୃଦୁଧ୍ୱନି ଶୁଭଇ ତାକୁ ସେ ସ୍ତ୍ରୀର କଥା ବିଚାରି ଉଦ୍‌ବେଗରେ ସେ ଦିନକୁ ଶ୍ରୁତି ( କର୍ଣ୍ଣ ) ଠେକଇ ।

୪୯—ପ୍ରତିଆଶାରେ ( ଧ୍ୟାନରେ ) ସେ ଶ୍ୟାମାରୂପ ଦିଶିଗଲେ, ଆସ ଆସ ମୋ କୋଳରେ ବସ ବୋଲି ପ୍ରଳାପରେ କହନ୍ତି ।

୫୦—କଳକଣ୍ଠ ( କୋକିଳକୁ ) ଦୂତ କରି ପଠାନ୍ତି, ପୁଣି କୋକିଳ ଉଡ଼ିଗଲେ, ବାଉଁ କହି ଗଲା ବୋଲି ଉନ୍ମାଦରେ ହସି ହସି କହନ୍ତି ।

୫୧—ଯେବେ ତାହାଙ୍କ ତନୁ ହରଣକୁ ( ଦେହର ପାଣ୍ଡୁର ବର୍ଣ୍ଣକୁ ) ଗୃହିଁ କେହି ପଚାରନ୍ତି; ତେବେ ସେ ବୋଲନ୍ତି—ଏ କ୍ଷତ୍ରିୟ ଜନ୍ୟ ବ୍ୟାଧି ( ଅସାଧ୍ୟରୋଗକୁ ) ପ୍ରସ୍କର ( ଔଷଧ ) କେଉଁଠାରେ ଅଛି ।

୫୨—କଳ ( ମଧୁର ) ଆନ ( ବିପରୀତ ) ଅର୍ଥାତ୍ ଭଗ୍ନ ପ୍ରତିମାପରି କ୍ଷଣେ କ୍ଷଣେ ଅଚଳ ହେଉଛି (ଜଡ଼ତା) କେବେ ବଡ଼ଶ୍ୱାସ ଛାଡୁଛି, କେତେ ଜଡ଼ଭାବ (ମୂକ ଭାବ) ଧରୁଛି, କେବେ ତୋ ବିନା ଗତି ନାହିଁ ଏହା କହୁଛି । ( ମୃତ୍ୟୁ ସ୍ଥିତି ) ।

ଏ ଦଶା ନବକିଶୋର ପାଇଲଣି ଜାଣ ।
ଆଉ କିଛି ନୋହୁ କର ତୋର ଭୃତ୍ୟପଣ ॥ ୫୩
ଶୁଣି ତ୍ୱରା ହୋଇଲା ବୋଇଲା ଲେଖ ଲେଖା ।
ଜାଣିଛି ଚତୁରମୁଖ ଚତୁରେ ସୁମୁଖ ॥ ୫୪
ବଗୁର ବଗୁର ଲେଖି ଉଦନ୍ତପତରେ ।
ସମର୍ପିଲେ କି ସମର୍ପି ହେଲେ ତାହାଠାରେ ॥ ୫୫
ମଙ୍ଗଳକାରୀ ହୋଇଲେ ଶିବା ଦ୍ୱିଜ ଉହିଁ ।
ବାମ ଦକ୍ଷିଣଭାଗକୁ ସୁଲଗ୍ନ କରାଇ ॥ ୫୬
ତେଣେ ଉପାଧ୍ୟାୟୀ ଯେ ଗମନ କରୁଥିଲେ ।
ଏଣେ ପୋଠା ଯାଇ ଯୋଗବଳରେ ଜାଣିଲେ ॥ ୫୭
ଅଦ୍ଭୁତପୁଂସ ମାଙ୍କଡ଼ୀ ଶୁକ ଶାରୀ ହୋଇ ।
ଚମ୍ପାପୁର ମଧ୍ୟରେ ସରସୀତଟେ ଯାଇ ॥ ୫୮
ଲବଙ୍ଗଲତାରେ ବସି ଭଣେ ଏକ ପଦ ।
କୁମାରୀ କୁମାର ସ୍ନେହ ମଦନବିଷାଦ ॥ ୫୯

---

୫୩—ନବକିଶୋର ( ନବ ଯୁବକ ) ରାଜପୁତ୍ର ଏ ଦଶା ପାଇଲଣି ଏହା ଜାଣ । ତୋର ଭୃତ୍ୟପଣକର ଯେପରି ତାହାର ଆଉ କିଛି ନୋହୁ ।

୫୪—ମନ୍ତ୍ରୀପୁତ୍ରଠାରୁ ପୋଠା ( ନପୁଂସକ ) ଏମନ୍ତ ଶୁଣି ତ୍ୱରା ହୋଇ କହିଲା— ଲେଖ ( ଚିଠାଉ ) ଲେଖା । ମୁଁ ଜାଣିଛି ଚତୁରମୁଖ ( ବ୍ରହ୍ମା ) ଏ ଚତୁରେ ( ସୁନ୍ଦରଠାରେ ) ସୁମୁଖ ( ଅନୁକୂଳ ) ହୋଇଛନ୍ତି ।

୫୫—ବଗୁର ବଗୁର ପତ୍ରରେ ସମସ୍ତ ଉଦନ୍ତ ( ବାର୍ତ୍ତାମାନ ) ଲେଖି ତାହାଠାରେ ସମର୍ପିଲେ କି ନିଜେ ସମର୍ପି ହେଲେ ।

୫୬—ଉହିଁ ( ଅନୁକୂଳ ହେଲେ ) ଶିବା ( ବିଲୁଆ ) ଏବଂ ଦ୍ୱିଜ ( ବ୍ରାହ୍ମଣ ) ବାମ ଓ ଦକ୍ଷିଣ ଭାଗରେ ରହି ସୁଲଗ୍ନ କରାଇ ମଙ୍ଗଳକାରୀ ହୋଇଲେ ।

୫୭—ତେଣେ ଉପାଧ୍ୟାୟୀ ଗମନକରୁଥିଲେ, ଏଣେ ପୋଠା ( ନପୁଂସକ ପୁରୁଷ ) ଯାଇ ଯୋଗବଳରେ ତାହା ଜାଣିଲେ ।

୫୮।୫୯—ଅଦ୍ଭୁତ ପୁଂସ ଓ ମାଙ୍କଡ଼ୀ ଦୁହେଁ ଶୁଆ ଶାରୀ ହୋଇ ଚମ୍ପାପୁର ମଧ୍ୟରେ ସରସୀ (ପୁଷ୍କରିଣୀ ) ତଟରେ ଯାଇ ଲବଙ୍ଗଲତାରେ ବସି ଏକପଦରେ ( ଏକସ୍ୱରରେ ) ଭଣିଲେ, କୁମାରୀ ଓ କୁମାର ଦୁହିଁଙ୍କର ସ୍ନେହ ମଦନ-ବିଷାଦ ( କାମକଷ୍ଟକୁ ) ଜଣାଇ ଅଛି ।

କଳହଂସକେଦାରେ ଭୂପାଳେ ଆଳାପିତ ।
ପ୍ରଥମରେ 'ଯେ' ଯୁକ୍ତ ଅଧିକ ଏତେମାତ୍ର ॥ ୭୦
ଶ୍ରୀରାମ ସାର୍ଥ କରିବେ ଏ ମନୋରଥକୁ ।
ଶ୍ରୀରାମ ମୂର୍ତ୍ତି ମୋହିଲେ ଯେ ହରିଯୂଥକୁ ॥ ୭୧
କହେ କବି ବୀରବର ଉପଇନ୍ଦ୍ର ଭଞ୍ଜ ।
ସୁହୃଦେ ଯେ ମିଶ୍ରିତ ଛାନ୍ଦକୁ ଏବେ ହେଜ ॥ ୭୨

## ତ୍ରିଂଶ ଛାନ୍ଦ

ରାଗ—କଳହଂସ କେଦାର ଓ ଭୂପାଳ ।


ଧସାରସେ ବେନି ରାଗ ରୁଚିର ।
ନୀରକ୍ଷୀରମିଶ୍ରିତ ଦ୍ୱି ଉକ୍ତି ବାର ଯେ ।
ଶୁକ କହିବାବେଳା ଗୃଦ୍ଧୁରୀ ସ୍ୱର ।
ସାରୀ ଅଗ୍ରତେ ମୃଦୁତରହିଁ କର ଯେ ॥ ୧

---

୭୦—କଳହଂସ କେଦାର ଓ ଭୂପାଳ ଏ ଦୁଇରାଗ ଅକ୍ଷରଗଣନାରେ ସମାନ, କିନ୍ତୁ କଳହଂସ କେଦାର ଦ୍ୱିତୀୟ ଓ ଚତୁର୍ଥ ପାଦଶେଷରେ "ଯେ" ଯୁକ୍ତ ହୁଏ, ଏତିକି ମାତ୍ର ଅଧିକ ।

୭୧—ଶ୍ରୀରାମ ଏ ମନୋରଥକୁ ସାର୍ଥକ କରିବେ—ଯେଉଁ ଶ୍ରୀରାମ ମୂର୍ତ୍ତି ହରି ଯୂଥକୁ ( ବାନର ଦଳକୁ ) ମୋହିଥିଲେ ।

୭୨—କବି ବୀରମାନଙ୍କ ମଧ୍ୟରେ ବର (ଶ୍ରେଷ୍ଠ) ଉପେନ୍ଦ୍ରଭଞ୍ଜ କହେ, ହେ ସହୃଦୟମାନେ ଏବେ ଏ ମିଶ୍ରିତ ଛାନ୍ଦକୁ ହେଜ ( ଚିନ୍ତାକର ) ।

---

୧—ଏ ଛାନ୍ଦରେ ପୁଷ୍ପକେତୁ ପକ୍ଷରୁ ଶୁକ କଳହଂସ କେଦାର ରାଗରେ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପକ୍ଷରୁ ସାରୀ ଭୂପାଳ ରାଗରେ କହୁଅଛି । ଏଥିରେ ଦୁଇଜଣଙ୍କର ଉକ୍ତି ମିଶ୍ରିତ ହୋଇଛି । ହେ ବୁଧ ସାରସେ ( ପଣ୍ଡିତ ହଂସମାନେ ) । ବେନିରାଗରେ ( କଳହଂସ କେଦାର ଓ ଭୂପାଳ ଏହି ଦୁଇ ରାଗରେ ) ରୁଚିର (ମନୋହର) ନୀର କ୍ଷୀର ପରି ମିଶ୍ରିତ ଦ୍ୱି ଉକ୍ତି ( ଶୁକସାରୀ ଦୁହିଙ୍କର ଉକ୍ତିକୁ ) ବାର ( ପୃଥକ୍ କର ) । ଶୁକ କୁମାର ଗୃଦ୍ଧୁରୀ ସ୍ୱରଣକର ସାରୀ ଅଗ୍ରତେ ହିଁ (ନିଶ୍ଚୟ) ମୃଦୁତର ( ଅତିକୋମଳ ) କର ବାର୍ତ୍ତା କହ ( କହଇ ) ସାରୀ ଶୁକ କହିବାର ଗୃଦ୍ଧୁରୀଙ୍କ ସ୍ୱର ତା ଅଗ୍ରତେ (ଶୁକ ଆଗରେ ) ମୃଦୁଉତ୍ତର ( ମୃଦୁ ଉତ୍ତର ) କର ( କରଇ ) ।

ନାଗରମଣି ସାର ଶୂର-ଶ୍ରୀ-ଧାମ । ନାହିଁ ଶ୍ରୁତରେ ତାହା କୀରତ ସମ ଯେ ।
ସୁନା ସାଦୃଶ କାନ୍ତି କି ମନୋରମ । କାମିନୀଚୟ ଧୈର୍ଯ୍ୟ ହତକୁ କ୍ଷମ ଯେ ॥ ୨
ଲୋକେ କେଶରୀ ବୋଲି ସ୍ତୁତକି ଭଣି । କରୀ ଅରି ଜୟକୁ ମଧ୍ୟରେ ପୁଣି ଯେ ।
ବଧୀର ଶତଦୁଃଖ ସେ ପାଇଲା ଯେ । ବଶ ଜେମାରେ ନାହି ବଞ୍ଚନା ଖୋଜେ ଯେ ॥ ୩
ସୁମନସର ପାତେ କି ଦରୀଭୂତେ । ଶାନ୍ତ ସୁନ୍ଦର ଶତା ଚମକେ କେତେ ଯେ ।
ମୀର ତେଜି ବନରେ ଆଦରହୀନ । ରତନବରବେଶେ ନ ବଳେ ମନ ଯେ ॥ ୪

---

୨—ସେ କୁମର ନାଗରମଣି ( ପୁରୁଷଶ୍ରେଷ୍ଠ ) ସାର ଶୂର-ଶ୍ରୀ-ଧାମ ( ଶ୍ରେଷ୍ଠ ବୀରମାନଙ୍କର ଭୟର ସ୍ଥାନ ) ତାହାଙ୍କ କୀର୍ତ୍ତି ସମାନ ଆଉ ଶ୍ରୁତରେ ( ବେଦରେ ମଧ୍ୟ ) କା-ହାର କୀର୍ତ୍ତି ବର୍ଣ୍ଣିତ ହୋଇ ନାହିଁ, ବା ଶ୍ରୁତରେ ( କର୍ଣ୍ଣରେ ମଧ୍ୟ ) ଶୁଣା ଯାଇ ନାହିଁ । ତାହାଙ୍କର ସୁନା ସମାନ କାନ୍ତି ( ଶୋଭା ) କି ମନୋରମ ( କେଡ଼େ ସୁନ୍ଦର ) । ସେ କାମିନୀଚୟର ( ସ୍ତ୍ରୀ ସମୂହର ) ଧୈର୍ଯ୍ୟ ହତ କରିବାକୁ କ୍ଷମ ଅଟନ୍ତି । ସ୍ତ୍ରୀ ପକ୍ଷରେ—ସେ କୁମାରୀ ନାଗ-ରମଣୀ ( ନାଗ କନ୍ୟା ) ମାନଙ୍କଠାରୁ ସାର (ଶ୍ରେଷ୍ଠ) ସୁରଭିର ( ସୌନ୍ଦର୍ଯ୍ୟର ) ଧାମ (ସ୍ଥାନ) ଶ୍ରୁତରେ ( ଶୁଣିବାରେ ) ତାପର ନାହିଁ, ଆଉ ରତି ତାକୁ ସମ କି ? ସୁନାସା ( ସୁନ୍ଦର ନାସିକା ) ଓ ଦୃଶ (ଚକ୍ଷୁର କାନ୍ତି-ଶୋଭା ) କି ମନୋରମ ( ମନୋହର ), ସେ କାମୀ-ନୀଚୟ ( କାମୀପୁରୁଷମାନଙ୍କର ) ଧୈର୍ଯ୍ୟ ହତ କରିବାକୁ କ୍ଷମ ଅଟଇ ।

୩—ପୁ—ଯାହାକୁ ଲୋକେ କେଶରୀ (ସିଂହ) ବୋଲି ସ୍ତୁତକି ଭଣନ୍ତି । ପୁଣି ଯେ ମଧ୍ୟରେ ( ମଧ୍ୟଭୁବନ ପୃଥିବୀରେ ) କରୀ ସଦୃଶ ( ହସ୍ତୀ-ସମାନ ) ଅରି ( ଶତ୍ରୁମାନଙ୍କୁ ) ଜୟ କରିଛନ୍ତି; ସେ ଜେମାଠାରେ ବଶ ହୋଇ ବଧୀର ( ଅଧୀର ) ହୋଇ ଶତରେ ଦୁଃଖ ପାଇଲେ—ନାହିକର (ରକ୍ଷାକର) ବୋଲି ବଞ୍ଚିବା ଉପାୟ ଖୋଜଇ ।
ସ୍ତ୍ରୀ—ଯାହାକୁ ଲୋକେ ( ତିନିଭୁବନରେ ) କେ ( କଏ ) ସରି ବୋଲି ସ୍ତୁତି ଭଣନ୍ତି, ପୁଣି ଯେ ମଧ୍ୟରେ ( କଟୀରେ ) କରୀଅରି (ସିଂହ) କୁ ଜୟ କରିଛି, ସେ ମାରେ ( କାମରେ ) ବଶ ହୋଇ ନାହି ( ରକ୍ଷାକର ) ବୋଲି ବଞ୍ଚିବା ଉପାୟ ଖୋଜଇ ।

୪—ପୁ—ତାହାଙ୍କର ସୁ-ମନସରେ ( ଉତ୍ତମମନରେ ) ପାତେ ( ସୁନ୍ଦରୀ କଥା ) ପଡ଼ନ୍ତେ ) ଦରୀଭୂତ ( ଭୟାତୁର ) ହୋଇ ସୁନ୍ଦରୀର ଶତକୁ ଶାନ୍ତ କେତେ ଚମକଇ, ମୀର ( ଲୋତକ ) ତେଜି, ବନରେ ( ଉପବନ-ବିହାରରେ ) ଆଦର ହୀନ ହୋଇଛି, ନଗରବେଶେ ( ବେଶ ହୋଇ ନଗର ଭ୍ରମଣ କରିବାରେ ) ରତ ହେବାକୁ ମନ ବଳୁନାହିଁ ! ସ୍ତ୍ରୀ—ସୁମନ-ସର ପାତେ ( ପୁଷ୍ପପତନରେ ) କି ଦରୀଭୂତେ ( ଭୀତହୋଇ ) ସୁନ୍ଦର

ତା ପଲ୍ଲବ ଶଯ୍ୟନେ ନ ଅସେ ନିଦ୍ରା । ଲେଖା ନେତ୍ର-ସମ୍ପତ୍ତି ଶରଧା ସଦା ଯେ ।
ବିରହେ ଭାସି ସେ ଯେ ସରସୀତର । ଆନ ନ ଦେଖେ ପ୍ରତିଅଶାରେ ତାର ଯେ ॥ ୫
ଅଗମନ ଯା'ଇଛି ଗୃହାଁନ୍ତେ ଦଣେ । ଲଭିଲି ଭରସାରେ ସନ୍ତୋଷେ ବସେ ଯେ ।
ପାଟଅଁ ପକ୍ଷ ଜନ ମୁଁ ପାଇବି ସତେ । ନିଷ୍ଟେ ଅଧରାମୃତ କାରଣ ମତେ ଯେ ॥ ୬
କାମନା ସଫଳରେ କରିବ ଗୃର । କି ରସନିଧି ଥାଇ ପ୍ରତିଅକ୍ଷର ଯେ ।
ଦେବକୀକୁମାରଙ୍କୁ କରଇ ସ୍ତୁତି । ଅହେ କରୁଣା କର ମୁଁ ଅତି ଆର୍ତ୍ତି ଯେ ॥ ୭

---

ଗତା ( ସୁନ୍ଦର ପୁରୁଷମାନଙ୍କର ମୁକୁଟମଣି ) ରାଜପୁତ୍ରଙ୍କୁ ଚିନ୍ତା କେତେ ଚମକଇ, ଏଣୁ ନିରତେ ( ସର୍ବଦା ) ଜୀବନରେ ଆଦରହୀନ ହୋଇଛି । ରତ୍ନଚର ( ରତ୍ନଶ୍ରେଷ୍ଠ ମଣିର ) ବେଶରେ ମନ ବଳୁନାହିଁ ।

୫—ପୃ—ତାହାର ପଲ୍ଲବ ଶଯ୍ୟନେ ( ନୂଆପତ୍ର ଶେଯରେ ) ନିଦ ଆସୁ ନାହିଁ । ଲେଖ ( ସୁନ୍ଦରୀର ପ୍ରତିମୂର୍ତ୍ତିକୁ ) ଶ୍ରଦ୍ଧାରେ ନେତ୍ର ସମ୍ପତ୍ତି କରି ସବୁବେଳେ ସରସୀରେ ( ପୁଷ୍କରଣୀରେ ) ଭାସିଲି ପରି ବିରହରେ ଭାସଇ । ତାର ( ସୁନ୍ଦରୀର ) ପ୍ରତ୍ୟାଶାବ୍ୟତୀତ ଆନତର ( ଗତି ) ନ ଦେଖେ । ତାପ ( ବିରହତାପରୁ ) ଶଯ୍ୟନରେ ଲବେମାତ୍ର ନିଦ୍ରା ନ ଅସେ, ଲେଖ ( ଦେବତାମାନଙ୍କର ) ନେତ୍ର ସମ୍ପତ୍ତିରେ ( ଅପଲକ ହେବାରେ ) ସଦା ଶ୍ରଦ୍ଧା ଅଛି, ପ୍ରତି ଆଶାରେ ( ପ୍ରତିଦିଗରେ ) ତାର ( ପୁରୁଷର ) ଆନନ ( ମୁଖ ) ଦେଖଇ; ସରସିତର ( ଅତ୍ୟନ୍ତ ରସିଯାଇ ) ଶେଯେ ପଡ଼ି—ହେ ବୀର, ରଖ ଏହା ଭାବିତେ ।

୬—ପୃ—ଆଗମ ( ପ୍ରାପ୍ତିଆଶା ) ଯାଇ ନାହିଁ, ଗୃହାଁନ୍ତେ ଦଣଇ, ଏ ଧେନି ଲଭିବା ଭରସାରେ ସନ୍ତୋଷରେ ବସିଅଛି; ପାଅଁଇ-ମୋହର ପକ୍ଷ (ଡେଣା) ଜନମୁଁ ( ଜାତହେଉ ) ସତେ ମୁଁ ଉଡ଼ି ଯାଇ ତାକୁ ପାଇବି । ତାହାର ଅଧରାମୃତ ନିଷ୍ଟେଁ ମତେ କାରଣ ହେବ । ଅମୃତ ପାନରେ ମରନ୍ତି ନାହିଁ । ମୁଁ ମଧ ତାହାର ଅଧର ପାନକରି ଅମର ହେବି । ସ୍ତ୍ରୀ—ମୋ ମନ ଆଗ ତା ପାଖକୁ ଯାଇଛି, ଦଣେ ( ଦଗମାନଙ୍କୁ ) ଗୃହାଁନ୍ତେ ଲଭ ( ପାଇବା-ଦର୍ଶନ ) ଲଭ ହେଉଛି; ପାଅଁଇ ରସାରେ ( ପୃଥିବୀରେ ) ସନ୍ତୋଷରେ ମୋହର ବଂଶରେ ଅଛି ଏପରି ମୋହର ପକ୍ଷଜନ ( ପ୍ରାଣସଖାକୁ ) ସତେ ମୁଁ ପାଇବି । ଅଧରା ହେଲେ ( ଧରା ନ ଦେଲେ ) ମତେ ନିଷ୍ଟେଁ ମୃତ ( ମରଣ ) କାରଣ ହେବ ।

୭—ପୃ—କାମନା ସଫଳରେ ( ବାଞ୍ଛାସିଦ୍ଧି ନିମିତ୍ତ ) ଗୁର କରିବ ( ଦୂତ-ପଠାଇବି ) ସେ କଣ ରସନିଧି ? ଏହା ପ୍ରତି ଅକ୍ଷର ( ପ୍ରତି କଥାରେ ) ଥାଏ । ଦେବକୀକୁମାରଙ୍କୁ ( ଶ୍ରୀକୃଷ୍ଣଙ୍କୁ ) ସ୍ତୁତି କରଇ—ଅହେ ପ୍ରଭୁ, ମୁଁ ଅତ୍ୟନ୍ତ ଆର୍ତ୍ତିଜନ ମୋତେ କରୁଣା ( ଦୟା ) କର । ସ୍ତ୍ରୀ—କାମପୀଡ଼ା

ଚନ୍ଦ୍ରକାନ୍ତ ମୁହିଁ କି ଦ୍ରବଲି ଗୁହିଁ । ହା ସେ ଚନ୍ଦ୍ରପ୍ରଭତ୍ୱ ଧିଆନ ଏହୁ ଯେ ।
ଭ୍ରମରଙ୍କନୟନୀ ପୁଣି ଯେ ସ୍ୱଚ୍ଛେ । ମତ୍ତେ ଭଗତି ସ୍ନେହେ ଭାବିବ ପୁଚ୍ଛେ ଯେ ॥ ୮
କର ଯେ ଠୁକି ଖିତି ଦିନ ସେ ସାରି । ତନୁହୀନଶୋଭନ ଜ୍ଞାନତା ହାରି ଯେ ।
ହା ରବର ତା ପାଶ ସୁହୃଦେ ଛନ୍ଦ । ରଜନୀକର କରେ ଶୟନ ଘେନ ଯେ ॥ ୯
କରେ ଗଉରୀପତି ସେବାରେ ପ୍ରେମ । ମାଲିକରେ ଆଦର ଜପଇ ନାମ ଯେ ।
ଶିବଦେବ ଅଭୟ ଦେବାରେ ଧ୍ୟାୟି । ଈଶ ପରାଧୀନରେ ଏମନ୍ତ ହୋଇ ଯେ ॥ ୧୦

---

ନାଶ ପାଇଁ ବଗୁର କରଇ, ପ୍ରତିଭାଷ ( ପ୍ରତ୍ୟୁତ୍ତର ) ଦେବାକୁ କୀର ( ଶୁକପକ୍ଷୀ ) ସନ୍ନିଧିସ୍ଥାୟୀ ( ନିକଟ ସ୍ଥାୟୀ ) ହୋଇଛି, ଅହେ କରୁଣାକର ( ଦୟାମୟ ହର ) ! ମୁଁ ଅତି ଆର୍ତ୍ତଜନ, କୁମାରକୁ ଆଣି ମୋତେ ଦେବ କି ? ଏହିପରି ସ୍ତୁତି କରଇ ।

୮—ପୁ—ସେ ଚନ୍ଦ୍ରକାନ୍ତ ମୁହିଁ ( ଚନ୍ଦ୍ର ପରି କାନ୍ତ କମନୀୟ ମୁହିଁ ଯାହାର ) ଏପରି ସୁନ୍ଦରୀକି ଗୁହିଁ ମୁଁ ଦ୍ରବିଲି ବୋଲି କହୁଅଛି । ହା ! ( ହାୟ ! ) ସେ ଚନ୍ଦ୍ରପ୍ରଭତ୍ୱ (ସୁବର୍ଣ୍ଣ ବର୍ଣ୍ଣା) ଏହି ଧ୍ୟାନ କରୁଛି । ପୁଣି ସ୍ୱଚ୍ଛରେ ମିତ୍ରଙ୍କୁ ପୁଚ୍ଛଇ ସେ ଭ୍ରମରଙ୍କ ନୟନୀ ( ଚକିତ ହରିଣ ନେତ୍ରୀ ) ମତ୍ତଭଗତି ( ମତ୍ତଗଜଗାମିନୀ ) ସ୍ନେହରେ ମୋତେ ଭାବିବ କି ?

ସ୍ତ୍ରୀ—ମୁହିଁ ଚନ୍ଦ୍ରକାନ୍ତ ମଣି କି ? ଯେ ହେତୁ ମୁଁ ତାହାର ଚନ୍ଦ୍ରପ୍ରଭତ୍ୱ ( ଚନ୍ଦ୍ରକିରଣ ସଦୃଶ ) ହାସରେ ଦ୍ରବିଲି, ମୋର ଧୀ ( ବୁଦ୍ଧି ) ଆନ ହୋଇଗଲା, ଏହିକଥା କହି କହି ସେ ରଙ୍କୁନୟନୀ (ମୃଗନେତ୍ରୀ) ଭ୍ରମ ହୋଇ ସ୍ୱଚ୍ଛରେ ପାଶ ସ୍ଥିତ ଶୁକକୁ ପୁଚ୍ଛଇ—ଭଗତି ( ଭକ୍ତି ) ସ୍ନେହରେ ମୋତେ ଭାବିବ କି ?

୯—ପୁ—ସେ କର କପାଳରେ ଠୁକି ଖିତି ( ପୃଥ୍ୱୀରେ ) ଦିନ ସାରୁଛି ( କାଳଯାପନ କରୁଛି ) ତନୁ ( ଦେହ ) ହୀନ ଶୋଭନ ( ଅଶୋଭା ) ହୋଇଛି, ତା ଜ୍ଞାନ (ଚେତନା) ହାରିବାରୁ ତା ପାଶରେ ଥିବା ସୁହୃଦେ ( ସଖୀମାନେ ) ହା-ରବର ( ହାୟ ହାୟ ଧ୍ୱନି କରି ) ଛନ୍ଦ ହେଉଛନ୍ତି, ଦେହ ଦାହ ଶାନ୍ତି ନିମିତ୍ତ ରଜନୀକର ( କର୍ପୂରରେ ) ଶୟନ କରଇ ଏମନ୍ତ ଘେନ ।—ସ୍ତ୍ରୀ—ସେ ସୁନ୍ଦରୀ କରଜେ ( ନଖରେ ) ଖିତି ( ଭୂମି ) ଠୁକି ଦିନ ସାରୁଛି, ତାହାର ଜ୍ଞାନ ତନୁହୀନ—ଶୋଭନ ( କନ୍ଦର୍ପ ପରି ସୁନ୍ଦର ) ପୁଷ୍ପକେତୁଠାରେ ରହିଛି, ତା ସୁହୃଦେ ( ଉତ୍ତମ ହୃଦୟରେ ) ଥିବା ହାର-ବର ( ଶ୍ରେଷ୍ଠ ମାଳାକୁ ) ପାଶ ବଗୁର ( ହରଣ ମଣି ) ଛନ୍ଦ ହେଉଛି, ରଜ-ନିକର ( ଧୂଳି ସମୂହ ) ଶୟନ କରଇ, ଏମନ୍ତ ଘେନ ।

୧୦—ପୁ—କରେ ମାଳଧରି ଗୌରୀ ପତି (ଶିବ) ସେବାରେ ପ୍ରେମ କରଇ, ଏବଂ ଆଦରରେ ଶିବ ନାମ ଜପଇ । ଶିବଦେବ (ମଙ୍ଗଳ ଦାତା ମହାଦେବଙ୍କୁ )

ସଦା ହଂସସୁଗତି ମାନସରତ । ସ୍ତୋକ ସ୍ନେହ କି ତୁଟି ଘନରେ ସ୍ଥିତ ଯେ ।
ଅଛି କି ତାର ରକ୍ଷା ଜୀବନ ବିନା । ସୁରମଣି ଚନ୍ଦନସୁବାସୀ ସିନା ଯେ ॥ ୧୧
ସୁରତରଙ୍ଗିଣୀରେ ମଜ୍ଜିବା ମତି । ଇଚ୍ଛେ ଏହା ତାହାର ଜନ୍ମାନ୍ତ ପ୍ରୀତି ଯେ ।
ମୁଁ କତକି ଲଭିବି ସୁକୃତ ଥିଲେ । ଭାବନୀରତରସେ ଜର୍ଜ୍ଜର ଭଲେ ଯେ ॥ ୧୨

---

ଅଭୟ ଦେବା ନିମିତ୍ତ ଧାୟି ( ଧ୍ୟାନ କରଇ ) । ଈଶପର ( କାମର ) ଅଧୀନରେ ( ବଶରେ ) ଏମନ୍ତ ହୁଅଇ ।—ସ୍ତ୍ରୀ—ଗୌରୀ ( ଗୌରାଙ୍ଗୀ ) ଅତି ସେବାରେ ପ୍ରେମ ପ୍ରକାଶ କରଇ, କରେ ମାଳୀଧରି ଆଦରରେ ନାମ ଜପଇ । ହେ ଅଭୟ ଦେ ( ଅଭୟ ବର ଦାୟିନି ଅମ୍ବିକେ ) ବାରେ ( ଥରେ ) ଶିବ ( ମଙ୍ଗଳ ) ହେବ ବୋଲି ଧାୟି ( ଧ୍ୟାନକରଇ ) । ସେ ଈଶ ପରାଧୀନରେ ( ପତି ପରାଧୀନା ହୋଇ ) ଏମନ୍ତ ହୁଅଇ ।

୧୧—ପୁ—ହଂସ ମାନସରୋବରରେ ରତ ହେଲା ପରି ଏ ପୁରୁଷ ସର୍ବଦା ସୁଗତି ( ଉତ୍ତମ ଗମନା ) ସୁନ୍ଦରୀର ମାନସରେ ( ମନରେ ) ରତ (କ୍ରୀଡ଼ା କରଇ) ସ୍ତୋକ ( ଚାତକ ପକ୍ଷୀ ) ଘନରେ ( ମେଘଠାରେ ) ସ୍ଥିତ ସ୍ନେହକୁ ତୁଟଇ କି ? ତାର ଜୀବନ ( ଜଳ ) ବିନା ରକ୍ଷା ଅଛି କି ? ସେହିପରି ସୁରମଣୀ (ଉତ୍ତମା ସ୍ତ୍ରୀ) ଚନ୍ଦନ ସୁବାସୀ ଏକମାତ୍ର ଗତି ସିନା ।—ସ୍ତ୍ରୀ—ହଂସ ସୁଗତି ( ହଂସ ଗମନାର ) ମାନସ ( ମନ ) ସୁନ୍ଦରଠାରେ ସଦା ରତ ହୋଇଛି, ତା ଠାରେ ( ପୁରୁଷଠାରେ ) ତାହାର ସ୍ନେହ ଘନାରେ ( ନିବିଡ଼ ଭାବରେ) ହୋଇଛି, ସେ କିଣ ସ୍ତୋକ ( ଅଳ୍ପ ) ସ୍ନେହ କି ତୁଟିଯିବ । ତାର ଆଉ ଜୀବ ( ଜୀବନ ) ରକ୍ଷାର ଉପାୟ ଅଛି କି ? ଚନ୍ଦନ ସୁବାସୀ ନବୀନାର ସେ ଶୂରମଣି ( ବୀରଶ୍ରେଷ୍ଠ ) ଏକମାତ୍ର ଗତି ସିନା ।

୧୨—ପୁ—ସୁରତ-ରଙ୍ଗଣୀ ( ରତିନିପୁଣା ) ରାଜକନ୍ୟାଠାରେ ମଜ୍ଜିବାକୁ କେବଳ ମତି ହେଉଛି, ଏବଂ ଏହା ତାହାର ଜନ୍ମାନ୍ତରପ୍ରୀତି (ଯାବଜ୍ଜୀବନ-ପ୍ରୀତିକି ) ଇଚ୍ଛା କରୁଅଛି । ସୁକୃତ ( ପୁଣ୍ୟ ) ଥିଲେ ମୁଁ କତକି ଲଭିବି ଏହା କହୁଛି । ଭାବନୀ-ରତ-ରସେ (କାମିନୀଠାରେ ଆସକ୍ତ ହେବା ରସରେ ) ଭଲେ ( ଉତ୍ତମରୂପେ ) ଜର୍ଜର ହୋଇଛି । ସ୍ତ୍ରୀ—ସୁର, ତରଙ୍ଗିଣୀରେ ( ଗଙ୍ଗାରେ ) ମଜ୍ଜିବା ମତି ( ଝାସ ଦେବାକୁ ମନ ) କରୁଛି । ଜନ୍ମାନ୍ତରେ ( ଅନ୍ୟଜନ୍ମରେ ) ହେଲେ ତାହାର ପ୍ରୀତି ଲଭ କରିବି ଏହା ଇଚ୍ଛା କରୁଛି । ସୁକୃତ ( ପୁଣ୍ୟ ) ଥିଲେ ମୁକ୍ତି କି ଅବା ଲଭିବି, ଏପରି ନିରତି ଭାବି ରସେ ( ସ୍ନେହରେ ) ଭଲରୂପେ ଜର୍ଜର ହୋଇଛି ।

ଇଷ୍ଟିତ ଯିବା ନାହିଁ ଦେହଳୀ ବଳି । ଯୁଗଳ ବସିବାର ପ୍ରସନ୍ନ ଭାଳି ଯେ ।
ଖଟି ମିତେ ପକାନ୍ତି ନିଶ୍ୱାସ ଖର । ଅବା ଜୀବ ପବନେ ଉଡ଼ି ଏ ଡର ଯେ ॥ ୧୩
ଆହା ରତ୍ନନଗ୍ନେ ବିଷଦକର । ଏକାକୀ ଭୀତିଭର କପୋଳେ କର ଯେ ।
ତାହା ପଦ୍ମପତ୍ର ମୋ ହୋଇବ କେହ୍ନ । ମୋହିତ ସେ ସଂସାରେ କି ସ୍ନେହ ବହ୍ନ ॥
ରସିକବର ନୋହିଁ ସୁମନ ବାରେ । ବରବର୍ଣ୍ଣିନା କଣ୍ଠୀଗତକି ସ୍ୱରେ ନେ ।
କହେ ରସାଳସିରେ କୋକିଳ ବାଣୀ । ଶତକୋଟି ଲକ୍ଷ୍ୟ ସେ ବିତ୍ତକୁ ଆଣି ଯେ॥୧୫

---

୧୩—ପୁ—ଦେହଳୀ ( ଦ୍ୱାରବନ୍ଧକୁ) ବଳିଯିବା ଶକ୍ତି ଇଷ୍ଟିତ (କିଂଚିତ୍) ରେ ନାହିଁ, ଯୁଗଳ ହୋଇ ପ୍ରସନ୍ନେ (ପ୍ରଫୁଲ୍ଲଭାବରେ) ବସିବାର ଭାଳଇ । ଏମନ୍ତ ଦେଖି ମିତେ (ମିତ୍ରମାନେ) କେବେ ଏ ଶୁଭ ଯୋଗ ଘଟିବ ବୋଲି ଖଡ଼ିପକାନ୍ତି ଏବଂ ଖର ନିଶ୍ୱାସ ଦେଖି ଡରନ୍ତିଏ ଏ ପବନେ ( ନିଃଶ୍ୱାସ ପବନରେ ) ଜୀବ ଅବା ଉଡ଼ିଯିବ ( ପ୍ରାଣ ଛାଡ଼ିଯିବ ) ।

ସ୍ତ୍ରୀ—ଦୁଃଖରେ ଭାସିବା ଇଷ୍ଟିତ (ଇଷ୍ଟ ବଚନେତ) ଦେହଳୀ (ବଳିଯିବାକୁ)ନାହିଁ, ଶିବାର ( ପାର୍ବତୀଙ୍କର ) ପ୍ରସନ୍ନ ଭାଳି ( କେବେ ଦୁର୍ଗାପ୍ରସନ୍ନ ହୋଇ ସଂଯୋଗ ଘଟାଇବେ ଏହା ଭାଳି) ଲବ (ସମୟକୁ) ଯୁଗ ସମାନ ମଣୁଅଛି ' ଏ ଅବସ୍ଥାରେ ମିତେ (ସଖୀମାନେ) ଖଟି (ସେବାକରି ୨) ବିସ୍ମୟରେ ଖରଶ୍ୱାସ ପକାନ୍ତି । ଆମ୍ଭସଖୀ ଅତିକ୍ଷୀଣ ହୋଇଛି । ପବନରେ ଅବା ଉଡ଼ିଯିବ ସେମାନଙ୍କର ଏପରି ଡର ହେଉଛି ।

୧୪—ପୁ—ଭୀତିଭର (ଭୟାଧିକ୍ୟ) ହେତୁ କପୋଳରେ କରଦେଇ କହେ ଆହା । ହେ ରତ୍ନନ୍ତରେ (ରତ୍ନକାନ୍ତି) ବିଷଦକର (ଚନ୍ଦ୍ର) ମୁଁ ଏକାକୀ ତାହାର ପ୍ରାପ୍ତି କେହ୍ନ (କିପରି) ହେବ । ଏ ବିଷୟରେ ସାହାଯ୍ୟ କର । ସେ ସୁନ୍ଦରୀ ସଂସାରରେ ମୋହିତ ( ହିତକାରିଣୀ) ମୋଠାରେ କି ସ୍ନେହକୁ ବହିଛି ।

ସ୍ତ୍ରୀ—ବିଷଦକର ( ବିଷ-ଭୟରେ ଆହାରତ ନଛୁଟଇ ) ଏକାକୀ ଦୁଃଖରେ ଭିତ୍ତିଭର ( କାନ୍ତୁକୁ ଆଉଜି) କପୋଳରେ ହାତଦେଇ ବସଇ, ତାହା ପଦ୍ମ ପତ୍ର କେହ୍ନ ହୋଇବ, ସେ ସଂସାରରେ ମୋଠାରେ ସ୍ନେହ ବହି ମୋହିତ ହୋଇଛନ୍ତି କି ?

୧୫—ପୁ—ସେ ରସିକବର ବାରେ ସୁଦ୍ଧା ସୁମନ (ସୁଖୀ) ନୋହି ସେ ବରବର୍ଣ୍ଣିନା (ଶ୍ରେଷ୍ଠକାନ୍ତି) କଣ୍ଠୀଗତକି ସ୍ୱରେ ଏବଂ କହେ, ରେ ରସାଳସି । ରେ କୋକିଳ ବାଣି । ଏହିପରି ଶତକୋଟି ସଂଖ୍ୟକ ଲକ୍ଷ୍ୟ ( ଲକ୍ଷଣାପୂର୍ଣ୍ଣ ବାକ୍ୟମାନ) ଚିତ୍ତକୁ ଆଣି ( ଆଣୁଛି ) ।

ସ୍ତ୍ରୀ—ସେ ରସିକ ସୁମନବ ରେ ( ପୁଷ୍ପସମୂହରେ ) କବରୀ (କେଶବେଶ) ନୋହି (ନକରି) ବରର ପତ୍ର ପୁଷ୍ପକେତୁ ବର୍ଣ୍ଣନା କରି ଗଡ଼ି କି ଉଦ୍ଧାର (ଉପାୟକୁ) ସ୍ମରଣ କରୁଛି, ରସାଳ-ଶିରେ (ଆମ୍ବ ବୃକ୍ଷ ଉପରେ) କୋକିଳ

କାଷ୍ଟେଁ ପଦ୍ମିନୀ କରଗ୍ରହଣ ଶୋକେ । ଦ୍ରବାକର ମୃଣାଳ ସୁମନା ଠେକେ ଯେ ।
ସୁପର୍ଣ୍ଣରେ ଆଦର ଏଣୁଟି ଭାବବ । ପୟରସରଞ୍ଜନ କରଛୁ ଏବେ ଯେ ॥ ୧୬
ଯୁବା ଯା ନୂପୁରକୁ ମଣ୍ଡିବା ପ୍ରୀତି । ରାମା ନାକରେ ସାର ଭୋଗ ଏ ମତ ଯେ ।
ଧରି ତାର କେଶକୁ ଯତନ କଲେ । ହେବ ହରଷ ସାରସେକ୍ଷଣି ଭଲେ ଯେ ॥୧୭
ଅନୁରାଗୀରତନ ମନ ଏ ଭାବ । ଘନ ସ୍ତନୀଠ ଯୋଗେ ଜୀବନ ଯିବ ଯେ ।
ଶତ୍ରୁ ଭବ ମୋହନୀ ମାୟାରେ ଲୀନ । କରମ ସେ ଉଦୟ କରିବ ପୁନଃ ଯେ ॥୧୮

---

ବାଣୀ କହେ ( କୁହୁ କୁହୁ ଡାକେ ) । ତାକୁ ଶତକୋଠ (ବଜ୍ର) ଲକ୍ଷ୍ୟ (ତୁଲ୍ୟ) ଏହା ସେ ଶତ୍ରୁକୁ ଆଣୁଛୁ ।

୧୬—ପୁ—କେବେ ମୁଁ ପଦ୍ମିନୀ କନ୍ୟାର କାଷ୍ଟେ ପାଣି ଗ୍ରହଣ ( ବିବାହ ) କରିବି, ଏହି ଉତ୍ସାହରେ ଦ୍ରବ ( ତରଳ ଯାଇ ) ମୃଣାଳ (ପଦ୍ମନାଡ଼) ସୁମନା ( ପଦ୍ମ ପୁଷ୍ପକୁ ) ଜେମାର ବାହୁ ଓ କରତଳ ବିଚାରି କର ( ହସ୍ତରେ ) ଧରି ଠେକଇ । ଏଣୁ ପଦ୍ମର ସୁବର୍ଣ୍ଣରେ ( ଉତ୍ତମ ପତ୍ରରେ ) ଉଦର ଜ୍ଞାନ କରି ଆଦର କରି ଭାବରେ ଶଯ୍ୟା କରଇ । ଉଦର ସ୍ତନରେ ମଣ୍ଡିତ ହୋଇଥାଏ ବୋଲି ପଦ୍ମପତ୍ରକୁ ପୟର ( ଜଳରେ ) ସରଞ୍ଜିତ କରଇ (ତହିଁରେ ଜଳ ସିଞ୍ଚଇ) ।

ସ୍ତ୍ରୀ—ସୁମନା ( ସଖୀମାନେ ) କର ଗ୍ରହଣ (ହାତରେ ଧରିଥିବା) ମୃଣାଳକୁ ଠେକିବାରେ ପଦ୍ମିନୀ ( ରାଜଜେମା ) ଶୋକରେ ବିହ୍ୱଳା ହୋଇ ତାକୁ (ମୃଣାଳକୁ) ଦର୍ବୀ କର-ସର୍ପ ବୋଲି ବୁଝଇ । ଏଣୁ ଆଦରରେ ସୁପର୍ଣ୍ଣକୁ (ଗରୁଡ଼କୁ) ଭାବେ । ପୟ ( ଜଳ ) ଯୁକ୍ତ ମୃଣାଳକୁ ସର୍ବାଙ୍ଗ ରସ ରଞ୍ଜନ ( ବିଷଯୁକ୍ତ ) ସର୍ପ ବିଚାରଇ ।

୧୭—ପୁ—ଯୁବା ( ଯୁବକ ପୁଷ୍ପକେତୁ ) ଯା ( ଯାହାର ) ପାଦରେ ନୂପୁରକୁ ମଣ୍ଡିବାକୁ ପ୍ରୀତି ( ସ୍ନେହ ) କରୁଛି, ସେ ରାମା ଯେବେ ନା (ନାହିଁ) କରେ ତେବେ ତାହାର କେଶକୁ ବାନ୍ଧିବାକୁ ଯତ୍ନକଲେ ସାରସେକ୍ଷଣି ( ପଦ୍ମନୟନୀ) ଭଲେ (ହର୍ଷ) ହେବ, ଏ ସାର ଭୋଗହେବ ଏହା ମତରେ ଭାବୁଛି ।

ସ୍ତ୍ରୀ—ସେ ରାମା ଯୁବା ଜାନୁ ପୁରକୁ ମଣ୍ଡିବାକୁ ( କୋଳେ ବସିବାକୁ) ପ୍ରୀତି ( ସ୍ନେହ ) କରୁଛି । ନାକରେ ( ସ୍ୱର୍ଗରେ ) ଏ ଭୋଗ ସାର ବୋଲି ମତରେ ( ମନରେ ) ଭାବୁଛି । ତାରକେଶଙ୍କୁ ( ତାରକା ଈଶ ଚନ୍ଦ୍ରଙ୍କୁ ) ଧରିବାକୁ ଯତ୍ନକଲେ ସାର (ଉତ୍କୃଷ୍ଟ) ହର୍ଷ ସେହିକ୍ଷଣି ଭଲେ ହେବକି ?

୧୮—ପୁ—ଅନୁରାଗୀ ରତନ ( ସ୍ନେହୀ ଶ୍ରେଷ୍ଠ ) ରାଜ ପୁତ୍ରର ମନର ଭାବ ଏହି- ଘନସ୍ତନୀ ( ପୀନସ୍ତନୀ ) ଯୋଗେ ( ସଂଯୋଗରେ ) ଏ ଜୀବ ( ପ୍ରାଣ ) ନ ଯିବ, ଭବ ( ଶିବଙ୍କର ) ଶତ୍ରୁ ମୋହନୀ ମାୟାରେ ଲୀନ ହେଲାପରେ ମୋ ଶତ୍ରୁ ସେ ଭବମୋହନୀ ( ବିଶ୍ୱ ମୋହନୀ ) ମାୟାରେ (ଗୃହରୀରେ)

ଘୋର ବେଦନା ସହୁ ଗୋଚର ନୋହୁ । ରସ ସଂଯୋଗ ହୋଇ ମିଳୁଛ ନାହିଁ ଯେ
ବଳ ଶତ୍ରୁ ଯେମନ୍ତ ଉସ୍ରୁଙ୍କ ମେଳେ । ହେବ ସୁମନାବର ଉତ୍ସବ ଭାଳେ ଯେ ॥୧୯
ସିଦ୍ଧି କର ଯେ କାବ୍ୟ ଅର୍ଥ ସେ ଯୋଡ଼ । ଅଚ୍ଛିଦ୍ର ହାସେ ଆଦ୍ୟରସରେ ଜଡ଼ ଯେ ॥
କହେ ଉପେନ୍ଦ୍ର ବର୍ଣ୍ଣଭଙ୍ଗିରୁ ବାର । ଛାନ୍ଦ ଗଙ୍ଗା ଯମୁନା ସଙ୍ଗମ ପର ଯେ ॥ ୨୦

---

ଲୀନ ହୋଇଅଛୁ । ( ଭଗବାନ ମୋହିନୀ ରୂପ ଧରି ଶିବଙ୍କୁ ଭୁଲାଇ ଥିଲେ ) ସେ ପୁନଃ କର୍ମକୁ ଉଦୟ କରିବ, (ଅର୍ଥାତ୍ ରାଜକନ୍ୟାର ସଂଯୋଗ ସୁଖ ମିଳିବ ) ।

ସ୍ତ୍ରୀ—ସେ ଅନୁରାଗୀର ( ଅନୁରାଗିଣୀ ରାଜ କେମାର ) ପୁରୁଷ ଠାରେ ତନୂନଃ ( ତନୁସ୍ପୃ ) ହେବା ହେତୁ ଏ ଭାବ ହେଉଛୁ । ବର୍ଷାକାଳ ହେଲେ ଘନ-ସ୍ତନିତ ( ମେଘ ଗର୍ଜନ ) ଯୋଗେ ଜୀବନ ଯିବ, ଶତ୍ରୁଭବ ( କାମର ) ମୋହିନୀ ମାୟାରେ ମନ ଲୀନ ହୋଇଛୁ, କ୍ରମଶେ (କ୍ରମେ କ୍ରମେ) ସେ ପୁଣି ଭାଗ୍ୟ ଉଦୟ କରିବ ।

୬୯—ପୁ—ସେ ଯେଉଁ ଘୋର ବେଦନା ସହୁ ( ସହ୍ୟ କରୁଛୁ ) ତାହା ଆଉ କାହାକୁ ଗୋଚର ହେଉ ନାହିଁ, ସଂଯୋଗ ( ମିଳନ ) ରସ ମିଳୁ ନାହିଁ । ସୁମନା ବର ( ଦେବ ଶ୍ରେଷ୍ଠ—ଇନ୍ଦ୍ରର) ଉତ୍ସବ ହେବ ଭାଳି ବଳାରାଜା ଶତ୍ରୁ ଯେମନ୍ତ ଉସ୍ରୁଙ୍କରେ ମେଳ ହୋଇଛୁ ସେହିପରି ଏ ସୁମନାବର (ସ୍ତ୍ରୀ ଶ୍ରେଷ୍ଠ )ର ମିଳନ ଉତ୍ସବକୁ ଭାବି ମୋ ଶତ୍ରୁ ଉସ୍ରୁଙ୍କ ହୁଅଇ ।

ସ୍ତ୍ରୀ—ସେ କେମାର ଘୋର ବେଦନା ସହୀ (ସଖୀମାନଙ୍କୁ) ଗୋଚର ହେଉ ନାହିଁ । ଶୃଙ୍ଗାର ରସ ସଂଯୋଗ ମଙ୍ଗଳ ଯୁକ୍ତ ହୋଇ ମିଳୁନାହିଁ । ପୁରୁଷଠାରେ ଯେମନ୍ତ ଶତ୍ରୁ ବଳ ( ବଳ ପକ୍ଷ ) ଉସ୍ରୁଙ୍କରେ ମେଳ ହେଉଛୁ ତେମନ୍ତ ସେ ସୁମନା (ରାଜକେମା) ବର (ପତି) ଉତ୍ସବ କେବେ ହେବ ଭାଳୁଛୁ ।

୨୦—ଯେ "ସେ"‌"କି" ପଢୁଥାଏ ସେ କାବ୍ୟ ଅର୍ଥ ଯୋଡ଼ିବସିଲେ ଆଦ୍ୟରୁ ସେ ଅଚ୍ଛିଦ୍ର (ପୂର୍ଣ୍ଣ) ହାସ୍ୟରସରେ ଜଡ଼ିତ ଅର୍ଥାତ୍ ସମସ୍ତେ ହସନ୍ତି । ଆଉ ଯେ ପଢ଼ା ସିଦ୍ଧି (ସମାପନ) କରି କାବ୍ୟଅର୍ଥ ଯୋଡ଼ି ବସଇ ସେ ଅଚ୍ଛିଦ୍ର (ପୂର୍ଣ୍ଣ) ରୂପେ ହାସେ (ହାସ୍ୟରସରେ) ଏବଂ ଆଦ୍ୟରସ (ଶୃଙ୍ଗାରରସ) ଚିତ୍ତରେ ଜଡ଼ିତ ହୁଅଇ ଅର୍ଥାତ୍ ଉତ୍ତମରୂପେ ଭାବଗ୍ରହଣ କରିପାରଇ । ଅତଏବ ଉପେନ୍ଦ୍ରଭଞ୍ଜ କହୁଛନ୍ତି, ହେ ରଙ୍ଗଜନମାନେ 'ଗଙ୍ଗାଯମୁନା ସଙ୍ଗମପର ଏ ଛାନ୍ଦକୁ ବର୍ଣ୍ଣ ( ରଙ୍ଗ ଓ ଅକ୍ଷର ) ଭଙ୍ଗିରୁ ବାର ଅର୍ଥକର ।

# ଏକବିଂଶ ଛାନ୍ଦ

ରାଗ-ମଙ୍ଗଳ




ଲେ ଶୁକ ସାରୀ ଭାଷି ଯେତେ ପ୍ରେମକଳା ।
ସେ ପୂର୍ଣ୍ଣଶଶୀ ହୃଦୟ-ନଭେ ପ୍ରକାଶିଲା ଯେ ॥ ୧

ସଂଶୟତା ସନ୍ଧ୍ୟା-ତମ ନାଶ ହେଲା ବେଗ ।
କାର୍ଯ୍ୟାର୍ଥୀ ପଥିକେ ଆଗ ଦଶିଗଲା ଦଗ ଯେ ॥ ୨
ହରଷ-କୁମୁଦ ବିକସିତ ହାସ ବ୍ୟାଜେ ।
ଶ୍ରୁତି ଚକୋର ଅମୃତ ପାନେ ତୋଷ ଭଜେ ଯେ ॥ ୩
ମନେ ମନେ ଧ୍ୟାୟି ଧ୍ୟାୟି ସେହି ସେହି ଉକ୍ତି ।
ଘେନିଲେ କି କଥା ଏ ପକ୍ଷୀଙ୍କ ଏତେ ଶକ୍ତି ଯେ ॥ ୪
ପୁଣି ଗୁଣିଲେ ଏ ବିଧି ପଢ଼ାଇବା ଖଗ ।
ହୋଇଥିଲେ ପୂର୍ବେ ହଂସଦୂତ ଅନ୍ତ ଅଙ୍କ ଯେ ॥ ୫
ନଳ ଦମୟନ୍ତୀ କାମଦେବ ପ୍ରଭାବତୀ ।
ରାଜା ରକ୍ଷପୁରେ ମିଳି କର ଦେଲେ ପ୍ରୀତି ଯେ ॥ ୬

---

୧—ଶୁକ ଓ ସାରୀ ଦୁହେଁ ଯେତେ ପ୍ରେମ କଳା (ପ୍ରେମର ଅଂଶ) ଭାଷିଗଲେ, ସେ ପ୍ରେମକଳା (ଚନ୍ଦ୍ରକଳା) ପୂର୍ଣ୍ଣ ଶଶୀ (ପୂର୍ଣ୍ଣଚନ୍ଦ୍ର ସଦୃଶ ଯୁବା) ହୃଦୟ ନଭେ (ହୃଦୟାକାଶରେ) ପ୍ରକାଶିଲା ।

୨—ପୂର୍ଣ୍ଣଶଶୀ ହୃଦୟରେ ସନ୍ଧ୍ୟାକାଳୀନ ତମଃ ଅନ୍ଧକାର ନାଶ ହେଲାପର ସଂଶୟତା ବେଗେ ନାଶ ହେଲା । କାର୍ଯ୍ୟାର୍ଥୀ ପଥିକଙ୍କୁ (ପୋଟା ଓ ଉପାଧ୍ୟାୟଙ୍କୁ) ଦଗ (ବାଟ) ଦଶିଗଲା ।

୩—ଶୁକସାରୀ କଥାଶୁଣି ହାସ ବ୍ୟାଜରେ (ହସିବାଛଳରେ) ହର୍ଷ ରୂପକ କୁମୁଦ (କଇଁ) ବିକସିତ ହେଲା । ଶ୍ରୁତି (କର୍ଣ୍ଣ) ରୂପ ଚକୋରପକ୍ଷୀ ସେ ବଚନାମୃତ ପାନରେ ତୋଷ (ସନ୍ତୋଷ) ଭଜିଲା ।

୪—ଶୁକସାରୀ ଦୁହିଙ୍କର ସେହି ସେହି ଉକ୍ତିକୁ ମନେ ମନେ ଧ୍ୟାୟି ଧ୍ୟାୟି କି କଥା, ଏ ପକ୍ଷୀଙ୍କର ଏତେଶକ୍ତି, ଏହା ମନେ ମନେ ଘେନିଲେ (ବିଚାରିଲେ) ।

୫—ପୁଣି ଗୁଣିଲେ (ବିଚାରିଲେ) ଏ ଖଗ (ପକ୍ଷୀ) ପଢ଼ାଇବା ବିଧି, ପୂର୍ବରେ ଅନ୍ତ ଅଙ୍କ ହଂସ ମଧ୍ୟ ଦୂତ ହୋଇଥିଲେ ।

୬—ନଳ ଦମୟନ୍ତୀ, କାମଦେବ (କନ୍ଦର୍ପ) ପ୍ରଭାବତୀ (ରତି) ରାଜା ଓ ରକ୍ଷଃପୁରେ ମିଳି କର ପ୍ରୀତିଦେଲେ । ଅର୍ଥାତ୍ ଦମୟନ୍ତୀ ରାଜପୁରେ ଓ ରତିଦେବୀ ରାକ୍ଷସପୁରରେ ଥିଲେ, ହଂସ ଦୂତ ହୋଇଯାଇ ଦମୟନ୍ତୀଙ୍କୁ ନଳଙ୍କପ୍ରୀତି ଓ ରତିଙ୍କୁ କାମଙ୍କପ୍ରୀତି ଦେଲେ ।

ସବୁଠାକୁ ମୂଳ କର୍ମ ଦୁର୍ଲ୍ଲଭ ଲଭଇ ।
ଉଦ୍ୟମେ କର୍ମବିପାକେ କାର୍ଯ୍ୟକୁ ନ ପାଇ ଯେ ॥ ୭
ବନେ ପାତାଳେ ସୁଗ୍ରୀବ ସ୍ୱୟଂପ୍ରଭା ଥିଲେ ।
ତାଙ୍କ କି ଉଦ୍ୟମେ ରାମଭଦ୍ର ବର ଦେଲେ ଯେ ॥ ୮
ସିନ୍ଧୁ ମନ୍ଥନରେ ଶ୍ରମ କରିଣ ଅସୁରେ ।
କ୍ଷମ ନୋହିଲେ ସେ ଆଜ୍ୟ ଅମୃତ ପାନରେ ଯେ ॥ ୯
ସ୍ନେହ କରାଇଣ ଏବେ କୁମାରୀ କୁମାରେ ।
ବିଧି ନାମ ସିଦ୍ଧ କଲା ଧାତା ଏହିଠାରେ ଯେ ॥ ୧୦
ଭୋଗ ଈଶ୍ୱରେ ଶ୍ମଶାନ ରାକ୍ଷସରେ ଲଙ୍କା ।
ଏ କଥା ସ୍ମରି ମନେ ଥିଲା ବଡ଼ ଶଙ୍କା ଯେ ॥ ୧୧
ଏତେ ଭାଳି ପୁଚ୍ଛା ପୁଚ୍ଛି କେ କାହିଁ ଗମିତ ।
ପୋଢା ବୋଲେ ଯେ ମଗଧେଶ୍ୱର ପ୍ରିୟସୁତ ॥ ୧୨
କି କଥା ପ୍ରସଙ୍ଗବଶେ କବିଏ କହିଲେ ।
ସେହିଦିନୁ ସେ କଥା ପ୍ରସଙ୍ଗ ଭାବ ହେଲେ ଯେ ॥ ୧୩

---

୭—ସବୁଠାକୁ କର୍ମ ( ଅଦୃଷ୍ଟ ) ମୂଳ, କେହି କେହି ଉଦ୍ୟମକରି କର୍ମବଳରେ ଦୁର୍ଲ୍ଲଭ ପଦାର୍ଥ ଲାଭ କରିପାରନ୍ତି କେହି ଅବା କର୍ମ ବିପାକରୁ (କର୍ମ ଅବଳରୁ) ଉଦ୍ୟମକରି ସୁଦ୍ଧା କାର୍ଯ୍ୟକୁ ପାଆନ୍ତି ନାହିଁ ।

୮—ବନେ ସୁଗ୍ରୀବ ପାତାଳରେ ସ୍ୱୟଂପ୍ରଭା ଥିଲେ, ସେ କି ଉଦ୍ୟମ କରିଥିଲେ ଯେ ରାମଚନ୍ଦ୍ର ତାହାଙ୍କୁ ବରଦେଲେ ।

୯—ଅସୁରମାନେ ସିନ୍ଧୁ (ସମୁଦ୍ର) ମନ୍ଥନରେ ଶ୍ରମ କରିସୁଦ୍ଧା ସେମାନେ ଆଜ୍ୟ ଅମୃତ ପାନରେ କ୍ଷମ ହେଲେ ନାହିଁ ।

୧୦—ଧାତା (ବିଧାତା) ଏବେ କୁମାରୀ ଓ କୁମାର ଦୁଇଜଣଙ୍କ ମଧ୍ୟରେ ପରସ୍ପର ସ୍ନେହ କରାଇ ଏହିଠାରେ ନିଜର ବିଧିନାମ ସିଦ୍ଧି କଲା ।

୧୧—ଈଶ୍ୱରେ (ମହାଦେବଙ୍କୁ) ଶ୍ମଶାନ ଭୋଗଥିଲା । ରାକ୍ଷସେ (ରାବଣଙ୍କୁ) ଲଙ୍କା ଭୋଗଥିଲା । ଏକଥା ସ୍ମରଣକରି ମନରେ ବଡ ଶଙ୍କା (ସନ୍ଦେହ) ଥିଲା ।

୧୨।୧୩—ଏତେ ଭାଳି ପୁଚ୍ଛା ପୁଚ୍ଛି ( କୁହାକୁହି ହୋଇ) କେ କାହିଁ ଗମିତ ( କିଏ କୁଆଡ଼େ ଗଲେ ) । ପୋଢା (ନପୁଂସକ ପୁରୁଷ) ବୋଲେ ଯେ ମଗଧେଶ୍ୱରଙ୍କର ପ୍ରିୟ ସୁତ (ପ୍ରିୟପୁତ୍ର )ଙ୍କୁ କବିଏ କଥା—ପ୍ରସଙ୍ଗ ବଶରେ କି କଥା କହିଲେ ଯେ ସେହି ଦିନୁ ସେ କଥାପ୍ରସଙ୍ଗ ଭାବ (ବାତୁଳ) ହେଲେ ।

ଚତୁର୍ମାସ୍ୟା କରିଥିଲେ ଅଦ୍ଭୁତ ପୁରୁଷେ ।
ପ୍ରେମମଞ୍ଜରୀ ମିଳିଲେ ଭଲ ହେବ ଭଷେ ଯେ ॥ ୧୪
ନୃପଙ୍କ ସତ କି ସ୍ୱପ୍ନ ଦେଖିଅଛୁ କାହିଁ ।
ପୁରେ ପୁରେ ଖୋଜି ଚମ୍ପାବତୀକି ମୁଁ ଯାଇ ଯେ ॥ ୧୫
ଉପାଧ୍ୟାୟୀ କହି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
କଲ୍ୟାଣୀ ଦର୍ଶନ ବିଭାଣ୍ଡକବନେ କରି ଯେ ॥ ୧୬
ପୁଂନାଗ ପୁଷ୍ପବାସୀ ଯେ ଦେଖି ତାକୁ ତୋଷେ ।
ହରିଅମାନାସ୍ୟା ଅହି ଦଂଶିଲା କି ଦୋଷେ ଯେ ॥ ୧୭
ସେ ବିଷେ ଘାରି ହେଉଛି ପଦ ନ ମାନଇ ।
ନରେନ୍ଦ୍ର ଯୋଗ୍ୟ ଜନ ମୁଁ ଲୋଡ଼େ ତାହା ପାଇଁ ଯେ ॥ ୧୮
ହରି ବୋଲି ନାରୀ-ନର-ଲକ୍ଷଣା ଉଠିଲା ।
ମାଗଧ ମାଳିନୀ ଭେଟି ତା ପୁରେ ରହିଲା ଯେ ॥ ୧୯
ଏ ମନୀଷାରେ ବାହୁଡ଼ି ପଛେ ଉପାଧ୍ୟାୟୀ ।
ଦ୍ୱିଦନ୍ତଗତି ଉଦନ୍ତ ପାଇବାର ପାଇଁ ଯେ ॥ ୨୦

---

୧୪—ଅଦ୍ଭୁତ ପୁରୁଷ ଚତୁର୍ମାସ୍ୟାକରିଥିଲେ, ପ୍ରେମମଞ୍ଜରୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସେହିଠାରେ ମିଳିଲେ ଭଲ ହେବ ସେ ଏହା କହିଲେ ।

୧୫—ରାଜପୁତ୍ର କହିଲେ ଏହାକଣ ସତ୍ୟ ନା କେଉଁଠାରେ ସ୍ୱପ୍ନ ଦେଖିଅଛ ? ମୁଁ ପୁରେ ପୁରେ ( ସବୁ ନଗରରେ ) ସୁନ୍ଦରୀକୁ ଖୋଜି ଚମ୍ପାବତୀ ନଗରୀକୁ ଯାଇଥିଲି ।

୧୬—ଏହା ଶୁଣି ଉପାଧ୍ୟାୟୀ କହିଲେ-କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କଲ୍ୟାଣୀ ( ମାଙ୍ଗ-ଲ୍ୟାଙ୍କ ) ଦର୍ଶନ ନିମିତ୍ତ ବିଭାଣ୍ଡକବନକୁ ଯାଇଥିଲେ ।

୧୭—ସେଠାରେ ଏକ ପୁଂନାଗ (ପୁରୁଷ ଶ୍ରେଷ୍ଠ) ଥିଲା, ପୁଷ୍ପବାସୀ ସୁନ୍ଦରୀ ତାକୁ ତୋଷେ ( ଆନନ୍ଦରେ ) ଦେଖି ହରି ଅମାନୀଆ ଅହି ( କାମସର୍ପ ) କି ଦୋଷରେ ଦଂଶନ କଲା ।

୧୮—ସୁନ୍ଦରୀ ସେ ବିଷପୁରେ ଘାରି ହେଉଛି ପଦ (ମନ୍ତ୍ର ) ମାନୁନାହିଁ, ମୁଁ ତାହାପାଇଁ ନରେନ୍ଦ୍ର ଯୋଗ୍ୟଜନ ( ବିଷବୈଦ୍ୟ ଓ ଉତ୍ତମ ପୁରୁଷ ) ଲୋଡ଼ୁଅଛୁ ।

୧୯—ମାଗଧ ( ମଗଧ ଦେଶୀୟ ) ନାରୀନର ଲକ୍ଷଣା (ପୋଡ଼ା) ହରି ବୋଲି ଉଠିଲା, ମାଳିନୀକୁ ଭେଟି ତା ପୁରେ ରହିଲା ।

୨୦—ଉପାଧ୍ୟାୟୀ ଦ୍ୱିଦନ୍ତଗତି (ଗଜଗମନା) ର ଉଦନ୍ତ (ବାର୍ତ୍ତା) ପାଇବାପାଇଁ ଏ ମନୀଷାରେ ( ଏ ବୁଦ୍ଧିରେ ) ତା ପଛେ ବାହୁଡ଼ିଲା (ଫେରିଗଲା) ।

ସୁଧାମୟ ଶୁଦ୍ଧାନ୍ତକୁ ସେହି ମାର୍ଗେ ଗଲ ।
ଦ୍ୱିପକ୍ଷୀ ବର୍ତ୍ତୁର ଗୃର ପ୍ରବେଶ କହିଲ ଯେ ॥ ୨୧
କାହିଁ ରହିଲ ପୁଚ୍ଛିଲେ ପ୍ରିୟସଖୀ ଜନ ।
ଖୋଜ ପୁରେ ବିଚକ୍ଷଣା ଚେଟୀ ଜଣେ ଘେନ ଯେ ॥ ୨୨
ରାଜ-ସୁତ-ହୃତ ରହି ମାଳିନୀ ସଦନ ।
ସୁମନ ଗୁନ୍ଥିବାକୁ ସୁମନ କଲ ମନ ॥ ୨୩
ପୁଷ୍ପବାଟୀ ଗ୍ରାସିଲ ଦ୍ୱିତୀୟରାଶି ଆସି ।
ମାଳାକାରୀ ସ୍ମର ନାମେ ପୁନଃପୁନଃ ଭାଷି ଯେ ॥ ୨୪
ବୋଇଲ ମୁଁ ଆସଇ ଦେଖାଇଁ ଘୋଷପଥ ।
ଖଟଣି ପୁଷ୍ପଟି ଯତ୍ନେ ମୋପରିରେ ଗୁନ୍ଥ ଯେ ॥ ୨୫
ପଗ୍ଭରିଲ କେଉଁ କୁସୁମରେ ସ୍ନେହ ଅଛି ।
ପାଟଳି ପାଟଳି ବୋଲି କଲ ଶୀଘ୍ର ଗତି ଯେ ॥ ୨୬
ଏ ଭାବି ଚିତ୍ତକୁ ଭାଗ୍ୟବନ୍ତ ନୃପସୁତ ।
ଯା ସ୍ଥାନ ଅର୍ଦ୍ଧ-ପ୍ରୟୋଗେ ମୋହିନୀ ମୋହିତ ଯେ ॥ ୨୭

---

୨୧—ସେହିବାଟେ ସୁଧାମୟ ( ଚୂନ ଲିପା ) ଶୁଦ୍ଧାନ୍ତ ( ଅନ୍ତଃପୁରକୁ ) ଗଲ, ଦ୍ୱିପକ୍ଷୀ ବର୍ତ୍ତୁର ( ନପୁଂସକ ) ଗୃର ( ହୃତ ) ପ୍ରବେଶିଛି ଏହା କହିଲ ।

୨୨—ତନପ୍ରିୟସଖୀ ସେ ହୃତ କାହିଁ ରହିଲେ ବୋଲି ପଗ୍ଭରିଲେ । ବିଚକ୍ଷଣା (ଉପାଧ୍ୟାୟୀ) ଜଣେ ଚେଟୀ (ଦୂତୀ) କୁ ଘେନି ପୁରରେ ଖୋଜିଲେ ।

୨୩—ରାଜସୁତ ହୃତ ( ରାଜପୁତ୍ରଙ୍କର ଗୃର ) ମାଳିନୀ ସଦନେ ( ଗୃହରେ ) ରହି ସୁମନ (ପୁଷ୍ପ) ଗୁନ୍ଥିବାକୁ ବସି ସ୍ତ୍ରୀ ଓ ପୁରୁଷ ଦୁହିଙ୍କର ସୁମନକୁ ( ଉତ୍ତମ ମନକୁ ) ଗୁନ୍ଥିବାକୁ ମନ କଲ ।

୨୪—ଦ୍ୱିତୀୟ ରାଶି (ବୃଷଭ) ଆସି ପୁଷ୍ପବାଟୀ (ଫୁଲବାରି) ଗ୍ରାସିଲ । ମାଳାକାରୀ ମାଳିନୀ ସ୍ମରନାମ (ମାର, ମାର ଏହି ନାମ) ପୁନଃ ପୁନଃ ଭାଷିଲ ।

୨୫—ସେ ମାଳିନୀ କହିଲ ମୁଁ ଘୋଷ ପଥ (ଗଉଡ଼ ସାହି ବାଟ) ଦେଖାଇ ଦେଇ ଆସୁଛି, ଏ ଖଟଣି ପୁଷ୍ପଟି ଯତ୍ନ ସହିତ ମୋପରି ଏହାକୁ ତୁମ୍ଭେ ଗୁନ୍ଥ ।

୨୬—ସେ ଗୃର ପଗ୍ଭରିଲ କେଉଁ ଫୁଲରେ ବିଶେଷ ସ୍ନେହ ? ମାଳିନୀ ପାଟଳି ୨ ବୋଲି କହି ଶୀଘ୍ରଗତି କଲ ।

୨୭—ଏହା ଶୁଣି ପୋଟା ଚିତ୍ତରେ ଭାବିଲ—ରାଜପୁତ୍ର, ବଡ଼ଭାଗ୍ୟବାନ, ଯେହେତୁ ରାଜପୁତ୍ରର ବାସସ୍ଥାନ ( ପାଟଳିପୁତ୍ର ) ର ଅର୍ଦ୍ଧପ୍ରୟୋଗରେ ( ପାଟଳି ) ରେ ମୋହିନୀ ମୋହିତ ହୋଇଅଛି ।

ସେ କାଳେ ଚେଟୀଏ ଆସି ଗୃହୀଁ ଦେଉଁ ଦ୍ୱାରେ ।
ବସନ୍ତେ ଗୀତ ଗାଇଲେ ଫୁଲ୍ଲଗୁଚ୍ଛାଠାରେ ଯେ ॥ ୨୮
କି ଯୋଗେ ସୁନ୍ଦରବର ସୁନ୍ଦରୀରତନେ ।
ଦେଖିଲନ୍ତୁ ଲେଖିଲ ରଖିଲ ନେତ୍ର ମନେ ଯେ ॥ ୨୯
ବିଚ୍ଛେଦ ଶଙ୍କାରୁ କର ଦେବଦୃଷ୍ଟି ବନ୍ଧୁ ।
ପ୍ରେମସୃଷ୍ଟି ସର୍ଜିବା ଉତ୍ସାହେ ନିଦ୍ରା ନାହିଁ ଯେ ॥ ୩୦
ରସାଳ ବନିତାମଣି ପୁଣି ତା ଭାବନା ।
ଆସ୍ୱାଦନେ ହୋଇଅଛୁ କ୍ଷୁଧା ତୃଷା ବିନା ଯେ ॥ ୩୧
ଫଳ ଅଛୁ ଫଳ ନାହିଁ ଏ ସଂଶୟୁ ଲଭି ।
ମଦନ ଦହନ ଶରେ ପୀଡ଼ନ ଅରମ୍ଭି ଯେ ॥ ୩୨
ଭବେ କୋଳ କଲ ଲୋଲ ଗୃହାଣିକି ତାଳି ।
କିମ୍ପା କୃପା ନ ଥିଲେ ଦିଅନ୍ତା ଏହା ଭାଳି ଯେ ॥ ୩୩
ଅଜନ୍ମସୁଖୀ ନୋହୁଛୁ ସ୍ୱପ୍ନେ ଦୁଃଖଗ୍ରସ୍ତ ।
ଏବେ ମାର ମାରଣେ ନ ବଳୁଥିବ ହସ୍ତ ଯେ ॥ ୩୪

---

୨୮—ସେ ସମୟରେ ଚେଟୀଏ ( ସଖୀମାନେ ) ଆସି ଦ୍ୱାରେ ଗୃହୀଁ ଦିଅନ୍ତେ ଫୁଲ୍ଲ ଗୁଚ୍ଛାଠାରେ ବସନ୍ତ ରାଗରେ ଗୀତ ଗାଇଲେ ।

୨୯—ସୁନ୍ଦର ବର କି ଯୋଗରେ ସୁନ୍ଦରୀ ରତନକୁ ଦେଖିବାରୁ ଲେଖିଲ ନେତ୍ରରେ ଓ ମନରେ ରଖିଲ ।

୩୦—ବିଚ୍ଛେଦ ( ବିରହ) ଶଙ୍କାରୁ ଦେବଦୃଷ୍ଟି କର ( ଅପଲକ ନେତ୍ରରେ ) ବନ୍ଧୁଅଛୁ ( ଦେଖୁଛୁ ) । ପ୍ରେମସୃଷ୍ଟି ସର୍ଜିବା ଉତ୍ସାହରେ ନିଦ୍ରାନାହିଁ ।

୩୧—ବନିତାମଣି ( ରାଜଜେମା ) ପୁଣି ରସାଳ ( ଆମ୍ବ ଓ ଆଖୁ ) ପରି ରାଜପୁତ୍ର ଭାବନା ଦ୍ୱାରା ତାହାର ଆସ୍ୱାଦନରେ କ୍ଷୁଧା ତୃଷା ବିହୀନ ହୋଇଛୁ ।

୩୨—ଆମ୍ବର ଫଳଅଛୁ ଆଖୁର ଫଳନାହିଁ ଅତଏବ ବାଞ୍ଛା ସଫଳହେବ କି ନାହିଁ ଏ ସଂଶୟ ଲଭିଲ କ୍ଷଣି ମଦନ ( କାମ ) ଦହନ ଶର ଦ୍ୱାରା ପୀଡ଼ନ ଆରମ୍ଭିଛୁ ।

୩୩—ରାଜପୁତ୍ର ତନ୍ମୟ ହେତୁ କଳ୍ପନା ଚକ୍ଷୁରେ ଦେଖଇ—ରାଜଜେମା ଲୋଳ ( ଚଞ୍ଚଳ ) ଗୃହାଣିକି ତାଳି ଭବରେ କୋଳ କଲ ଅତଏବ ଭାଳଇ କୃପା ନ ଥିଲେ କିମ୍ପା ଏହା ଆଲିଙ୍ଗନ ଦିଅନ୍ତା ।

୩୪—ଅଜନ୍ମ ସୁଖୀ ରାଜଜେମା ସ୍ୱପ୍ନରେ ମଧ୍ୟ ଦୁଃଖଗ୍ରସ୍ତ ହୋଇ ନାହିଁ, ଏହାକୁ ସୁକୁମାରୀ ଦେଖି ମାରିବା ବିଷୟରେ ମାର ( କାମ ) ର ହାତ ବଳୁ ନ ଥିବ ।

ସେ ପରଦୁଃଖ ଘେନିବା ବଡ଼ ଭାଗ୍ୟ ସତ ।
କି କରିବେ ଜଗନ୍ନାଥେ ଦେଇଛୁ ଉଦନ୍ତ ଯେ ॥ ୩୫
ବୋଲନ୍ତି ଅରତତ୍ରାଣ ଦୀନବନ୍ଧୁ ସେହି ।
କରି ଏହି ଭରସାକୁ ଅସିଅଛୁ ମୁହିଁ ଯେ ॥ ୩୬
ପୁଣି ସରାଗପ୍ରକାଶ ଗୁଙ୍ଗଡ଼ାରେ ଥୋଇ ।
ବାଲା ପ୍ରାପତେ ଚଠାଉ ମାଳାରେ ଘୋଡ଼ାଇ ଯେ ॥ ୩୭
ଶ୍ରବଣେ ସେ ଗୀତ ଶିକ୍ଷା କଲେ ଉପାଧ୍ୟାୟୀ ।
ଏହି କାଳେ ମାଳାକାରୀ ପରବେଶ ହୋଇ ଯେ ॥ ୩୮
ସୁମନସମ୍ଭାର ବାଳବାମା କରେ ଦେଇ ।
ଗଲା ସେ ଭୈରବୀ ସ୍ମରି ଉଚେ ଗୀତ ଗାଇ ଯେ ॥ ୩୯
ବାଣୀ ତାହା ବାଣୀରେ ହୋଇଲେ ଅଲଙ୍କୃତ ।
ହୃଦରେ ସଦନ କରି ଦେଲେ ସେ ସ୍ଫୁରିତ ଯେ ॥ ୪୦
କେ ରସିକାବର କ୍ଷୀରଘଟ ହୋଇଥିଲା ।
ବଧି-ବ୍ରଜ କାନ୍ତ ପ୍ରୀତି-ନୀର ମିଶାଇଲା ଯେ ॥ ୪୧

---

୩୫—ଯେ ଦୁଃଖ ଭୋଗିଥାଏ ସେ ଦୁଃଖକଥା ଜାଣେ । ଯେଉଁ ରାଜଜେମା ଦୁଃଖ କାପର ଜାଣେନାହିଁ ସେ ପରର ଦୁଃଖ ଘେନିବା ବଡ଼ ଭାଗ୍ୟର କଥା ସତ, ତଥାପି ଜଗନ୍ନାଥ ଯାହା କରିବେ । ଉଦନ୍ତ ( ବାର୍ତ୍ତା ) ଦେଇଛୁତ ।

୩୬—ସେହି ଜଗନ୍ନାଥ ଆରତ ତ୍ରାଣ ଓ ଦୀନବନ୍ଧୁ ବୋଲନ୍ତି ଏହି ଭରସା କରି ମୁହିଁ ଅସିଅଛୁ ।

୩୭—ପୁଣି ସରାଗ ( ସ୍ନେହ ) ପ୍ରକାଶ କରୁଥିବା ଗୁଙ୍ଗଡ଼ାରେ ଚଠାଉ ଥୋଇ ମାଳାରେ ( ଫୁଲ ମାଳାରେ ) ଘୋଡ଼ାଇ ବାଲା ପ୍ରାପତେ ( ପ୍ରାପ୍ତି ନିମିତ୍ତ) ପଠାଏ ।

୩୮—ସେ ଗୀତ ଶ୍ରବଣ କଲା ମାତ୍ରେ ଉପାଧ୍ୟାୟୀ ଶିକ୍ଷାକଲେ, ଏହି ସମୟରେ ମାଳାକାରୀ ପ୍ରବେଶ ହେଲେ ।

୩୯—ସୁମନ ସମ୍ଭାର ( ଫୁଲ ଗୁଙ୍ଗଡ଼ା ) ବାଳ ବାମା ( ବାଳିକା ) କରେ ଦେଇ ସେ ଭୈରବୀ ( ଦୁର୍ଗା ) ଙ୍କୁ ସ୍ମରଣ କରି ଉଚ୍ଚରେ ଗୀତ ଗାଇ ଗୁଲିଲା ।

୪୦—ବାଣୀ ( ସରସ୍ୱତୀ ) ତାହା ବାଣୀରେ ( ବଚନରେ ) ଅଲଙ୍କୃତ ହେଲେ; ହୃଦୟରେ ସଦନ ( ବାସ ) ସେ ସରସ୍ୱତୀ ପଦ ମାନଙ୍କୁ ସ୍ଫୁରିତ ( ପ୍ରକାଶିତ ) କରିଦେଲେ ।

୪୧—ରସିକାବର କୋଟିବ୍ରହ୍ମାଣ୍ଡସୁନ୍ଦରୀ କ୍ଷୀରଘଟ ( ଦୁଗ୍ଧଭାଣ୍ଡ ) ହୋଇ ଥିଲା, ବଧି-ବ୍ରଜ (ବଧାତା ଗଉଡ଼ ) ହୋଇ କାନ୍ତ ପ୍ରୀତି ରୂପ ନୀର ( ଜଳ ) ସେହି ଦୁଗ୍ଧଭାଣ୍ଡରେ ମିଶାଇଲା ।

କମେ ଶୀର୍ଣ୍ଣ କଲା ସ୍ଥାପି ବିରହାନଳରେ ।
ଉଦ୍ୟମି ମନ୍ମଥଦଣ୍ଡ ଧରି ମନ୍ଥିବାରେ ଯେ ॥ ୪୨
ପୁନଃ ଲଭିଲେ ସେ ନୀର ସ୍ଥିରକୁ ଲଭିବ ।
ଏ ବିନା ବିନାଶ ନାନାରସ-ଜାତ ଦ୍ରବ୍ୟ ଯେ ॥ ୪୩
ଘଟ ଫାଟି ଫୁଟି ଯିବା କାଳ ହେବ ଯହିଁ ।
ନିମନ୍ତେ କ୍ଷୁଗ୍‌ଧଉଦ୍ଧାରଣୀ ସେହୁବ୍ରଜବାହୁ ଯେ ॥ ୪୪
ପୁଂସଦୂତ ନେବଶ୍ରୁତି ମନ୍ତ୍ରେ ଏମନ୍ତରେ ।
ଘେନେ ରାମା ଘାରି ହେବ ଏ ଭାବବାଷରେ ଯେ ॥ ୪୫
ଅବରୋଧେ ଅବରୋଧେ ପ୍ରବେଶ ସେ ବେନି ।
ଗନ୍ଧପର୍ଣଗୀତ ରାଗ ଗାଉଛନ୍ତି ଘେନି ଯେ ॥ ୪୬

---

୪୨—ବିରହାନଳରେ (ବିରହ ତାପରେ) ସ୍ଥାପି ମନ୍ମଥ ଦଣ୍ଡ ଧରି ମନ୍ଥିବାରେ ଉଦ୍ୟମି (ଉଦ୍ୟମ କରି) କମେ ଶୀର୍ଣ୍ଣ କଲା—ଦୁଗ୍‌ଧରେ ପାଣି ମିଶାଇ ତାହାକୁ ନିଆଁରେ ବସାଇ ଡଙ୍କାରେ ଘାଣ୍ଟି ଅଉଟିଲା ପରି ବିଧାତା ଏହାକୁ ବିରହାଗ୍ନିରେ ବସାଇ ମନ୍ମଥ ଦଣ୍ଡରେ ଘାଣ୍ଟି କମେ ଶୁଖାଇ ଦେଲା ।

୪୩—ଦୁଗ୍‌ଧ ଅଗ୍ନିତାପରେ ଉତୁରଇ ସେ ପୂର୍ଣ ନୀର ( ପାଣି ) ଲଭିଲେ ( ପାଇଲେ ) ସ୍ଥିରକୁ ଲଭିବ ସେହିପରି ରସିକା ଅସ୍ଥିର ହେଉଛୁ ପୁନଃ ସେ କାନ୍ତ ନୀରକୁ ପାଇଲେ ସ୍ଥିର ହେବ । ଏ ବିନା ଏପରି ଜଳସଂଯୋଗ ବ୍ୟତୀତ ନାନାରସ ( ଦଧି ଛେନା ଲହୁଣୀ ପ୍ରଭୃତି) ଜାତ କରାଇବା ଦ୍ରବ୍ୟ ( ଦୁଧ ) ଉତୁରି ବିନାଶ ହେଲା ପରି ଏ ରସିକା କାନ୍ତ ପ୍ରୀତି ନୀର ବିନା ବିନାଶକୁ ପାଇବ ।

୪୪—ଦୁଧ ଅଧିକ ଅଉଟି ହୋଇ ଘଟ ଫାଟି ଫୁଟି ଯିବା କାଳ ଯେତେବେଳେ ହୁଏ ସେତେବେଳେ ଗଉଡ଼ ଓହ୍ଲାଇ ପକାଇଲା ପରି ଏହାର ଘଟ (ଦେହ) ଫାଟିଫୁଟି ଯିବାକାଳ ଯହୁଁ ହେବ ତହୁଁ ସେହି ବ୍ରଜ ( ଗଉଡ଼ ) ବିଧାତା ନିମନ୍ତେ ଏ ଦୁଗ୍‌ଧ ଉଦ୍ଧାରଣୀ ବାହୁବି ( କଷ୍ଟରୁ ଉଦ୍ଧାରିବ ) ।

୪୫—ଏମନ୍ତରେ ( ଏଥିରେ ) ପୁଂସ ଦୂତ ( ପୋଷାକ ) ନେତ୍ର ଓ ଶ୍ରୁତି ମନ୍ତ୍ରିଲା ଅର୍ଥାତ୍ ସେ ଦେଖି ଶୁଣି ଏମନ୍ତ ମନରେ ଦେଲା—ଏ ଭାବରୂପ ବାଷରେ ରାମା ନିଶ୍ଚୟ ଘାରିହେବ ।

୪୬—ସେ ବେନି ସଖୀ ଅବରୋଧେ ( ବିନାଅଟକରେ ) ଅବରୋଧେ ( ଅନ୍ତଃପୁରରେ ) ପ୍ରବେଶ କଲେ, ରାଗ, ( ସ୍ନେହ ) ଘେନିଗନ୍ଧପର୍ଣ ଗୀତ ( ମଙ୍ଗଳଗୀତ ) ଗାଉଛନ୍ତି ।

ଶଚୀକଳା ଅଗ୍ରତେ ପ୍ରକାଶେ ଉପାଧ୍ୟାୟୀ ।
ଗୋପ୍ୟପୁରେ ବାଳବାମା ପୁଷ୍ପମାଳା ଥୋଇ ଯେ ॥ ୪୭
ଶ୍ରବଣ ଲୋଚନ ଭାବୁଁ ବାଣୀକା ତର୍କିଲା ।
ଗୁଣବତୀ ବଜେ କର ଏ ପୁରେ ଡାକିଲା ଯେ ॥ ୪୮
ଶୋଭାବତୀ ହୃଦକ୍ଷେତ୍ର-ଜାତ ଇକ୍ଷୁଲତା ।
ହୃଦିଚ୍ଛା କୃଷିକ ତାହା ପେଡ଼ିବାରେ ରତା ଯେ ॥ ୪୯
ତାପ ଦହନ.ଯୋଗରେ କି ମଧୁର ଦ୍ରବ୍ୟ ।
ସମ୍ଭବନ୍ତି ବ୍ୟାଧିବନ୍ତ ରୋଚକ ସ୍ୱଭାବ ଯେ ॥ ୫୦
ଭୋଗୀ ରୋଗୀ ଦୁଇଭାବ ଅଛି ତୋହଠାରେ ।
ବିଳମ୍ବ ନ କରି ବଜେ କର ଭକ୍ଷଣରେ ଯେ ॥ ୫୧
ଆନ କୃଷିକ ପୀଡ଼ନ ଇକ୍ଷୁଜାତରସ ।
ରସନାକୁ ସ୍ୱାଦୁରେ କରଇ ଅତି ତୋଷ ଯେ ॥ ୫୨
ମୂର୍ଖ କର୍ଣ୍ଣ ନୟନ ଜାଣିମେ ଏହା ସ୍ୱାଦୁ ।
ପାକେ ପିତା ନୋହେ ତାର ତେଜ ପରସାଦୁଁ ଯେ ॥ ୫୩

---

୪୭—ଉପାଧ୍ୟାୟୀ ଶଚୀ କଳା ଅଗ୍ରତେ ପ୍ରକାଶହେଲେ ବାଳବାମା ପୁଷ୍ପମାଳା ଥୋଇ ପୁରେ ଗୋପ୍ୟ ହେଲା ।

୪୮—ବାଣୀକା ଶ୍ରବଣ ଲୋଚନ ଭାବୁଁ ( ଶୁଣିବା ଏବଂ ଦେଖିବା ଭାବରୁ ) ତର୍କଣା କଲା-ରେ ଗୁଣବତି ! ଏ ପୁରେ ବଜେ କର ଏପରି କିଏ ଡାକିଲା ।

୪୯—ରେ ଶୋଭାବତୀ ! ପୁରୁଷର ହୃଦ କ୍ଷେତ୍ରରେ ଯେଉଁ ଇକ୍ଷୁଲତା ଜାତ ହୋଇ ଥିଲା ତାକୁ ହୃଦିଚ୍ଛା ( ମନୋବାଞ୍ଛା ) ରୂପ କୃଷିକ ( ଚଷା ) ପେଡ଼ିବାରେ ରତହେଲା ।

୫୦—ତାପ ( କାମ ତାପ ) ରୂପ ଦହନ (ଅଗ୍ନି ) ଯୋଗରେ ତହିଁରୁ କି ମଧୁର ଦ୍ରବ୍ୟ ସମ୍ଭବନ୍ତି । ବ୍ୟାଧିବନ୍ତ ( ରୋଗୀ ) ପକ୍ଷରେ ତାହା ରୋଚକ ( ରୁଚିକର ) ଅଟଇ ।

୫୧—ତୋହଠାରେ ଭୋଗୀ ଓ ରୋଗୀ ଦୁଇ ଭାବ ଅଛି, ଅତଏବ ବିଳମ୍ବ ନ କରି ଭକ୍ଷଣ କରିବାକୁ ବଜେ କର ।

୫୨—ଅନ୍ୟ କୃଷି ପେଡ଼ିଥିବା ଅଖୁରସ ସ୍ୱାଦୁଗୁଣରେ ରସନାକୁ ( ଜିହ୍ୱାକୁ ) ଅତି ତୋଷ କରଇ ।

୫୩—ମୂର୍ଖ କର୍ଣ୍ଣ, ନୟନ ଏହାର ସ୍ୱାଦୁ ଜାଣିମେ । ତାହାର ହୃଦୟ ଜାତ ଅଖୁ ରସ ତେଜ ପ୍ରସାଦରୁ ପାକରେ (ରନ୍ଧନରେ ) ପିତା ହୋଇ ନାହିଁ

ମଙ୍ଗଳ ଜାତେ ଶ୍ରୀରାମ ସୁମରି ନାଗରୀ ।
ଶୋକସିନ୍ଧୁ ତରି ଯିବ ନଗରନାଗରୀ ଯେ ॥ ୫୪
ଶ୍ରୀରାମ ସୁମରି ଯେଣୁ ହେଲେ ସିନ୍ଧୁ ତରି ।
ମରୁତସୁତ ପ୍ରବେଶ ହେମମୟପୁରୀ ଯେ ॥ ୫୫
କହେ ଉପେନ୍ଦ୍ର ଭଞ୍ଜ ଶ୍ରୀରାମ ସୁମରି ।
ବୈକୁଣ୍ଠପୁର ଲଭିବ ଭବସିନ୍ଧୁ ତରି ॥ ୫୬

---

## ଦ୍ୱାତ୍ରିଂଶ ଛାନ୍ଦ

ରାଗ କନଡ଼ା

ଯୁବା ମଣି ଥିବା ପୁର ଭର୍ତ୍ତ ପଛେ ସ୍ୱଚ୍ଛେ ରଙ୍ଗିତଗୀତ ଗାନ ॥
ଅଳୀ ଅଗେ ଉପାଧ୍ୟାୟୀ ରଚନ ।
ଶୀର୍ଣ୍ଣକଟୀ ପୂର୍ଣ୍ଣଚନ୍ଦ୍ରମାବଦନୀ ସେ କଥାରେ ଦେଇ କର୍ଣ୍ଣ ସେ, ସୁନ୍ଦରୀ ।
ବେଗ ବେଗ ନେତ୍ରଯୁଗ ଚାଳଇ । ବାଳବାମା ହରଷକୁ ଅନାଇ ।
ଉତଫୁଲ୍ଲ ସୁମନ ଗୁଚ୍ଛାରେ ଯତନେ ଉତ୍‌ଫୁଲ୍ଲ ସୁମନ ଥୋଇ ସେ ॥ ୧

---

୫୪—ମଙ୍ଗଳ ଜାତହେବାରୁ ନାଗରୀ ଶ୍ରୀରାମଙ୍କୁ ସ୍ମରଣ କରି ଶୋକ ସିନ୍ଧୁ ତରି ନଗର ନାଗରୀ ( ପୁଷ୍ପକେତୁଙ୍କ ପୁର ) କୁ ଯିବ ବୋଲି ମନେ କଲା ।

୫୫—ଯେଣୁ ମରୁତ ( ହନୁମାନ ) ଶ୍ରୀରାମଙ୍କୁ ସ୍ମରଣ କରି ସିନ୍ଧୁ ( ସମୁଦ୍ର ) ତରି ହେମମୟ ପୁରୀ ( ଲଙ୍କା ) ରେ ପ୍ରବେଶ ହେଲେ ।

୫୬—ଉପେନ୍ଦ୍ରଭଞ୍ଜ କହନ୍ତି ଶ୍ରୀରାମଙ୍କୁ ସ୍ମରଣ କରି ଭବସିନ୍ଧୁ ( ସଂସାର ସାଗର ] ତରି ବୈକୁଣ୍ଠ ପୁର ଲଭିବ ।

---

୧—ଯୁବାମଣି ଯେଉଁ ପୁରେ ଥିଲେ ତାହାର ଭର୍ତ୍ତ ( କାନ୍ତ ) ପଛରେ ଉପାଧ୍ୟାୟୀ ସ୍ୱଚ୍ଛରେ ଅଳୀ ଅଗରେ ରଙ୍ଗିତ ଗୀତମାନ ରଚନ କଲେ । ଶୀର୍ଣ୍ଣକଟୀ ( କୃଶମଧ୍ୟା ) ପୂର୍ଣ୍ଣଚନ୍ଦ୍ରମା ବଦନୀ ସୁନ୍ଦରୀ ସେ କଥାରେ କର୍ଣ୍ଣ ଦେଇ ନେତ୍ରଯୁଗକୁ (ନେତ୍ରଦ୍ୱୟକୁ) ବେଗ ୨ ଚଳାଇଲା । ବାଳବାମାର ହର୍ଷକୁ ଅନାଇ ଉତ୍‌ଫୁଲ୍ଲ ସୁମନ ( ପ୍ରସ୍ଫୁଟିତ ପୁଷ୍ପ ) ଗୁଚ୍ଛାରେ ଉତ୍‌ଫୁଲ୍ଲ ସୁମନ ( ପ୍ରଫୁଲ୍ଲମନକୁ ) ଯତ୍ନରେ ଥୋଇଲା ।

ଏମନ୍ତେ ବାଳିକା କୁସୁମମାଳିକା ଠେଇଁ ପତ୍ରମୁଦେ ପାଇଲା ।
ନିଧି ଦରିଦ୍ର ହସ୍ତକୁ ଅଇଲା ।
ଫେଡ଼ିଲା ସେ ଫନ୍ଦା କରିବା ବିଗ୍ରହରେ ସୁବର୍ଣ୍ଣେ ପୂର୍ଣ୍ଣ ଗ୍ରହିଲା । ସେ ସୁନ୍ଦରୀ ।
କଲୁଁ ହୃଦେ କଷିବା ଅରମ୍ଭିଣ । ପଢ଼େ ପ୍ରଥମେ ଶ୍ରୀରାମ ଶରଣ । ୨
ଶୋଭାବନ୍ତୀଗଣେ ଚକ୍ରବର୍ତ୍ତୀପଣେ ଖ୍ୟାତ ଯେ ତାକୁ ଜଣାଣ ରେ ।
ନୃପକୁମାରୀ ସୁକୁମାରୀ ତୋ ସଙ୍ଗେ ଶୋଭା-ବିବାଦ ନ ଅଦର ।
ସିନ୍ଧୁ ନନ୍ଦନା ମଦନାରିନାରୀ ।
ପ୍ରଧାନ କରି ସେ କମଳା ଗଉରୀ ନାମମିନତା ବିଗ୍ରହରେ । ସୁନ୍ଦରୀ ।
ଯେଉଁ ପ୍ରମଦା ଦିବ୍ୟରୂପ ବହି । ରତି ଏ ବୋଲି ଦୃଷ୍ଟାନ୍ତରେ କହି ।
ରତିଏ ସେ ଯହିଁ ତୁଳନା ନୋହିଲି ଲଳନା ତୋ ପରି ତୁହିରେ ॥ ୩
ବହି ନ ପାରି ବହି କେବେ ତୋ ସରି ତାର କଳ୍ପନା ସିଦ୍ଧି ପଣେ ।
ପ୍ରତିବିମ୍ବ ହେଲେ କଲା ଦର୍ପଣେ ।
ଯେମନ୍ତ କିପୁଣ ଗୁଣେ ତୁହି ଗୁଣ କାହିଁ ଭିଅଇବ ଜଣେରେ । ସୁନ୍ଦରୀ ।
ନୋହିଁ ସଙ୍ଗୀତ ସାହିତ୍ୟେ ସମାନ । ପଳାଇଲା ସାରଦା ଅନୁମାନ ।
କେଳ ପ୍ରବୀଣା କଣୋରୀ କଣ୍ଠେ ବୀଣା ପାସୋରି ଗଲା କି ଛଳରେ ॥ ୪

---

୨—ବାଳିକା ଏପରି କୁସୁମ ମାଳିକା ଠେଇଁ ପତ୍ରମୁଦେ ( ମୁଦ୍ରିତ ପତ୍ରଖଣ୍ଡିଏ ) ପାଇଲା । ଦରିଦ୍ର ହାତକୁ ନିଧି ଅସିଲାପରି ସେ ପତ୍ର ସୁନ୍ଦରୀର ଅନନ୍ଦ-ବଢ଼ାଇଲା । ସେ ଫନ୍ଦା କରିବା ବିଗ୍ରହ କରି ତାହାକୁ ଫେଡ଼ି- ( ଫିଟାଇ ) ଗ୍ରହିଲା ସେ ସୁବର୍ଣ୍ଣରେ ( ଉତ୍ତମ ଅକ୍ଷରରେ ଓ ସୁନାରେ ) ପୂର୍ଣ୍ଣ । ସୁନା କଷଟି ପଥରରେ କଷନ୍ତି, ସୁନ୍ଦରୀ ପତ୍ରକୁ ହୃଦରେ କଷିବା ଆରମ୍ଭ କରନ୍ତେ ପ୍ରଥମରେ ଶ୍ରୀରାମଶରଣ ପଢ଼ିଲା । ଯେ ଶୋଭାବନ୍ତୀଗଣେ ( ସୁନ୍ଦରୀ ସମୂହରେ ) ଚକ୍ରବର୍ତ୍ତୀ ପଣେ ( ରାଜପଣିଆରେ ) ଖ୍ୟାତ ତାହାକୁ ଏ ଜଣାଣ ( ନିବେଦନ ) ଅଟେ ।

୩—ହେ ସୁକୁମାରୀ ନୃପକୁମାରୀ । ସିନ୍ଧୁନନ୍ଦନା ( ଲକ୍ଷ୍ମୀ ) ମଦନାରି ( ପାର୍ବତୀ ) ଏ ବୁହେଁ ତୋ ସଙ୍ଗରେ ଶୋଭାବିବାଦକୁ ଅଦର ନ କରି ତୁ କମଳା ( ପଦ୍ମିନୀ ) ଗୌରୀ ( ଗୌରାଙ୍ଗୀ ) ବୋଲି ସେ ବୁହେଁ ନାମ ମିନତାକୁ ବିଗ୍ରହ ନିଜ ୨ ନାମକୁ କମଳା ଓ ଗୌରୀ ବୋଲି ପ୍ରଧାନ କରି ଖ୍ୟାତ କଲେ । ଜଗତରେ ଯେଉଁ ପ୍ରମଦା ( ସ୍ତ୍ରୀ ) ଦିବ୍ୟରୂପ ବହିଥାଏ ତାକୁ ଏ ରତି ବୋଲି ଦୃଷ୍ଟାନ୍ତରେ କହନ୍ତି । ସେହି ରତିଦେବୀ ରତିଏ ପରିମାଣରେ ଯହିଁ ତୁଳନା ନୋହିଲା ତେଣୁ ତୋପରି ଲଳନା ( ସୁନ୍ଦରୀ ) ତୁହି ଅଚ୍ଛୁ ।

୪—ବହି ( ବିଧାତା ) ତାହାର କଳ୍ପନା ସିଦ୍ଧି ପଣରେ କେବେ ସୁଦ୍ଧା ତୋ ସରି ( ସମାନ ) ବହି ନ ପାରି ଦର୍ପଣରେ ପ୍ରତିବିମ୍ବକ ହେଲେ କଲା । କିନ୍ତୁ

ଖୋଜି କି ତୋ ସମେ ସୁଷମେ ଗୋଟିଏ କୋଟିଏ ବ୍ରହ୍ମାଣ୍ଡେ ନ ପାଇ
ବଣ କରି ନ ପାରିବା ଧିଅଇଁ ।
ବିରହଜ୍ୱାଳାରେ ହରି ତନୁ କଲା ହର ଗଲେ ଯୋଗୀ ହୋଇ ରେ । ସୁନ୍ଦରି !
ଏଣୁ ଦୁର୍ଲ୍ଲଭେ ଦୁର୍ଲ୍ଲଭ ତୁ ଅତି । ଭୁଜେ ମୋହନେ ମୋହନ ମୂରତି ।
ଭଗୀରଥେ ଗଙ୍ଗା କୃପା କଲ ପ୍ରାୟେ ହେଲୁ ମୋ ନେତ୍ର ସମ୍ମତିରେ ॥ ୫
ସୁରତରଙ୍ଗଣୀ ସେହି ତୁହି ସତ ଘନରସରେ ପୂର୍ଣ୍ଣ ସ୍ୱଚ୍ଛେ ।
ବନଯୁଁ ସେ ଗୋଡ଼ାଇ ରାଜାପଛେ ।
ନାହିଁ କରିବୁ କି ମୁଁ ରାଜାକୁମାର ତୋ ପଛେ ଥିବାକୁ ଇଚ୍ଛେ ରେ । ସୁନ୍ଦରି !
ଏ ଭରସା ସେ ତାର ତାର ଗୋତ୍ର । ଏକା ଗାତ୍ର ନ କରିବୁ ପବିତ୍ର ।
ଚନ୍ତା ବାରୁଣି ଯୋଗ ପୁଣି ହୋଇବ ମଧୁର ସ୍ନେହରେ ମାନରେ ॥ ୬

---

ରେ ସୁନ୍ଦରୀ । ତୁହି ଯେମନ୍ତ ଗୁଣରେ ନିପୁଣ କାହୁଁ ପୁଣି ସେପରି ଜଣେ ହେଲେ ଭିଅଇବ । ଶାରଦା ( ସରସ୍ୱତୀ ) ସରସ୍ୱତୀ ସାହିତ୍ୟରେ ତୋ ସମାନ ନ ହେବାରୁ ପଳାଇଛି । ଏହା ମୋର ଅନୁମାନ ହେଉଛି, ଯେଣୁ କେତେ ପ୍ରବୀଣା କିଶୋରୀ ଯେ ତୁ ତୋ କଣ୍ଠରେ ବୀଣାକୁ ପାସୋର ଛଳରେ ( ବେଗରେ ) ଗୁଣ୍ଠିଗଲା ।

୫—କୋଟିବ୍ରହ୍ମାଣ୍ଡରେ ଖୋଜି ତୋ ସମାନ ସୁଷମାରେ ଗୋଟିଏ ସୁନ୍ଦରୀ ନପାଇବାରୁ ତୋତେ ମଧ୍ୟ ବଶକରି ନ ପାରିବା ଧିଅଇ ( ଭାବି ) ବିରହଜ୍ୱାଳାରେ ହରି ( କୃଷ୍ଣ ) ତନୁ ( ଶରୀରକୁ ) କଳାକଲେ, ହର ଯୋଗୀ ହୋଇଗଲେ ଏଣୁ ଦୁର୍ଲ୍ଲଭ ପଦାର୍ଥ ମାନଙ୍କ ମଧ୍ୟରେ ତୁ ଅତ୍ୟନ୍ତ ଦୁର୍ଲ୍ଲଭ । ଦ୍ୱିତୀୟରେ ମୋହନ କରିବାରେ ତୁ ମୋହନ ମୂର୍ତ୍ତି । କେବଳ ଗଙ୍ଗା ଯେପରି ଭଗୀରଥଙ୍କ ଠାରେ କୃପା କରିଥିଲେ ସେହିପରି ତୁ ମୋର ନେତ୍ର ସମ୍ମତ ହେଲୁ ।

୬—ସେହି ଗଙ୍ଗା ସୁରତରଙ୍ଗିଣୀ ( ଦେବନଦୀ ) ତୁ ମଧ୍ୟ ସୁରତ ରଙ୍ଗଣୀ ( ରତି ନିପୁଣା ) ସେ ସ୍ୱଚ୍ଛ ଘନ ରସରେ ( ନିର୍ମଳ ଜଳରେ ) ପୂର୍ଣ୍ଣ ତୁ ସ୍ୱଚ୍ଛ ଘନ ରସରେ ( ନିବିଡ଼ ଶୃଙ୍ଗାର ରସରେ) ପୂର୍ଣ୍ଣ ଏହା ସତ୍ୟ । ସେହି ଗଙ୍ଗା ଭଗୀ-ରଥ ରାଜା ବନଯାଯୀ ହେବାରୁ ତାହା ପଛରେ ଗୋଡ଼ାଇଥିଲେ । ରେ ସୁନ୍ଦରି ! ମୁଁ ରାଜକୁମାର ତୋ ପଛରେ ରହିବାକୁ ଇଚ୍ଛାକରେ ରେ ସୁନ୍ଦରୀ, ତୁ କ'ଣ ନାହିଁ କରିବୁ କି ? ସେ ଗଙ୍ଗା ତାର ( ଭଗୀରଥଙ୍କର ) ଗୋତ୍ର ( ବଂଶ ) ତାରିଥିଲେ, ତୁ କଣ ଏକା ମୋର ଗାତ୍ର ( ଶରୀର ) କୁ ପବିତ୍ର କରିବୁ ନାହିଁ ମଧୁରେ ( ଚୈତ୍ରମାସରେ) ଗଙ୍ଗାରେ ବାରୁଣୀ ଯୋଗ ପଡ଼ଇ ତହିଁରେ ଲୋକେ ମଜ୍ଜନ୍ତି (ସ୍ନାନକରନ୍ତି) ସେହିପରି ତୋହର ମଧୁର ସ୍ନେହରେ ମୋହର ମଜ୍ଜିବା ହେବ ଏତିକମାତ୍ର ଚିନ୍ତା ମୋହର ହୁଅଇ ।

ବଳି ଇନ୍ଦ୍ରଶିରୀ ଭୋଗ ବାଞ୍ଛାପର ଏ କଥା ମୁଁ କରେ ଭଜନ
ହୋଇବକି ନାହିଁ ପ୍ରୀତିଭାଜନ
ରାବଣ ପ୍ରାୟେ ଭାଲପଟ୍ଟ ଲେଖନ ବର୍ଣ୍ଣ ପଠନେ ମୋ ମନ ରେ । ସୁନ୍ଦରି !
କ୍ଷଣେ କ୍ଷଣେ କ୍ଷଣପ୍ରଭା ସଦୃଶା । ପୁନଃପୁନଃ ଦିଶି ଲୀନ ଭରସା ।
ବସୁରେ ଶେଷରେ ଅଶେଷ ହେବାରେ କରୁଛି କି ତପସ୍ୟା ରେ ॥ ୭
ବାଣ ଦେବରାଣଠାରୁ କର ଋଣ କର ଈକ୍ଷଣ ବିଶ୍ୱକର୍ମା ।
ନିର୍ମାଣିଲା ଜାତରୂପପ୍ରତିମା ।
ସୁରନଗରୀଠାରୁ ବରନାଗରୀ ନାଗରୁ ସୁମଧ୍ୟମାରେ । ସୁନ୍ଦରି !
ଜୀବ ପାଇବାରୁ ଦିବ୍ୟ ବନିତା । ରୂପେ ହୋଇଲୁ ଅବନୀଜନିତା ।
ପ୍ରଶଂସାଯୋଗ୍ୟ ସଂସାରେ ଭାଗ୍ୟ ମୋର ତୁ ଯେ ଅନୁଗ୍ରହକର୍ତ୍ତ୍ରୀ ରେ ॥ ୮
ଶିରୀଷଅଙ୍ଗୀ ଭଙ୍ଗିବଶେ ଜାଣିଛି ଅଙ୍ଗୀକାର ମୋରେ ହେବାର ।
ଲଜ୍ଜା-ଆଶ୍ରଯୁତା ଭାବ ପ୍ରଚୁର ।
ଚନ୍ଦ୍ର ଘନ ଆଚ୍ଛାଦନେ ମୋଦ ଜାତେ କୁମୁଦେ କି ଅଗୋଚର ରେ । ସୁନ୍ଦରି !
ହାବ ଜାତେ ଟୁଟି ଟୁଟି ଗୁହାଁବା । ପୁଣି ସ୍ତନ ପରେ ଦୃଷ୍ଟି ଥୋଇବା ।
ଖେଳ ଖଞ୍ଜରୀଟ ପଙ୍କଜକଢ଼ିରେ ବସିବା ଇଚ୍ଛୁଇ ଅବା ରେ ॥ ୯

---

୭—ଇନ୍ଦ୍ରଶିରୀ (ଇନ୍ଦ୍ର ସମ୍ପତ୍ତିକୁ) ବଳି ଭୋଗ (ସୁଖ) ବାଞ୍ଛାପର ମୁଁ "ତୋହର ପ୍ରୀତିର ଭାଜନ (ପାତ୍ର) ହେବକି ନାହିଁ" ଏ କଥାକୁ ଭଜନ କରେ । ରାବଣ ଯେପରି ନିଜମୁଣ୍ଡ ଛିଣ୍ଡାଇ କପାଳ ଲେଖା ବର୍ଣ୍ଣମାନଙ୍କୁ ପଢ଼ି ସେ ମୁଣ୍ଡ ଅଗ୍ନିରେ ଜଳାଇ ଘୋର ତପସ୍ୟା କରିଥିଲା, ସେହିପରି ମୋ କପାଳରେ ତୋ ପ୍ରୀତି ଭାଜନ ହେବାର ଲେଖା ନ ଥିଲେ ସେହିପରି ତପସ୍ୟା କରିବାକୁ ମୋ ମନ ହେଉଛି, ଭରସା (ଆଶା) କ୍ଷଣପ୍ରଭା (ବିଜୁଳି) ପରି କ୍ଷଣେ ୨ ପୁନଃ ୨ ଦିଶି (ଦେଖା ଦେଇ) ପୁଣି ଲୀନ ହେଉଛି । ଅତଏବ ମୁଁ ବସୁରେ ଯେ ଶେଷରେ (ସହସ୍ର ମୁଖ ଅନନ୍ତଙ୍କ ଦ୍ୱାରା) ଅଶେଷ (ଅଗଣନୀୟ) ହେବା ଭଳି ତପସ୍ୟା କରୁଛି କି ?

୮—ବିଶ୍ୱକର୍ମା (ଦେବଶିଳ୍ପୀ) ବାଣ (ସହସ୍ର ବାହୁ ବାଣାସୁର) ଠାରୁ କର ଦେବରାଣ (ସହସ୍ର ନେତ୍ର ଇନ୍ଦ୍ର) ଙ୍କ ଠାରୁ ଈକ୍ଷଣ (ଚକ୍ଷୁ) ସୁରନଗରୀ (ସ୍ୱର୍ଗ)ରୁ ବର (ଶ୍ରେଷ୍ଠ) ନାଗରୀ (ଦିବ୍ୟାଙ୍ଗନା) ଓ ନାଗରୁ (ସିଂହ) ଠାରୁ ସୁମଧ୍ୟମା (ଉତ୍ତମ ମଧ୍ୟଦେଶ) ଋଣ କରି ଜାତରୂପ ପ୍ରତିମା (ସୁବର୍ଣ୍ଣ ପ୍ରତିମା) ନିର୍ମାଣ କଲା । ସେ ଜୀବପାଇବାରୁ ଦିବ୍ୟବନିତାରୂପେ ଅବନୀ ଜନିତା (ପୃଥିବୀରେ ଅବତୀର୍ଣ୍ଣ ।) ହୋଇଲୁ । ମୋହର ଭାଗ୍ୟ ସଂସାରରେ ପ୍ରଶଂସାଯୋଗ୍ୟ ଯେଣୁ ତୁ ମୋର ଅନୁଗ୍ରହକର୍ତ୍ତ୍ରୀ ଅଟୁ ।

୯—ଶିରୀଷ ଅଙ୍ଗୀର ଭଙ୍ଗିରୁ ମୋଠାରେ ଅଙ୍ଗୀକାର ହେବାର ଜାଣିଛି, ଲଜ୍ଜା ଆଶ୍ରଯୁତା ଭାବ (ଲଜ୍ଜାମିଶ୍ରିତ ସ୍ନେହ) ମଧ୍ୟ ପ୍ରଚୁର କରିଅଛି । ଚନ୍ଦ୍ର ଘନ

ଅଧରେ ହାସ ପ୍ରକାଶ ଅନୁରାଗ-ନଦୀରୁ ହରଷ ଲହରୀ ।
ବଳେ ସେକାଳେ ବାହାର ବାହର ।
ମୋର ବିବେକ ପ୍ଲବନ କରି ଯାଇଁ କୂଳରେ ଲାଗି ନ ପାରି ରେ । ସୁନ୍ଦରି ।
ଏଣୁ ଦାରିଦ୍ର୍ୟଦଶା ନାଶେ ଛବି । ତୋର ମାନସ ହୋଇଥିଲା ପରି ।
ପଦ୍ମରାଗପାତ୍ର ଗୋଟିକେ ଭରି ଯା ବାନ୍ଧି ଦେଲୁ କୋଟିହୀରା ରେ ॥ ୧୦

ରସିକା ନାସିକା ଫୁଲଇ ଯେ ସ୍ଫୁଟିକାଳେ ତିଳଫୁଲ ପରାୟେ ।
ସତେ ତାର ପ୍ରକୃତ ନାମଯାଏ ।
ଠେକି ଦେଲୁ ମୋତେ ମୁକୁତା ସଙ୍ଗତେ ହେଲାକୁ ସିନା ସଦାୟେ ରେ । ସୁନ୍ଦରି ।
ସେକାଳେ ସେ ଶୋଭା ମୋତେ କେମନ୍ତ । ଯଥା ଭାର୍ଗବ ଊର୍ଦ୍ଧ୍ୱକୁ ଚଳିତ ।
ନବସଙ୍ଗମେ ନିଶାମଣି କୋଳରୁ ରୋହିଣୀ ଉଠିଲା ମତ ସେ ॥ ୧୧

---

( ମେଘ ) ଦ୍ୱାରା ଆଚ୍ଛାଦିତ ହେଲେ ମଧ୍ୟ କୁମୁଦକୁ ମୋଦ ( ଆନନ୍ଦ ) ଜନ୍ମାଇବାରେ ଅଗୋଚର ହୁଏ କି ? ହାବ ( ସ୍ତ୍ରୀମାନଙ୍କର ଭଙ୍ଗିଦ୍ୱାରା ସମ୍ଭୋଗ ଇଚ୍ଛା ପ୍ରକାଶ କରିବା ) ଜାତ ହେବାରୁ ଝଟ ଝଟ କରି ଗୁହାଁରିବା ପୁଣି ସ୍ତନର ପରେ ଦୃଷ୍ଟି ରଖିବା ଦ୍ୱାରା ଖଞ୍ଜରୀଟ ( ପକ୍ଷୀ ) ଖେଳି ପଙ୍କଜ କଳୀରେ ବସିବାକୁ ଇଚ୍ଛା କଲାପରି ଶୋଭା ପାଇଲା ।

୧୦—ସେ କାଳେ ( ସାକ୍ଷାତ ସମୟରେ) ମନ୍ଦହାସ ଅଧରରେ ପ୍ରକାଶିତ ହେବାରୁ ଅନୁରାଗ ( ସ୍ନେହ ) ନଦୀରୁ ହର୍ଷଲହରୀ ବଳେ ବାହାର ବାହରିଲା ପରାଏ ଦିଶିଲା, ସେ ଲହରୀରେ ମୋର ବିବେକ ପ୍ଲବନ କରି (ପହଁରି) ଯାଇ କୂଳରେ ଲାଗି ନ ପାରିଲା, ଅର୍ଥାତ୍ ବିବେକ ବୁଡ଼ିଗଲା, ଏଣୁ ମୋର ଦାରିଦ୍ର୍ୟ ଦଶା ନାଶରେ ତୋର ମାନସ ଛବି ହୋଇଥିଲା ପରି, ଅତଏବ ପଦ୍ମରାଗପତ୍ର ସଦୃଶ ରଙ୍ଗଅଧର ଗୋଟିକରେ କୋଟିହୀରାସ ଦୃଶ ହାସ କାଳର ଦନ୍ତ ଝଲକ ଭରି ବାନ୍ଧି ଦେଲୁ ଅର୍ଥାତ୍ ଦିଶିବା ଭଳି ହସିଲୁ ।

୧୧—ରେ ରସିକା । ତୁ ସଦାୟ ହେବାରୁ ସିନା ସ୍ଫୁଟିକାଳେ ( ଫୁଟିଲାବେଳେ ) ତିଳଫୁଲ ପରି ନାସିକା ଫୁଲଇ ତାର ( ନାସିକାର ) ପ୍ରକୃତ ନାମ ନାକ (ସ୍ୱର୍ଗ) ଦାଏ ମୋତେ ନାସା ମୁକୁତା ସଙ୍ଗତେ ଠେକି ଦେଲୁ । ସେ କାଳେ ସେ ଶୋଭା କେମନ୍ତ ଦିଶିଲା—ଯଥା ଭାର୍ଗବ ( ଶୁକ୍ର ) ଊର୍ଦ୍ଧ୍ୱକୁ ଚଳିତ ହେଲା କିମ୍ବା ନବ ସଙ୍ଗମ କାଳରେ ନିଶାମଣି ( ଚନ୍ଦ୍ର ) ର କୋଳରୁ ରୋହିଣୀ ଉଠିଲା ।

କମ୍ପିଥିଲା ପରି ଝଲକାଝଲକ ତାରକାବଳୀ ଝଲ ଦଳ ।
ମୁଁ ଘେନିଲି ମୋ କୃପା କୁହେ ଛଳ ।
ପକାଇଲି ନେତ୍ର ତୋ ପାଦପଦ୍ମକୁ ଧରି ନ ଛାଡ଼ିବି ବୋଲି ରେ । ସୁନ୍ଦରୀ ।
ଗୁଳୁଥିଲୁ ପ୍ରପଦକୁ କି ମଣି । ତହିଁ ସଂଶୟ ଉଦୟ ସେକ୍ଷଣି ।
ଏହା ଉପମା କି କରିବ ଏ ଶରେ ମାରିବ ଏ କଥା ଗୁଣିରେ । ୧୨
ମୁଁ ଭ୍ରମ ଯେମନ୍ତ କାମ ବି ତେମନ୍ତ ମଉକାଶିମାରେ ଶରଣ ।
ହେଲା ହଂସକୁ ପ୍ରହାରୁଛୁ ବାଣ ।
ବାଳା ବଳାନାଦେ ପଳାଅ ବୋଇଲେ ଛାଡ଼ିବ ସିନା ତା ଠାଣରେ । ସୁନ୍ଦରି ।
ତୋତେ ରଖିଲି ଲେଖି ଦେବୁ ମାତ୍ର । ଯେବେ ମୁହିଁ ତୋ ଅନୁଗ୍ରହପାତ୍ର ।
ଭେଟଯାଏ ସର୍ବବିଘ୍ନକୁ ଖଣ୍ଡ ବି କରି ପଞ୍ଚାକ୍ଷରୀମନ୍ତ୍ର ରେ ॥ ୧୩
ମାଗ ହେମାଙ୍ଗୀ ଅଧରୁ ସୁଧାଦେଇ ତା ବନ୍ଧୁ କରି ଦେବା ତୋତେ ।
ବୋଧୁ ଜୀବକୁ ନ କରଇ ପ୍ରତେ ।
ଛିଣ୍ଡି ଯିବ ଜୀବଡେଶ-ଭବନକୁ ଜୀବକା କରୁଛୁ ଏତେ ରେ । ସୁନ୍ଦରି ।
ଅନୁତ୍ତମ ତମ ସୁଧା ପିଇଛୁ । ରାମେ ସୁଗ୍ରୀବହିଁ ମିତ୍ର ହୋଇଛୁ ।
କି ଅଦୃଷ୍ଟରେ ଏ ବିବେକ ଉପୁଜ କଷ୍ଟ କଷ୍ଟରେ ରହୁଛୁ ରେ ॥ ୧୪

---

୧୨—ଝଲକାଝଲକ ( କର୍ଣ୍ଣଭୂଷଣ ବିଶେଷର କାନ୍ତି ) ତାରକାବଳୀ ( ତାରାସମୂହ ଝଲ ( କାନ୍ତି ) କୁ ଦଳି କମ୍ପିଥିଲା ପରି । ମୁଁ ମନେ କଲି ଝଲକା କମ୍ପିବା ଦ୍ୱାରା ମୋତେ କୃପା କରିବାକୁ ଛଳନା କରୁଛୁ କି ? ତହୁଁ ମୁଁ ତୋ ପାଦ ପଦ୍ମକୁ ଧରି ନ ଛାଡ଼ିବି ବୋଲି ପାଦରେ ନେତ୍ର ପକାଇଲି । ତୁ କି ମନେ କରି ପ୍ରପଦ ( ଅଙ୍ଗୁଳି ) ଗୁଳୁଥିଲୁ କେ ଜାଣି ତହିଁରେ ମୋର ସେହିକ୍ଷଣି ସଂଶୟ ଉଦୟ ହେଲା. ମୁଁ ଏହିକଥା ମନରେ ଗୁଣିଲି ତୁ ଏହି ବିଗୁରରେ ଅଙ୍ଗୁଳି ଗୁଳୁଥିଲୁ—ପୁରୁଷ ଏହାର ( ଅଙ୍ଗୁଳିର ) ଉପମା (ଅଶୋକସହିତ ତୁଳନା ) କରିବ ନା ଏ ଶରେ ( ଅଶୋକଶରେ ) କାମ ତାକୁ ମାରିବ ।

୧୩—ମୁଁ ଯେପରି ଭ୍ରମ ହୋଇଛୁ କାମ କି ସେହିପରି ମଉ କାଶିମାରେ ( ସୁନ୍ଦରୀ-ଠାରେ ) ଶରଣ ପଶିବାରୁ ହଂସାରେ ବାଣ ପ୍ରହାରୁଛୁ ? ରେ ବାଳା ! ତୁ ମୋ ସଙ୍ଗେ ମିଳିତ ହୋଇ ବଳାନାଦେ ପଳାଅ ବୋଇଲେ ତା ଠାଣ ସିନା ଛାଡ଼ି ଯିବ । ରେ ସୁନ୍ଦରି ! ଯେବେ ମୁଁ ତୋହର ଅନୁଗ୍ରହ ପାତ୍ର ତେବେ "ତୋତେ ରଖିଲି" ଏହି ପଞ୍ଚାକ୍ଷରୀ ମନ୍ତ୍ର ମାତ୍ର ଲେଖି ଦେବୁ, ମୁଁ ସେହି ମନ୍ତ୍ରକୁ ଭେଟ ହେବାଯାଏ ଜପକରି ସମସ୍ତ ବିଘ୍ନ ଖଣ୍ଡନ କରିବି ।

୧୪—ହେମାରଙ୍ଗୀ ସୁନ୍ଦରୀର ଅଧରରୁ ସୁଧା ( ଅମୃତ ) ମାଗି ତୋତେ ଦେଇ ତାହାର ବନ୍ଧୁ କରିଦେବି—ଏହିପରି ମୁଁ ମୋର ଜୀବନକୁ ବୋଧ ଦେଲେ

ଗଲେ କୋମଳାଙ୍ଗୀ ଲଗି ଜୀବ ସିନା ତେବେ ନୋହିବ କି ସୁଗତି ।
ହେଲେ ପବିତ୍ର ନେତ୍ର ବାଣୀ ଶ୍ରୁତି ।
ଶୋଭା ଦେଖି କଥା ଶୁଣି ବ୍ୟର୍ଥ ଦେହ କ୍ଷିତିଗୁଣେ ହେଲେ ଖ୍ୟାତରେ । ସୁନ୍ଦରୀ ।
ତୋର ଲୀଳା-ସରଣିରେ ମିଶିବ । ଯେବେ ତେବେ ତାର ଭାଗ୍ୟ ଦିଶିବ ।
ଶଶୀଅଶାସ୍ତ୍ରୀ ଶଶର ବିପରୀତ ହୋଇତ ଭୋଗ ପାଇବ ରେ ॥ ୧୫
ଜନମାନ୍ତର କଥା ବୋଲି ମାତର କାତର ହୋଇ ନିରନ୍ତର ।
ତାହା ଘଟୁ କରେ ଆନ ବିଗୁର ।
ଚତୁର୍ବର୍ଗସ୍ଥଳୀ ସ୍ତ୍ରୀଧର୍ମରେ ଫଳି ଅର୍ଥକୁଶଳା ତୋ ଗିରରେ । ସୁନ୍ଦରୀ ।
କାମ କଟାକ୍ଷରେ ହୋଇ ଉତ୍ପତ୍ତି । ମୋକ୍ଷ ନୀବିରେ ଦକ୍ଷ ହୋଇଛନ୍ତି ।
ଏସନ ପ୍ରେମ-କଳ୍ପଲତା ପ୍ରସନ୍ନ ନୋହିବ କିପାଁ ଫଳିତ ରେ ॥ ୧୬

---

ମଧ୍ୟ ସେ ପ୍ରତେ ( ବିଶ୍ୱାସ ) କରୁ ନାହିଁ । କେବଳ "ଜୀବିତେଶ ( ଯମ ) ଭବନକୁ ଯିବି" ୨ ଏତିକି ଭାବନା କରୁଛି । ରେ ସୁନ୍ଦର । ଅନୁତ୍ତମ (ଅଧମ) ତମ ( ରାହୁ ) ସୁଧା ପିଇଛି, ରାମଙ୍କର ସୁଗ୍ରୀବ ମର୍କଟ ହୋଇ ସୁଦ୍ଧା ମିତ୍ର ହୋଇଛି, କି ମନ୍ଦ ଅଦୃଷ୍ଟରୁ ଏପରି ବିବେକ ଉପୁଜି ( ଅବିଶ୍ୱାସ ଜନ୍ମି-ବାରୁ ) ଫିଷ୍ଟ କଷ୍ଟରେ ଜୀବ ରହିଛି ।

୧୫—କୋମଳାଙ୍ଗୀ ଲଗି ସିନା ଜୀବ ଯିବ, ତେବେ ସୁଗତି (ମୋକ୍ଷ) ନୋହିବ କି ହେବ, କାରଣ ଶୋଭା ଦେଖି ନେତ୍ର କଥା ବାଣୀ ଶୁଣି ଶ୍ରୁତି (କର୍ଣ୍ଣ) ଏମାନେ ପବିତ୍ର ହେଲେ କେବଳ କ୍ଷିତିଗୁଣେ ( ପୃଥ୍ୱୀ ଗୁଣରେ ) ଖ୍ୟାତ ( ପ୍ରସିଦ୍ଧ ) ଦେହ ତୋ ଅଙ୍ଗସଙ୍ଗ ଅଭାବରୁ ବ୍ୟର୍ଥହେଲା, କିନ୍ତୁ ପୁଣି ସେ କ୍ଷିତି ଗୁଣରେ ଖ୍ୟାତି ଲଭିବ—ମୃତ୍ୟୁପରେ ଯେବେ ଦେହର ପୃଥ୍ୱୀଅଂଶ ତୋ ଲୀଳା ସରଣିରେ ( କ୍ରୀଡ଼ା ପଥରେ ) ମିଶିବ ତେବେ ତାହାର ଭାଗ୍ୟ ଦିଶିବ । ଯେପରି ଶଶୀ, ଅଶାସ୍ତ୍ରୀ ଶଶର ବିପରୀତ ଭୋଗ ହେଲା; ଅର୍ଥାତ୍ ଜଳ ସ୍ନାନରେ ଧାଇଁ ମୃତ୍ୟୁ ଲଭି କଳଙ୍କ ରୂପେ ଚନ୍ଦ୍ରସଙ୍ଗ ଲଭିଲା ସେହି ତୋ ଲୀଳା ପଥରେ ମିଶି ମୋ ଦେହ ତୋ ଅଙ୍ଗ ସଙ୍ଗ ପାଇବ ।

୧୬—ଏ ଜନ୍ମାନ୍ତର କଥା ( ମୃତ୍ୟୁପରେ ଘଟିବ ) ଏହି ହେତୁରୁ ନିରନ୍ତର କାତର ହୋଇ ସେ ଅଶାଘୁଡ଼ି ଆନ୍ ବିଗୁର କରୁଛି । ତୁ ଚତୁର୍ବର୍ଗସ୍ଥଳୀ ( ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗର ସ୍ଥାନ ) ଯଥା—ତୁ ସ୍ତ୍ରୀ ଧର୍ମରେ ଫଳିଛୁ ( ଧର୍ମ୍ମର ସ୍ଥାନ ) ତୋ ଗିର ( ବାଣୀ ) ଅର୍ଥ କୁଶଳା ( ନାନା ପ୍ରକାର ଗୂଢ଼ରସ ଅର୍ଥଯୁକ୍ତା ଅର୍ଥସ୍ଥାନ ) ତୋ କଟାକ୍ଷରେ ( ଗୃହିଁଣୀରେ କାମ ଉତ୍ପତ୍ତି ହୁଅଇ ( କାମ ସ୍ଥାନ ) ମୋକ୍ଷଣି (ମୋକ୍ଷଣ ଓ ମୁକ୍ତି ) ତୋ ନୀବିରେ ( କଟିତନାପର ବସ୍ତ୍ରଗ୍ରନ୍ଥିରେ ) ଦକ୍ଷହୋଇଛି, ( ଏଣୁ ତୁ ମୋକ୍ଷ ସ୍ଥାନ ) ଏସନ ପ୍ରେମ କଳ୍ପଲତା କିପାଁ ଫଳିତ ନୋହିବ ?

କରେ ବେଦନା ନିବେଦନା ମରୁତେ ତା ସୁତ ଯେଣୁ ରାମଦୂତ ।
ହୋଇ ଆସି ଦେଲା ସୀତା ଉଦନ୍ତ ।
ଶୀତଳ ହେଲେ ବିଷମ ବିଷସଙ୍ଗଗୁଣକୁ କଲା ସେ ଜାତରେ । ସୁନ୍ଦର !
ପରେ କି ଅଭିମାନ ମନ ଯହିଁ । ସୁଖ ଭୁଞ୍ଜୁଛି ମୋତେ ନ ଚେତାଇ ।
ନିଚେଷ୍ଟା କରି ପ୍ରଚେଷ୍ଟା ପର ଯାଇ ସୁଲୋଚନା ପାଶେ ରହି ରେ ॥ ୧୭
ଅନେକରୂପେ ଆଶା-ତରୁ ଜନମ ହେଲା ଆରାମ ହୃଦପୁରେ ।
କେହି ସଫଳ ହେବ ଏ ବିଚାରରେ ।
ଦଇବ ବଳ ବିରହାନଳ ମେଳ ନ ପୁଣି ବିନାଶ କରେ ରେ । ସୁନ୍ଦର ।
ଯେବେ ନିକଟରେ ହେବ ମିଥୁନ । ପୟୋଧର ଜାତ-ନୀର ପତନ ।
ଉର୍ଦ୍ଧ୍ୱରୁ ହୋଇବ ସେହି ପଲ୍ଲବିବ ଏହି ଲିଭି ଯିବ ଘେନରେ । ୧୮
ଅଭିମାନ କାହିଁ ଯା ସମାନ ହୋଇ ନାହିଁ ତା ଗୁଣ୍ଡୁଚୁ ବଚନ ।
ତାକୁ କି ବୋଲି କରିବି ବନ୍ଦନ ।
ସ୍ତବକ ସ୍ତନାର ଯାବକ ଲେଖିବା ସେବକ ହେବା ମୋ ନାମରେ ସୁନ୍ଦର । ।
ଏତେକେ ମୁଁ ସର୍ବ ସୁଖ ପାଇବି । ଆନ ଶବେ ଅବା ଯୋଗ୍ୟ ହୋଇବି ।
ଅଧୁର ଉରକୁ ପଲଙ୍କ, ଉରୁକୁ ଭଦ୍ରାସନ କରି ଦେବି ରେ ॥ ୧୯

---

୧୭—ମୁଁ ମରୁତେ (ବାୟୁଠାରେ) ବେଦନା (ଦୁଃଖ) ନିବେଦନ କରୁଛି (ଜଣାଉଛି) ଯେଣୁ ତା ସୁତ (ବାୟୁ ପୁତ୍ର ହନୁମାନ) ରାମ ଦୂତ ହୋଇ ସୀତା ଉଦନ୍ତ (ବାର୍ତ୍ତା) ଆସି ଦେଲା । ସେ ବାୟୁ ଶୀତଳ ହେଲେ ମଧ୍ୟ ବିଷମ ବିଷସଙ୍ଗ ଗୁଣକୁ ଜାତ କଲା, ଅର୍ଥାତ୍ ସର୍ପମାନେ ବାୟୁ ଭକ୍ଷଣ କରୁ ଥିବାରୁ ବାୟୁ ବିଷ ସଙ୍ଗରେ ରହି ସେ ଗୁଣକୁ ଜାତ କଲା, ପ୍ରାଣ ନାଶକ ହେଲା । ପରଠାରେ ବା କି ଅଭିମାନ କରିବି, ଯହିଁ ମୋ ମନ ମୋତେ ନ ଚେତାଇ ନିଶ୍ଚେଷ୍ଟାକରି ପକାଇ ଦେଇ ପ୍ରଚେଷ୍ଟ ପର (ସବଳ ଲୋକପର) ଯାଇ ସୁଲୋଚନା ପାଶରେ ରହି ସୁଖ ଭୁଞ୍ଜୁଛି ।

୧୮—ଆରାମ (ଉପବନ) ରୂପୀ ହୃଦପୁ ପୁରରେ ଆଶାତରୁ (ଆଶା ରୂପ ବୃକ୍ଷ) ଅନେକ ରୂପେ ଜନ୍ମହେଲା । ସେ ଆଶା ବୃକ୍ଷ କେହି (କିପରି) ସଫଳ (ଫଳଯୁକ୍ତ) ହେବ ଏହା ମୁଁ ବିଚାର କରେ । ଅଥବା ଦୈବ ବଳରୁ ବିରହାନଳ (ବିରହାଗ୍ନି) ବିନାଶ ନ କରେଟି ? ଯେବେ ନିକଟରେ ମିଥୁନ (ଆଷାଢ଼ ମାସ ଓ ମିଳନ) ହେବ, ଏବଂ ପୟୋଧର ଧର ଜାତନୀର (ମେଘପାଣି, ଓ ବିପରୀତ ରତି ଯୋଗେ ସ୍ତନଜାତ ଝାଳ) ଉର୍ଦ୍ଧ୍ୱରୁପତନ ହୋଇବ, ତେବେ ସେ ଆଶା ବୃକ୍ଷ ପଲ୍ଲବିବ, ଏହି ଦାବାନଳ ସଦୃଶ ବିରହାନଳ ଲିଭିଯିବ ଏହା ଘେନ ।

୧୯—ତା ଗୁଣ୍ଡୁଚୁ ବଚନ (ତାହା ପ୍ରତି ଗୁଣ୍ଡୁ ବାକ୍ୟ) ସୁଦ୍ଧା ଯାହାର ସମାନ ହୋଇନାହିଁ ତା ଠାରେ ଅଭିମାନ କାହିଁ । ମୁଁ ତାକୁ କି ବୋଲି ବନ୍ଦନ

ପ୍ରମଦାରତନ କଟାକ୍ଷ ପତନ ଗୃହିଁ ଅଙ୍ଗ ଅବଧାରିବି ।
ସ୍ଥିର ଦିବସରେ ଅନୁସରିବି ।
ପାଶ ନ କଲେ ସ୍ମରପାଶବନ୍ଧନୁ ଜାଣିଥାଅ ନ ତରିବି ରେ । ସୁନ୍ଦରି !
ହଳାହଳ ଜ୍ୱାଳା ବଶେ ଈଶାନ । ଚନ୍ଦ୍ରକଳା କଲେ ଶିରେ ମଣ୍ଡନ ।
ମୋ ତାପ ନାଶକୁ ରମଣୀମଣି ତୁ ସେପରି କରିବୁ ଘେନ ରେ ॥ ୨୦
ଦାତାଗଣ ଗଣନାରେ ସାର ତୁହି ମୁହିଁ ତନ-ଦାନ ମାର୍ଗଣ ।
ଦେଖ ବଳି ତୋ ଉଦରେ ଶରଣ ।
ଏଣିକି ଏଣୀଈକ୍ଷଣୀର ମହତ୍ତ୍ୱ ମାଗିବା ଯାଏ ମୋ ଜାଣରେ । ସୁନ୍ଦରି !
ଭୃତ୍ୟ ଜଣାଇବା କଥା ଉଚିତ । ଯେହୁ ପ୍ରଭୁ ତାର ସବୁ ଆୟତ୍ତ ।
ଘେନ ସୁଭଗତି ମୋର ଶୁଭଗତି ଇଭଗତି ତୁହି ସତ ରେ ॥ ୨୧

---

କରିବି । ସେହି ସ୍ତବକସ୍ତନା ( ପୁଷ୍ପ ଗୁଚ୍ଛ ସଦୃଶ ସ୍ତନା ) ର ଯାବକ ( ଅଳତା ) ଲେଖିବାରେ ସେବକ ( ଦାସ ) ହେବାକୁ ମୋହର ମନ ହେଉଛି । ଏତେବେଳେ ମୁଁ ସର୍ବସୁଖ ପାଇବି, ତେଣିକି ଅବା ଆନ ଚନ୍ଦେ ( ସ୍ତନ ଚନ୍ଦାଦରେ ) ଯୋଗ୍ୟ ହୋଇ ପାରିବି, ଅଧରର ମଧୁ ମୋ ଉରକୁ ବକ୍ଷସ୍ଥଳକୁ ପଲଙ୍କ, ଊରୁକୁ ( ଜଙ୍ଘାକୁ ) ଭଦ୍ରାସନ ( ସିଂହାସନ ) କରି ଦେବି ।

୨୦—ପ୍ରମଦାରତନ ( ନାରୀ ରତ୍ନର ) କଟାକ୍ଷ ପତନକୁ ଗୃହିଁ ଅଙ୍ଗ ଅବଧାରିବି ( ସ୍ଥିରକରିବି ), ସ୍ୱତଦିନ ଅନୁସରିଥିବି । ରେ ସୁନ୍ଦରି ! ତୁ ମୋତେ ପାଶନ କଲେ ( ପାଖକୁ ନ ନେଲେ ) ସ୍ମରପାଶ ବନ୍ଧନୁ ତରି ପାରିବି ନାହିଁ ଏହା ଜାଣି ଥାଅ । ଈଶାନ ( ଶିବ ) ହଳାହଳ ( ବିଷ ) ଜ୍ୱାଳା ବଶେ ଚନ୍ଦ୍ରକଳା ( ଚନ୍ଦ୍ରର ଷୋଡ଼ଶାଂଶରୁ ଏକାଂଶ ) ଶିରେ ମଣ୍ଡନ କଲେ, ରେ ରମଣୀମଣି ମୋତାପ ନାଶପାଇଁ ସେହିପରି କରିବୁ ତୁ ଏହା ଘେନ ।

୨୧—ଦାତା ଗଣ ଗଣନାରେ ତୁହି ସାର ଅଛୁ ମୁଁ ତନୁ ( ଅଳ୍ପ ଓ ଦେହ ) ଦାନର ମାର୍ଗଣ ( ଯାଚକ ), ଦେଖ ମହାନଦୀ ବଳିରାଜା ବି ବଳିରୂପେ, ତୋ ଉଦରରେ ଶରଣ ପଶିଛୁ । ଏଣିକି ମୋ ମାଗିବା ଏଣୀଈକ୍ଷଣୀର ( ହରିଣୀ ଲୋଚନାର ) ମହତ୍ତ୍ୱ ଯାଏ ଏହାଜାଣ, ଅର୍ଥାତ୍ ଅଙ୍ଗ ମାଗିଲେ ସୁନ୍ଦରୀର ମହତ୍ତ୍ୱ ନଷ୍ଟହେବ । ରେ ସୁନ୍ଦରି ! ଭୃତ୍ୟର କଥା ଜଣାଇବା ଉଚିତ ଅଟେ ଯେହୁ ପ୍ରଭୁ ତାହାର ସବୁ ଆୟତ୍ତ ( ଅଧୀନ ) ରେ ଇଭଗତି ! ( ଗଜଗାମିନୀ ! ) ମୋ ସୁ-ଭଗତି ( ଉତ୍ତମଭକ୍ତିକୁ ) ଘେନ ତୁହି ଶୁଭଗତି ( ଶୁଭଫଳ ଦାୟିନୀ ) ଏହା ସତ୍ୟ ଅଟେ ।

ବିକାଟକାଶହାସି ହାସ ରହସ ଅବକାଶ ବେଳେ ଶଠାଇ ।
ଧାତା କୃପାରୁ କରେ ତୋ ପକାଇ ।
କିସ ବିଗୃତେର ପଢ଼ିବା ଉପଗୃରେ ମାନସ ପ୍ରଗୃର ହେଉ ରେ । ସୁନ୍ଦରି !
ଦୟାନିଧି ଗୁଚ୍ଛସ୍ତନା ରମ୍ଭୋରୁ । ସବୁ ଜଣା ଯିବ ଏଥି ଉତ୍ତରୁ ।
ଆତଙ୍କ ନାହିଁ ପତଙ୍ଗ ପ୍ରାୟେ ହୋଇ ଅଗ୍ନିକି ଡେଇଁ ପ୍ରୀତିରୁ ରେ ॥ ୨୨
ପତ୍ରି ପଢ଼ିକି ନରଶ୍ବର ପୁତ୍ରିକା ନେନେ ଆନନ୍ଦ-ଅଶ୍ରୁ ଧରି ।
ହୃଦେ ପରମ—ସ୍ନେହ ଥିଲା ପୂରି ।
ସଲୀଳ ହୋଇ ସଲିଳେ ଉଚ୍ଛୁଳିଲା କାଳେ ଗଙ୍ଗାଜଳ ପରି ସେ ସୁନ୍ଦରୀ ।
ଗଦଗଦ ହୋଇ ପଦ ନ ସ୍ଫୁରେ । ଘନରସ ଉଦୟ ସମୟରେ ।
କଳକଣ୍ଠ କଣ୍ଠବିରୋଧ କି କାନ୍ତ ବସନ୍ତ ହେବା ସ୍ମରେ ସେ ॥ ୨୩
ଦିବସ ବଧୂ ସାଧୁ ଯଥା କାରଣେ ହୋଏ ନିଶାମୁଖ ପ୍ରବେଶେ ।
ତଥା ପୀରତି ଉନ୍ମୁଖ ଆବେଶେ ।
ଗତ ହୋଇଥିଲା ହାସହିଁ ଆଗତ ଜଗତ ମୋହନୀ ଆସ୍ୟେ ସେ । ସୁନ୍ଦରୀ ।
ରାମ ମଧୁରମୂର୍ତ୍ତି ଧ୍ୟାୟି ଚିତ୍ତ । ଉପଇନ୍ଦ୍ର ଭଞ୍ଜ ଅତି ତୃପତ ।
ରସିକ କୋବିଦ ଶ୍ରୁତି ମୁଖ ସ୍ୱାଦ ମଧୁର ଛାନ୍ଦ ଏ କୃତ ହେ । ସୁଜନେ । ୨୪

---

୨୨—ରେ ବିକାଶକାଶ ହାସି । (ବିକାଶିତ ତଣ୍ଡି ଫୁଲ ପରି ହାସ ଯାହାର)ଧାତା କୃପାରୁ ହାସ ରହସ ଅବକାଶ ବେଳେ ( ହସ ଖେଳ ସମୟରେ ) ତୋ କରେ ଶଠାଇ ପକାଇ । ଏ କିସ ଏହି ବିଗୃର କରି ପଢ଼ିବା ଉପଗୃରରେ ମାନସ ପ୍ରଗୃର ହେଉ, ରେ ସୁନ୍ଦରି ! ଦୟାନିଧି ! ଗୁଚ୍ଛସ୍ତନା । ରମ୍ଭୋରୁ ! ଏଥିଉତ୍ତରୁ (ପତ୍ରପାଠ ଉତ୍ତରୁ) ସବୁଜଣା ଯିବ । ପ୍ରୀତି ବଶରୁ ମୁଁ ପତଙ୍ଗ ପ୍ରାୟହୋଇ ଅଗ୍ନିକୁ ଡେଇଁଛି ସେଥିରେ ମୋରଆତଙ୍କ ( ଭୟ ) ନାହିଁ ।

୨୩—ନରେଶ୍ବର ପୁତ୍ରିକା ( ରାଜପୁତ୍ରୀ ) ପତ୍ର ପାଠ କରି ନେନେ ଆନନ୍ଦାଶ୍ରୁ ଧଇଲେ, ତତ୍‌ପୂର୍ବରୁ ହୃଦୟରେ ପରମ ସ୍ନେହ ପୂରିଥିଲା । ସେହି ସ୍ନେହ ସେକାଳେ ସଲିଳ (ଜଳ) ହୋଇ ସଲୀଳେ ( ଧୀରେ ଧୀରେ ) ଗଙ୍ଗା ଜଳପରି ଉଚ୍ଛୁଳିଲା । ଘନରସ ( ଶୃଙ୍ଗାରରସ ଓ ମେଘ ) ଉଦୟ ସମୟରେ ଗଦ୍‌ଗଦ ହୋଇ ପଦସ୍ଫୁରେ ନା, କଳକଣ୍ଠ (କୋକିଳ ) କଣ୍ଠରୋଧ ହେବାରେ କାନ୍ତ ବସନ୍ତ ହେବାକୁ ସ୍ମରଣ କରେ କି ?

୨୪—ଦିବସ ଶେଷ ବଧୂ (ଚନ୍ଦ୍ର) କାରଣେ ସାଧୁ ( ସୁନ୍ଦର ) ନିଶା ମୁଖ ( ସନ୍ଧ୍ୟା ) ଯଥା ପ୍ରବେଶ ହୁଏ, ତଥା ପ୍ରୀତିର ଉନ୍ମୁଖ ( ଆରମ୍ଭ ) ପ୍ରବେଶ ହେଲା । ଜଗତ ମୋହନୀର ଆସ୍ୟେ ( ମୁଖରେ ) ହାସ ଗତହୋଇ ଥିଲା । ପ୍ରୀତି ଆରମ୍ଭରୁ ପୁଣି ହାସ ଆଗତ ହେଲା । ଉପେନ୍ଦ୍ରଭଞ୍ଜ ରାମ ମଧୁର ମୂର୍ତ୍ତି ଧ୍ୟାୟି ଅତିଶୟ ତୃପ୍ତହୋଇ ରସିକ କୋବିଦ ( ପଣ୍ଡିତ ) ମାନଙ୍କର ଶ୍ରୁତି ( କର୍ଣ୍ଣ ) ରୂପମୁଖର ସ୍ୱାଦ ଏ ମଧୁର ଛାନ୍ଦକୁ କଲେ ।

# ତ୍ରୟୋତ୍ରିଂଶ ଛାନ୍ଦ

ରାଗ—କଲ୍ୟାଣ ଅହାରୀ



ଦମ୍ବିନୀ କାଦମ୍ବିନୀ-ଜିତ-କେଶୀ ପୁରତେ ଏକାଳେ ପ୍ରବେଶ ।
ଦେଖିଲା ଶତପତ୍ର-ପତ୍ର-ନୟନା ପ୍ରେମପତ୍ର ଘେନି ଅବେଶ ।

ସେ ଗତ । ଅଗତ ତୁଳିକ କାଗଜ ।
ମଞ୍ଜିଷ୍ଠାରସ ସହିତ ସ୍ଥାଳୀ ଆଣି ବାଲୀ ଅଗରେ କଲା ସ୍ଥିତ ॥ ୧
କହିଲା ଦକ୍ଷିଣ ପବନ ବହିଲା ହିମରଜ କରି କ୍ଷେପଣ ।
ଏ ଉତ୍ତାରୁ ଘନରସଯୁକ୍ତ ହୋଇ ନ ବହିବ କି ସମୀରଣ ।
ଶ୍ରବଣେ । ହୃଦୟ ପଦ୍ମ ବିକଶିଲା ।
ପଦ୍ମିନୀ ଯାମିନୀରୂପ ତ୍ରପା ତୁଟି କୃପା-ପ୍ରଭାତ ପ୍ରକାଶିଲା ॥ ୨

---

୧—ଏ କାଳେ କାଦମ୍ବିନୀ ନାମ୍ନୀ ସଖୀ କାଦମ୍ବିନୀ ( ମେଘ )କୁ ଜିଣିଛି କେଶ ଯାହାର ଏପରି ରାଜପୁତ୍ରୀର ପୁରତେ ( ଅଗ୍ରତେ ) ପ୍ରବେଶ ହୋଇ ଦେଖିଲା—ଶତପତ୍ର ପତ୍ରନୟନା ( ପଦ୍ମ ପତ୍ରପରି ଯାହାର ନେତ୍ର ) ସେ ସୁନ୍ଦରୀ ପ୍ରେମପତ୍ର ଘେନି ତହିଁରେ ଆବେଶ ( ମନଯୋଗ ) କରିଛି । ତହୁଁ ସେ ସଖୀ ଗତ ଆଗତ ( ଯିବା ଆସିବା ) କରି ତୁଳିକ (ଲେଖିବାର କଲମ ) କାଗଜ ଓ ମଞ୍ଜିଷ୍ଠାରସ ସହିତ ସ୍ଥାଳୀ ଆଣି ବାଲୀ ( ରାଜଜେମା ) ଆଗରେ ସ୍ଥିତ କଲା ।

୨—କହିଲା ( ଧ୍ୱନି ) ଗ୍ରୀଷ୍ମକାଳୀନ ଉତ୍ତପ୍ତ ଦକ୍ଷିଣ ପବନ ହିମରଜ ( କର୍ପୂର ଧୂଳି ) କ୍ଷେପଣ କରି ଶୀତଳରେ ହୋଇ ବହିଲା, ଏ ଉତ୍ତାରୁ ( ଗ୍ରୀଷ୍ମକାଳ-ଉତ୍ତାରୁ ) ବର୍ଷାକାଳରେ ଘନରସ ( ମେଘଜଳ ) ଯୁକ୍ତ ହୋଇ ସମୀରଣ ( ପବନ ) ବହିବ କି ? ଅନ୍ୟାର୍ଥ—ତୋତେ ବରହଣୀ କରିଥିବା କାନ୍ତ ଦକ୍ଷିଣ ( ଅନୁକୂଳ ) ହୋଇ ହିମରଜ ( କର୍ପୂରଧୂଳି ) କ୍ଷେପଣ କଲା । ସଦ୍ଗୁଣ ପ୍ରେମ ପତ୍ରିକା ପ୍ରେରଣ କଲା, ଏ ଉତ୍ତାରୁ ଘନରସ ( ନିବିଡ଼ରସ-ବଚନ ) ଯୁକ୍ତ ଉତ୍ତର ପତ୍ରିକା ନ ଯିବ କି ? ଏ କଥା ଶ୍ରବଣରେ ପଦ୍ମିନୀ ରାଜପୁତ୍ରୀର ଯାମିନୀ ( ରାତ୍ରି) ରୂପ ତ୍ରପା ( ଲଜ୍ଜା ) ତୁଟି କୃପାରୂପ ପ୍ରଭାତ ପ୍ରକାଶ ହେଲା, ହୃଦପଦ୍ମ ବିକଶିଲା ।

ଲେଖିଲା ଯାହା ପଦେ ପଦେ ସେ ଇନ୍ଦ୍ରପଦେ ସ୍ଥାପିବ କୁମାରକୁ ।
ସଜନୀ ବେନୀ ବର୍ଣ୍ଣ ଘେନ ବୋଇଲେ ମଧ୍ୟମଣି ହେବ ହାରକୁ ।
ଶୁଣି ତା । ଶଚୀକଳା ପାଶ ହୋଇଲା ।
ପାଇ ନାହିଁ କି ଗୋ ତରଳଭାବକୁ ତାହୁ ସିନା ହେବ ବୋଇଲା ॥ ୩
ଉପାୟ-ଉପାୟିକା ଉପାଧ୍ୟାୟୀ ଯେ ମୁଦ୍ର ମୁଦାଇ ହସ୍ତେ ଧରେ ।
ଗୁଟିବିଦ୍ୟା-ବିଦ୍ୟା ଅବଧୂତୀ ମିଳି ଧଇଲେ ତାର କର କରେ ।
ସେଠାରୁ । କଥା ପରସ୍ପରେ ଗମନେ ।
ପୁଷ୍ପପୁର ରାଜକୁମାର ବିହାର ଉପବନେ ସ୍ଥିତ ଜବନେ ॥ ୪
ଦେଖିଲେ ଆରାମ ଅତି ଅଭିରାମ ଯେ ଦେଖିବ ଏହି ପ୍ରତୀତି ।
ମନରୁ ଉତ୍ପନ୍ନ ରତିକାମ ମୂର୍ତ୍ତିମନ୍ତେ କି ବିଭା ହେଉଛନ୍ତି ।
କୋକିଳ । ଗାୟକ ଉଚ୍ଚେ ଗାଏ ଗୀତ ।
ଝିଙ୍କାରୀ ଝଙ୍କାର ଖଞ୍ଜରୀଟ ପ୍ରାନ୍ତହତ ସୁବାଦ୍ୟରେ ବାଦିତ ॥ ୫

---

୩—ରାଜଜେମା ପତ୍ରରେ ଯାହା ଲେଖିଲା ସେ ପଦେ୨ କୁମାରକୁ ଇନ୍ଦ୍ରପଦେ ସ୍ଥାପିବ, ସଜନୀ ବେନି ( ସଖୀଦ୍ୱୟ ) ବର୍ଣ୍ଣ ଘେନ ( ପତ୍ରଲିଖିତ ବର୍ଣ୍ଣମାନ ପଢ଼ି ) ବୋଇଲେ ଏ ପତ୍ର କୁମାରର ହାରକୁ ମଧ୍ୟ ମଣି ହେବ । ତାହାଶୁଣି ଶଚୀକଳା ପାଶ ହୋଇ କହିଲା ( କାଳୁକ୍ତି ) କୁମାର ତରଳ ( ଚଞ୍ଚଳ ) ଭାବକୁ ପାଇନାହିଁ କି ? ଏ ତହିଁ ( ତରଳ ହାରମଧ୍ୟମଣି ) ସିନା ହେବ ? ଅର୍ଥାତ୍ ସେ ଯେପରି ସୁନ୍ଦରୀ ଠାରେ ଅନୁରାଗୀ ହୋଇଛି । ତହିଁରେ ଏପତ୍ର ପାଇଲାକ୍ଷଣି କଣ୍ଠରେ ଲମ୍ବାଇବ ।

୪—ଉପାୟ ଉପାୟିକା ( ବହୁ ଉପାୟ ପଣ୍ଡିତା ) ଉପାଧ୍ୟାୟୀ ମୁଦ ମୁଦାଇ ( ମୁଦଦେଇ ) ହସ୍ତରେ ଧଇଲେ । ଗୁଟି ( ଅଦୃଶ୍ୟ ରୂପେ ଗତାଗତ କରି ପାରିବାର ଔଷଧି)ଗୁଟିବିଦ୍ୟା ବିଦ୍ୟା-ଗୁଟିବିଦ୍ୟାନିପୁଣାଅବଧୂତୀ ମିଳି ତାର ( ଉପାଧ୍ୟାୟୀର ) କରକୁ କରେ ଧଇଲେ, ପରସ୍ପର କଥୋପକଥନ କରି ସେଠାରୁ ଗମନ କଲେ, ପୁଷ୍ପପୁରର ରାଜକୁମାର ବୁଲୁଥିବା ଉପବନରେ ଜବନେ ( ବେଗପର ) ସ୍ଥିତ ହେଲେ ।

୫—ଦେଖିଲେ-ସେ ଆରାମ ( ଉପବନ ) ଅତି ଅଭିରାମ (ସୁନ୍ଦର) ଯେ ଦେଖିବ ତାହାର ଏହି ପ୍ରତୀତି ( ବିଶ୍ୱାସ ) ଜନ୍ମିବ । ରତି ଓ କାମ ଦୁହେଁ ମନରୁ ଉତ୍ପନ୍ନ ହୋଇ ମୂର୍ତ୍ତିମନ୍ତରେ ବିବାହ ହେଉଛନ୍ତି କି ? କୋକିଳ ଗାୟକପରି ଉଚ୍ଚରେ ଗୀତ ଗାଉଛି । ଝିଙ୍କାରୀ ଝଙ୍କାର, ଖଞ୍ଜରୀଟ ଶବ୍ଦର ପ୍ରାନ୍ତ (ଟି) ହତ (ଖଞ୍ଜରୀ) ଖଞ୍ଜଣୀ ସବାଦ୍ୟରେ ବାଦିତ ହୋଇଅଛି ।

ଶୁକ ଭରଦ୍ୱାଜ ବେଳାକୁଳ ଦ୍ୱିଜ ଶ୍ରୁତି-ମଞ୍ଜୁ- ବାକ୍ୟ ଉଚ୍ଚାରି ।
ମଲ୍ଲୀକଢ଼ୀ ଶଙ୍ଖ ଅସଂଖ୍ୟ ଅନେକ କନକ ମାଧୁରୀ ମାଧୁରୀ ।
ମଧୁପ । ଚୁମ୍ବନେ ଧ୍ୱନି କରେ ଜାତ ।
ମରୁତ ଅଧିକାରୀ ଘେନି ସୁବାସ ରଙ୍ଗିଣିଠାରୁ ଗତାଗତ ॥ ୬
ସୁକୁଞ୍ଜକୁଟିର ଛାୟା ମଣ୍ଡପର ତଳେ ବେଦିକା ତ ନିର୍ମିତା ।
ସ୍ଫୁଟି କୁରୁବକ ପାବକ ଦୀପକ ପଲ୍ଲବ ପାଠକୁଆଁଗଣ ।
କେତକୀ । ମାଳୀ ଦେଇଥିବା ମୁକୁଟ ।
କମ୍ବୁକ ନାରିକେଳ ପରିପୂରିତ ଶାଳକ ସୁରଭି ପ୍ରକଟ ॥ ୭
ହାରିଦ୍ର ସିନ୍ଦୁରୀ ପକ୍ୱଫଳ ଧରି ସହକାର ଶୋଭା ବିଶେଷେ ।
ଗବୟଶୃଙ୍ଗ ସମ୍ପୁଟରୁ ମଧ୍ୟୁ ସ୍ୱର୍ଣ୍ଣ ମାଣିକ୍ୟ ଜ୍ୟୋତି ଦିଶେ ।
ଅଛତେ । ବେନି ବଂଶରେ ଜାତ ଦୋଷ ।
ବ୍ରାହ୍ମଣୀରେ ପୁଣି ବନ୍ଧିତ ହୋଇଛି ସାର ଅନୁରାଗ ପ୍ରକାଶ ॥ ୮

---

୬—ଶୁକପକ୍ଷୀ ଏବଂ ଭରଦ୍ୱାଜ ( ଭଦଭଦଳିଆ ପକ୍ଷୀ ) ଯୁହେଁ ବେଳାକୁଳର ( ବରକନ୍ୟା ଉଭୟ କୁଳର ) ଦ୍ୱିଜ ( ବ୍ରାହ୍ମଣ ) ହେଲେ, ବ୍ରାହ୍ମଣମାନେ ଶ୍ରୁତି ( ବେଦର ) ମଞ୍ଜୁ ବାକ୍ୟ ( ମନ୍ତ୍ର ) ଉଚ୍ଚାରଣ କଲାପରି ଏମାନେ ଶ୍ରୁତି ମଞ୍ଜୁ କର୍ଣ୍ଣ ସୁଖକର ବାକ୍ୟ ଉଚ୍ଚାରଣ କରୁଛନ୍ତି, ଅସଂଖ୍ୟ ମଲ୍ଲୀ କଢ଼ୀ ଶଙ୍ଖ ଏବଂ ଅନେକ କନକ ( ଧୁସ୍ତୁରି ଫୁଲ ) ମଧୁରୀ ( ମହୁରୀ ବାଦ୍ୟର ମାଧୁରୀ ( ସୌନ୍ଦର୍ଯ୍ୟକୁ ) ଧରିଛି । ସେ ସବୁ ମଧୁପ ମାନଙ୍କର ଚୁମ୍ବନରେ ଧ୍ୱନିକି ଜାତ କରୁଛନ୍ତି । ଅଧିକାରୀ ( ବର ଓ କନ୍ୟା କର୍ତ୍ତା ) ରଙ୍ଗିଣି ଠାରୁ ( ତନ୍ତ୍ରୀଠାରୁ ) ସୁବାସ ( ଉତ୍ତମ ବସ୍ତ୍ର ) ଘେନି ଗତାଗତ କଲାପରି ମରୁତ ( ପବନ ) ରଙ୍ଗିଣି ପୁଷ୍ପରୁ ସୁବାସ ଘେନି ଗତାଗତ କରୁଛି !

୭—ଉତ୍ତମକୁ ଓ କୁଟିର ସବୁ ଛାୟା ମଣ୍ଡପ ( ବିବାହ ମଣ୍ଡପ ) ତାହାତଳେ ବୃକ୍ଷମୂଳ ବେଦିକାମାନ ( ବିବାହ ବେଦିକା ) ନିର୍ମିତ ହୋଇଅଛି । ସ୍ଫୁଟି କୁରୁବକ (ପ୍ରସ୍ଫୁଟିତା ଝିଣ୍ଟିଫୁଲ ) ଦୀପକ ( ପ୍ରଜ୍ୱଳିତ ) ପାବକ (ହୋମାଗ୍ନି) ନବ ପଲ୍ଲବ ( ନୂଆପତ୍ର ) ପାଠକୁଆଁ, କେତକୀ, ମାଳୀ ଦେଇଥିବା ମୁକୁଟ ବିବାହ ସ୍ଥଳରେ ଗୁଆ ନଡ଼ିଆ ଥିଲାପରି ଏଠାରେ କମ୍ବୁକ ( ଗୁଆ ) ନାରି-କେଳ ବୃକ୍ଷମାନ ପରି ପୂରିତ, ବିବାହରେ ଶାଳକ, ସୁରଭି ( ବିଦ୍ୱାନୁବ ) ଥିବାରୁ ଥିଲାପରି ଏଠାରେ ଶାଳବୃକ୍ଷ ଏବଂ ସୁରଭି ( ଚମ୍ପକ ବୃକ୍ଷ ) ମାନ ପ୍ରକଟ ହୋଇଛି ।

୮—ଲୁବ୍ଧମାନେ ଧରିଥିବା ଗବୟ (ଗୟଳ ) ଶୃଙ୍ଗ ନିର୍ମିତ ସଂପୁଟ ( ଫରୁଆ ) ମଧ୍ୟରୁ ସ୍ୱର୍ଣ୍ଣ ଏବଂ ମାଣିକ୍ୟ ଜ୍ୟୋତି ଦିଶିଲାପରି ହାରିଦ୍ର ( ହଳଦିଆ ବର୍ଣ୍ଣ ) ଏବଂ ସିନ୍ଦୁରୀ ( ସିନ୍ଦୁରବର୍ଣ୍ଣ ) ପକ୍ୱଫଳମାନ ଧରି ସହକାରେ ( ଅମ୍ବ ବୃକ୍ଷ )

ହିଙ୍ଗୁଳୀ କପର୍ଦ୍ଦୀ ବୀଜ କର କର ରଙ୍ଗାଜୀବୀ ଜୁତେ ଦେଖାଇ ।
ଶୁଦ୍ଧାନ୍ତ ପ୍ରକାରେ ପ୍ରକାର ଯହିଁରେ ଅବାପଠାରେ ସମ୍ଭବଇ ।
ଯତନେ । ପରାଗ କର୍ପୂର ପତନେ ।
ଶେଫାଳିକା ଆଳୀ ସଜାଉ ସଂଯୋଗ ହେବାକୁ ଶଯ୍ୟାକୁ-ସୁମନେ ॥ ୯
ମଧ୍ୟେ ସରସୀ ନୃତନେ ରସାରସି ରସିକ ରସିକା ଯେମନ୍ତେ ।
ନୀଳୋତ୍ପଳଦଳ ଚଳଦୃଗଞ୍ଚଳ ମୀନ ଚଞ୍ଚଳେ ଚାଳେ ନେତ୍ର ।
ଅଚ୍ଛନ୍ନ । ସେ କାମ-ଶରାଳୀ ବଶରେ ।
ଠୁଳ ଶୈବାଳ ଚଳ ଅଳିଆବଳୀ ବେଣୀ ଚଳତ କମ୍ପିରେ ॥ ୧୦

---

ବିଶେଷ ଶୋଭା ପାଉଛି । ବିବାହରେ ବେଣୁ ବଂଶରେ ( ଦୁଇ କୁଳରେ ) ଘୋଷ ( ଆନନ୍ଦ ଧ୍ୱନି ) ଅକ୍ଷତେ ( ଅଖଣ୍ଡିତ ରୂପେ ) ଜାତ ହେଉଥାଏ ଏଠାରେ ଅକ୍ଷତେ ( କଟାହୋଇ ନ ଥିବା ) ବେଣୁ ବାଉଁଶର ଘର୍ଷଣରେ ଶବ୍ଦ ଜାତ ହେଉଅଛି । ସେ ବିବାହ ବ୍ରାହ୍ମଣୀ କନ୍ୟାରେ ବନ୍ଧିତ ଏ ବ୍ରାହ୍ମଣୀ (ମଞ୍ଜିଷ୍ଠା ବୃକ୍ଷରେ ) ବନ୍ଧିତ ହୋଇଛି । ସେଠାରେ ସାର ଅନୁରାଗ (ସ୍ନେହ) ପ୍ରକାଶ ହେଉଥାଏ ଏଠାରେ ମଧ ହେଉଅଛି ।

୯—ରଙ୍ଗାଜୀବୀ ( ଚିତ୍ରକାରିଣୀ ) ହିଙ୍ଗୁଳୀ କପର୍ଦ୍ଦୀ ( କଉଡ଼ି ) ଜୁତେ (ଜୁଆ ଖେଳରେ) ଦେଖାଇଲା ପରି ପାଚିକରି ଫାଟି ଯାଇଥିବା କରକର ( ଦାଡ଼ି-ମ୍ବ ) ବୀଜ ଦେଖା ଯାଉଛି । ଯହିଁରେ ( ଯେଉଁଠାରେ ) ଶୁଦ୍ଧାନ୍ତ (ଅନ୍ତଃ ପୁର ) ପ୍ରକାରେ ପ୍ରକାର ( ପ୍ରାଚୀର ) ଅବାପ ( ବୃକ୍ଷମୂଳ ମଣ୍ଡା ) ଠାରେ ସମ୍ଭବଇ । ଶେଫାଳିକା ( ଗଙ୍ଗଶିଉଳି ବୃକ୍ଷ ) ଆଳୀ ( ସଖି ) ହେଲା; ସେ ବର କନ୍ୟା ଦୁହିଙ୍କର ସଂଯୋଗ ନିମିତ୍ତ ଯତ୍ନକରି ପରାଗ ( ପୁଷ୍ପଧୂଳି ) ରୂପ କର୍ପୂର ପତନ ଦ୍ୱାରା ସୁମନେ ( ପୁଷ୍ପରେ ) ଶଯ୍ୟାକୁ ( ମଧୁଶଯ୍ୟାକୁ ) ସଜାଉଛି ।

୧୦—ରସିକ ରସିକା ଯେମନ୍ତ ନୃତନେ ରସା ରସି ହୋଇ ଥାନ୍ତି ବନମଧ୍ୟରେ ଥିବା ସରସ (ପୁଷ୍କରଣୀ) ସେହିପରି ହୋଇଅଛି । ରସିକ ରସିକାଙ୍କର ଚଳ ଦୃଗଞ୍ଚଳ ( ଚଞ୍ଚଳ କଟାକ୍ଷ ) ପରି ଏହାର କମ୍ପିତ ନୀଳୋତ୍ପଳ ଦାଳ ହୋଇ-ଅଛି । ତାଙ୍କର ଚଞ୍ଚଳେ ଚାଳିବା ନେତ୍ରପରି ଏହାର ମୀନ ଶୋଭା ପାଉଛି ସେ ଦୁହେଁ କାମ ଶରାଳୀ ( କନ୍ଦର୍ପଶର ସମୂହରେ ) ଅଚ୍ଛନ୍ନ ( ଅଭିଭୂତ ) ହୋଇଥାନ୍ତି, ଏ ପୁଷ୍କରଣୀ କାମପକ୍ଷୀ ଓ ଶରାଳୀ ( ହଂସରାଳୀ ) ପକ୍ଷୀରେ ଅଚ୍ଛନ୍ନ ( ଆବୃତ ) ହୋଇଛି । ଠୁଳ ( ଏକାଠି ) ହୋଇଥିବା ଶୈବାଳ (ଶିଉଳି ) ଚୂଳ ( କେଶ ) ପାଣିକି ଲାଗି ଉଡୁଥିବା ଅଳି ଅବଳୀ ( ଭ୍ରମର ଶ୍ରେଣୀ ) କମ୍ପିତ ଶିରେ ଚଳତ ବେଣୀପରି ଶୋଭା ପାଉଛି ।

ତରଙ୍ଗ ତର କର ଦେଉଁ ବଢ଼ାଇ ନୀରଜକୋରକ-ଉରଜେ ।
ହଂସଗତିରେ ଘୁଞ୍ଚୁନାଦ ହଂସକ ଶବଦ ପ୍ରକଟ ସହଜେ ।
ପ୍ରଚଳ । ଫେନ ବସନ ଅଡ଼ ତେଣୁ ।
ଦରବକାଶ କୋକନଦ-ମୁଖରେ ଗୃହ୍ଣୁ ଆରମ୍ଭି ଅଣୁ ଅଣୁ ॥ ୧୧
ଏସନ ବନସରତୀରେ କୁସୁମଶର-ତୀରେ ହୋଇ ଉଚ୍ଛନ୍ନ ।
ଚତୁର ଚମ୍ପା ମଧ୍ୟ ଚନ୍ଦ୍ର-ବେଦିରେ ଚତୁର କରିଛୁ ଶୟନ ।
ଯେ ପୁରେ । ଜୀବନ ଏସ ତଳରେ ରହି ।
କଳାକର କଳାକର ଶୁଭ୍ର ଅଭ୍ର ଅର୍ଦ୍ଧ ଉଦୟ ପରି ହୋଇ ॥ ୧୨
ନବପଲାଶେ ବଞ୍ଚେ ହୀନ-ଉଲ୍ଲାସେ ପୁରୁଷେ ବସି ଯେ ପାରୁଶେ ।
କିଛିଦୂରେ ଅଛି ବିମନ ହୋଇଛି କି ହୋଇଲା ଇଚ୍ଛି ପୁରୁଷେ ।
ତା ଦେଖି । କେ କାହୁଁ ଆସିଲା ପ୍ରକାରେ ।
ସାଧୁଜନୀ ବେନି ହରଷ ବିରସ ଲପନେ କଥା ପରସ୍ପରେ ॥ ୧୩

---

୧୧—ନୀରଜ କୋରକ ( ପଦ୍ମକଳିକା ) ରୂପକ ଉରଜେ ( ସ୍ତନକୁ ) ପୁରୁଷ ତରଙ୍ଗତର ( ଲହରୀ ) ରୂପ କରକୁ ବଢ଼ାଉଁ ସେ ରସିକା ହଂସ ଗତିରେ ( ହଂସଗତିଚଳନରେ ) ଘୁଞ୍ଚୁ ହଂସନାଦ ରୂପ ( ନୂପୁରଶବ୍ଦ ) ସହଜେ ପ୍ରକଟ ହୁଅଇ, ତେଣୁ ଦର ବିକାଶ ( ଅଳ୍ପବିକଶିତ ) କୋକନଦ ( ରକ୍ତପଦ୍ମ ) ରୂପ ମୁଖରେ ଗୃହ୍ଣୁ ଆରମ୍ଭି ଅଣୁ ଅଣୁ ପ୍ରଚଳାଇ ଫେନରୂପ ବସନକୁ ଅଡ଼ କରଇ ।

୧୨—ରାଜପୁତ୍ର ଏସନ ବସନର ( ବନସ୍ଥିତ ପୁଷ୍କରିଣୀ ) ତଟରେ କୁସୁମ-ଶର (କାମ) ର ତୀର ( ବାଣ ) ରେ ଉଚ୍ଛନ୍ନ ହୋଇ ଚତୁର ( ଗୁହ ଗୋଟି ) ଚମ୍ପାବୃକ୍ଷ ମଧ୍ୟସ୍ଥ ତ ଚନ୍ଦ୍ର ( ସୁବର୍ଣ୍ଣ ) ବେଦିରେ ଶୟନ କରିଛି । ଯେ ପୁରେ ( ଚମ୍ପାପୁରେ ) ଜୀବନ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ) ଅଛି ସେ ତଳେ ( ଚମ୍ପା ବୃକ୍ଷତଳେ ) ମୁଁ ରହିବ ଭାବ ଶୁଭ୍ର ଅଭ୍ର ( ଶୁକ୍ଳମେଘରେ ) କଳା-କର ( କଳାଏ ମାନ ) କଳାକର ( ଚନ୍ଦ୍ର ) ଅର୍ଦ୍ଧ ଉଦୟ ପ୍ରାୟ କ୍ଷୀଣ ହୋଇ ଶଯ୍ୟାରେ ରହିଛି ।

୧୩—ଜଣେ ପୁରୁଷ ପାରୁଶେ ବସି ହୀନ ଉଲ୍ଲାସେ ( ବିରସ ) ହୋଇ ନବ ପଲ୍ଲ-ଶରେ ( ନୂଆ ପତ୍ରରେ ) ବଞ୍ଚେ । ଆଉ ଜଣେ ପୁରୁଷ, ବିମନା ହୋଇ କି ହୋଇଲା ଏହା ଜାଣିବାକୁ ଇଚ୍ଛାକରି କିଛି ଦୂରରେ ଅଛି । ତାହାଦେଖି କିଏ କାହୁଁ ଆସିଲା ପ୍ରକାର ବେନି ସାଧୁଜନୀ ( ସାଧୁମାତା ) ହର୍ଷ ଓ ବିଷାଦ ପୂର୍ଣ୍ଣ ଲପନରେ ( ମୁଖରେ ) ପରସ୍ପର କଥୋପକଥନ କଲେ

ଜଟିଳା ଭଣିଳି କନରେଶନନ୍ଦନୀ-ପାଠପଠିନୀ ଉର୍ଗ୍ର ଦଶ ।
ପଣ୍ଡିତା ବୋଲେ କହିବାରୁ ଅକ୍ଷରେ କାଟି ରଖ ଗୋ ଏକାଦଶ ।
ସେ ଛଳି । ଏ ନଗରେ ତୁମ୍ଭ ନିବାସ ।
ପୁନରୁକ୍ତ ବୁଝୁଁ ଆଗତ କିଦର୍ଥେ ଯଦର୍ଥେ କହି ହେବ କିସ ॥ ୧୪
ତଥାପି କହିବା ତୁମ୍ଭେ କେ କହ ସେ କହେ ମୁଁ ସ୍ୱର୍ବୈଦ୍ୟଭଗିନୀ ।
ବୃନ୍ଦ-ଅନ୍ତକ ଅନ୍ତଃପୁର ଅବଳା ବିଭ୍ରମବେ୍ଗ-ବିଳାସିନୀ ।
ଶୁଣି ତା । ଭଣିଲ ଅମ୍ଭ ବାଳାମଣି ।
ଅଭୁତେ କି ଦେଖି ଭୂତପତିକୃତ ଭୂତ ଲାଗିଲ ପ୍ରତି ଆଣି ॥ ୧୫
ବାରବାର ସର ଦରେ ତା ଶୟନ ବର୍ଜି ନାହିଁ ଚନ୍ଦ୍ର ବଦନେ ।
ଭଜ ବହିତ ଘନବାର ସୁକେଶୀ ତନୁକୁ ନ ବାନ୍ଧି ସଘନେ ।
ତପତ । ସଦା ରହିଅଛି ଶରୀରେ ।
ବ୍ୟାଧି ଜନନ କି ଗୋଚର ନୁହଇ କହେ ଚାନ୍ଦ୍ରାକୁ ଯେ ବାଧିରେ । ୧୬

---

୧୪—ଜଟିଳା (ଅବଧୂତୀ) ଭଣିଲେ ଲୁପ୍ତବର୍ଣ୍ଣ ତୁମ୍ଭେ ତ କିନରେଶ ନନ୍ଦନୀ ( କୁବେର କନ୍ୟାର ) ପାଠ ପଠନୀ ( ଶିକ୍ଷୟିତ୍ରୀ, ) ପର୍ ଦଶୁଅଛ । ପଣ୍ଡିତା (ଉପାଧ୍ୟାୟୀ ) ବୋଇଲା, ତୁମ୍ଭେ କହିବା ( କି ନରେଶ ନନ୍ଦନୀ ) ରୁ ଅକ୍ଷରେ ( କିଂ ) କାଟି ଏକାଦଶ ଅକ୍ଷର ଘେନ ( ଅର୍ଥାତ୍ ନରେଶ ନନ୍ଦନୀର ଆମ୍ଭେ ଶିକ୍ଷୟିତ୍ରୀ ଅଟୁଁ । ସେ ଛଳିଲା—ଏହି ନଗରେ ତୁମ୍ଭ ନିବାସ ? ପୁନରୁକ୍ତ ( ପୁଣି କହିଲ ) ଅଥବା ବୁଝୁଁ ଆଗତ କିଦର୍ଥେ ( କାହିଁକି ) ? ଯଦର୍ଥେ ( ଯହିଁପାଇ ) ଆସିଛୁଁ ତାହା କହି କିସ ହେବ ।

୧୫—ତଥାପି ସେ ଅବଧୂତୀ କହିଲେ ତୁମ୍ଭେ କିଏ କହ । ସେ ପଣ୍ଡିତା କହେ ମୁଁ ସ୍ୱର୍ବୈଦ୍ୟ ( ଅଶ୍ୱିନୀ କୁମାରଙ୍କର ) ଭଗିନୀ, ବୃନ୍ଦ ଅନ୍ତକ ( ଇନ୍ଦ୍ର ) ଙ୍କ ଅନ୍ତଃପୁର ଅବଳା ମାନଙ୍କର ବିଭ୍ରମ ବେଗ ( ଉନ୍ମାଦ ବେଗର ବିଳାସିନୀ । ତାହାଶୁଣି ପଣ୍ଡିତ ଭଣିଲେ ଅମ୍ଭ ବାଳାମଣି ଅଭୁତେ ( ଅକସ୍ମାତ୍ ) କି ଦେଖି ଭୂତପତି କୃତ ( ଶିବଙ୍କ ସୃଷ୍ଟି ) ଭୂତ ଅନ୍ୟ ପକ୍ଷରେ ଭୂତପତି କୃତଭୂତ ( କାମ ) ଲାଗିଲାପରି ଜଣା ପଡ଼ୁଅଛି ।

୧୬—( ଦତ୍ତ ଚ୍ୟୁତାକ୍ଷର )ଦରେ(ଭୟରେ) ତା ଶୟନ ଏଠାରେ ( ନୟନ ଏଠାରେ "ଶ" ଚ୍ୟୁତ "ନ" ଦତ୍ତ ) ବାର ସର ( ନୀର-ଏଠାରେ "ସ" ଚ୍ୟୁତ 'ନ' ଦତ୍ତ ) ବର୍ଜି ( ତ୍ୟାଗ ) କରଇ ଏବେ ସେ ଚନ୍ଦ୍ର ବଦନେ ( ଚନ୍ଦ୍ର ସଦନେ ଚନ୍ଦ୍ର ଶାଳ ପୁରେ ଏଠାରେ 'ବ' ଚ୍ୟୁତ 'ସ' ଦତ୍ତ ) ନାହିଁ ସୁକେଶୀ ତନୁକୁ ଘନବାର ଘନସାର-କର୍ପୂର ଏଠାରେ "ବ" ଚ୍ୟୁତ "ସ" ଦତ୍ତ ] ବହିତ ( ଅହିତ ଏଠାରେ "ବ" ଚ୍ୟୁତ "ଅ" ଦତ୍ତ ) ଭଜ

କହେ ଏ ପଦ ହରବ ସପ୍ରୟୋଗେ ଏ ତାପ ଶାନ୍ତିକା'ତାପସୀ ।
ବୁଦ୍ଧି ନଦୀରେ ତୃଣ ପ୍ରାଏ ଭାସିଲ କଳ୍ପନା ଭାସିଲ ବକୁଷୀ ।
ପୁଣି ସେ । କାହିଁରୁ କଳ ବୋଲି ପୁଚ୍ଛି ।
ସ୍ନାନ କାସାରୁ ସଞ୍ଚିତ ସଂପୁଟରୁ ବୋଲନ୍ତେ ବୋଲେ ଭଟ୍ଟେ ଅଛୁ ।। ୧୭
କି ଅଛି ଗିରେ ଛଳିଲ ଧୀରେ ଯେହ୍ନ ସୁନ୍ଦର ନବ ସରସୀତ ।
ତା ହୃଦପଦ୍ମ ସଙ୍ଗ ପାଣି ପରଶ ଅଙ୍ଗସ୍ଥ ଶୀତରଜ ହୃତ ।
ଶ୍ରବଣେ । ନୃପଜ ମନ୍ତ୍ରୀଜ ଏ କଥା
ବଦ୍ୟାନଧିଙ୍କ ସନ୍ନିଧିକି ଯିବାକୁ ସମ୍ମତେ ଟେକି ଗୃଳ ମଥା ।। ୧୮

---

( ଭଜଇ ), ସ ଘନେ ( ସପନେ—ସ୍ୱପ୍ନ କଥାକୁ ଏଠାରେ "ଘ" ଚ୍ୟୁତ "ପ" ଦତ୍ତ ) ନ ବାଞ୍ଛି ( ନ ମୁଞ୍ଚି ଏଠାରେ "ବା" ଚ୍ୟୁତ "ମୁ" ଦତ୍ତ ନ ପାସୋରଇ ) ସଦା ଶରୀରେ ତପତ ( ତାପ ) ରହିଛି, ଏ କି ବ୍ୟାଧି କନମୀ ( ଜନମି—ଜ୍ଞାନ ହୋଇଛି ଏଠାରେ "ନ" ଚ୍ୟୁତ "ମ" ଦତ୍ତ ) ଗୋଚର ନୁହଇ, ଏଣୁ ସମସ୍ତେ ବଧିରେ ଶନ୍ତାକୁ କରୁଛନ୍ତି ।

୧୭—ତପସୀ ( ଅବଧୂତୀ ) ଏପଦ କହିଲ—ସ ପ୍ରୟୋଗେ ( ପ୍ରୟୋଗ ସହିତ ) ହେଲେ ଏ ତାମ ହରବ ଏ ଶାନ୍ତିକା ଭଜବ । ଟକୁଷୀ ଭାସିଲ ଯେତେ ପ୍ରୟୋଗ କଳ୍ପଣି ସବୁ ବୁଦ୍ଧି ନଦୀରେ ( ନଦୀ ବୁଦ୍ଧିରେ ) ତୃଣପର ଭାସିଲ, ପୁଣି ସେ କାହିଁରୁ କଲ ବୋଲି ପୁଚ୍ଛିଲେ । ଏ ସ୍ନାନ କାସାରୁ (ପୁଷ୍କରିଣୀରୁ) ପଦ୍ମଦଳ, ସଂଞ୍ଚିତ ସଂପୁଟରୁ କର୍ପୂର ଅଣି କଲି ବୋଲନ୍ତେ ସେ ବୋଇଲ ଭଟ୍ଟେ ଅଛୁ ।

୧୮—ଏ କହିଲ କି ଅଛି ? ସେ ଧୀରେ ଗିରେ ( ବାକ୍ୟରେ ) ଛଳିଲ—( ଶ୍ଳେଷ ) ଯେହ୍ନ ସୁନ୍ଦର ନବ ସରସୀ ( ପୁଷ୍କରିଣୀ ) ତା ହୃଦପଦ୍ମ ( ମଧ୍ୟସ୍ଥିତ ପଦ୍ମପତ୍ର ) ପାଣି ପରଶ ( ପାଣିଛୁଆଁ ସଙ୍ଗ ) ଓ ଅଙ୍ଗସ୍ଥ ( ଅଙ୍ଗଦେଶସ୍ଥିତ ) ଶୀତରଜ ( କର୍ପୂର ) ହୃତଦେବ । ଅନର୍ଥ-ସୁନ୍ଦରୀ ଯେଉଁ ସୁନ୍ଦରଠାରେ ନବ ସରସିତ ( ନୂତନରସିକ୍ତ ) ତାହାର ହୃଦପଦ୍ମ ସଙ୍ଗ, ତା ପାଣି ପରଶ ( ହସ୍ତସ୍ପର୍ଶ ) ଏବଂ ଅଙ୍ଗସ୍ଥ ( ଦେହସ୍ଥିତ ) ଶୀତରଜ ( କର୍ପୂର ) ହୃତ ହେବ । ଏ କଥା ଶୁଣି ନୃପଜ ( ରାଜପୁତ୍ର ) ଓ ମନ୍ତ୍ରୀଜ ( ମନ୍ତ୍ରୀପୁତ୍ର ) ବଦ୍ୟାନଧିଙ୍କ ସନ୍ନିଧିକି ( ସମୀପକୁ ) ଯିବାକୁ ସମ୍ମତ ( ସମ୍ମତିସୂଚକ ) ମଥାଟେକି ଗୃଳିଲେ ।

ସେ ଯାଇ ବୋଇଲ୍ଲ କି ଭାଗ୍ୟ ହୋଇଲ୍ଲ ସର୍ବଜ୍ଞ ବିଜ୍ଞାତ ଅଗତ ।
ନ ଥିଲ୍ଲ ନାହିଁ ନୋହିବ ଶବରୂପେ ଦେଖିଲ୍ଲ ଅମ୍ଭ ନୃପସୁତ ।
ଚନ୍ଦ୍ରରେ । କଳେବର ନିଷ୍ଟେ ନିର୍ମିତ ।
ଦ୍ୱିତୀୟା ଚତୁର୍ଥୀ ଅଷ୍ଟମୀ ପୂର୍ଣ୍ଣିମୀ ଚନ୍ଦ୍ର ଏକାବେଳେ ଉଦିତ ॥ ୧୯
ସେ ଚନ୍ଦ୍ର ମଧ୍ୟେ ଅମଳ ଭାବ ବହି କମଳ କରୁଛି ଭବନ ।
ମହାଅଦ୍ଭୁତ ସ୍ୱତ ଏ ବୁଦ୍ଧିମତ ସମ୍ଭୁତ କରୁଅଛି ମନ ।
ଅଣୁଏ । ବହୁଛି କୁନ୍ତଳ ମାଳେ ।
ବେଣୀ ଶିଖରୀ ତହିଁ ପରେ ମାଧୁରୀ ନଳ ରହିଲ୍ଲ ପ୍ରାୟେ ଜଳେ ॥ ୨୦
ସେ ପୁଣି ସୁବର୍ଣ୍ଣ ଚମ୍ପାବାଳା ଦୋଳା ଗଳାରେ ପକାଇ ଥୋଇଛି ।
ସତ୍ୟରେ ଦ୍ୱାପର କମେ କଳି କରି ଅଜ ଯୁଗ ଯେଣୁ ନୋହୁଛି ।
କାମନା । ପୂର୍ବେ ଯେ ମଣ୍ଡପ ମଧ୍ୟରେ ।
ଯୁକ୍ତ ଅପୂର୍ବ ତନୁଖେଦ ଅବସ୍ଥା ହତ ପ୍ରାନ୍ତେ ଅଛି ଏଥିରେ ॥ ୨୧

---

୧୯—ସେ ଯାଇ ବୋଇଲ୍ଲ କି ଭାଗ୍ୟ ହୋଇ ସର୍ବଜ୍ଞ ( ଉପାଧ୍ୟାୟୀ ) ବିଜ୍ଞାତ ( ବିଶେଷ ରୂପେ ଜାଣି ) ଅଗତ । ଏପରି ରୂପ ନଥିଲ୍ଲ, ନାହିଁ ବା ନୋହିବ । ଅମ୍ଭ ନୃପସୁତଙ୍କୁ ଶବରୂପେ ( ଆଶ୍ଚର୍ଯ୍ୟରୂପେ ) ଦେଖିଲ୍ଲ । କଳେବର ( ରାଜପୁତ୍ରଙ୍କର ଦେହ ) ଚନ୍ଦ୍ରରେ ନିଷ୍ଟସ୍ତ ନିର୍ମିତ । ଯେଣୁ ଏହାଙ୍କ ଦେହରେ ଦ୍ୱିତୀୟା, ଚତୁର୍ଥୀ, ଅଷ୍ଟମୀ, ଓ ପୂର୍ଣ୍ଣିମାଚନ୍ଦ୍ର ଏକାବେଳେ ଉଦିତ ହୋଇଛନ୍ତି । ( ଦ୍ୱିତୀୟାଚନ୍ଦ୍ରପରି ଶରୁକ, ଚତୁର୍ଥୀଚନ୍ଦ୍ରପରି ଗଣ୍ଡ, ଅଷ୍ଟମୀଚନ୍ଦ୍ରପରି ଭାଲ, ପୂର୍ଣ୍ଣିମାଚନ୍ଦ୍ରପରି ମୁଖମଣ୍ଡଳ ) ।

୨୦—ସେହିପରି ଚନ୍ଦ୍ରମଧ୍ୟରେ କମଳ ଅମଳ ଭାବ ବହି (ମଳିନ ନଯାଇ) ଭବନ (ବାସ) କରୁଛି ନେତ୍ର । ଏ ବୁଦ୍ଧିମତ ମହାଅଦ୍ଭୁତ ଏହା ସ୍ୱତଃ ତାଙ୍କମନ ସମ୍ଭୁତ କରୁଛି । ସୁନ୍ଦରୀ ଅଣୁଏ ( ଅଣୁପରିମିତ ଅତି ସୂକ୍ଷ୍ମ ) ରୋମାଳୀରୂପ କୁନ୍ତଳ ( ଖସା ) ମାଳଟିଏ ବହୁଛି, ତହିଁପରେ, ମଧୁରୀନଳ ( ସ୍ତନ ) ରୂପ ବେଣୀଶିଖରୀ (ପର୍ବତ) ରହିଲ୍ଲପରି ଜଳେ ( ଶୋଭା ପାଉଛି ) ।

୨୧—ସେ ସୁନ୍ଦରୀ ପୁଣି ସୁବର୍ଣ୍ଣ ଚମ୍ପାମାଳାକୁ ଦୋଳ୍ଲା ତାକୁ ଏ ରାଜପୁତ୍ର ଗଳାରେ ପକାଇ ଥୋଇଛି, ସତ୍ୟରେ ( ସତ୍ୟ କଥାରେ ) ଦ୍ୱାପର ( ସନ୍ଦେହ ) କମେ କଳି କରି ଯେଣୁ ଅଜ ଯୁଗ ( ମିଳନ ) ନୋହୁଛି ତେଣୁ ପୂର୍ବେ ମଣ୍ଡପ ମଧ୍ୟରେ ଯେ ସୁନ୍ଦରୀକୁ ଦେଖିଲ୍ଲ ତାକୁ ପାଇବା କାମନା ପ୍ରବଳ ହେଉଛି; ଅ-ପୂର୍ବତନୁ ( ଅତନୁ-କାମ ) ଖେଦ ( ସନ୍ତାପ ) ଯୁକ୍ତ ହୋଇଛି, ବୋଧହୁଏ ଏଥିରେ ହତପ୍ରାନ୍ତେ ଅବସ୍ଥା ( ହତ ଅବସ୍ଥା ) ଅଛି ।

ମନ୍ଦ ଭଲ୍ଲ ଦୁଇ ହାସ ନେବେ ଥୋଇ ସେ ବଧୂ ଚାଳନ୍ତି ସରାଗୁଁ ।
ଏଥୁଁ କି ହୋଇବ ଏ ପ୍ରଶ୍ନ କହିବ ପୁଂସକୁ ତାରିବ ଉଦ୍‌ବେଗୁଁ ।
ଊର୍ଦ୍ଧ୍ୱକୁ । ଗୃହିଁ ସର୍ବଜ୍ଞା କହେ ଜବ ।
ପୁଚ୍ଛା କଲ ଯା ହୋଇଛନ୍ତି ଦାବ୍ୟ ଋଷ ଏ ଜୀବ ଏକନାମ ହେବ । ୨୨
କେତେ ବିଶ୍ୱକର୍ମା ନିର୍ମାଣେ ମୋହନପ୍ରତିମା ସେ ବଶ ହେବାର ।
ଗୁପ୍ତମନ୍ତ୍ରର ଆମ୍ଭଠାରେ ଅଛି ଦେବା ଜପ କରୁ କୁମାର ।
ଫଳଦ । ଏମନ୍ତ ପ୍ରକାରେ ହୋଇବ ।
ବହିବା ମାର ତେଜିବ ଧନୁ ଶର ଏ ତା ବଲ୍ଲଭୀକି ଲଭିବ ॥ ୨୩
ଦ୍ୱିଜ ଶୁଣି ଅବଧାନ କର ବୋଲି ଆର ବାମା କର ଧଇଲା ।
କରୁଣା ଧର ଅରୁଣାଧରୀଠାରୁ ଅଗ ଯିବା ଗୃଲ ବୋଇଲା ।
ଉତ୍ତର । ପ୍ରାପତ ଝାଡୁକୁ ମନ୍ତ୍ରରେ
ଆମ୍ଭେ ଲକ୍ଷଣାକ ଜନ ସିନା ବେନିଲକ୍ଷଣା ଦେଲା ସୁମନାରେ ॥ ୨୪

---

୨୨—ମନ୍ଦ ( ଅଳ୍ପ ) ଭଲ୍ଲ ( ଭାଲଅସ୍ତ୍ର ) ଏ ଦୁଇକୁ ହାସ.ଓ ନେନରେ ଥୋଇ ସେ ବଧୂ ସରାଗୁଁ ( ସ୍ନେହକୁ ) ଚାଳନ୍ତି, ଏଥୁଁ କି ହୋଇବ ଏ ପ୍ରଶ୍ନ କହି ପୁରୁଷକୁ ଉଦ୍‌ବେଗରୁ ତାରିବ, ( ଅର୍ଥାତ୍ ଏଥିରୁ କଣ ମିଳିବ ଏ ପ୍ରଶ୍ନ କରି ପୁରୁଷକୁ ଉଦ୍‌ବେଗରୁ ରକ୍ଷା କର ) ଏ କଥା ସର୍ବଜ୍ଞା ଊର୍ଦ୍ଧ୍ୱକୁ ଗୃହିଁ ଜବ ( ବେଗରେ ) କହେ । ତୁମ୍ଭେ ଯାହା ପୁଚ୍ଛାକଲ ( ପଗ୍ରରିଲ ) ଦାବ୍ୟ ଋଷ ( ଉତ୍ତମନକ୍ଷତ୍ର ) ହୋଇଛନ୍ତି ( ଅର୍ଥାତ୍ ତାରଶୁଦ୍ଧି ହୋଇଛି ) ଏ ଜୀବ ( ଋଷଜୀବ—ଭଲ୍ଲୁକର ) ଏକନାମ ( ଭଲ୍ଲ-ଭଲ ) ହେବ ।

୨୩—ବିଶ୍ୱକର୍ମା କେତେ ରୂପ ନିର୍ମାଣ କରି ଏ ମୋହନ ପ୍ରତିମା ନିର୍ମାଣ କରି ଅଛନ୍ତି, ସେ ମୋହନପ୍ରତିମା ବଶହେବାର ଗୁପ୍ତମନ୍ତ୍ର ଆମ୍ଭଠାରେ ଅଛି, ଦେବା, କୁମାର ତାକୁ ଜପକରୁ, ଏମନ୍ତ ପ୍ରକାରେ ଫଳଦ ହୋଇବ ଯେ ମାର ( କାମ ) ବହନ କରିଥିବା ଧନୁଶରକୁ ତେଜିବ ଏ କୁମର ତା ବଲ୍ଲଭୀକି ( କାମସ୍ତ୍ରୀ-ରତିକୁ ) ଲଭିବ ।

୨୪—ଦ୍ୱିଜ ( ବ୍ରାହ୍ମଣ ପୁରୋହିତପୁତ୍ର ) ଏହାଶୁଣି ଅବଧାନ କର ଏହା ବୋଲି ଆର ବାମା ( ଉପାଧ୍ୟାୟୀ ) କର ଧରିଲା, କରୁଣା ଧର (ଦୟାକର) ଅରୁଣାଧରୀ ଠାରୁ ( ସୁନ୍ଦରୀ ନିକଟକୁ ) ଅଗଯିବା ଗୃଲ ଏହା କହିବାରୁ ସେ ( ସର୍ବଜ୍ଞା ଅବଧୂତା ) ଉତ୍ତର କଲା, ଝାଡୁକୁ ( କୁମାରୀକୁ ) ମନ୍ତ୍ରରେ ( ଗୋଟିଏ ମନ୍ତ୍ର ) ପ୍ରାପତ ( ମିଳିଛି ), ଆମ୍ଭେ ଏକ ଲକ୍ଷଣାକ ଜନ ( ଅର୍ଥାତ୍ ସ୍ତ୍ରୀ ଲୋକ ) ସିନା ବେନିଲକ୍ଷଣା ( ସ୍ତ୍ରୀ ପୁଂସଲକ୍ଷଣା ପୋଟା ) ସୁମନାରେ ( ପୁଷ୍ପମଧ୍ୟରେ ) ପୂରାଇ ମନ୍ତ୍ରରୂପ ଚିଠାଉ ଦେଲାଣି ।

କଲ ସେ ପ୍ରମାଣ ମାଣବକ-ମୃଗନେତ୍ରାର ହେଲା ମାଣବକ ।
ତୂର୍ଣ୍ଣେ ଭାଷେ ସେ ପୂର୍ଣ୍ଣେ ମାଳା ପାଇବ ନିଷ୍ଟେ କର ଏହି ବିବେକ ।
ଯେବେଟି । ଧବଳପକ୍ଷ ପକ୍ଷ ପାଇ ।
ସକଳରୂପେ ଉଦେହେଲେ ଇନ୍ଦୁଙ୍କ ସକଳ କଳା ପୂର୍ଣ୍ଣ ନୋହି ॥ ୨୫
ବିଷୟ ହର ହର ସେଗୁଁ କୁମାର ଯୋଗଲକ୍ଷ୍ମୀକୁ ଧରିଥିଲା
ଗଜସ୍ତ୍ରୀ କଥା-ରସ କର୍ଣ୍ଣ-ବଦନେ ଅଶନକୁ ଉଠି ବସିଲା ।
ବ୍ରହ୍ମାସ୍ତ୍ର । ନାସିତ ଜାମ୍ବବନ୍ତ ପର ।
ତନ୍ତ୍ରାର୍ଥୀ ମନ୍ତ୍ରୀଜ ଏ କଥା ଔଷଧି ଗନ୍ଧପବନ ବଳେ କର ॥ ୨୬
ଏକାଳେ ମିତ୍ରମେଳେ ମିଳେ ସେ ବେନି ଆଦରକୁ ପାଇ ବସିଲେ ।
ମୋଦପ୍ରଦ ମୁଦ ଦେବାରେ ସିଦ୍ଧିରେ ଭାଷିଲେ ଏମନ୍ତ ଘୋଷିଲେ ।
ନିକଟେ । ଈଶ୍ୱରସମ୍ପତ୍ତି ପାଇବ ।
ଯୁବତି-ଅର୍ଦ୍ଧାଙ୍ଗ ଦିଗବାସ କାମଜିତ ହୋଇ କାଳ ସାରିବ ॥ ୨୭

---

୨୫—ମାଣବକ ମୃଗନେତ୍ରାର (ଶିଶୁ ମୃଗନୟନୀର) ପାଇବା ସେ ପ୍ରମାଣକଲା, ମାଣବକ (ଅର୍ଦ୍ଧମନ୍ତ) ମାଣବକ (ଅର୍ଦ୍ଧମାଳପର) ହେଲା । ତହୁଁ ସେ ତୂର୍ଣ୍ଣେ (ଶୀଘ୍ର) ଭାଷିଲେ-ଯେବେ ଅର୍ଦ୍ଧମାଳ ପାଇଲଣି ତେବେ ନିଷ୍ଟୟପୂର୍ଣ୍ଣ ମାଳ ପାଇବ ଏହି ବିବେକ କର । ଧବଳପକ୍ଷ (ଶୁକ୍ଳପକ୍ଷ) ପକ୍ଷ (ସହାୟ) ପାଇ ସକଳରୂପେ (ଷୋଡ଼ଶ କଳା ସହିତରେ) ଇନ୍ଦୁ ଉଦୟ ହେଲେ ସକଳ କଳା ପୂର୍ଣ୍ଣ ନୁହଇ କି ? ଅର୍ଥାତ୍ ଅପୂର୍ଣ୍ଣ ଚନ୍ଦ୍ର ପୂର୍ଣ୍ଣ ହୁଏ ।

୨୬—ବିଷୟ ହର କର ହର ସେଗୁଁ (ଶିବ ସେବାରୁ) କୁମାର ଯୋଗଲକ୍ଷ୍ମୀକୁ ଧରିଥିଲା, ଗଜସ୍ତ୍ରୀ (ଗଜପୁନୀର) କଥାରସ କର୍ଣ୍ଣରୂପ ବଦନରେ ଅଶନକୁ (ଭୋଜନ କରିବାକୁ) ବ୍ରହ୍ମାସ୍ତ୍ର ନାସିତ ଲକ୍ଷ୍ମଣ ପର ଉଠି ବସିଲା । ମନ୍ତ୍ରୀଜ (ମନ୍ତ୍ରୀପୁତ୍ର) ଜାମ୍ବବନ୍ତ ପର ତନ୍ତ୍ରାର୍ଥୀ ହୋଇଥିଲା, ଲକ୍ଷ୍ମଣ ଗନ୍ଧପବନ ବଳରେ ଉଠିଲା ପର ଏ କୁମାର କଥା ଔଷଧିବଳରେ ଉଠିଲେ ।

୨୭—ଏ ସମୟରେ ମିତ୍ରମାନଙ୍କ ସହ ମିଳିଲେ ସେ ବେନି (ଅବଧୂତା ଓ ଉପାଧ୍ୟାୟୀ) ଆଦରକୁ ପାଇ ବସିଲେ । ମୋଦପ୍ରଦ (ଆନନ୍ଦ ଦାୟକ) ମୁଦ (ପତ୍ର) ଦେବାରେ ସିଦ୍ଧିହେବ ବୋଲି ଭାଷିଲେ ଏବଂ ଏମନ୍ତ ଘୋଷିଲେ ଯେ ନିକଟରେ ତୁମ୍ଭେ ଈଶ୍ୱର ସମ୍ପତ୍ତି ପାଇବ । ସେ ଯେପରି ଯୁବତି ଅର୍ଦ୍ଧାଙ୍ଗ ଦିଗ ବାସ (ଉଲଙ୍ଗ) ଓ କାମଜିତ (କାମଜୟୀ) ହୋଇ କାଳ ସାରିଲେ ତୁମ୍ଭେ ସେହିପରି ହୋଇ କାଳ ସାରିବ ।

ହୋଇ କୃତ କୃତ୍ୟ କର କୋରକତ କର ନୃପସୁତ ଘେନନ୍ତେ ।
ପବମାନ ପର ବଦ୍ୟାକୁ ଅଚର ଗମନ କଲେ ସେ ତ୍ୱରିତେ ।
ପ୍ରବେଶ । ମାଳମୀନଗରୀ ନାଗରୀ—
ରନୃରେ କହିଲେ ଯତ୍ନପୂର୍ବ କର ଉଦନ୍ତ ଦେବାର ଗୁରୁରୀ ॥ ୨୮
କୁମାରବର ନାମ ସାର୍ଥ ତାଠାରେ ଏ ପଦକୁ ଅଚ୍ଛି ଅଚର ।
ବର୍ଣ୍ଣେକ ପଲଙ୍କ ଦ୍ୱିବର୍ଣ୍ଣ ଅତଙ୍କ ଜନମାଇ ଧବା ଶର୍ବରୀ ।
ପ୍ରାନ୍ତର । ଭୁଇବର୍ଣ୍ଣ କେହୁ ସତ୍ୱର ।
କୋଟିବ୍ରହ୍ମାଣ୍ଡସୁନ୍ଦରୀର ହୋଇବ ନିରନ୍ତରେ ଏହୁ ବଗୁର ॥ ୨୯
କୁରଙ୍ଗରେ କର ସୁଧାଂଶୁ ଏ ବେନି ନାମ ଯୁକ୍ତ ନାମ ସୁମର ।
କହେ ଉପଇନ୍ଦ୍ର ଭଞ୍ଜ କବି ବୀରବର ପଦର ଯେ ମାଧୁରୀ ।
ଏ ଛାନ୍ଦେ । ଧ୍ୱନି କାକୁ-ଉକ୍ତି ରୂପକ ।
ଶ୍ଲେଷ ଲୁପ୍ତବର୍ଣ୍ଣ ଚ୍ୟୁତଦତ୍ତାକ୍ଷର ଅନ୍ତର୍ଲିପିକା ଆଦ ତର୍କ ॥ ୩୦

---

୨୮—ନୃପ ସୁତ କୃତ କୃତ୍ୟ ହୋଇ କର କୋରକତ (ଅଞ୍ଜଳି) କର ପଦକୁ ଘେନନ୍ତେ ସେ ବୁହେଁ ବଦ୍ୟାକୁ ଅଚର ପବମାନ (ପବନ) ପର ତ୍ୱରିତେ ଗମନ କଲେ ଏବଂ ମାଳମୀନଗରୀରେ ପ୍ରବେଶ କର ନାଗରୀରନୃରେଉଦନ୍ତ (ବାର୍ତ୍ତା) ଦେବାର ଗୁରୁରୀ ଯତ୍ନ ପୂର୍ବକ କହିଲେ ।

୨୯—ତାଠାରେ କୁମାରବର ଏହୁନାମ ସାର୍ଥକ ହୋଇଛି । ଏଣୁ ଏ ପଦକୁ ଅଚରଛି (ଅନ୍ତର୍ଲିପି) କୁ-ମାର-ବର ବର୍ଣ୍ଣେକ (ଏକବର୍ଣ୍ଣ କୁ-ପୃଥ୍ୱୀ) କୁ ପଲଙ୍କ କରିଛି (ତଳେ ଶୋଇଛି) ଧବା ଶର୍ବରୀରେ (ଧନ ରାତ୍ର) ଦ୍ୱିବର୍ଣ୍ଣ (ମାର) ଅତଙ୍କ (ଭୟ) ଜନ୍ମାଉଛି, କେହୁ (କାପର) ପ୍ରାନ୍ତର ଭୁଇବର୍ଣ୍ଣ (ଶେଷବର୍ଣ୍ଣ ଦ୍ୱୟ ବର) କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ହୋଇବ ନିରନ୍ତର ଏହୁ ବଗୁର କରୁଛି ।

୩୦—କୁରଙ୍ଗରେ ସୁଧାଂଶୁ ଏ ବେନି ନାମ (କୁରଙ୍ଗ—ରାମ, ସୁଧାଂଶୁ—ଚନ୍ଦ୍ର) ଯୁକ୍ତ କର (ରାମଚନ୍ଦ୍ର) ନାମ ସୁମର କବି ବୀରବର ଉପେନ୍ଦ୍ରଭଞ୍ଜ ପଦର ମାଧୁରୀ କହେ । ଏ ଛାନ୍ଦରେ ଧ୍ୱନି, କାକୁକ୍ତି ରୂପକ ଓ ଶ୍ଲେଷ, ଅଲଙ୍କାର ଓ ଲୁପ୍ତବର୍ଣ୍ଣ ଚ୍ୟୁତଦତ୍ତାକ୍ଷର, ଅନ୍ତର୍ଲିପିକା ପ୍ରଭୃତିର ତର୍କ (ବଗୁର) ହୋଇଅଛି ।

# ଚତୁର୍ବିଂଶ ଛାନ୍ଦ

ରାଗ—ଚନ୍ଦ୍ରାଭୈରବ




ନ ଉପାଯୀ ନାରୀ ଦ୍ୱାରତ । ତହୁଁ ହେବାରୁ ଅନ୍ତରହିତ ।
ମନ୍ତ୍ରର କଉତବେ କି ପ୍ରେମପତର ଦେଲେ ବିଚାରେ ଅନ୍ତର-
ଗତ ସେ ସୁନ୍ଦର ॥ ୧

ହେଲା ସେ ପତ୍ର ସୁଖସାଗର । ମଜ୍ଜିବାକୁ ନେତ୍ର ତତପର ।
ଖୋଜିବାକୁ ସ୍ନେହ ବାଣୀ ରତ୍ନମଣି ମନ ଉଦ୍ୟମ କଲା ପ୍ରଚୁର ସେ ॥ ୨
ସାର ରସିକ ଚନ୍ଦ୍ର ତା କର । ମୁଦ-କୁମୁଦ କଲା ବିସ୍ତାର ।
ସଂଶୟ-ତମକୁ ଦୂର କରି ଦେଇ ପ୍ରସନ୍ନତା ହାସେ ମନୋହର ସେ ॥ ୩
ବର୍ଣ୍ଣଭାରୁ ହାରଦ୍ର କାଗତ । ବର୍ଣ୍ଣ ମଞ୍ଜିଷ୍ଠାରଙ୍ଗେ ଲିଖିତ ।
ଅନୁରାଗସାର ପଦ୍ମରାଗବାର ରୁଚୁ ସୁବର୍ଣ୍ଣଭୂମିରେ ଜାତ ସେ ॥ ୪
ପଂକ୍ତି ଅବନ୍ଧଭାବକୁ ବନ୍ଧ । ପଦ ବିଶ୍ରାମନ୍ତେ ଫୁଲ୍ ଶୋହ ।
ହିଙ୍ଗୁଳେ ରଚି କି ସମ୍ମୋହନଶର ଫଳ ପଙ୍କଜେ ନିର୍ମିଶି ସେହୁ ସେ ॥ ୫

---

୧—ବେନି ଉପାଯୀନାରୀ ( ଉପାଧ୍ୟାୟୀ ଓ ଅବଧୂତୀ ) ତହୁଁ ଦ୍ୱାରତେ ଅନ୍ତର୍ହିତ ହେବାରୁ ସେ ସୁନ୍ଦର ରାଜପୁତ୍ର ମନ୍ତ୍ର କଉତବେ ( ଛଳରେ ) ପ୍ରେମପତ୍ର ଦେଲେ ବୋଲି ଅନ୍ତର୍ଗତରେ ବିଚାର କରେ ।

୨—ସେ ପତ୍ର ସୁଖ ସାଗର ହେଲା ତହିଁରେ ନେତ୍ର ମଜ୍ଜିବାକୁ ( ବୁଡ଼ିବାକୁ ) ତତ୍ପର ହେଲା, ମନ ସ୍ନେହ ବାଣୀ ରୂପକ ରତ୍ନମଣି ( ଶ୍ରେଷ୍ଠ ) ଖୋଜିବାକୁ ଉଦ୍ୟମ ପ୍ରଚୁର କଲା ।

୩—ସାର ( ଶ୍ରେଷ୍ଠ ) ରସିକ ଚନ୍ଦ୍ରହେଲେ, ତାହାଙ୍କର କର ରୂପ କର ( କିରଣ ) ମୁଦ ( ପତ୍ରରୂପକ ) କୁମୁଦ ( କଇଁ ) କୁ ବିସ୍ତାର କଲା ( ଫିଟାଇଲା, ଫୁଟାଇଲା ) ସଂଶୟରୂପ ତମ ( ଅନ୍ଧକାରକୁ ) ଦୂର କରି ଦେଇ ହାସରେ ମନୋହର ପ୍ରସନ୍ନତା ( ନିର୍ମଳାଲୋକ ) ଉପୁଜିଲା ।

୪—ନିଜ ଦେହ ବର୍ଣ୍ଣଭାବରୁ ହାରଦ୍ର ( ହଳଦିଆ ) କାଗଜରେ ମଞ୍ଜିଷ୍ଠାରଙ୍ଗରେ ଲିଖିତ ଅନୁରାଗ ସାର ( ସ୍ନେହ ପ୍ରକାଶ କରିବାରେ ପ୍ରଧାନ ) ବର୍ଣ୍ଣମାନ ସୁବର୍ଣ୍ଣଭୂମିରେ ଜାତ ପଦ୍ମରାଗ ବାର ( ପଦ୍ମରାଗ ମଣିସମୂହ ) ପରି ରୁଚୁଛି ( ମନୋହର ) ଦିଶୁଛି ।

ଗୃହିଁ ଏ ଭାବନାମାନ କଲା । ଅଙ୍ଗ ପୁଲକ ସଙ୍ଗ ହୋଇଲା ।
ଦର୍ଭହାସିନୀ ସନ୍ଦର୍ଭ-ଭାଷା ରସଗର୍ଭ ପଠନକୁ ଆରମ୍ଭିଲା ସେ ॥ ୬
ବାଳେ ଯୁବାବୃନ୍ଦପୁରନ୍ଦର । ଟୀକା ପ୍ରାପତରୁ ସୁରେଶ୍ୱର ।
ନେଲାତ ମୋ ପଦ ନ ପୁଣି ସମ୍ପଦ ହରେ ଏ ଦକେ ପୁଲକ ହୂର ସେ ॥ ୭
ଚନ୍ଦ୍ର ନାଗର ଗଣେ ଆପଣ । ପ୍ରତିବିମ୍ବ-ଧାରଣ ଦର୍ପଣ ।
ଯୋଗ୍ୟ ନୋହି ପୂର୍ଣ୍ଣଚନ୍ଦ୍ରମା କଳଙ୍କୀ ଭର ଅମାର୍ଜନ ବଶୁଁ ଜାଣ ହେ ॥ ୮
ବାଳେ ତନୁଶୋଭା ଅତିଶୟ । ତନୁ ଶୋଭା କନ୍ଦର୍ପ ଉଦୟ ।
ଗଉର ଶ୍ୟାମ କାନ୍ତିରୁ ଅନୁମାନ ତୁମ୍ଭେ ଦେହ ସେ ଗ୍ଳାଇ ନିଷ୍ଟୟ ହେ ॥ ୯
ହୋଇ ନୃପଜସଂସାର ସାର । ଜାତ କାରଣ ପ୍ରେମସୁଧାର ।
ଉପମା-ଉଦଧି ମନ୍ଥନ ମନ୍ଦର ବା ପୂଣ୍ୟଜନ ଦେବଙ୍କର ହେ ॥ ୧୦

---

୫—ପଂକ୍ତି ( ଧାଡ଼ି ) ଅବକ ( ସଳଖ ) ଭାବକୁ ବହୁଛି, ପଦ ବିଶ୍ରାମାନ୍ତେ ( ଶେଷରେ ) ଫୁଲ ( ଲେଖାଫୁଲ ବିଶେଷ ) ଶୋଭା ପାଉଛି, ରଙ୍ଗବର୍ଣ୍ଣ ଅକ୍ଷରଧାଡ଼ି କାମର ସଂମୋହନ ଶର ହିଙ୍ଗୁଳରେ ରଚିତ ଏବଂ ସେହି ଶରର ଫଳ ପଙ୍କଜେ ( ପଦ୍ମରେ ) ମିଶ୍ରିତ ହୋଇଛି କି ?

୬—ସେ ସୁନ୍ଦର ରାଜପୁତ୍ର ପତ୍ରକୁ ଗୃହିଁ ଏ ଭାବନା ମାନ କଲା, ତାହାର ଅଙ୍ଗ ପୁଲକ ସଙ୍ଗ (ରୋମାଞ୍ଚଯୁକ୍ତ ) ହେଲା । ସେ ଦର୍ଭହାସିନୀ ( କାଶହାସିନୀର ସନ୍ଦର୍ଭ ( ପ୍ରବନ୍ଧର ) ରସଗର୍ଭ ଭାଷା ପଠନକୁ ଆରମ୍ଭିଲା ।

୭—ହେ ବାଳେ । ତୁମ୍ଭେ ଯୁବାବୃନ୍ଦରେ ପୁରନ୍ଦର ( ଇନ୍ଦ୍ର ) ଟୀକା ପାପ୍ତ ହେବାରୁ, ସୁରେଶ୍ୱର ( ଇନ୍ଦ୍ର ) ମୋ ପଦତ ନେଲା, ପୁଣି ମୋ ସମ୍ପଦ ହରଣ ନ କରେ ଏ ଦକେ ( ଭୟରେ ) ନେତ୍ରରୁ ପଲକ ହୂର କରିଛି ( ଦେବତା ମାନଙ୍କର ପଲକ ପଡ଼େ ନାହିଁ )

୮—ଆପଣ ନାଗର-ଗଣରେ ଚନ୍ଦ୍ର ହେବାରୁ ପୂର୍ଣ୍ଣଚନ୍ଦ୍ର ଦର୍ପଣଯୋଗ୍ୟ ( ଆରସି ପରି ) ପ୍ରତିବିମ୍ବ ଧାରଣଯୋଗ୍ୟ ନୋହି ଅମାର୍ଜନା ବଶରୁ ଭର କଳଙ୍କୀ ( କଳଙ୍କଯୁକ୍ତ ) ହେଲା ।

୯—ହେ ବାଳେ । ତୁମ୍ଭର ତନୁ ( ଦେହ ) ଶୋଭା ଅତିଶୟ ଅଟେ, କନ୍ଦର୍ପ ଠାରେ ଶୋଭା ତନୁ ( ଅଳ୍ପ ) ଉଦୟ ହୋଇଛି । ତୁମର ଗୌର କାନ୍ତି କନ୍ଦର୍ପର ଶ୍ୟାମ କାନ୍ତିରୁ ଅନୁମାନ ଯେ ତୁମ୍ଭ ଦେହ ସେ ଗ୍ଳାଇ ଏହା ନିଶ୍ଚୟ ।

୧୦—ଆପଣ ନୃପଜ ସଂସାର ସାର ( ରାଜପୁତ୍ର ସୃଷ୍ଟିରେ ଶ୍ରେଷ୍ଠ ) ହୋଇ ଉପମା ରୂପ ଉଦଧି ( ସମୁଦ୍ର ) କୁ ମନ୍ଥନ କରିବାରେ ମନ୍ଦର ପର୍ବତ ସଦୃଶ ଓ ପ୍ରେମରୂପ ସୁଧା ( ଅମୃତ ) ର ଜାତ କରଣ ହୋଇଛି, ଏଣୁ ପୁଣ୍ୟଜନ (ରାକ୍ଷସ) ଓ ଦେବତା ମାନଙ୍କର ବନ୍ଦ୍ୟ (ପୂଜ୍ୟ) ଅଟ ।

ମହାମହ ପଣ୍ଡିତ ଏମନ୍ତେ । ଗଣିମାଛି ଗଣେଶ କେମନ୍ତେ ।
ଖଣ୍ଡିତ ହୋଇ ମଣ୍ଡିତ ଗଜମୁଣ୍ଡ ମୁହିଁ ଏହା ଭାବ ତାଙ୍କ ମତେ ହେ ॥ ୧୧

ବୀରଶ୍ରେଷ୍ଠ ମହାବଳବାନ । ଅଧ ବଶୃରେ ଅଧୋଭୁବନ ।
ସ୍ଥାନ କରି ଦେଲେ ବଳୀକି ବାମନ ସଦା ଲୁଚି ସେ ନେଉଛି ଧନ ହେ ॥ ୧୨

ଭାନୁ ଲକ୍ଷିବା କି ନ ଲକ୍ଷିବା । ତେଜ ସମେ କାହାକୁ ଗଣ୍ଡିବା ।
ଉଦୟ ଅସ୍ତ ଅଛି, ଦର୍ଶନେ ମୋହୁଛି ଯେନ ପଦ୍ମିନୀ ଅନୁସରିବା ହେ ॥ ୧୩

ଦାତାଗୁଣ ମାଳତୀ ବିକାଶ । ସଉରଭ ଦିଗନ୍ତେ ପ୍ରକାଶ ।
ମାର୍ଗଣ ଭ୍ରମରଗଣ ଅନୁଗତେ ଦାନ ମଧୁରେ ଲଭନ୍ତି ତୋଷ ହେ । ୧୪

କୀର୍ତ୍ତି-ସ୍ୱାତୀଜଳ-ପବନରେ । ମୁକ୍ତା ଜନ୍ମଇ ଶ୍ରୁତି ଶୁକ୍ତିରେ ।
ବାଣୀ ଯେ ତୁମ୍ଭ ବାଣିଜ୍ୟ ବ୍ୟତିରେକେ ଆନେ ନ ରସେ କଦାଚିତରେ ହେ ॥ ୧୫

---

୧୧—ଗଣେଶ ଏମନ୍ତ [ ଅପଣ୍ଡିଙ୍କପରି ) ମହାମହା ପଣ୍ଡିତ ବୋଲି କେମନ୍ତେ ଗଣିମାଛି, ଗଣେଶ ଏହାଙ୍କ ସଦ୍ଧୃଶ ପଣରେ ସେମାନ ନୋହିବାରୁ ଖଣ୍ଡିତ ହୋଇ ଗଜମୁଣ୍ଡରେ ମଣ୍ଡିତ ହୋଇଛନ୍ତି, ତାଙ୍କ ପକ୍ଷରେ ମୁଁ ଏହିକଥା ଭାବୁଛି ।

୧୨—ବୀରଶ୍ରେଷ୍ଠ ମହାବଳବାନ ବଳୀ ତୁମ୍ଭଠାରୁ ଅଧ ( ନିକୃଷ୍ଟ ) ହେବା ବିଶ୍ୱରରେ ବାମନ ବଳୀକି ଅଧୋଭୁବନ ( ପାତାଳରେ ) ସ୍ଥାନ କରି ଦେଲେ, ସେ ସେଠାରେ ଲୁଚିକରି ଧନ ନେଉଛି ।

୧୩—ତେଜ ସମେ ଭାନୁ ( ସୂର୍ଯ୍ୟ ) କୁ ଲକ୍ଷିବା, କି ନ ଲକ୍ଷିବା ଆଉ କାହାକୁ ଗଣ୍ଡିବା ସୂର୍ଯ୍ୟଙ୍କର ଉଦୟ ଅସ୍ତ ଅଛି, କିନ୍ତୁ ତୁମ୍ଭର ନାହିଁ । ସେ ସୂର୍ଯ୍ୟ ଦର୍ଶନେ ( ଦର୍ଶନ ଦେଇ ) ପଦ୍ମିନୀକି ମୋହୁଛି ଏ ଯେନ ଅମ୍ଭ ସଖି ପଦ୍ମିନୀର ତୁମ୍ଭଙ୍କୁ ଅନୁସରିବା ହୋଇଛି ।

୧୪—ମାଳତୀ ବିକାଶରେ ସୌରଭ ( ସୁଗନ୍ଧ ) ଦିଗନ୍ତରେ ପ୍ରକାଶ ପାଇଲା ପରି ତୁମର ଦାତା ଗୁଣ ଦିଗନ୍ତରେ ପ୍ରକାଶ ପାଉଛି । ଭ୍ରମରଗଣ ମାଳତୀ ପୁଷ୍ପର ମଧୁରେ ତୋଷଲଭ କଲାପରି ମାର୍ଗଣ (ଯାଚକ) ଗଣ ଅନୁଗତହୋଇ ଦାନରେ ସନ୍ତୋଷ ଲଭୁଛନ୍ତି ।

୧୫—ସ୍ୱାତୀ ଜଳ ପବନରେ ଶୁକ୍ତିରେ ( ଶାମୁକାରେ ) ମୁକ୍ତା ଜନ୍ମଇ ଏ ବାର୍ତ୍ତା ଶ୍ରୁତି (ବେଦରେ) ଅଛି । ତୁମ୍ଭ କୀର୍ତ୍ତିରୂପ ସ୍ୱାତୀଜଳ ପବନରେ ଅମ୍ଭ ସଖୀ ମୁକ୍ତା ( ମୋକ୍ଷପ୍ରାପ୍ତ ) ହେବା ନିମିତ୍ତ ତୁମ୍ଭ କୀର୍ତ୍ତି ବାଣିଜ୍ୟ ବ୍ୟତିରେକେ ଆନେ କଦାଚିତ ନ ରସଇ ।

ଘେନ ମୋହନ ପାଶରେ ଯାଇ । କେତେ ମନ ଥିବ ବନ୍ଦୀ ହୋଇ ।
କି ଭାଗ୍ୟବନ୍ତ ମନାଇ ତବ ଶତ୍ରୁ ଯେଣୁ ଉଦନ୍ତ ଦେଲା ଲେଖାଇ ହେ ॥ ୧୬
ହେଉ ପୀରତି କି ବଳାତ୍କାର । ଯେ ଲଭିଲା ସେ ପ୍ରେମପତ୍ରର ।
ତାହା ହାନିଲାଭ କାହାର ହୋଇବ ବିବେକରେ କରିବ ବିଗ୍ଭର ହେ ॥ ୧୭
ଭେଟେ ପ୍ରେଷିତ ଯେ ନେତ୍ର-ଦୂତୀ । ସଙ୍ଗେ ଲଭିଲା ସୁଖସମ୍ପତ୍ତି ।
ଉଜାଗର ରଙ୍ଗୁ ଜାଣି ତାପ ତୁଙ୍ଗୁ ଅଙ୍ଗୀକାର ପ୍ରଧାନ ଯୁବତୀ ହେ ॥ ୧୮
ତାରକର ପକ୍ଷପାତ ପାଇଁ । କୂଳେ ଭେଳା ପୁଣି ଭସିଯାଇ ।
ଏଥୁଁ ଚମତ୍କାର ଅଛି କି ବିଗ୍ଭର ଏବେ କିରୂପେ ହୋଇବ ଥାହ ହେ ॥ ୧୯
କୃପା-କଳ୍ପଦ୍ରୁମ ଯେ ବୋଲାଇ । ଅଗୋଚର ଫଳକୁ ନ ଦେଇ ।
ଅଣା କଲା ଜନ କର୍ମ ଅଦରଲେ ଏଥୁଁ ଆସିବ କେଉଁ ବଡ଼ାଇ ହେ ॥ ୨୦

---

୧୬—ହେ ମୋହନ ! ଘେନ ( ବିଗ୍ଭର ) ଅମ୍ଭ ସଖୀ ମନ ଯାଇ ତୁମ୍ଭପାଶରେ କେତେଦିନ ବନ୍ଦୀ ହୋଇ ରହିଥିବ । ଯେ ( ମନ ) ତବ ଶତ୍ରୁ ମନାଇ ତୁମ୍ଭହାତେ ଅଗ ଉଦନ୍ତ ପତ୍ର କାଢ଼ି ଲେଖାଇ ଦେଲା । ସେ ସାମାନ୍ୟ ଭାଗ୍ୟବନ୍ତ କି ?

୧୭—ପ୍ରୀତିରେ ହେଉ ବା ବଳପୂର୍ବକ ହେଉ ଯେ ସେ ପ୍ରେମପତ୍ରକୁ ଲଭିଲା ତାହାର ହାନି ବା ଲାଭ କାହାର ହୋଇବ ବିବେକରେ ଏହା ବିଗ୍ଭର କରିବ ।

୧୮—ଭେଟେ ( ସାକ୍ଷାତ ବେଳେ ) ଯେଉଁ ନେତ୍ର ରୂପ ଦୂତୀକି ପଠାଇଥିଲ ସେ ତୁମ୍ଭ ସଙ୍ଗରେ ରହି ସୁଖ ସମ୍ପତ୍ତିକୁ ଲାଭ କଲା । ସେ ନେତ୍ରରେ ଉଜାଗର ରଙ୍ଗରୁ ଏହା ଜାଣିଲୁଁ ( ସେ ନେତ୍ର ସର୍ବଦା ଉଜାଗର ଥିବାରୁ ତୁମ୍ଭ ସଙ୍ଗେ ରହି ଭୋଗ କରୁଥିବାର ଅମ୍ଭେ ଜାଣିଲୁଁ ), କିନ୍ତୁ ସେ ନେତ୍ର ଦୂତୀ ପ୍ରଧାନ ଯୁବତୀ ନୁହେ, ତୁମ୍ଭର ତାପ ( କାମପୀଡ଼ା ) ତୁଙ୍ଗୁ ( ପ୍ରବଳ ) ହୋଇଥିବାରୁ ତୁମ୍ଭେ ତା ପ୍ରୀତିକି ଅଙ୍ଗୀକାର କଲ ।

୧୯—ତାରକ ( ଉଦ୍ଧାର କର୍ତ୍ତା ) ପକ୍ଷପାତ କଲେ ଭେଳା କୂଳରେ ଲାଗିଥିଲେ ମଧ୍ୟ ପୁଣି ଭସିଯାଏ । ଏଥୁଁ ଅଧିକ ବିଗ୍ଭର ଚମତ୍କାର ଅଛି, ଏବେ ସୁନ୍ଦରୀ କିପରି ଥାହ ପାଇବ ।

୨୦—ଯେ କୃପା କଳ୍ପତରୁ ବୋଲାଇ ପ୍ରାର୍ଥୀର ବାଞ୍ଛା ଫଳକୁ ନ ଦିଅନ୍ତି, ଏତ ଅଗୋଚର ( ଅଜଣା କଥା ) । ଅଣା କରଥିବା ଲୋକ ଯେବେ କର୍ମକୁ ଆଦରେ ( ଅର୍ଥାତ୍ ମୋ କର୍ମରେ ନଥିବାରୁ ମିଳିଲା ନାହିଁ କହେ ) ତେବେ କଳ୍ପ ବୃକ୍ଷର ଏଥିରୁ ଅଉ କେଉଁ ଟେକ ଆସିବ ।

କରୁଣାର ରତ୍ନାକର ହୋଇ । ଯେହ୍ନ-କଳା-ରଙ୍ଗ-ରତ୍ନଦାୟୀ ।
କେବଳ ମଜ୍ଜିଲା ଜନ ଜରଜର କେବେ ତୃଷ୍ଣା ତୃଷା ନ ତୁଟଇ ହେ ॥ ୨୧
କର ଚରକ ସୁଶ୍ରୁତ ଭାବ । ନାନା ରସ ସଂଗ୍ରହର ଠାବ ।
ଅଭିଷକ ବ୍ୟାଧି ପ୍ରଦାନ ବିନାରେ ଅନୁଗତର କି ବିନାଶିବ ହେ ॥ ୨୨
ଯେ ବଜ୍ରାଙ୍ଗ ବିପୁରବିଜୟୀ । ପୁଷ୍ପକାଣ୍ଡରେ ଅତନୁ ତହିଁ ।
କି ଭେଦ କରିବ, ଅବଳା କୋମଳା ଗାତ୍ରେ ଅବଲମ୍ବେ ଗଳିଯାଇ ହେ ॥ ୨୩
ପ୍ରାଣ ତାଣ ହୋଇଛି କେବଳ । ମର୍ମସ୍ଥାନ ଯେ ହୃଦୟସ୍ଥଳ ।
ଅହେ ମୋହନ ତାହା ତୁମ୍ଭ ନିବାସ କରିଇଛି କେଉଁ ଭାଗ୍ୟବଳ ହେ ॥ ୨୪
ତେବେ କଦର୍ଥିତ ସିନା ଅତ । କରତରେ କାଟି ହେବା ସ୍ଥିତ ।
ପ୍ରଭୁ କଲଠାରେ ପରେ ପରାଭବ ପାଇବାର କାହାକୁ ଅକୀର୍ତ୍ତି ହେ ॥ ୨୫

---

୨୧—ଯେଉଁ କରୁଣାର ( ଦୟାର ) ରତ୍ନାକର ସେ କଳା ରଙ୍ଗ ରତ୍ନର ଦାୟୀ ( ଦାଗ ) ନୁହେ କି ? ତେବେ ତୁମ୍ଭେ କାହିଁକି କଳାରଙ୍ଗ ( କାମ କେଳି ) ରୂପ ରତ୍ନଦାୟୀ ହେଉ ନାହିଁ । ତୁମ୍ଭଠାରେ ମଜ୍ଜିଲା ଜନ କେବଳ ରସରେ ଜର୍ଜର ହୁଅଇ, କେବେ ତାହାର ତୃଷ୍ଣା ( ଅଶା ରୂପ ) ତୃଷା ନ ତୁଟଇ ।

୨୨—ତୁମ୍ଭେ କେବଳ ଚରକ ସୁଶ୍ରୁତ ( ବୈଦ୍ୟ ଶାସ୍ତ୍ର ) ର ଭାବ ( ଅର୍ଥ ) କରି ନାନାରସ ( ରସାୟନ ଔଷଧ ) ବିଷୟ ସଂଗ୍ରହର ଠାବ ହୋଇଛ । ପକ୍ଷା-ନ୍ତରେ—ତୁମ୍ଭେ ଚରମାନଙ୍କ ନାନାପ୍ରକାର ଅର୍ଥ ଶୁଣି କରି ନାନାରସ ( ଶୃଙ୍ଗାର ରସ ) ବିଷୟ ସଂଗ୍ରହ କରୁଅଛ । କିନ୍ତୁ ଯେଉଁ ବ୍ୟାଧି ଅଭିଷକ ( ବୈଦ୍ୟ ଶାସ୍ତ୍ରରେ ନାହିଁ-କାମ ବ୍ୟାଧି ) ଅନୁଗତ ଲୋକର ସେହିବ୍ୟାଧିକୁ ବିନା ରସ ( ଶୃଙ୍ଗାରରସ ) ରୂପ ଔଷଧ ଦାନରେ ନାଶ କରି ପାରିବ କି ?

୨୩—ଯେ ( ତୁମ୍ଭେ ) ବଜ୍ରାଙ୍ଗ ( ବଜ୍ରପରି କର୍କଶ ଶରୀର ) ଏବଂ ତ୍ରିପୁର ବିଜୟୀ ( ତ୍ରିପୁର ଜେତା ) ବୀର ତହିଁ ( ତୁମ୍ଭଠାରେ ) ଅତନୁ ( ଯାହାର ଶରୀର ନାହିଁ ସେ କାମ ) ପୁଷ୍ପ କାଣ୍ଡରେ ( ଫୁଲବାଣରେ ) ଭେଦ କରି ପାରିବ କି ? କିନ୍ତୁ ଆମ୍ଭ ସଖୀ ଅବଳା, ପୁଣି କୋମଳାଙ୍ଗୀ, ତାହାର ଶରୀରରେ ଶର ଅବଲମ୍ବେ ଗଳିଯାଉଅଛି । ଗାତ୍ର ( ଶରୀର ) ।

୨୪—ଅହେ ମୋହନ, କେଉଁ ଭାଗ୍ୟ ବଳରୁ କେବଳ ତାହାର ମର୍ମସ୍ଥାନ ହୃଦୟ ସ୍ଥଳକୁ ତୁମ୍ଭର ନିବାସ ସ୍ଥଳ କରିଥିବାରୁ ପ୍ରାଣରକ୍ଷା ହୋଇଛି ।

୨୫—ତେବେ କରତରେ କାଟି ହେଲାପରି ଅତ୍ୟନ୍ତ କଦର୍ଥିତ ହେବ ସିନା, ଯାହାକୁ ପ୍ରଭୁକଲେ ତାହାଠାରୁ ପରେ ପରାଭବ ପାଇଲେ ସେ ଅକୀର୍ତ୍ତି ଆଉ କାହାକୁ ହେବ ।

ପ୍ରୀତ ହୋଇ ଯେ କାଷ୍ଠା ସେ ଜଳ । ଜନ୍ତି ଜନମ ସିନା ଅନଳ ।
ଜଣାଏ ପରଶ ବିନା ଦରଶନେ କେବେ ତରି ନ ପାରେ ଶୀତଳ ହେ ॥ ୨୬
ଏଣୁ ବିରହ ଅନଳ ସରି । ଯୁବା ଯୁବତୀ ଗିରି ବଲ୍ଲରୀ ।
କାହିଁରେ ସଞ୍ଚରି କାହା ଭସ୍ମ କରି କାଣ୍ଡେ ମୀତକୁ ସମସ୍ତେ ମାରି ହେ ॥ ୨୭
ଯାହା ସୁମୀତ ସୁମୀତସୁତ । ପୁର ପର୍ଯ୍ୟନ୍ତେ କୀର୍ତ୍ତି ବ୍ୟାପିତ ।
ସିଦ୍ଧି କଲ୍ପ ଜନ ସିଦ୍ଧିକି କରିବ ତାଙ୍କ୍ଷ ବିନୟ କରି ରଚିତ ହେ ॥ ୨୮
ଏକେ କ୍ଷମାନିଧି ଦ୍ୱିଜେ ଗୁଣୀ । ପୁଣି ରସିକ ମୁକୁଟମଣି ।
ଲେଶ କଥାକୁ ବିଶେଷରେ ଘେନିଲେ ବ୍ୟର୍ଥ ନୋହିବ ବାଳଶ ବାଣୀ ହେ ॥ ୨୯
ଦ୍ରବି ପଡ଼ି ଉଦନ୍ତ-ଉତ୍ତର । ସ୍ରବି ନେତ୍ର ସେ ନାଗରବର ।
ମିତ୍ରଯୁଗଳଙ୍କୁ କହେ ଏ କବଚ ହେଲ ମଧୁର ଭାବମନ୍ଦର ହେ । ସୁପାତ୍ର ॥ ୩୦

---

୨୬—କାଷ୍ଠା ( କାଷ୍ଠଦ୍ୱ ) ଯାହା ପ୍ରୀତ ତାହା ଜଳ, ଜନ୍ତି ସିନା ଅନଳର ଜନ୍ମ ( ସମୁଦ୍ରରୁ ବାଡ଼ବାନଳର ଓ ମେଘରୁ ବିଜୁଳିର ଜନ୍ମ ) ଏହା ଜଣାଅଛି, ବିନା ସ୍ପର୍ଶରେ କେବଳ ଦର୍ଶନରେ ଜଳ ଅଗ୍ନିକୁ ଶୀତଳ କରି ନ ପାରେ ।

୨୭—ଏଣୁ ବିରହ ଅନଳ ସମାନ; ଯୁବା ଗିରି (ପର୍ବତ ) ଯୁବତୀ ବଲ୍ଲରୀ (ଲତା) ସେ ଅଗ୍ନି କାହିଁରେ ସଞ୍ଚାର କରି କାହାକୁ ମାରେ ( ଅର୍ଥାତ୍ ପର୍ବତରୁ ଜନ୍ମି ଲତାକୁ ଭସ୍ମ କରେ ) ଅତଏବ ସମସ୍ତେ ମୀତକୁ ମାରନ୍ତି ଏହା ପ୍ରମାଣ ।

୨୮—ଯାହାର ସୁମୀତ ( ସଦାଗୃହ ) ସୁମୀତ-ସୁତ ପୁର ( ଧ୍ରୁବ ମଣ୍ଡଳ ) ପର୍ଯ୍ୟନ୍ତ ବ୍ୟାପିତ ହୋଇଅଛି, ଏମନ୍ତ ସିଦ୍ଧ ( ପ୍ରସିଦ୍ଧିକି ) ଲଭ କରିଥିବା ଲୋକ ଅବଶ୍ୟ କାମନା ସିଦ୍ଧି କରିବ, ଅତଏବ ତାଙ୍କୁ ବିନୟ ରଚିତ କରିବାକୁ ହେଲା ।

୨୯—ଏକେ ଆପଣ କ୍ଷମାନିଧି ଦ୍ୱିଜେ ( ଦ୍ୱିତୀୟରେ ) ଗୁଣୀ, ପୁଣି ରସିକ ମାନଙ୍କ ମଧ୍ୟରେ ମୁକୁଟମଣି ( ଶ୍ରେଷ୍ଠ ) ଏହି ଲେଶ କଥାକୁ ବିଶେଷ କରି ଘେନିଲେ ବାଳଶ ( ମୂର୍ଖ ) ର ବାଣୀ ବ୍ୟର୍ଥ ହେବନାହିଁ ।

୩୦—ସେ ନାଗରବର ଉଦନ୍ତ ଉତ୍ତର ପାଇ ଦ୍ରବି ପଡ଼ିବାରୁ ( ତରଳି ଯିବାରୁ ) ତାହାଙ୍କର ନେତ୍ର ସ୍ରବିଲା ( ଚକ୍ଷୁରୁ ଲୋତକ ବହିଲା )। ତତ୍ପରେ ସେ ମିତ୍ର ଯୁଗଳଙ୍କୁ କହିଲେ ହେ ସୁପାତ୍ର । ମଧୁର ଭାବ ମନ୍ଦର ଏ ଉତ୍ତର ମୋହର କବଚ (ସାଞ୍ଜୁ) ହେଲା, ଅର୍ଥାତ୍ ଶରୀରକୁ ଏଣିକି କାମଶର ଭେଦ କରି ପାରିବ ନାହିଁ ) ।

ଶୁଭେ ସଖୀବଚନ ପ୍ରକାର । ପ୍ରତେ ହୋଏ ଏ ରସିକାଗିର ।
ପଦକେ ପଦକେ କେହ୍ନ ସ୍ଥାନ ହେବ ହୃଦ ଗୋଟାଏ ସିନା ମୋହର ॥ ୩୧
ଏହିକାଳେ ଚର୍କୀକୃତ ରୂପ । କର ପଞ୍ଚେଷୁ ପ୍ରହାରେ ରୋପ ।
ଦେଖୁଁ ଦେଖୁଁ ଜାତ ସାତ୍ତ୍ୱିକ ବିକାର ଦୁଃଖ ସୁଖ ନୋହିଲା ସଂକ୍ଷେପ. କୋବିଦେ ॥ ୩୨
ଯାରେ କୋପ ମକର କେତନ । ତାର ରକ୍ଷା ହେବ କାହିଁ ସ୍ଥାନ ।
ହରିତ-ଅମ୍ବର ସେହି ନୀଳକଣ୍ଠ ନୃପ ନନ୍ଦନ କରଇ ଧ୍ୟାନ ହେ । କୋବିଦେ ॥ ୩୩

---

## ପଞ୍ଚିଂଶ ଛାନ୍ଦ

ରାଗ—ଚନ୍ଦ୍ରାଦେଶାକ୍ଷ, କାଫିକାମୋଦୀ, ମାଳବଗୌଡ଼ ।

ଅସାର ସଘନ କାଳ ହୋଇ ଉଦୟ ।
ଅସିତ ପରବଳରୁ ଦରଶମୟ ॥ ୧
ସ୍ତନିତ ହିଁ ସ୍ଫୁଟେ କଳକଣ୍ଠ ସନ୍ତୁତ । ଅଚିରପ୍ରଭା ହିଁ ତାର ଦଶେ ଦଶେତ ॥ ୨

---

୩୧—ସଖୀ ବଚନପରି ଶୁଭୁଛି, ରସିକାର ବାଣୀପରି ପ୍ରତେ ହେଉଛି,, ପଦକେ (ଗୋଟିଏ ପଦରେ) ପଦକେ (ଗୋଟିଏ ଅଳଙ୍କାର) କାପରି ସ୍ଥାନ ହେବ, ମୋହର ଗୋଟିଏ ସିନା ହୃଦୟ ।

୩୨—ଏହି ସମୟରେ ପଞ୍ଚେଷୁ (କାମ) ରୂପ (ଧନୁକୁ) ଚର୍କୀକୃତ କରି (ଓଟାରି) ରୋପ ଗୁଣଦେଇ ପ୍ରହାରିଲା, ଦେଖୁଁ ୨ ସାତ୍ତ୍ୱିକ ବିକାର ଦୁଃଖ ସୁଖ ଜାତ ହେଲା, ହେ କୋବିଦେ । (ପଣ୍ଡିତମାନେ) ତାହା ସଂକ୍ଷେପ (ଅଳ୍ପ) ନୋହିଲା ।

୩୩—ମକର କେତନ (କାମ) ଯାହାଠାରେ କୋପ କରିବେ ତାହାର କେଉଁ-ଠାରେ ରକ୍ଷାହେବ । ହେ କୋବିଦେ, ହରିତ ଅମ୍ବର (ହଳଦିଆ ଲୁଗା) ଧାରୀ ଶ୍ରୀକୃଷ୍ଣଙ୍କୁ ନୀଳକଣ୍ଠ ରାଜାସୁତ କବି ଉପେନ୍ଦ୍ର ଭଞ୍ଜ ଧ୍ୟାନ କରେ ।

---

ଏ ଛାନ୍ଦରେ ପ୍ରଥମ ରାଗଚନ୍ଦ୍ରାଦେଶାକ୍ଷ, ବର୍ଷାକାଳ ଅର୍ଥ, ପ୍ରତ୍ୟେକ ପଦରୁ ଗୋଟିଏ ୨ ଅକ୍ଷର କାଟିଲେ ୨ୟରାଗ କାଫିକାମୋଦ ଶୀତକାଳଅର୍ଥ ପୁଣି ଆଉ ଏକ ଏକ ଅକ୍ଷର କାଟିଦେଲେ ରାଗମାଳବଗୌଡ଼ ଗ୍ରୀଷ୍ମକାଳ ଅର୍ଥ ।

୧।୨—ଅସାର (ଧାରାପାତ) ସଘନ (ନିବିଡ଼) ହେବାର କାଳ (ବର୍ଷାକାଳ) ଉଦୟ ହୋଇ ଅସିତ (କୃଷ୍ଣବର୍ଣ୍ଣ) ପ୍ରବଳ ହେବାରୁ ଦରଶମୟ (ଦର୍ଶ-ଅମାବାସ୍ୟା ପରି ଅନ୍ଧକାରମୟ) ହେଲା । ସ୍ତନିତ (ମେଘ ଗର୍ଜନ)ହିଁ (କଣ୍ଠସ୍ଥ)

କେକୀର ସଙ୍ଗୀତରେ କାମୁକ ଉଲ୍ଲାସ । ଧରମଣି ଅଚ୍ଛାଦନେ ଘନ ବିଳାସ ॥ ୩
ନୀପବନ ସୁଖ ଦାନକର ରଭସେ । ସ୍ତୋକରଟ ମସୃଣ ଯେ ଝିଲ୍ଲିକା ବଶେ ॥ ୪
ସେ ଅହି ମକର ହର ଶତ୍ରୁ ମୋହିଲା । ନଦୀ ବଶ ସଲିଳେ ଅଧିକ ହୋଇଲା ॥ ୫
ମୀଡ଼ ରଚିତ କାମରେ ବିଯୋଗୀ ଶଙ୍କି । ଘେନି ହା ରବ ରଟେ ଯେ ଆସି ବିପକ୍ଷ ॥୬

ସ୍ଫୁଟ ( ପ୍ରକାଶ ) ପାଇଲା । କଳକଣ୍ଠ ( ମୟୂରମାନେ ) ସରୁତ ( ଶବ୍ଦ-ସହିତ ) ହେଲେ, ଦଶେ ( ଦିଗମାନଙ୍କରେ ) ଅଚିର ପ୍ରଭା ( ବିଜୁଳି ) ତାର ( ଉଜ୍ଜ୍ୱଳ ) ଦିଶିଲେ ।

ସାରସ-ଘନ ( ସାରସଘ୍ନ—ପଦ୍ମନାଶକ ) କାଳ ( ଶୀତକାଳ ) ଉଦୟ ହୋଇ ଶୀତ ପ୍ରବଳରୁ କୁହୁଡ଼ିରେ ଦର ( ଶଙ୍ଖ ) ପ୍ରାୟ ଶୁକ୍ଳ ସମୟ ହେଲା । ନୀତ ( ତଗରପାଦପୁଷ୍ପ ) ସ୍ଫୁଟ ହେଲା କଳକଣ୍ଠ ( ଶୁକ୍ଳ ) ସରୁତ ( ଧ୍ୱନିଯୁକ୍ତ ) ହେଲେ । ତାର ( ନକ୍ଷତ୍ର-ମାନେ ) ଶରପ୍ରଭା ( ସ୍ଥାୟିଶୋଭା ) ଧରେ ଦଶେ ଦିଶିଲେ ।

ନସଘ୍ନ (ଜଳନାଶକ) କାଳ ( ଗ୍ରୀଷ୍ମକାଳ ) ଉଦୟ ହୋଇ ତପର (ଗ୍ରୀଷ୍ମର) ବଳରୁ ଦର ( ଭୟର ) ସମୟ ହେଲା । ତହିଁ ( ସେ ସମୟରେ ) ସରୁତ ( ରବଯୁକ୍ତ ) କଳକଣ୍ଠ ( କୋକିଳ ) ମାନେ ସ୍ଫୁଟ (ପ୍ରକାଶିତ) ହେଲେ । ଦଶେ ( ଦିଗସ୍ଥ ପର୍ବତମାନଙ୍କରେ ) ର ( ଅଗ୍ନି ) ପ୍ରଭା ତାର ( ଉଜ୍ଜ୍ୱଳ ) ଦିଶିଲା ।

୩।୪—କେକୀ ( ମୟୂର )ର ସଙ୍ଗୀତରେ କାମୀ ପୁରୁଷମାନେ ଉଲ୍ଲସିତ ହେଲେ । ଘନ ( ମେଘ ) ଧରମଣି ( ପର୍ବତଶ୍ରେଷ୍ଠ ସବୁକୁ) ଅଚ୍ଛାଦନ ( ଘୋଡ଼ାଇ ) ବିଳାସ କଲେ । ନୀପବନ ( କଦମ୍ବବନ ) ଫୁଲଫୁଟି ରଭସେ ( ଶୀଘ୍ର ) ସୁଖଦାନ କାରକ ହେଲେ । ସ୍ତୋକରଟ [ ଗୃତକଧ୍ୱନି ] ମସୃଣ ( ମଧୁର ) ହେଲା । ଝିଲ୍ଲିକା [ ଖଦ୍ୟୋତମାନେ ] ବୃକ୍ଷରେ ବସିଲେ । କୀର (ଶୁକର) ପୂର୍ବବତ୍ ରସିକମାନେ ରମଣୀକୁ ଘେନି ବସ୍ତ୍ର ଅଚ୍ଛାଦନରେ ( ଶୀତପ୍ରଭା-ବରୁ ) ଘନ (ନିବଡ଼ )ଭାବେ ବିଳାସ କଲେ । ପବନ [ ଶୀତଳବାୟୁ ] ରଭସେ ସୁଖ ଦାନକରେ [ଖଣ୍ଡନକାରୀ ହେଲା । କରଟ [ କାକମାନେ ] ଝିଲ୍ଲିକା [ ଝିଲ୍ଲିକ ] ବଶରେ ମସୃଣ [ ଶକ୍ତକଣ୍ଠ ] ଦିଶିଲେ । ରସଙ୍ଗୀତରେ [ ରସ-ଗୀତରେ ) କାମୁକମାନେ ଉଲ୍ଲସିତ ହେଲେ, ଘନ [ ଅଧିକରୂପେ ] ମଣି ଅଚ୍ଛାଦନରେ ( ଶୀତଳ ରତ୍ନହାର ଭୂଷଣରେ ] ବିଳାସ କଲେ । ବନ ବିହାର ରଭସେ ସୁଖଦାନ କାରକ ହେଲା । ଝିଲ୍ଲିକାବଶେ [ ଝଙ୍କାର-ଯୋଗରେ ] ଗୃହଅଡ଼େ ରଟ [ ଧ୍ୱନି ] ମସୃଣ [ ମଧୁର ] ହେଲା ।

୫।୬—ସେ ବର୍ଷାକାଳ ଅହି [ସର୍ପ] ମକର ( ମଗର ) ଏବଂ ହର ( ଭେକ') ମାନଙ୍କର ଶତ୍ରୁକୁ ମୋହିଲା । ନଦୀ ଅଧିକ ସଲିଳେ [ ଜଳଜଳ ବଶହେଲା

ବୀରତରୁ ଗୃରୁ ଫୁଲସରେ ମଣ୍ଡନ । ଦମ୍ପତ ରସକାରକ ବିଦେଶୀ ଛନ୍ଦ ॥ ୭
ଅଶନିପାତ ପରି ସେ ଏକା ଗୋତ୍ରରେ । ସୁମନ୍ଦପାହୃତ ପାନ୍ଥ ଭୀରୁ ବଗୃରେ ॥୮

ପକ୍ଷିମାନଙ୍କ ଦ୍ୱାରି ନୀଡ଼ [ ବସା ] ରଚିତ ହେଲା । ବିଯୋଗୀ [ ବିରହି-ମାନେ] କାମରେ ଶଙ୍କିଲେ, ପବନରେ ଯେ ବିଷ [ଜଳର] ଅଂଶ ଉଡ଼ି ଆସିଲା ସେ ର [ଅଗ୍ନି] କି ? ଏମନ୍ତ ଘେନି ବିରହିମାନେ ହାହାରବ କଲେ । ଅହ୍ନିମକର [ ସୂର୍ଯ୍ୟଙ୍କର ] ହର [ କିରଣ ] ଚିତ୍ତକୁ ମୋହିଲା । ଦିବସ ସଲିଳେ ଅଧିକ ସୁଖକର ହେଲା, ବିଯୋଗିମାନେ ଚିତ୍ତରେ କାମରେ ଚଳେ ଡର [ ଭୟ ] ପାଇବାରୁ ସେ କପୋଳ ଯେ ନୀହାର [କାକର] ବରଷଇ ତାକୁ ଦେଖି ଏ ବିଷ ଘୋଟି ଆସଇ କି ? ଏହା ଭାବି ଶଙ୍କିଲେ [ ଶଙ୍କାକଲେ ]

ହିମକର [ ଚନ୍ଦ୍ରଙ୍କର ] ହର [କିରଣ] ଚିତ୍ତକୁ ମୋହିଲା, ଚିତ୍ତ ସଲିଳେ [ ଜଳରେ ] ଅଧିକ ବଶ ହେଲା । ବିଯୋଗିମାନେ କାମରେ ରଚିତ [କାମକୃତ] ପୀଡ଼ାରେ ଶଙ୍କିଲେ । ସେମାନେ ହାରବକୁ ଏ ଅଶୀବିଷ-[ ସର୍ପ ] ବୋଲି ମଣିଲେ ।

୭।୮—ବୀରତରୁ [ ଅର୍ଜୁନବୃକ୍ଷ ] ଗୃରୁ [ ମନୋହର ] ଫୁଲରେ ସରେ [ ଶେଷ-ପର୍ଯ୍ୟନ୍ତ ] ମଣ୍ଡିତ ହେଲା । ସେ କାଳ ଦମ୍ପତ [ ସ୍ତ୍ରୀ ପୁରୁଷ ] ଙ୍କ ପକ୍ଷରେ ରସକାରକ ହେଲା । ବିଦେଶିକି ଛନ୍ଦ କଲା । ଅଶନିପାତ [ ବଜ୍ରପତନ ] ପରି ସେ [ ପୀଡ଼ାକୁ ] ଏକା ଗୋତ୍ରରେ [ ପର୍ବତକୁ ] ଦେଲା । ପାନ୍ଥମାନେ ଭୀରୁହୋଇ ବଜ୍ର ଭୟରୁ ରକ୍ଷା ପାଇବା ପାଇଁ ସୁମନ୍ଦ ପାହି [ରକ୍ଷାକର] ବୋଲି ବାର ବାର କହିଲେ ।

ରତି-ରୁଗୃରୁ [ ସମ୍ଭୋଗ ଇଚ୍ଛାରୁ] ଫୁଲଶରେ ମଣ୍ଡନ [କାମୁକ] ଧୂର୍ତମାନଙ୍କ ପକ୍ଷରେ ସେ କାଳ ରସ କାରକ ହେଲା ସେ ବିଦେଶୀମାନଙ୍କୁ ସନ୍ନିପାତ ରୋଗପରି ଛନ୍ଦ [ ଉଚ୍ଛନ୍ନ ] କରାଇଲା ପାନ୍ଥମାନେ ଏକା [ ବିଯୋଗୀ ] ହୋଇ ଗୋତ୍ରରେ [ପଥରେ] ବିଗୃରିଲେ ଏ କଷ୍ଟରୁ ଭୀରୁ [ ସ୍ତ୍ରୀ ] ମନ୍ଦପରି ପା [ ରକ୍ଷା କରିବାକୁ ] ହିତ ଅଟେ ।

ତରୁମାନେ ନବ ପତ୍ର ପୁଷ୍ପରେ ଗୃରୁ [ ସୁନ୍ଦର ] ହେଲେ, ସରେ [ ପୁଷ୍କ-ରିଣୀ ସବୁ ] ଶୀତ କାଳରେ ନଷ୍ଟହୋଇ ଯାଇଥିବା ପଦ୍ମାଦି ଫୁଲରେ ମଣ୍ଡିତ ହେଲେ । ସେ କାଳରେ ବିଦେଶିମାନେ ନିପାତ ( ମରଣ ) ହେବ ପରି ଭାବ ଛନ୍ଦ ହୋଇ କାଳର ତିରସ୍କାରକ ହେଲେ, ପାନ୍ଥ ଭୀରୁ [ପଥିକ ସ୍ତ୍ରୀ ମାନେ ] ବିଗୃରିଲେ—ଏକାଳରେ ଏକା ( ବିରହିଣୀ ) ହୋଇ ଗୋତ୍ରରେ ( କୁଳରେ ) ରହିବାକୁ ନପା [ ଲଜ୍ଜା] ଏକା ହିତ ହେଲା ।

କାଶ ସୁରଭି ସୁମନା ପ୍ରକାଶ ହୋଇ । ମଧୁପ ରମ ରୋଚକ ନିବାସ ତହିଁ । ୯
ଫଣାରଙ୍ଗ ସ୍ଥାନେ ସ୍ଥାନେ ହେଲା ମଞ୍ଜୁଳ । ଦୁର୍ଦ୍ଦିନବରେ ଅବ ରତରେ ରଞ୍ଜିଳ । ୧୦
ଘନକୁଣ୍ଡଳକୁ ଝଟିତରେ ପ୍ରକାଶେ । ଧନୀବାର ଭଦ୍ର ଶ୍ରୀଯୁକ୍ତ ପରଶେ । ୧୧

---

୯—କାଶ [ କାଇଁଶ ପୁଷ୍ପ ] ସୁରଭି [ କଦମ୍ବପୁଷ୍ପ ] ସୁମନା [ ମାଳତୀ ପୁଷ୍ପ ] ପ୍ରକାଶ ପାଇଲେ ତହିଁରେ ପରମ ରୋଚକ [ ରୁଚିକର ] ମଧୁ ( ମହୁର ) ନିବାସ ହେଲା ।

ସୁରଭି [ ସୁଗନ୍ଧ ଯୁକ୍ତ ] ସୁମନା [ ଜାତିପୁଷ୍ପ ] ପ୍ରକାଶ ହୋଇ ( ଫୁଟିଲା ) ତହିଁ ( ସେ କାଳେ ) ନିବାସ ( ଗୃହ ) ରମ ( ଆନନ୍ଦ ଜନକ ) ଧୂପରେ ରୋଚକ ( ରୁଚିକର ) ହେଲା ।

ସୁରଭି ସୁମନା ( ସୁଗନ୍ଧ ପୁଷ୍ପମାନେ ) ଫୁଟିଲେ, ତହିଁ ( ପୁଷ୍ପିତ ବୃକ୍ଷମାନ ଥିବାସ୍ଥଳେ ) ନିବାସ କରିବାକୁ ପରମ ରୋଚକ ( ଅତ୍ୟନ୍ତ ରୁଚିକର ) ହେଲା ।

୧୦—ସ୍ଥାନେ ସ୍ଥାନେ ଫଣାରଙ୍ଗ ( ଖେଳ ) ମଞ୍ଜୁଳ ହେଲା, ଦୁର୍ଦ୍ଦିନରେ ( ମେଘାଚ୍ଛନ୍ନଦିନରେ ) ଅବ ( ମେଷ ) ଗୋଷ୍ଠରେ ବନ୍ଧିବାରୁ ରତରେ ( ଶୃଙ୍ଗାରରେ ) ରଞ୍ଜିଳ ହେଲା ।

ସାରଙ୍ଗ ( ହଂସମାନଙ୍କର ) କ୍ରୀଡା ସ୍ଥାନେ ସ୍ଥାନେ ମଞ୍ଜୁଳ ହେଲା, ଦୀନବରେ [ ଅତି ଦରିଦ୍ରମାନେ ] ଶୀତରେ ଅବରତରେ ( ସର୍ବଦା ) ରଞ୍ଜିଳ ହେଲେ ( କମ୍ପିଲେ )

ରଙ୍ଗ ନୃତ୍ୟାଦି ସ୍ଥାନେ ସ୍ଥାନେ ମଞ୍ଜୁଳ ହେଲା, ନବରେ ( ନଗରମାନଙ୍କରେ ) ଲୋକେ ଅବିର ଖେଳିବା ରତରେ [ ଗତରେ ] ରଞ୍ଜିଳ ହେଲେ ।

୧୧—ସେ କାଳ ଘନ କୁଣଢାକୁ [ କୁଅ ପଥରକୁ ] ଝଟିତରେ ପ୍ରକାଶ କରେ । ଧନୀବାର [ ଧନୀ ଶ୍ରେଷ୍ଠ ମାନେ ] ଶ୍ରୀଯୁକ୍ତ ( ସମ୍ପତ୍ତିଶାଳୀ ) ହୋଇ ଥିବାରୁ ସେ କାଳରେ ଭଦ୍ର ( ମଙ୍ଗଳକୁ ) ସ୍ପର୍ଶିଲେ ।

କୁଜଝଟିତରେ ( କୁହୁଡ଼ି ଗତରେ ) ଦୃଶ୍ୟତ ନ ପ୍ରକାଶେ [ ଦର୍ଶନୀୟ ପଦାର୍ଥ ଦେଖାଗଲା ନାହିଁ ] ଭଦ୍ର ଲୋକମାନେ ନୀଶାର ( ଶୀତବସ୍ତ୍ର ) ପରସେ [ ସ୍ପର୍ଶଦାନରେ ] ଶ୍ରୀଯୁକ୍ତ [ ଶୋଭାବନ୍ତ ] ହେଲେ ।

ଗ୍ରୀଷ୍ମକାଳ ଅଗ୍ନି ଦ୍ୱାରା ଦୁଃଗତ ( ପ୍ରସ୍ତର—ପର୍ବତକୁ ) ଝଟିତରେ ପ୍ରକାଶ କଲା । ଶ୍ରୀଯୁକ୍ତ ( ଧନବନ୍ତମାନେ ) ସାର ( ଉତ୍ତମ ) ଭଦ୍ରଶ୍ରୀ [ ଶ୍ୱେତ ଚନ୍ଦନ ] ପରଶେ ( ବୋଳିହେଲେ ) ।

ସ୍ୱସଂକେତକୀ ବହେ ଉତ୍‌ଫୁଲ୍ଲ ପୁଲକ । ବଧୂ୍ୟସହକାର ଯେ ଭ୍ରମରେ ମେଳକ ॥ ୧୨
ଅଭୟେ କାଳକଣ୍ଟକ ଦଳେ ବିରହୀ । ବାମାନିଅଳୀ ଯେ କାନ୍ତେ ସୁମନ ବହି ॥ ୧୩
ଭେକୀ ତବ ସ୍ଫୁଟ ଘନେ ହରେ ସୁଚିତ୍ତ । କଙ୍କ କେଳି ପ୍ରକଟ ହେଲା ବହୁତ ॥ ୧୪

୧୨—ସ୍ୱ ସଂକେତକୀ ( ସଂଯୋଗିମାନେ ) ଉତ୍‌ଫୁଲ୍ଲ ହୋଇ ପୁଲକ ( ରୋମାଞ୍ଚକୁ ) ବହିଲେ । ଭ୍ରମରେ ( କାମୁକ ମାନେ ) ବଧୂ୍ୟ ସହାର ( ବିକୁଳ ସହିତ ) ମେଘକୁ ଦେଖି ମେଳକ ( ସ୍ତ୍ରୀ ସହିତ ମିଳିତ ) ହେଲେ ।

ଶୀତକାଳରେ ବସ୍ତ୍ରାଚ୍ଛାଦନ ହେତୁ ଜଣା ନ ପଡ଼ିବେ ବୋଲି ସଂକେତକୀ ( ସଂକେତ କାରେଣି ମାନେ ) ଉତ୍‌ଫୁଲ୍ଲ ହୋଇ ପୁଲକକୁ ବହିଲେ । ଶୀତରେ ଲୋକେ ଦ୍ୟୁ ( ଅଗ୍ନିର ) ସହକାର ( ସାହାଯ୍ୟ ) ଲୋଡ଼ିଲେ । ବିରହିମାନେ ଭ୍ରମରେ ମେଳକ ( ମିଳିତ ) ହେଲେ ।

କେତକୀ ପୁଲକକୁ ବହିଲା ପରେ ଉତ୍‌ଫୁଲ୍ଲ ( ଫୁଟିଲା ) ସହକାର ( ଆମ୍ବ ବୃକ୍ଷ ) ବକୁଳିତ ହେବାରୁ ଭ୍ରମରମାନଙ୍କରେ ମିଳିତ ହେଲା ।

୧୩—କାଳ କଣ୍ଟକ ( ଡାହୁକମାନେ ) ଅଭୟେ ( ନିର୍ଭୟରେ ) ଡାକ ଦେଇ ବିରହିମାନଙ୍କୁ ଦଳନ କଲେ । ଯେ ବାମା ( ଯେଉଁ ସ୍ତ୍ରୀମାନେ ) ନିଅଳୀ ( ସଖୀ ରହିତ ହୋଇଥିଲେ ) ସେମାନେ କାନ୍ତଦ୍ୱାରା ସୁମନ ବହି ( ପୁଷ୍ପଭୂଷିତା ହେଲେ ) ।

ଶୀତକାଳ ବୀରହିଁ ( ବୀରମାନଙ୍କୁ ମଧ୍ୟ ) କଣ୍ଟକ ( ଶତ୍ରୁ ) ପ୍ରାୟ ଭୟରେ ଦଳନ କଲା, ମାନି ଅଳୀ ( ମାନିନୀ ସ୍ତ୍ରୀ ମାନେ ) ଅନ୍ତର ହୋଇ ରହି ନ ପାରି କାନ୍ତଠାରେ ସୁମନ ବହି [ ପ୍ରସନ୍ନ ହେଲେ ] ।

ଏ କାଳ, କଣ୍ଟକ [ ଗ୍ରୀଷ୍ମକାଳରେ ଗୃହକୁ ଆସିବାକୁ କଷ୍ଟ କରିଥିବା ] ବିରହି ମାନଙ୍କୁ ଦଳନ କଲା, ନିଅଳୀବୃକ୍ଷ କାନ୍ତେ [ କମନୀୟ ରୂପେ ], ସୁମନ [ ପୁଷ୍ପକୁ ] ବହି [ ଧାରଣ କଲା ] ।

୧୪—ଭେକୀ [ ବେଙ୍ଗୁଲି ମାନଙ୍କର ] ତବ [ ସ୍ତବସ୍ତୁତି ବାକ୍ୟ ] ଘନେ [ ନିବିଡ଼ ରୂପେ ] ସ୍ଫୁଟହୋଇ ସୁଚିତ୍ତ ହରେ [ ମନ ବିଚଳିତ କଲା ] ବକମାନଙ୍କର କେଳି [ କ୍ରୀଡ଼ା ] ବହୁତ ପ୍ରକଟ ହେଲା ।

କୀତବ [ କୁନ୍ଦ ଫୁଲ ] ଘନେ [ ବହୁତ ରୂପେ ] ସ୍ଫୁଟ ( ଫୁଟିଲା ) ଲୋକେ ତାହାକୁ ନେଇ ସୁଚିତ୍ତେ ( ଉତ୍ତମ ମନରେ ) ହରେ ( ମହାଦେବଙ୍କୁ ) ଦେଲେ । କଙ୍କପକ୍ଷୀର କେଳି ବହୁତ ପ୍ରକଟ ହେଲା ।

ଲୋକେ ସୁଚିତ୍ତ ( ଉତ୍ତମମନରେ ) ହରେ ( ଶିବଙ୍କ ) କରିବା ତବ ( ସ୍ତବ ) ଘନେ [ ନିବିଡ଼ ରୂପେ ] ସଂସ୍ଫୁଟ ହେଲା । କ-କେଳି(ଜଳକେଳି) ବହୁତ ପ୍ରକଟ ହେଲା ।

ବାହରେ ଏ ସମୟେ ଚିନ୍ତା କାତର । ସୁକୁମାର ତନୁତାପି ଦବାନଳିର ॥ ୧୫
ଅନ ଜ୍ଞାନ ହୀନଦଶା ବେଭାରେ ହୋଇ । ଘନରସେ କାନ୍ତାଲିଙ୍ଗନକୁ ଧାଇଁଇ ॥୧୬
ସନ୍ତାପିକ ମଞ୍ଜୁ କଳରବେ ନାଦଇ । ଅପଦରେ ସ୍ୱରଭଙ୍ଗ ପୁଲକ ବହଇ ॥ ୧୭
ହେତୁହୀନ ସିଦ୍ଧି କର ହେ କାଳକାନ୍ତ । ସ୍ୱପ୍ରାସ ବାଧିରେ ହୋଇବାରୁ ସହିତ ॥୧୮

୧୫—ଏ ସମୟରେ ସୁନ୍ଦର ସୁନ୍ଦରୀ ଦୁହେଁ ବାହରେ ଚିନ୍ତା କାତର ହେଲେ ତାହାଙ୍କର ସୁକୁମାର ତନୁ (ଦେହ) ଦବାନଳି ତାପିତ ହେଲା ।

ଏ ସମୟରେ ରହରେ ( ଏ କାନ୍ତରେ ) କୁମାର ଚିନ୍ତାକାତର ହେବାରୁ ଏବଂ କୁମାରୀ କୁମାର ଚିନ୍ତାରେ କାତର ହେବାରୁ ଉଭୟଙ୍କର ତନୁ ଦବାନଳି ତାପିତ ହେଲା ।

ଏ ସମୟେ ଦୁହେଁ ହର ( ଶିବଙ୍କୁ ) ଚିନ୍ତା କରି କାତର ହେଲେ ମାର ( କାମ ) ଦବାନଳି ତାପିତ କରି ତନୁ ( କୃଶ ) କଲା ।

୧୬—ନଦୀମାନେ ଘନରସେ ( ଜଳରେ ) ପୂର୍ଣ୍ଣହୋଇ କାନ୍ତ ( ସମୁଦ୍ରକୁ ) ଆଲିଙ୍ଗନ କରିବାକୁ ଧାଇଲେ ଅର୍ଥାତ୍ ସମୁଦ୍ର ଆଡ଼କୁ ଗତିକଲେ । ଏପରି ବ୍ୟବହାର ଅନ୍ୟମାନଙ୍କର ଦଶା ହୀନ ହେବାର ଭାବି କାମୀ କାମିନୀ ଦୁହିଙ୍କର ଜ୍ଞାନ ଆନ ହେଲା ଅର୍ଥାତ୍ ବିଭ୍ରମ ଜାତ ହେଲା ।

ନଜ୍ଞାନ ( ଜ୍ଞାନ ନଥିବାରୁ ) ବେଭାରେ ( ମିଥ୍ୟା କର୍ମିତ ବ୍ୟବହାରରେ ) ହୀନ ଦଶାହେଲା. ସ୍ତ୍ରୀ ପୁରୁଷ କାନ୍ତ ଓ କାନ୍ତାଲିଙ୍ଗନକୁ ଧାଇଁ ଅନ୍ୟ କାହିଁରେ ନ ରମିଲେ ।

ଦୁହେଁ କେବଳ କାନ୍ତ ( ମନୋହର ) ଆଲିଙ୍ଗନକୁ ଧାଇଁ ରସେ ( ରସିଲେ ) ବ୍ୟବହାରରେ ଜ୍ଞାନହୀନ ( ନଷ୍ଟଚେଷ୍ଟା ) ଦଶା ହେଲା ।

୧୭—ସନ୍ତାପିକ ( ମନସ୍ତାପ ଯୁକ୍ତ ) ହେବାରୁ ମଞ୍ଜୁ ( ମନୋହର ) କଳରବେ ( ମଧୁର ଧ୍ୱନିକ ) ନାଦାକରନ୍ତି । ବିଚ୍ଛେଦ ଅପଦରେ ସ୍ୱରଭଙ୍ଗ ଓ ପୁଲକ ( ରୋମାଞ୍ଚକୁ ବହନ୍ତି ) ।

ତାପିକ ( କାମତାପଯୁକ୍ତ ) ହେବାରୁ ମଞ୍ଜୁ କଳରବେ ( ପାରଧ୍ୱନିକ ) ନାଦା କରନ୍ତି । ଶୀତର ପଦରେ ( ଅଧିପତ୍ୟରେ ) ପୁଲକ ( କମ୍ପ ) ବହିବାରୁ ସ୍ୱରଭଙ୍ଗ ହୁଅଇ ।

ପିକର ମଞ୍ଜୁ କଳରବେ ( ମଧୁରଧ୍ୱନିକ ) ନାଦା କରନ୍ତି । ଦରେ ( ଭୟରେ ) ସ୍ୱରଭଙ୍ଗ ହୁଅଇ, ଦେହ ପୁଲକ ( କମ୍ପକୁ ) ବହଇ ।

୧୮—ବର୍ଷାକାଳ ସ୍ୱପ୍ରାସ ବାଧିରେ ( ନିଜ ମନରେ ପୀଡ଼ା ଦେବା ବାଧାନ ମାନଙ୍କରେ ) ସହିତ ( ଯୁକ୍ତ ) ହେବାରୁ କହିଲେ—ହେ କାନ୍ତ ( କମନୀୟ ) ବର୍ଷାକାଳ । ତୁମ୍ଭେ କାଳ ( ଯମ ) କି ? ନୋହିଲେ ହେତୁହୀନ ( ଜ୍ଞାନ ହୀନ ) ଦଶାକୁ କାହିଁକି ସିଦ୍ଧ କରୁଛ ?

ବଟୁ ରତ ମନ୍ଦଜନ୍ମା କୁବୁଦ୍ଧି ମନ୍ତ୍ରୀ । ସେହୁ ମଙ୍କର କେତନେ ମେଳ ଜନ୍ମନ୍ତ ॥୧୯
ଭାବ ଛଳବଚନ ଏ ପ୍ରକାରେ କହୁ । ପଥର ସମତରେ ସେ କଷଣ ସହୁ ॥ ୨୦

ପ୍ରାସ ( ମନଃ ପୀଡ଼ା ) ହେତୁ ବଧିରେ ( ଅଧିରତାରେ ) ସହିତ ହେବାରୁ କହିଲେ—ରେ ଶୀତ କାଳ । ତୁ ସମସ୍ତଙ୍କୁ ମ୍ଳାନ କାନ୍ତ ( ଅସୁନ୍ଦର ) କରିବାରୁ ତୋହର ତୁହିନ ନାମକୁ ସିଦ୍ଧି କରୁଛୁକି ? ( ଶୀତକାଳର-ନାମ ତୁହିନ ) ।

ସ ( ପବନ ( ବଧିରେ ( ବିଶେଷ ଧୀରତାରେ ) ସହିତହୋଇ ରହିବାରୁ କହିଲେ, ରେ କାଳ କାନ୍ତ । ତୁ ମ୍ଳାନ ସିଦ୍ଧି କି ( ବିରହୀ ବିରହିଣୀ ପୀଡ଼ା ରୂପ ) କାହିଁକି କରୁଛୁ ।

୧୯।୨୦—ଦର୍ଦ୍ଦୁର ( ଭେକ ) ତ ମନ୍ଦଜନ୍ମା ( ନୀଚଜନ୍ମା ) ଅଟେ, ସେହି ମଙ୍କର କେତନ ( ଜଳରେ ) ମେଳ ହେବାରୁ ଜନ୍ମନ୍ତକି ଲଭ କୁବୁଦ୍ଧି ମନ୍ତ୍ରୀପରି ହୋଇଛୁ ।

ରେ ଶୀତକାଳ ! ମନ୍ଦ ( ଦୁର୍ଭାଗ୍ୟ ) ଜନ୍ମାଇବାକୁ ତୁ କୁବୁଦ୍ଧି ମନ୍ତ୍ରୀପରି ( ଦୁରନ୍ତ ) ହୋଇ ହିମକର ( ଚନ୍ଦ୍ରମଣ୍ଡଳରେ ) କେତନ ( ଗୃହକର ) ଜନ୍ମନ୍ତରେ ମେଳ ହୋଇଛୁ ।

ରେ ମନ୍ଦଜନ୍ମା ( କୋକିଳ ) ତୁ ମଙ୍କରକେତନେ ( କନ୍ଦର୍ପସଙ୍ଗେ ) ମେଳ ହେବାରୁ ଜନ୍ମନ୍ତକୁ ଲଭୁଛୁ ।

ଭାବ (ଭାବନାକର) ଏ ପ୍ରକାର ଛଳ (ଗୁପ୍ତୁତୀ) ବଚନ କହି ପଥରସମତରେ ( ପଥର ସମାନ ) ସେ କଷଣ ସହିଲେ ।

ସେ ଏ ପ୍ରକାର ବତ୍ସଳ ( ବତ୍ସଳ-ସ୍ନେହଯୁକ୍ତ ) ବଚନକୁ କହି ଥର ସମତ ସେ ଏ ପ୍ରକାର ଛଳ [ବ୍ୟାଜ] ବଚନ କହି ରସମତ୍ତରେ [ରସହୋଇ ମତ୍ତରେ ) କଷଣ ସହିଲେ ।

୨୧—ରାଜପୁତ୍ର ରଜଗତ ସୁଶୋଭା ( ସୁନ୍ଦରୀର ) ନାମ ଏବଂ ରଜପତ ରାଜକୁମାରୀ ସୁଶୋଭା ( ସୁନ୍ଦରରାଜପୁତ୍ରର ) ନାମ ଜପଇ । ଆଉ ଯହିଁ ଯେପରି ପଦାର୍ଥରେ ) ମନୀଷା ( ବୁଦ୍ଧି-ବାଞ୍ଛା ) କରେ ତହିଁରେ ଅଛୁତ ପ୍ରକାଶ କରଇ ।

ଯହିଁ ( ଯେଉଁ ଶୀତକାଳରେ ) ନିଶାକରେ (ଚନ୍ଦ୍ରଠାରେ) ଅଛୁତ ପ୍ରକାଶ ହୁଅଇ ସେକାଳରେ ଜଗତୀ ସୁଶୋଭାର ( ଜଗତ୍ସୁନ୍ଦରୀ ରାଜକୁମାର ) ନାମ ରାଜପୁତ୍ର ଏବଂ ସୁନ୍ଦରର ନାମ ରାଜପୁତ୍ରୀ ଜପଇ ।

ଯେଉଁ କାଳରେ ଶାକରେ ( ଗୁଡ଼ଜାତ ଦ୍ରବ୍ୟରେ ବସନ୍ତରେ ଗୁଡ଼ଜାତ ଦ୍ରବ୍ୟ ବ୍ୟାଧି ଜନ୍ମାଏ ) ଅଛୁତ ପ୍ରକାଶ ହୁଏ ସେ କାଳରେ ଦୁହେଁ ଦୁହିଙ୍କ ନାମକୁ ଗତ ( ଜ୍ଞାବସେପାୟୁ ) ବୁଝି ଜପ କରନ୍ତି ।

ଗଜଗତ୍ତ ସୁଶୋଭାର ନାମ ଜପଇ । ମନ୍ମୀଷା କରେ ଅରୁଚ ପ୍ରକାଶ ଯହିଁ ॥ ୨୧
ବଜନତ ଶୋକପୂର୍ଣ୍ଣ ଗୃହେଁ ଅଶାରେ । ସେବ ଶେଷରଞ୍ଜନ ହର ନାହ୍ନ ସ୍ମରେ ॥୨୨
ନୀରଜନାକରେ ସେ ଶୟନ ରଚନା । ଇଶିବାରେ ସୁତ୍ତ ଗିରେ କରେ ଅର୍ଚ୍ଚନା ॥୨୩
ବ୍ୟଜନ ରସିତ ଉପକରଣ ଜାଲେ । ଉତପନ୍ନ ଗର ବୁଦ୍ଧି ଅବ୍‌ଜ ମୃଣାଳେ ॥ ୨୪
ରସନାଧ୍ଵ ପ୍ରତିମା ସେ ତାହାର ହେଲେ । ବକା ହେବ ଭାବଲସ୍ତ ବାଣୀ ଶୁଣିଲେ ॥୨୫

---

୨୨—ବଜନତ (ବଶେଷରେ ଜାତ) ଶୋକରେ ପୂର୍ଣ୍ଣହୋଇ ଅଗାରେ ( ଜଳଧାରଙ୍କୁ) ଗୃହାନ୍ତି । ଶେଷରଞ୍ଜନ ( ବାସୁକି ଭୂଷଣ ) ହର ( ଶିବଙ୍କୁ ) ସେବ ନାହି ନାହି ବୋଲି ସ୍ମରଣ କରନ୍ତି ।
ପୂର୍ଣ୍ଣଶୋକ ଜନିତ ହେବାରୁ ଅଗାରେ ( ଢଗମାନଙ୍କୁ ) ଗୃହାନ୍ତି । ଯାହାଙ୍କର କଣ୍ଠ ଶପରେ ଓ ନେତ୍ର ହର ( ସୂର୍ଯ୍ୟରେ ) ସରଞ୍ଜନ ଏମନ୍ତ ଯେ ଶିବ ତାଙ୍କୁ ନାହି ନାହି ବୋଲି ସ୍ମରଣ କରନ୍ତି ।
ନତ ( ନତ୍ୟ ) ପୂର୍ଣ୍ଣଶୋକ ହୋଇ ଅଶା କର ଗୃହାନ୍ତି, ଶେଷ ରଞ୍ଜନ ( ଅନୁଗ୍ରହ ପୂର୍ଣ୍ଣ ) ହର ( ଶିବଙ୍କୁ ) ନାହି ନାହି ବୋଲି ସ୍ମରଣ କରନ୍ତି ।

୨୩—ସେ ନୀରଜ ନାକରେ ( ପଦ୍ମ ସମୂହରେ ) ଶୟନ ରଚନା କରନ୍ତି । ସୁତ୍ତଗିରେ ଈଶ କହୁଁ ଇଶିବାରେ ( ଇଶି ସମୂହରେ ) ଶିବଙ୍କ ଅର୍ଚ୍ଚନା କରନ୍ତି ।
ସେ ରଜନୀକରେ ( ଧୂଳିରେ ) ଶୟନ ରଚନା କରନ୍ତି । ସୁତ୍ତଗିରେ ଶିବାରେ ( ପାର୍ବତୀଙ୍କି ) ଅର୍ଚ୍ଚନା କରନ୍ତି ।
ସେ ଶୟନ ରଚନା କର ଶୋକରୁ କରେ ( ଜଳକୁ—ଅଶ୍ରୁକୁ ) ଜନି ( ଜାତ ) କରନ୍ତି । ବାରେ ( ବାର ମାନଙ୍କରେ ) ସୁତ୍ତଗିରେ ଦେବତାଙ୍କୁ ଅର୍ଚ୍ଚନା କରନ୍ତି ।

୨୪—ବରହ ତାପରୁ ଉପକରଣ ଜାଲେ ( ଉପକାରୀ ସାମଗ୍ରୀ ସମୂହ ମଧ୍ୟରେ ) ବ୍ୟଜନ ( ବଞ୍ଚଣାରେ ) ରସିଲେ ଅବ୍‌ଜ ( ପଦ୍ମ ) ଏବଂ ମୃଣାଳରେ ଗର ( ବଷ ) ବୁଦ୍ଧି ଉତ୍ପନ୍ନ ହେଲା ।
ଯେଉଁ ଶୀତକାଳରେ ଲୋକେ ଶୀତୋପକରଣରେ ରସିଲେ ସେ କାଳେ ଅବ୍‌ଜ ( ପଦ୍ମ ) ମୃଣାଳ ( ବେଣାଚେରରେ ) ତପନ ( ସୂର୍ଯ୍ୟ ) ଏବଂ ଗର ( ବଷ ) ବୁଦ୍ଧି ହେଲା ।
ଉପକରଣ ସମୂହରେ ଅଜ ନ ରସିତ ( ରସିଲେ ନାହିଁ ଅବ୍‌ଜମୃଣାଳରେ ( ପଦ୍ମ ନାଡ଼ରେ ) ପନ୍ନଗର [ ସର୍ପର ] ବୁଦ୍ଧି ଜାତ ହେଲା ।

୨୫—ସେ ରସନାଧ୍ଵ [ ରସପୂର୍ଣ୍ଣ ] ପ୍ରତିମା, ମୁଁ ତାହାର ହେଲେ ଏବଂ ଭାବଲସ୍ତ ( ଭାବମିଶ୍ରିତ ) ମୋ ବାଣୀ ସେ ଶୁଣିଲେ ମୁଁ ବକାହେବ, ଏହା ପରସ୍ପର ଭାବଲେ ।

ଵିପ୍ର ବରଣ କରିବା ମାନସେ ଚିନ୍ତି । ଉପଗୁର ବାର୍ତ୍ତା ଏ କଥାରେ ଆରତ୍ତି ॥ ୨୬
ସୁବାସ ସୁମନେ ପାଣ ହେବାରେ ଧାୟି । ଉପାହିତ ରସନିଧି ସର୍ବଦା ସେହି ॥ ୨୭
ନବରସଜ୍ଞାତା ନାହିଁ ସଙ୍ଗ ତାହାର । ସହିତ ରସରେ ଯୁକ୍ତ ଅନୁକ୍ଷଣର ॥ ୨୮

---

ସେ ସନ୍ନିଧି ( ଐଶ୍ବର୍ଯ୍ୟ ଯୁକ୍ତ ) ପ୍ରତିମା ମୁଁ ତାହାର ହେବେଲ ଏବଂ ଭାବଲୟ ବାଣୀ ସେ ଶୁଣିଲେ ମୁଁ କି ହେବି ପରମ୍ପର ଏହା ଭାବିଲେ ।

ସେ ନିଧି ପ୍ରତିମା ମୁଁ ତାହାର ହେଲେ ଏବଂ ବାଣୀ ଶୁଣିଲେ ଭାବଲୟ ( ଭାବମୋହିତ ) ହେବି ବଗୁରିଲେ ।

୨୬—ଦେବାର୍ଚ୍ଚନା ନିମିତ୍ତ ବିପ୍ର (ବ୍ରାହ୍ମଣ) ବରଣ କରିବାକୁ ମନରେ ଚିନ୍ତା କଲେ । ବର୍ତ୍ତିମାନର ଉପଗୁର ଲେଟଲ ବାର୍ତ୍ତା ( ପୁରୁଷର ସ୍ତ୍ରୀ ଏବଂ ସ୍ତ୍ରୀର ପୁରୁଷ ବାର୍ତ୍ତା ) ଏହି କଥାରେ ଅର୍ତ୍ତିଯୁକ୍ତ ହେଲେ ।

ପଟସ୍ଵରକୁ ପାଇଲେ କେବଳ ପ୍ରବରଣ ( ଶୀତ ବସ୍ତ୍ର ) ପ୍ରାପ୍ତ କରିବାକୁ ମନରେ ଚିନ୍ତା କରନ୍ତି । ବାର୍ତ୍ତା ପଗୁର ଏହି କଥାରେ କେବଳ ଅର୍ତ୍ତିଯୁକ୍ତ ହୋଇଛନ୍ତି ।

ବରଣ କରିବା ଵିଷୟ କେବଳ ମନରେ ଚିନ୍ତନ୍ତି ଏବଂ ଗୁରବାର୍ତ୍ତା କିଣି ଏହି କଥାରେ ଅର୍ତ୍ତିଯୁକ୍ତ ହୋଇଛନ୍ତି ।

୨୭—ସୁବାସ ସୁମନେ ( ବାସନା ଯୁକ୍ତ ମାଲତୀ ପୁଷ୍ପସବୁ ) ପାଣ ହେବାରେ (ନିକଟରେ ମିଟିବାକୁ ) ସର୍ବଦା ଧାୟିଲେ—ସେହି ରସନିଧି ସଙ୍ଗେ ନିପର ଉପାହିତ ( ମିଳନ ) ହେବ ।

ବାସେ ( ବସ୍ତ୍ରରେ) ସୁମନେ ( ପୁଷ୍ପ ମାଳରେ ) ପାଶବୃଦ୍ଧ ହେବାରେ ଧାୟିଲେ ସର୍ବଦା ସେହି ରସନିଧି ପାହି ( ଉଦ୍ଧାର କର୍ତ୍ତା ) ତ ।

ସେ ସୁମନେ ( ଉତ୍ତମ ମନରେ ) ପାଶ ନିକଟ ହେବାକୁ ଧାୟିଲେ ସର୍ବଦା ସେହି ରସନିଧି ହିତ ।

୨୮—ପୁରୁଷ ନବରସଜ୍ଞ ( ନୂତନରସଜ୍ଞ ) ସୁନ୍ଦରୀ ମୋର ତା ସଙ୍ଗ ନାହିଁ, ସ୍ତ୍ରୀ ମୋହର ନବରସଜ୍ଞାତା [ ନବରସ ପଣ୍ଡିତ ] ରାଜପୁତ୍ରଙ୍କ ସଙ୍ଗନାହିଁ, ନିପର ଅନୁକ୍ଷଣ ତାହାର ସହିତ ରସରେ ଯୁକ୍ତ ହେବ ।

ଲେକେ ତାହାର ସଙ୍ଗ ହେବ, ହିତ ହେବାର ସରେ ଅନୁକ୍ଷଣ ଯୁକ୍ତ ହେବ ଏ କଥା କହିବାକୁ ବର୍ଣ୍ଣାଜ୍ଞାତା ( ବର୍ଣ୍ଣାମାନଙ୍କର କଥା ଜାଣିବା ଲୋକ ) କେହିନାହିଁ ।

( ପୁରୁଷ ) ସୁନ୍ଦରୀ ରସଜ୍ଞ ତା ସଙ୍ଗ ମୋର ନାହିଁ ( ସ୍ତ୍ରୀ ) ରସଜ୍ଞାତା ପୁରୁଷ ସଙ୍ଗ ମୋର ନାହିଁ । ଅତଏବ ଅନୁକ୍ଷଣ ତରସରେ ( ଉଚ୍ଛନ୍ନତାରେ) ଯୁକ୍ତ ହୁଅନ୍ତି ।

ସୁକବି ରଚନେ କଷ୍ଟ ତ୍ରିକାଳ ଛାନ୍ଦେ । ବସୁଦେବତୋଷଦାତା ଉପେନ୍ଦ୍ର ବନ୍ଦେ ॥୨୯
ବିଖ୍ୟାତ ରସରେ ଇଚ୍ଛି ଲୁପ୍ତବର୍ଣ୍ଣର । ସୁମନରେ ମୋଦେ ତିନିଛାନ୍ଦ ବିଚାର ॥୩୦

---

## ଷଡ଼ତ୍ରିଂଶ ଛାନ୍ଦ

ରାଗ—କୁମ୍ଭକାମୋଦୀ ।



ଣି ଗୁଣିବନ୍ତେ ପୁଣି ଏ ଚରିତ ପରମ ରହସ୍ୟ ।
ରହେ ବସି କହେ ସଚିବେ ମାଳିନୀନଗର-ନରେଶ ॥ ୧

ବରବରନାକୁ ବର କି କରିବା ବିସ୍ମୟ ମଗନେ ।
ବରଦ ନାରଦ ବୀଣାସ୍ୱନ ଶୁଭେ ଏକାଳେ ଗଗନେ ॥ ୨

---

୨୯—ବସୁଦେବ ତୋଷଦାତା ( ଶ୍ରୀକୃଷ୍ଣଙ୍କ ) ସୁକବି ଉପେନ୍ଦ୍ରଭଞ୍ଜ କଷ୍ଟ ତ୍ରିକାଳ ଛାନ୍ଦେ ( ବର୍ଷା, ଶୀତ, ଗ୍ରୀଷ୍ମ ତିନିକାଳର ଛାନ୍ଦକୁ ) ରଚନେ ( ରଚନା କରିବାକୁ ) ବନ୍ଦନା କରନ୍ତି ।
ସୁଦେବ ତୋଷଦାତା ( ଉତ୍ତମ ରୂପେ ଦେବତା ମାନଙ୍କର ତୋଷଦାତା ରାମଚନ୍ଦ୍ର ) । ଦେବ ତୋଷଦାତା ( ବିଷ୍ଣୁ ) ।

୩୦—ହେ ନରେ । ସୁମନରେ ( ଉତ୍ତମ ମନରେ ) ମୋଦେ ( ଆନନ୍ଦରେ ) ଲୁପ୍ତ ବର୍ଣ୍ଣର ( ଅକ୍ଷର ଲୋପର ) ବିଖ୍ୟାତ ତିନିଛାନ୍ଦକୁ ରସରେ ଇଚ୍ଛି ବିଚାର କର ।
ଖ୍ୟାତ, ମନରେ, ତରସେ ( ଶୀଘ୍ର ) ନରେ ।

---

୧—ହେ ଗୁଣିବନ୍ତେ ଏ ପରମରହସ୍ୟ ଚରିତ ପୁଣି ଶୁଣ, ମାଳିନୀନଗର ( ଚମ୍ପାନଗରୀ ) ନରେଶ ରହେ ( ଏକାନ୍ତରେ ) ବସି ସଚିବେ ( ମନ୍ତ୍ରୀକୁ ) କହେ ।

୨—ରାଜା ବିସ୍ମୟରେ ମଗ୍ନହୋଇ ବରବରନାକୁ ବରଣ କରିବା କି ଏହାଭାବୁଥିବା ବେଳେ ନାରଦ ବରଦ ହେଲେ ବୋଲି ଗଗନରେ ବୀଣାସ୍ୱନ ଶୁଭିଲା ।

ଗୁରଗଣ ବରଗଣ ଗଣାଙ୍କରେ ସୁଲଗ୍ନ ବିଖ୍ୟାତ ।
ରହିଲ କହିଲ ଯାଇ ମହିଳାକୁ ସଜନୀ ଏ ରୀତ ॥ ୩
ସୌଧଶ୍ରୀ ଉପରେ ନୃପତନନ୍ଦନୀ ସନ୍ଧ୍ୟାରେ ବସିଲା ।
ଚନ୍ଦ୍ରମାମଣ୍ଡଳ ଆଖଣ୍ଡଳଦିଗେ ଏମନ୍ତ ଦିଶିଲା ॥ ୪
ପୂର୍ବକରୀ ପୂର୍ବ କନ୍ଦରୀ-ଦରୀରୁ ବାହାର ବାହରେ ।
ନଳିନବନ ମଳିନ କରି ପଙ୍କ-ଅଙ୍କିତ ଶରୀରେ ॥ ୫
ମହୋଜ୍ଜ୍ୱଳ କରେ ପୁଷ୍କରେ ବାଞ୍ଛିତ ଅମୃତପୃଷନ୍ତି ।
ସେହି ଭାବଳୀ ତଳତଳ ଯେ ପ୍ରତିଦେଶରେ ଦିଶନ୍ତି ॥ ୬
ନିଶ୍ଚୟ ସେ ରାମରାଜା କଉଶିକ ଆନନ୍ଦ ଦେବାରେ ।
ସୁବେଳେ ବନ୍ଦିତ ଲକ୍ଷ୍ମଣେ ସହିତ ସେ ଋକ୍ଷ ସଙ୍ଗରେ ॥ ୭

---

୩—ଗଣକରେ ସୁଲଗ୍ନ ( ଶୁଭ ସମୟ ) ବିଖ୍ୟାତ ଗୁରଗଣଙ୍କୁ ବରଗଣ କଲେ ( ଗୁରୁଅଡ଼କୁ ପଠାଇଲେ ) । ଏ ରୀତକୁ ସଜନୀ ଯାଇ ମହିଳାକୁ କହିଲା, ତାହା ରହିଲା ( ପରେ ପ୍ରକାଶ ପାଇବ ) ।

୪—ନୃପତି ନନ୍ଦନୀ ( ରାଜକନ୍ୟା ) ସୌଧଶ୍ରୀ ଉପରେ ସନ୍ଧ୍ୟାସମୟରେ ବସିଲା, ଆଖଣ୍ଡଳଦିଗେ ( ପୂର୍ବ ଦିଗରେ ) ଚନ୍ଦ୍ରମାମଣ୍ଡଳ ଏମନ୍ତ ଦିଶିଲା ।

୫—ପୂର୍ବକରୀ ( ଐରାବତହସ୍ତୀ ) ପୂର୍ବ କନ୍ଦରୀ-ଦରୀ ( ପୂର୍ବଦିଗସ୍ଥ ପର୍ବତର ଗୁହାରୁ ) ବାହାରି ନଳିନବନ ( ପଦ୍ମବନକୁ ) ମଳିନକରି ପଙ୍କ ଅଙ୍କିତ ଶରୀରେ ବାହରେ କି ? ( ଏଠାରେ କଳଙ୍କ ପଙ୍କ ହେଲା ) ।

୬—ହସ୍ତୀ ମହୋଜ୍ଜ୍ୱଳ କରେ ( ଥୋରହସ୍ତରେ ) ପୁଷ୍କରେ ( ପଦ୍ମପୁଷ୍ପରେ ) ଅମୃତପୃଷନ୍ତି ( ଜଳବିନ୍ଦୁ ) ବାଞ୍ଛଇ, ଏ ଚନ୍ଦ୍ର ମହୋଜ୍ଜ୍ୱଳ କରେ ( ଶୁଭ୍ର କିରଣରେ ) ପୁଷ୍କରେ ( ଆକାଶରେ ) ଅମୃତପୃଷନ୍ତି ( ସୁଧାବିନ୍ଦୁକୁ ) ବାଞ୍ଛୁଛି, ସେହି ସୁଧାବିନ୍ଦୁମାନ ଭାବଳୀ ( ଭ-ତାରକା-ଆବଳୀ-ସମୂହ ) ପରି ତଳ୨ ହୋଇ ପ୍ରତିଦିଗରେ ଦିଶଇ ।

୭—ପୁଣି ସେ ଚନ୍ଦ୍ର, ନିଶ୍ଚୟ ରାମରାଜା—ରାମ କୌଶିକ ( ବିଶ୍ୱାମିତ୍ରଙ୍କୁ ) ଆନନ୍ଦ ଦେଇଥିଲେ, ସୁବେଳପର୍ବତରେ ବନ୍ଦିତ ହୋଇ ଭ୍ରାତା ଲକ୍ଷ୍ମଣରେ ଓ ଋକ୍ଷ ( ଭଲ୍ଲୁକମାନଙ୍କ ) ସଙ୍ଗରେ ସହିତ ହୋଇଥିଲେ । ଏ ଚନ୍ଦ୍ର କୌଶିକ ( ପେଚକମାନଙ୍କୁ ) ଆନନ୍ଦ ଦେଉଛି, ସୁବେଳ ( ଉତ୍ତମ ସମୟରେ ) ବନ୍ଦିତ ହୋଇଛି, ଏବଂ ଋକ୍ଷ ( ନକ୍ଷତ୍ରମାନଙ୍କ ) ସଙ୍ଗରେ ଥାଇ ଲକ୍ଷ୍ମଣେ ( କଳଙ୍କଚିହ୍ନରେ ) ସହିତ ହୋଇଛି ।

ଅଧିକଙ୍କର ପ୍ରତାପ ନାଶକର ହରିତ ପ୍ରକାଶ ।
ଏକ ବିଭୀଷଣ ଦରହର ରୁଚ ଜଗତ ଉଲ୍ଲାସ ॥ ୮
ସାଧୁ ବିଧୁନାମ ଦକ୍ଷିଣନାୟକ ଲକ୍ଷଣ ସଂପୂର୍ଣ୍ଣେ ।
ମେଷ ବୃଷ ଯୋଗେ ମିଥୁନ ସମ୍ଭୋଗେ କର୍କଟ ବିଧାନେ ॥ ୯
ସିଂହ ମଧ୍ୟ କନ୍ୟା ସୁବାସ ହରଣ ସନ୍ତାପବାରଣ ।
ତୁଳା-ବିଳାସିନୀ ବର୍ଗେ ଅଳି ରଙ୍ଗେ ସଙ୍ଗମ କାରଣ ॥ ୧୦
ଧନୁ ଗୁଣବନ୍ତେ ମକରକେତନେ ଉଚ୍ଛନ୍ନକରତା ।
କୁମ୍ଭଯୁକ୍ତ ଗତି ମୀନ ଗୃହ୍ନନେତ୍ରୀ ତାରକାରଞ୍ଜିତା ॥ ୧୧

---

୮—ରାମଚନ୍ଦ୍ର ହରି ( ମର୍କଟମାନଙ୍କୁ ) ପ୍ରକାଶ କରି ଅଧିକଙ୍କର ( ରାବଣର ) ପ୍ରତାପ ନାଶ କରିଥିଲେ ଓ ବିଭୀଷଣର ଦରହର ( ଭୟହାରୀ ) ହୋଇ ରୁଚ ( ଶୋଭାରେ ) ଜଗତକୁ ଉଲ୍ଲାସ କରିଥିଲେ । ଏ ଚନ୍ଦ୍ର ଅଧିକଙ୍କର ( ସୂର୍ଯ୍ୟର ) ପ୍ରତାପ ( ତାପ ) ନାଶକାରୀ ଅଟେ ହରିତ ( ଦିଗମାନଙ୍କୁ ) ପ୍ରକାଶ କରୁଛି, ଏ କବି ( ଚକୋରପକ୍ଷୀର ) ଭୀଷଣ ଦରହର ( ଭୟହାରୀ ) ଅଟଇ ଏବଂ ଏହାର ରୁଚି ( ଦୀପ୍ତି ) ଜଗତକୁ ଉଲ୍ଲାସ କରଇ ।
୯—ଚନ୍ଦ୍ରର ବିଧୁନାମ ସାଧୁ ( ଉପଯୁକ୍ତ ଅଟେ, କାରଣ ବିଧୁ ( ବିଷ୍ଣୁ ) କୃଷ୍ଣାବତାରରେ ଲକ୍ଷଣ ( ଅଷ୍ଟାଦଶ ବା ଦ୍ୱାତ୍ରିଂଶ ମହାପୁରୁଷଲକ୍ଷଣ ) ସଂପୂର୍ଣ୍ଣ ରୂପେ ଧରି ଦକ୍ଷିଣନାୟକ ( ବହୁଗୋପୀରେ ସମାନୁରାଗୀ ) ହୋଇ ଯୋଗେ ( ସୁଯୋଗ ଦେଖି ) କାହାସଙ୍ଗେ ମେଷ କାହାସଙ୍ଗେ ବୃଷ କାହା ସଙ୍ଗେ କର୍କଟ ବିଧାନରେ ସମ୍ଭୋଗ କରିବାରେ ମିଥୁନ ( ମିଳନ ) ହୋଇଥିଲେ । ଏ ସମ୍ପୂର୍ଣ୍ଣେ ( ପୂର୍ଣ୍ଣସମୟରେ ) ଲକ୍ଷ୍ମଣ ( କଳଙ୍କ ଚିହ୍ନକୁ ) ଧରିଛି । ବହୁ ନକ୍ଷତ୍ରପତି ହେତୁ ଦକ୍ଷିଣନାୟକ ଅଟେ, ବିଧାନେ ( ବିଧିରେ ) ମେଷ ବୃଷ ଯୋଗେ ( ସହିତରେ ) ମିଥୁନ କର୍କଟ ମାସକୁ ଭୋଗ କରଇ ।
୧୦—ଶ୍ରୀକୃଷ୍ଣ ସିଂହମଧ୍ୟା ଗୋପକନ୍ୟାମାନଙ୍କର ସୁବାସ ( ବସ୍ତ୍ର ) ହରଣ କରି ସନ୍ତାପ ( କାମତାପକୁ ) ବାରଣ କରିଥିଲେ ଏବଂ ସଙ୍ଗମ କାରଣରୁ ତୁଲ ବିଳାସିନୀ ବର୍ଗେ ( ତୁଲ୍ୟ ବୟସୀମାନଙ୍କ ) ସଙ୍ଗରେ ରଙ୍ଗରେ ଅଳି ( କଚାଳ କରିଥିଲେ । ଏ ଚନ୍ଦ୍ର, ସିଂହ, କନ୍ୟା ମାସ ମଧ୍ୟରେ ( ଶରତକାଳରେ ) ହରଣ-ସୁବାସ ( ଶୁକ୍ଳବର୍ଣ୍ଣର ଉତ୍ତମ ସ୍ଥାନ ଅତ୍ୟନ୍ତ ଉଜ୍ଜ୍ୱଳ ) ହୁଏ । ସବୁଦିନେ ସନ୍ତାପ ବାରଣ କଲେ ଏବଂ ତୁଳା ଆଉ ଅଳି ( ବିଛା ) ମାସରେ ବିଳାସିନୀବର୍ଗେ ( ତାରାଳୀରେ ) ରଙ୍ଗେ ସଙ୍ଗମ ( ମିଳନର ) କାରଣ ହୁଅଇ ।
୧୧—ପୁଣି ସେ ବିଷ୍ଣୁ ରାମବତାରରେ ଧନୁ ଗୁଣବନ୍ତେ ( ଶିବଧନୁକୁ ଗୁଣଯୁକ୍ତ କରନ୍ତେ ) କୁମ୍ଭଯୁକ୍ତଗତି ( ଗଜଗାମିନୀ ) ମୀନ ଗୃହ୍ନନେତ୍ରୀ ତାରକାରଞ୍ଜିତା

ରମ୍ୟମୂର୍ତ୍ତି ପକ୍ଷୀ ଅକ୍ଷ ବିମୋହନ ପାଷାଣ ଦ୍ରବାଇ ।
ପାଦ ପରଶେ ହରଷେ ବିକଶିତ ଲତିକା କରାଇ ॥ ୧୨
ଅଛୁରି ସେ ଅସୁନ୍ଦରୀକି ସୁନ୍ଦରୀ କରି ଯେ ରମିତ ।
କରେ ରଜନୀକି ରଞ୍ଜନୀ କରି ଏ ପ୍ରକାଶେ ତେମନ୍ତ ॥ ୧୩
ଗୃହିଁ ଏ ସମସ୍ତ ହୋଇ ଭ୍ରମମୟ ହୋଇଲେ ଚତୁରୀ ।
ବାଣୀ ବାଣୀକାରେ ରଚନା କଲ ସେ ଅଶେଷ ଗୃଢ଼ୁରୀ ॥ ୧୪
ପତି କରିବା ମତି କରି ମୋ ନେତ୍ରସମ୍ପତ୍ତି ପୁଂସକୁ ।
ଜଗତୀ ଯୁବତୀ ରୂପ ଧରି ରଚ ସୁଜ୍ୟୋତି ବେଶକୁ ॥ ୧୫
ଦେଖ ମୁଖ ଶୋଭା କରନ୍ତି କସ୍ତୁରୀତିଳକ ମକରୀ ।
ମଣ୍ଡିଛି ନାସେ ମୁକୁତା ମୋତିଜାଲ ଚିକୁରେ ମାଧୁରୀ ॥ ୧୬

---

( ତାରକା ପରି ଚନ୍ଦ୍ରହାରରେ ଶୋଭିତା ) ସୀତାଙ୍କ ମକରକେତନେ ( କାମରେ ) ଉଚ୍ଛନ୍ନକାରୀ ହୋଇ ଥିଲେ । ଏ ଗୁଣବନ୍ତେ ( ଲବଣ୍ୟ-ମୟରୂପରେ ) ଧନୁ, ମକର, କୁମ୍ଭ ମୀନ ମାସରେ ଯୁକ୍ତ ଓ ତାରକା-ରଞ୍ଜିତ ହୋଇ ଉଦୟ ଅସ୍ତ ଗତକରି ମକରକେତନେ ( କାମଦ୍ୱାରା ) ବିରହୀମାନଙ୍କୁ ଉଚ୍ଛନ୍ନ କରଇ ।

୧୨—ସେ ରମ୍ୟ ମୂର୍ତ୍ତିରେ ( ମନୋହର ରୂପରେ ) ପକ୍ଷୀ ( ଜଟାୟୁର ) ଅକ୍ଷ (ଆଖିକୁ ) ମୋହିତ କରିଥିଲେ । ପାଦସ୍ପର୍ଶରେ ପାଷାଣ ( ପଥର ହୋଇ-ଥିବା ଅହଲ୍ୟାକୁ ) ଦ୍ରବାଇ ଥିଲେ । ଲତିକାକୁ ହର୍ଷରେ ଦୋହଦ-ଦେଇ ବିକଶିତ କରାଇ ଥିଲେ । ଏ ରମ୍ୟ ମୂର୍ତ୍ତିରେ ପକ୍ଷୀ ( ଚକୋର ) ଆଖିକି ମୋହିତ କରୁଛି । ପାଷାଣ ( ଚନ୍ଦ୍ରକାନ୍ତ ମଣିକୁ ) ଦ୍ରବାଉଛି, ଏବଂ ପାଦ ( କିରଣ ) ସ୍ପର୍ଶରେ ଲତିକାକୁ ହର୍ଷରେ ବିକଶିତ କରାଉଛି ।

୧୩—ଅଛୁରି ମଧ୍ୟ ସେ କୃଷ୍ଣ ଅସୁନ୍ଦରୀ ( କୁବ୍‌ଜାକୁ ) ସୁନ୍ଦରୀ କରି ଯେପରି ରମିତ ( ଆନନ୍ଦିତ ) ହୋଇଥିଲେ ତେମନ୍ତ ଏ ରଜନୀ ( ରାତ୍ରିକୁ ) ରଞ୍ଜନୀ ( ଆନନ୍ଦଦାୟିନୀ ) କରି ପ୍ରକାଶ ପାଏ ।

୧୪—ଚତୁରୀ ହେଲେହେଁ ରାଜଜେମା ଏ ସମସ୍ତଙ୍କୁ ( ଚନ୍ଦ୍ରମା ରାତ୍ରିକୁ) ଗୃହିଁ ଭ୍ରମମୟ ହୋଇଲେ ( ବାଉଳା ହେଲେ ) ଏବଂ ବାଣୀକାରେ ସେ ଅଶେଷ-ଗୃଢ଼ୁରୀପୂର୍ଣ୍ଣବାଣୀ ରଚନା କଲ ।

୧୫—ଜଗତୀ ( ସଂସାର ) ମୋ ନେତ୍ର ସମ୍ପତ୍ତି ପୁଂସକୁ ପତିକରିବା ମତି ( ମନ ) କରି ଯୁବତୀ ରୂପଧରି ସୁଜ୍ୟୋତି ବେଶକୁ ରଚିଛି ।

୧୬—ଦେଖ ଚନ୍ଦ୍ରରୂପ ମୁଖରେ କଳଙ୍କରୂପ କସ୍ତୁରୀ ତିଳକ ଓ ମକରୀ (ଗଣ୍ଡଚିତ୍ର) ଶୋଭା କରୁଛି । ନାସାରେ ମୁକୁତା ( ଶୁକ୍ରତାରା ) ଚିକୁରେ ( ଆକାଶରୂପ କେଶରେ ) ମୋତିଜାଲ ଅନ୍ୟାନ୍ୟ ନକ୍ଷତ୍ରମାଳା ମଣ୍ଡିଛି ।

ଖଞ୍ଜିଛୁ ଉଚ୍ଚକୁଚରେ ସୁସଞ୍ଚରେ ସୁନୀଳଚେଲାଞ୍ଚଳିକା ।
ରଞ୍ଜିଛୁ ଶିବ ରଜତ-ଜରି ଫୁଲ ତହିଁରେ ଝଳା କି ॥ ୧୭
ମଧୁରଗୋରୀ ପଞ୍ଚମସ୍ୱର ଧରି ବଚନ ପ୍ରଚୁର ।
କରେ ଅଭିସାରି ବିପ୍ରଲବ୍ଧା କେହି ହୋଇବ ବିଧୁର ॥ ୧୮
ସଖୀ କହିଲା ଏମନ୍ତ ନୋହି ବରବର୍ଣ୍ଣିନା ତୁ ଘେନ ।
ପୂର୍ଣ୍ଣେନ୍ଦୁ ଲାଞ୍ଛନ କରି ତାରକାରେ ଗଗନ ମଣ୍ଡନ ॥ ୧୯
ଲତା ମଞ୍ଜରୀ କାରଣ ନିତି ପିକଧ୍ୱନିରେ ଶୋଭିତ ।
ଯାହା ନାଥ ପାର୍ଥସାରଥି ସେ ଅନେ ହୋଇ କି ଲୋଭିତ ॥ ୨୦
ପତି ପ୍ରାପତି ନୋହୁଁତ ସପତ୍ନୀରେ ତୋ ଏଡ଼େ ଈରଷା ।
ମହୀମଣ୍ଡନାରେ ମହୀ କରୁଛି ଯେ ବଲ୍ଲଭପ୍ରତ୍ୟାଶା ॥ ୨୧
ବୃଥା କଥାକୁ କି ବ୍ୟଥା ଶଚୀକଳା ବୋଇଲା ତ୍ୱରିତ ।
ତାରାଭୋଗୀ ଇନ୍ଦୁ କଇରବବନ୍ଧୁ ଯଥା ଏ ତେମନ୍ତ ॥ ୨୨

---

୧୭—ସୁନୀଳ ଚେଲାଞ୍ଚଳିକା ( ଲତାରୂପ କାଞ୍ଚଳକୁ ) ପୂର୍ବଦିଗସ୍ଥ ପର୍ବତ ରୂପ ଉଚ୍ଚ କୁଚରେ ସୁସଞ୍ଚରେ ଖଞ୍ଜିଛୁ । ତହିଁରେ (ଲତାରୂପ କାଞ୍ଚଲରେ) ରଜତ ଜରି ଫୁଲ (, ଚନ୍ଦ୍ରକିରଣ ରୂପ ରୂପାଜରି ନିର୍ମିତ ଫୁଲ ) ଶିବ ( ବିଶିବ ଭାବରେ ) ରଞ୍ଜିଛୁ ( ଖଞ୍ଜିଛୁ ),ତାହା କି ସୁନ୍ଦର ଝଳ (ଶୋଭା ପାଉଛି) ।

୧୮—ମଧୁର ଗୋରୀ ( ରାତି ) ପଞ୍ଚମ ସ୍ୱରଧରି ( ପିକ ସ୍ୱରରୂପ ) ବଚନ ପ୍ରଚୁର କରେ, ଏ ରାତି ମୋ ପତି ପାଖକୁ ଅଭିସାର କରୁଛି, କିପରି ବିପ୍ରଲବ୍ଧା ( ଯେଉଁ ନାୟିକା ସଙ୍କେତ ସ୍ଥାନରେ ନାୟକକୁ ନ ଦେଖି ହତାଶ ହୁଏ ) ହେବ ତହିଁର ବିଚାର କେହି କର ।

୧୯—ସଖୀ କହିଲା—ରେ ବରବର୍ଣ୍ଣିନା ! ଏମନ୍ତ (ତୋ କହିବାନୁରୂପ) ନୋହେ ତୁ ଏହା ଘେନ ( ମନେକର ) ଗଗନ ପୂର୍ଣ୍ଣେନ୍ଦୁ ( ପୂର୍ଣ୍ଣଚନ୍ଦ୍ର ) ଲାଞ୍ଛନ ( କଳଙ୍କ ) କରି, ( ଶୁକତାର ) ତାରକାରେ ମଣ୍ଡିତ ହୋଇଅଛି ।

୨୦—ଲତା, ମଞ୍ଜରୀ ( ଲତା ) କାରଣ ଓ ପିକ ଧ୍ୱନିରେ ନିତି ଶୋଭିତ ହୋଇ ଅଛି । ଯାହାର ( ଯେଉଁ ପୃଥିବୀର ) ନାଥ ( ସ୍ୱାମୀ ) ପାର୍ଥସାରଥି (ଶ୍ରୀକୃଷ୍ଣ) ସେ ଅନେ ଲୋଭିତ ହୁଅଇ କି ?

୨୧—ରେ ମହୀ ମଣ୍ଡନା । ପତି ପ୍ରାପତି ( ଲାଭ ) ନୋହୁଣୁ ତୋର ସପତ୍ନୀରେ ଏଡ଼େ ଈର୍ଷା । ମହୀ ( ପୃଥିବୀ ) ସେ ରାଜକୁମାରଙ୍କୁ ବଲ୍ଲଭ କରିବାକୁ ପ୍ରତ୍ୟାଶା କରୁଛି ଯେ ।

୨୨—ଶଚୀକଳା ( ସଖୀ ) ତ୍ୱରିତ ( ଶୀଘ୍ର ) ବୋଇଲା । ବୃଥା କଥାକୁ ବ୍ୟଥା କାହିଁକି । ଯଥା ତାରାଭୋଗୀ ଇନ୍ଦୁ ( ତାରାପତି ଚନ୍ଦ୍ର ) କଇରବବନ୍ଧୁ ( କୁମୁଦବନ୍ଧୁ ) ସେହିପରି ସେ ପୃଥିବୀ ପତି ହେଲେହେଁ ତୋହର ବଲ୍ଲଭ ହେବେ ।

ଏକାଳେ ହଂସଜା-ବୀଚି-କେଶୀ ପାଶେ ହଂସଜା ହୋଇଲା ।
ରୁରୁ ଲୋଚନାରେ ଶୋଚନା ରଚନା ନ କର ବୋଇଲା ॥ ୨୩
ଶୁଣିଲି ନୃପତି ମନ୍ତ୍ରୀ ଭାଳୁଥିଲେ ତୋ ବିଭା ବିଷୟ ।
ଧାତା-କୁମର ମହତୀନାଦେ ହତ କଲେ ସେ ସଂଶୟ ॥ ୨୪
ଶୁଭିଲା ସ୍ୱନ ଏସନ ତୋ ନଗରେ ଭ୍ରମିବ କୁରଙ୍ଗେ ।
ଜାଣ ସେହି ବର ଯେ ତାର ରୁମର ହରିବ ସୁରଙ୍ଗେ ॥ ୨୫
ପାରିଜାତ ମାଳା ମଣ୍ଡିବ ତା ଗଳା ଏକାଳେ ଶୂନ୍ୟରୁ ।
ରାଜା ନିମନ୍ତ୍ରଣେ ଦୂତ ପ୍ରତିଦିଗେ ଗଲେଣି ରମ୍ଭୋରୁ ॥ ୨୬
ପ୍ରକଟ କଟକ ଜନମୁଖେ ଚିତ୍ରଚମରୀ ମିଳିତା ।
ପ୍ରଥମଯୁଗ କରାଇଲା ସେ ଶବ୍ଦ ସଜନୀ ବାରତା ॥ ୨୭
ରାମା କପୋଳ ପୁଲକି ଝଲକିଲା ଅଳପ ସୁହାସ ।
ନସ-ମଣ୍ଡନ ଚଳିଲା ଭଳି ଜାତ ହୋଇଲା ନିଶ୍ୱାସ ॥ ୨୮

---

୨୩—ଏକାଳେ ହଂସଜା ବୀଚିକେଶୀ ( ଯମୁନା ଲହରୀ ସଦୃଶ କୁଞ୍ଚିତ କେଶୀ ) ରାଜଜେମା ପାଶେ ହଂସଜା ( କାଦମ୍ବିନୀ ) ସଖୀ ବୋଇଲା, ରେ ରୁରୁ-ଲୋଚନା, ତୁ ଶୋଚନା ( ଶୋକ ) ରଚନା ନକର ବୋଲି ବୋଇଲା ।

୨୪—ମୁଁ ଶୁଣିଲି ନୃପତିମନ୍ତ୍ରୀ ( ରାଜମନ୍ତ୍ରୀ ) ତୋ ବିଭା ବିଷୟ ଭାଳୁଥିଲେ, ଧାତା କୁମର ( ନାରଦ ) ମହତୀ ( ବୀଣା ) ନାଦରେ ସେ ସଂଶୟକୁ ଦୂର କଲେ ।

୨୫—ଆକାଶରୁ ଏସନ ବୀଣାସ୍ୱନ ଶୁଭିଲା, ତୋ ନଗରେ କୁରଙ୍ଗେ (ହରିଣଟିଏ ) ଭ୍ରମିବ, ଯେ ତାହାର ରୁମର ସୁରଙ୍ଗେ ( ଲୀଳାରେ ) ହରିବ, ସେହି ବର ଏହି ଜାଣ ।

୨୬—ଏକାଳେ ଶୂନ୍ୟରୁ ପାରିଜାତ ମାଳା ଆସି ତା ଗଳା ମଣ୍ଡିବ, ରେ ରମ୍ଭୋରୁ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଦୂତମାନେ ପ୍ରତିଦିଗକୁ ଗଲେଣି ।

୨୭—ଏହି ସମୟରେ କଟକ ଜନ ( ନଗର ଲୋକଙ୍କ ) ମୁଖରେ ଚିତ୍ର ରୁମରୀ ( ଆଶ୍ଚର୍ଯ୍ୟ ରୁମରୀମୃଗ ) ମିଳି ( ପହୁଞ୍ଚିଲା ) ଏହି ବାରତା ପ୍ରକଟ ହେଲା । ସେ ଶବ୍ଦ ସଜନୀ ( କାଦମ୍ବିନୀ ) ବାରତାକୁ ପ୍ରଥମ ଯୁଗ ( ସତ୍ୟ କରାଇଲା ) ।

୨୮—ଏଥିରେ ରାମାର କପୋଳ ( ଗଣ୍ଡସ୍ଥଳ ) ପାପୁଲି ( ରୋମାଞ୍ଚିତ ହୋଇ ) ମୁଖରେ ଅଳ୍ପ ସୁହାସ ଝଲକିଲା ଏବଂ ନାସାମଣ୍ଡଳ ଚଳିଲା ଭଳି ଦୀର୍ଘନିଶ୍ୱାସ ଜାତହେଲା ।

ଜାଣିଲା ବାଣୀକା ଗୁଣିଲା ମଳିଲା ହରଷ ବରସେ ।
ସେହି କୁମର ଶୃଙ୍ଗର ଛୁନ୍ଦାଇବ ଭଣିଲା ରଭସେ ॥ ୨୯
କଲେ ବାର୍ତ୍ତାବ ପ୍ରଚାର ପୁଂସ-ଚର କେମନ୍ତେ ଜାଣିବ ।
ସଙ୍କେତୁଁ ପୁଷ୍ପକେତୁ ଯୁବରାଜକୁ ଏ ପୁରେ ଅଣିବ ॥ ୩୦
ରମଣୀ ଉରଗ ମଣି ଯେ ଉରରୁ ବାହାର ହାରକୁ ।
କରଥିଲା ଛନ୍ଦେ କି ମୃଗଲକ୍ଷ୍ମେ ନ ପାଇ ଦେବାକୁ ॥ ୩୧
ସୁଜାଣ ବୟସୀ ଭାଷଲେ ରେ ନବବୟସୀରତନ ।
ଲଭିଲୁଁ ତୁ ତାହା ବଲ୍ଲଭୀ ହେବାର ଉଦ୍ୟମି ଏମାନ ॥ ୩୨
ସାରଲେ କାମିନୀ ଜାଗରେ ଯାମିନୀ ଆରତ ପ୍ରଚାରେ ।
ଆଦିତ୍ୟ ଉଦିତ ଜଗତ ମୋଦିତ ସମସ୍ତ ପ୍ରକାରେ ॥ ୩୩
ତାପ ଘନ ଅପସର ଚକ୍ରଙ୍କର ଯା କର ସ୍ପର୍ଶେ ।
ଦ୍ଵାରୀଭୂଷଣ ଅନେକ ନେଇ ସୁଖଦାୟକ ହର ସେ ॥ ୩୪

---

୨୯—ବାଣୀକାସଖୀ ଏ ଲକ୍ଷଣରୁ ଗୁଣି (ଗଣନାକରି) ଜାଣିଲା ଯେ ବିବାହ କାର୍ଯ୍ୟ ନିକଟରେ ହେବ ତେଣୁ ହର୍ଷରେ ଏବଂ କାଳେ ସେ ରାଜ କୁମାର ମୃଗ ଶୃଙ୍ଗର ଛେଦନରେ ଅସମର୍ଥ ହେବେ ବୋଲି ବିଷାଦରେ ମଳିଲା, ରଭସେ (ଶୀଘ୍ର) ଭଣିଲା,—ସେହି କୁମାର ଶୃଙ୍ଗର ଛୁନ୍ଦାଇବ ।

୩୦—ପୁଂସଚର (ପୁଷ୍ପପୁରରୁ ଆସି ମାଳିନୀ ଘରେଥିବା ରାଜକୁମାରର ଦୂତମାନେ) ବାର୍ତ୍ତାବ ପ୍ରଚାର କଲେ ଯେ ପୁଷ୍ପକେତୁ କେମନ୍ତେ ସଙ୍କେତରୁ ଏହା ଜାଣିବ ଏବଂ କିପରି ସେହି ରାଜକୁମାରକୁ ଅମ୍ଭେମାନେ ଏ ପୁରରେ ଅଣିବା ।

୩୧—ରମଣୀ ଯେଉଁ ମଣିହାରକୁ ବିରହତାପହେତୁ ଉରଗ (ସର୍ପ) ମଣି ଉରରୁ ବାହାର କରଥିଲେ, ତାକୁ ସଖୀମାନଙ୍କ ପୁରସ୍କାର ଦେବାକୁ ଛନ୍ଦେ (ଚଞ୍ଚଳ ହୋଇ) ଖୋଜି ମୃଗ ଲକ୍ଷ୍ମେ (ଚନ୍ଦ୍ରକିରଣରେ) ନ ପାଇଲା । ମଣିହାର ଚନ୍ଦ୍ର କିରଣରେ ମିଶିଯିବାରୁ ହଠାତ୍ ଦେଖାଗଲା ନାହିଁ ।

୩୨—ସୁଜାଣ ବୟସୀ (ଚତୁର ସଖୀମାନେ) ଭାଷିଲେ, ରେ ନବ ବୟସୀ-ରତନ ! ଅମ୍ଭେ ଲଭିଲୁଁ (ପାଇଲୁଁ ଯେ), ତୁ (ପୁଷ୍ପପୁର ରାଜପୁତ୍ରର) ବଲ୍ଲଭୀ ହେବାକୁ ଅମ୍ଭେମାନେ ଉଦ୍ୟମି ହେବାରୁ ତୁ ଏ ମାନ (ଏପରି ପୁର-ସ୍କାର ଦେଉଛୁ) ।

୩୩—ସମସ୍ତେ ଏହିପରି କାମିନୀର ଅର୍ଥୀ ହେବା କଥା ପ୍ରଚାର କରି ଜାଗରେ (ଉଜାଗର ହୋଇ) ଯାମିନୀ ସାରଲେ (ରାତ୍ରି ପ୍ରଭାତହେଲା) ଆଦିତ୍ୟ (ସୂର୍ଯ୍ୟ) ଉଦିତହେବାରୁ ଜଗତ ସମସ୍ତ ପ୍ରକାରେ ମୁଦିତ (ଆନନ୍ଦିତ) ହେଲା ।

୩୪—ସେ ହରି (ସୂର୍ଯ୍ୟ ଓ ଇନ୍ଦ୍ର) ଯାହାଙ୍କର (ଇନ୍ଦ୍ରଙ୍କର) କର (ହସ୍ତ ସ୍ପର୍ଶରେ) ଅପ୍‌ସର ଚକ୍ର (ଅପ୍‌ସରା ସମୂହର) ତାପ (କାମକ୍ଲେଶ) ଘନ

ମନୋହର ମୃଗଧର ଅସ୍ତବ୍ୟସ୍ତ କ୍ଷଣକେ କର ସେ ।
ଦନ୍ତିକ ବିଦାରି ବିହରି ସରକ୍ତ ଶରୀରେ ହରି ସେ ॥ ୩୫
ମନ୍ଦ ଜୀବ ତୋଷ-ଦାମୀ କାଳ-ଦଣ୍ଡେ ପ୍ରତିଭା ଧରି ସେ ।
ସ୍ୱଭାବେ ଦକ୍ଷିଣ ବିରାଜିତ କରି ନିଷ୍ଠପ୍ରୁ ହରି ସେ ॥ ୩୬
ରଥସ୍ଥିତ ପକ୍ଷୀବର ପୁଣି ତମଖଣ୍ଡନକାରୀ ସେ ।
ଦୀନବନ୍ଧୁ ନାମ ଜଳଜଧାରଣ ପ୍ରମାଣ ହରି ସେ ॥ ୩୭

---

( ଘ୍ନ-ନଷ୍ଟ ) ହୁଅଇ, ଯେ ପ୍ରାଚୀ ଭୂଷଣ ( ପୂର୍ବଦିଗର ଅଧିପତି ) ଅନେକ ନେତ୍ର ( ସହସ୍ରାକ୍ଷ ) ଏବଂ ସମସ୍ତଙ୍କର ସୁଖଦାୟକ । ଯାହାଙ୍କର ( ଯେଉଁ ସୂର୍ଯ୍ୟଙ୍କର ) କର ( କିରଣ ) ସ୍ପର୍ଶରେ ଚକ୍ରଙ୍କର ( ଚକ୍ରବାକ ପକ୍ଷିଙ୍କର ) ଘନ ( ନିବିଡ଼ ) ତାପ ( ବିଚ୍ଛେଦ କ୍ଳେଶ ) ଅପସରି ଯାଏ ( ଦୂରହୁଏ ), ସେ ପ୍ରାଚୀ ଭୂଷଣ ( ପୂର୍ବାକାଶରେ ଉଦିତ ହୋଇ ) ଅନେକ ପ୍ରାଣିଙ୍କର ନେତ୍ର ସୁଖଦାୟକ ହୋଇଛୁ ।

୩୫—ପୁଣି ସେ ସୂର୍ଯ୍ୟ ହରି ( ସିଂହ ), ଯଥା ସିଂହ ମନୋହର ମୃଗଧର ହୋଇ କ୍ଷଣକେ ସେମାନଙ୍କୁ ଅସ୍ତବ୍ୟସ୍ତ କରେ ଓ ଦନ୍ତିକ ( ହସ୍ତୀକୁ ) ବିଦାରି ସରକ୍ତ ଶରୀରରେ ବିହାର କରେ ସେହିପରି ଏ ସୂର୍ଯ୍ୟ ମନୋହର ମୃଗଧର ( ଚନ୍ଦ୍ରକୁ ) କ୍ଷଣକେ ଅସ୍ତବ୍ୟସ୍ତ କରି ପୂର୍ବ ଦିଗ ଦନ୍ତିକ ବିଦାରି ସରକ୍ତ ( ଲୋହିତବର୍ଣ୍ଣ ) ଶରୀରରେ ବିହାର କରୁଛି ।

୩୬—ସେ ( ସୂର୍ଯ୍ୟ ) ହରି ( ଯମ ) ଏହା ନିଷ୍ଠପ୍ରୁ କରି, ଯମର ନାମ ମନ୍ଦ, ସେ ଜୀବ ତୋଷ ଦାମୀ ( ପ୍ରାଣିମାନଙ୍କର ଅନନ୍ଦ ଖଣ୍ଡ କାରୀ ), କାଳଦଣ୍ଡେ ( ମୃତ୍ୟୁଦଣ୍ଡ ଅୟୁଧ ଧରିବାଦ୍ୱାରା ) ପ୍ରତିଭା ( ପ୍ରଭାବକୁ ) ଧରିଛି ଏବଂ ସ୍ୱଭାବରେ ଦକ୍ଷିଣ ବିରାଜିତ ( ଦକ୍ଷିଣ ଦିଗରପତି ) । ଏ ସୂର୍ଯ୍ୟ ମନ୍ଦଜୀବ ( ଚୋରମାନଙ୍କର ) ତୋଷଦାମୀ, କାଳ ଦଣ୍ଡେ ଦଣ୍ଡପ୍ରଭୃତି କାଳରେ ପ୍ରତିଭା (ଦୀପ୍ତିକୁ ) ଧରିଛି, ସ୍ୱଭାବେ ଦକ୍ଷିଣ ବିରାଜିତ ( ଦକ୍ଷିଣାୟନରେ ଦକ୍ଷିଣରେ ପ୍ରକାଶିତ ) ।

୩୭—ସେ ସୂର୍ଯ୍ୟ ହରି ( ବିଷ୍ଣୁ ) ଏହା ପ୍ରମାଣ । ପକ୍ଷିବର ( ଗରୁଡ଼ ) ବିଷ୍ଣୁଙ୍କ ରଥ ସ୍ଥିତ ହୋଇଥାଏ, ପୁଣି ସେ ତମ ( ରାହୁର ) ଖଣ୍ଡନ କାରୀ, ତାଙ୍କ ନାମ ଦୀନବନ୍ଧୁ, ଜଳଜ ( ପଦ୍ମ )କୁ ସେ ଧାରଣ କରିଛନ୍ତି । ସୂର୍ଯ୍ୟଙ୍କର ପକ୍ଷିବର ( ଅରୁଣ ରଥ ସ୍ଥିତ ପୁଣି ସେ ତମ ଖଣ୍ଡନ କାରୀ ( ଅନ୍ଧକାର ଧ୍ୱଂସ କର୍ତ୍ତା ) ତାଙ୍କ ନାମ ଦିନବନ୍ଧୁ ( ଦିବସ ବନ୍ଧୁ ) ସେ ଜଳଜ ଧାରଣ ( ପଦ୍ମଧାରୀ ) ଅଛନ୍ତି ।

ଚତୁର କ୍ରମରେ ହର ପଞ୍ଚନାମ ଜାଣିମ ଭଲଲେ ।
ଏ କାଲେ ସ୍ନାନେ ବେନ ସଖୀ ମାଳମ୍ମା-କାସାରେ ଚଲଲେ ॥ ୩୮
ପୁରୁଷ-ଗୂଢ଼ପୁରୁଷ ବସିଅଛୁ ସେ କୂଲେ ଅକୁଲେ ।
ଯାହା ଦୃଷ୍ଟାନ୍ତର କହିଲା ଉତ୍ତର ପାଇଲା ଚପଲେ ॥ ୩୯
ଶୁଣିଲା ପର୍ବିକା ଦେବାର ବିବାହ ନିର୍ବାହ ଚରିତ ।
ଘେନିଣ ସନ୍ଦେହ-ସନ୍ଦେଶ ସ୍ୱଦେଶେ ଚଳିଲା ଦ୍ୱରିତ ॥ ୪୦
ଅଳ୍ପଦିନେ ନୃପନନ୍ଦନ ଭେଟିଲା ବିଳାସ-ବିପିନେ ।
ଜଳ୍ପେ ପଦ୍ମ-ତଳ୍ପେ ଶୋଇ ବାଲା ନାମ ଉଲ୍ଲାସବିହ୍ୱିନେ ॥ ୪୧
ତୁଷାର-ରଜ ଦେବାର ତୁଷାନଳ ପ୍ରକାରେ ତାପନ ।
ଭଗେ ଅସ ବସ ଭୂଷ ରସନିଧି ଦର୍ଶନ ବିଧାନ ॥ ୪୨
କହେ ଫଳାଶନ ମଦନଶଳାକା କଥାର ଗୁରୁସ୍ୱୀ ।
ଘେନି ତନ୍ନିମିତ୍ତ ଅଣିଚଲ ବଚନ ବଶ ସେ ଚତୁରୀ ॥ ୪୩

---

୩୮—ହେ ଚତୁର ( ପ୍ରବୀଣ ବ୍ୟକ୍ତିମାନେ) ହର ଏହାର ପଞ୍ଚନାମ ( ଇନ୍ଦ୍ର, ସିଂହ, ଯମ, ବିଷ୍ଣୁ ଓ ସୂର୍ଯ୍ୟ ) କ୍ରମରେ ଭଲଲେ ଜାଣିମ । ଏ କାଲେ ବେନିସଖୀ ସ୍ନାନେ ( ସ୍ନାନ କରିବାକୁ ) ମାଳମ୍ମା କାସାରେ ( ପୁଷ୍କରିଣୀକୁ ) ଚଲଲେ ।

୩୯—ଜଣେ ଗୂଢ଼ପୁରୁଷ ( ଦୂତ ) ପୁରୁଷ ସେ ସରୋବର କୂଳରେ ଅକୁଲେ ବସିଅଛୁ । ଦୂତ ଦୃଷ୍ଟାନ୍ତ ଯାହା କହିଲା ତହିଁର ଉତ୍ତର ଶୀଘ୍ର ପାଇଲା ।

୪୦—ବିବାହ ନିର୍ବାହ (ସମ୍ପାଦନ ବିଷୟରେ) ଚରିତ ସବୁ ରାଜାମାନଙ୍କ ନିକଟକୁ ପର୍ବିକାରେ ଦିଆଯାଇଥିବାର ଶୁଣିଲା । ସେ ଦୂତ ସନ୍ଦେହ ସନ୍ଦେଶ ( ଯେ ମୃଗ ଗୃହର ଛିଣ୍ଡାଇବ ସେ ସୁନ୍ଦରୀର ପତିହେବ ଏ ବାର୍ତ୍ତା) ଘେନିଣ ଦ୍ୱରିତ ଚଳିଲା ।

୪୧—ସେ ଦୂତ ଅଳ୍ପଦିନେ ବିଳାସ ବିପିନେ ( କ୍ରୀଡ଼ା ଉଦ୍ୟାନରେ) ନୃପନନ୍ଦନକୁ ଭେଟିଲା ସେ ନୃପ ନନ୍ଦନ ପଦ୍ମତଳ୍ପେ ( ପଦ୍ମପତ୍ର ଶଯ୍ୟାରେ ) ଶୋଇ ଉଲ୍ଲାସ ବିହ୍ୱିନେ (ବିରସରେ ) ବାଲାନାମ ଜଳ୍ପେ (କହୁ ହୁଅଇ) ।

୪୨—ସଖୀମାନେ ତାପନିବାରଣ ପାଇଁ ଯେଉଁ ତୁଷାର ରଜ ( କର୍ପୂରଗୁଣ୍ଡ ) ଦେଉଅଛନ୍ତି ତାହା ତୁଷାନଳ ପ୍ରକାରେ ତାପନ ( ତାପଦାୟକ ) ଦେଉଛୁ । ସେ ରାଜକୁମାର ଭଗେ, ହେ ରସନିଧି ! ଅସ, ବସ, ଭୂଷ ଓ ଦର୍ଶନ ବିଧାନ କର ।

୪୩—ଫଳାଶନେ ( ଶୁକ ) ମଦନ ଶଳାକା ( ସାରୀ ) ଏ ଦୁହେଁ ଚମ୍ପା ପୁରସ୍ଥ ଲବଙ୍ଗ ଲତାରେ ବସି ହେଉଥିବା କଥାର ଗୁରୁସ୍ୱୀକି ଦୂତ କହିଲା । ତନ୍ନିମିତ୍ତ ଶୁଣି ମନକୁ ଅଣିଲେ—ସେ ଚତୁରୀ ବଚନରୂପେ ବଶହୋଇଛୁ ।

ଧ୍ୟାୟି ଉପାଧ୍ୟାୟୀ ସଙ୍ଗ କଥାରଙ୍ଗ କହୁ ସେ ତଦନ୍ତ ।
ଭାବିଲେ ଚତୁର ମନ୍ତ୍ରର ବ୍ୟାଜରେ ସେ ଦେଲେ ଉଦନ୍ତ ॥ ୪୪
ମାଳୀପୁରେ ସ୍ଥିତ ଫୁଲମାଳା ଗୁନ୍ଥି ସେନେହୀ କୁସୁମ ।
ନାମ ଶୁଣି ଗୁଣି ହୋଇଲେ କଲଇ କି କର୍ମ କି କର୍ମ ॥ ୪୫
ଗର୍ଭଗର୍ଭେ ପନ୍ନ ଦେବା ନେବା ଶିଶୁବାଳକା ସୁଜାଣ ।
ପରସ୍ପର ଗୀତ ଇଙ୍ଗିତ ଭାଳିଲେ ବିରହୀ ପ୍ରମାଣ ॥ ୪୬
ପୁଣି ଭଣି ଦେଇ ପତ୍ର ଉତ୍ତର ନ ପାଇ କାତରେ ।
କି କଥା ବୋଲି ତଡ଼ାଗତୀରେ ବସି ପାଞ୍ଚୁଁ ମୁଁ ଚତୁରେ ॥ ୪୭
ଆଜନ୍ମସୁଖୀ ବେଳ ସଖୀ ଦେଖିଲି ପ୍ରଭାତୁଁ ସେଠାରେ ।
ଏସନ ପ୍ରଶନ କଲି କେ କାହାକୁ କହିଲା ପ୍ରକାରେ ॥ ୪୮
କେତେ ବାଧି ମନୁ ତେଜି ବାଧି ମନୁ ଅଶେଷ ପ୍ରମାଣ ।
କୋଟିବ୍ରହ୍ମାଣ୍ଡେ ଏକ ବୋଲି କଲେ ଯେ ଗୋଟିଏ ନିର୍ମାଣ ॥ ୪୯

---

୪୪—ସେଠାରେ ଉପାଧ୍ୟାୟୀ ସଙ୍ଗରେ ଯେପରି କଥାରଙ୍ଗ ( କଥୋପକଥନ ) ହୋଇଥିଲା ତାହା ଧ୍ୟାୟି ( ସ୍ମରଣ କରି ) ସେ ତଦନ୍ତ ( ବର୍ତ୍ତମାନ ) ଦୂତ କହୁଁ ଚତୁରେ ଭାବିଲେ—ସେହି ଉପାଧ୍ୟାୟୀ ଠାରୁ ଆସି ମନ୍ତ୍ରର ବ୍ୟାଜରେ ( ଛଳରେ ) ଉଦନ୍ତପନ୍ନ ଦେଲେ ।

୪୫—ମାଳୀ ପୁରେ ରହିଥିବା ଦୂତ ଫୁଲମାଳ ଗୁନ୍ଥିବା ଏବଂ ସେନେହୀ କୁସୁମ (ସୁନ୍ଦରୀ ସ୍ନେହୀ ହୋଇଥିବା ପାଟଳୀ ଫୁଲର) ନାମଶୁଣି ଗୁଣି ହେଲେ କି କର୍ମ କଲଇ କି କର୍ମ କଲଇ ଅର୍ଥାତ୍ ଏଡ଼େ ଅନୁରାଗିଣୀ ହୋଇଛୁ ପୁଣି ଉଦନ୍ତ ପଠାଇଥିଲୁ ଅମ୍ଭେ ଜାଣି ନ ପାରିଲେ ।

୪୬—ଗର୍ଭ ଗର୍ଭେ ( ପୁଷ୍ପ ଗର୍ଭ ମଧ୍ୟରେ ) ପନ୍ନଦେବା, ସୁଜାଣ ( ଚତୁରୀ ) ଶିଶୁ ବାଳକା ତାହା ନେବା ଏବଂ ପରସ୍ପରଙ୍କ ଇଙ୍ଗିତ ଗୀତ ଦୂତଠାରୁ ଶୁଣି ଭାଳିଲେ ବିରହଣୀ ହେବା ପ୍ରମାଣ ଅଛି ।

୪୭—ପୁଣି ଭଣି (କହିଲେ ) ପନ୍ନଦେଇ ଉତ୍ତର ନ ପାଇ ମୁଁ ତଡ଼ାଗତୀରେ ବସି କି କଥାବୋଲି କାତରେ ପାଞ୍ଚୁ (ଭାବେ ) ।

୪୮—ପ୍ରଭାତୁଁ ଆଜନ୍ମରୁ ସୁଖୀ ବେଳସଖୀକୁ ସେଠାରେ ( ତଡ଼ାଗତୀରରେ ) ଦେଖିଲି କେ କାହାକୁ କହିଲା ପ୍ରକାରେ ଏସନ ପ୍ରଶ୍ନ କଲି ।

୪୯—ବାଧି ( ବାଧାଦେଇ )କେତେ ମନୁ ପର୍ଯ୍ୟନ୍ତ ବାଧି ( ଅନ୍ୟ ସଂସାର ବାଧାନ ମାନ ) ମନୁ ତେଜି ( ଅନ୍ୟମନସ୍କ ନ ହୋଇ ) ଅଶେଷ ରୂପେ ପ୍ରମାଣ ( ଅନୁମାନ ବା ନିଷ୍ପତ୍ତି ) କରି କୋଟିବ୍ରହ୍ମାଣ୍ଡରେ ଏକ ବୋଲି ଗୋଟିଏ ନିର୍ମାଣ କଲେ ।

ଏମନ୍ତ ମତ୍ତକାଶିନୀ ଏ କେମନ୍ତ ଅନେକ ସୁଗାତ୍ର ।
ଲଭି ଦଣ୍ଡେ ଦଣ୍ଡେ ସେ ଦଣ୍ଡେ ଆଶାୟୀ ପୁରୁଷେ ବଚନ ॥ ୫୦
ବୋଲନ୍ତାଇ ଚିତ୍ର ନୋହେ ରାଜପୁତ୍ର ବିନାଶେ ଉତ୍ପାତ ।
ଯେହୁ ଜୀବଦାତା ଜଳିଲ ପୁରୁଷେ ଏ କଥା ନୋହେତ ॥ ୫୧
କହିଲ ଯାହା ପ୍ରଥମା ଶୁଣ ତାହା ମୋ ବାଣୀ ଶ୍ରବଣେ ।
ଅଷ୍ଟାପଦଗୋରୀ ଅଷ୍ଟଢଗେ ପୂରି ଅଷ୍ଟମ ଲକ୍ଷଣେ ॥ ୫୨
ମୁଗ୍ଧା ନେତ୍ରେ ସଙ୍ଗ ବିପ୍ରଲବ୍ଧା ହୋଇ ସଙ୍କେତୁଁ ଆସିଲା ।
ମନ ଅଭିସାରୀ ତୁଲେ ଅଭିସାର କରଣେ ବସିଲା ॥ ୫୩
ନବନବ ଭାବ ଭାବନାକୁ ଘେନି ବିରହୋତ୍କଣ୍ଠିତା
ନିରାଶେ ଗଲା ପରି ଏଥି ଚିନ୍ତାରୁ କଳହାନ୍ତରିତା ॥ ୫୪

---

୫୦—ଏମନ୍ତ ମତ୍ତକାଶିନୀ ( ସୁନ୍ଦରୀ ) ଅନେକ ସୁଗାତ୍ର ( ଉତ୍ତମ ଶରୀର ) ଲଭି ଆଶାୟୀ ( ତାକୁ ଆଶା କରିଥିବା ) ପୁରୁଷକୁ ଦଣ୍ଡେ ଦଣ୍ଡେ ( ପ୍ରତି ଦଣ୍ଡରେ ) ଦଣ୍ଡଇ ଏ କେମନ୍ତ ବଚନ ଅଟେ ।

୫୧—ବୋଲନ୍ତାଇ ଏକଥା ଚିତ୍ର ( ଆଶ୍ଚର୍ଯ୍ୟ ) ନୁହେଁ, ରାଜପୁତ୍ରର ବିନାଶ ନିମିତ୍ତ ଏ ଉତ୍ପାତ ହେଉଅଛି, କିନ୍ତୁ ଯେହୁ ଗୃହିଁବା ମାନେ ଜଳିଲ ପୁରୁଷେ (ଦଗ୍ଧ-କନ୍ଦର୍ପକୁ ) ଜୀବଦା'ତା ( ଜୀଆଇ ଦିଅଇ ) ସେ ସଜୀବ ମନୁଷ୍ୟକୁ ନାଶ କରିବ କି ? ଏଣୁ ଏ କଥା ନୁହେତ ।

୫୨—ପ୍ରଥମା ( ସେ ଦୁହିଁଙ୍କ ମଧ୍ୟରୁ ପ୍ରଥମଟି ) ମୋ ବାଣୀ ଶ୍ରବଣେ ଯାହା କହିଲ ତାହା ଶୁଣ, ଅଷ୍ଟାପଦ ଗୋରୀ (ସୁବର୍ଣ୍ଣ ଗୋରୀ) ଅଷ୍ଟମ ଲକ୍ଷଣି ( ମୁଗ୍ଧାଦି-ଅଷ୍ଟନାୟିକା ଲକ୍ଷଣରେ ) ପୂରି (.ପୂର୍ଣ୍ଣା ହୋଇ ) ଅଷ୍ଟ ଢଙ୍ଗରେ ପ୍ରକାଶ ପାଇଛି ।

୧ମୁଗ୍ଧା, ୨ବିପ୍ରଲବ୍ଧା, ୩ଅଭିସାରିକା, ୪ବିରହୋତ୍କଣ୍ଠିତା, ୫କଳହାନ୍ତରିତା, ୬ ଖଣ୍ଡିତା, ୭ ସ୍ୱାଧୀନ ଭର୍ତ୍ତୃକା, ୮ ବାସକ ସଜ୍ଜା ।

୫୩—ସେ ସୁନ୍ଦରୀ ନେତ୍ରେ (ଦର୍ଶନ ଦ୍ୱାରା ପୁରୁଷ ସଙ୍ଗ ପାଇ ମୁଗ୍ଧା ନାୟିକା ପରି ମୁଗ୍ଧା (ମୋହିତା) ହୋଇଲା, ସଙ୍କେତ ସ୍ଥାନରୁ ବିପ୍ରଲବ୍ଧା ନାୟିକା ପରି ହୋଇ ବିପ୍ରଲବ୍ଧା (ପ୍ରତାରିତା) ହୋଇ ଆସିଲା । ତାହାର ମନ ଅଭିସାରୀ ( କାନ୍ତ ଉଦ୍ଦେଶ୍ୟରେ ସଙ୍କେତ ସ୍ଥାନକୁ ଯିବା ନାୟିକା ) ତୁଲେ ଅଭିସାର ( କାନ୍ତ ଅନୁଗମନ ) କରଣରେ ବସିଲା ।

୫୪—ନବ ନବ ଭାବ ଭାବନାକୁ ଘେନି ବିରହୋତ୍କଣ୍ଠିତା ନାୟିକାପରି ସେ ସୁନ୍ଦରୀ ବିରହରେ ଉତ୍କଣ୍ଠିତା ହେଲା । ପୁଣି ସେ ପୁରୁଷ ନିରାଶ ହୋଇ ଗଲା ପରି ଏଥି ଚିନ୍ତାରୁ କଳହାନ୍ତରିତା ( ନାୟକ ସଙ୍ଗେ କଳହ କରି ପରେ ଅନୁତପ୍ତା ନାୟିକା ) ପରି ହୋଇଛି ।

ଅଛୁ ମନୋହାରୀ ଏ ବିବେକୁଁ କର ଖଣ୍ଡିତା ପ୍ରକୃତ ।
ବାଞ୍ଛାରେ ହୋଇଛୁ ସ୍ୱାଧୀନଭର୍ତ୍ତୃକା ପ୍ରକାର ପୀରତ ॥ ୫୫
ବାସକସଜ୍ଜା ଉନ୍ନିଦ୍ର ପ୍ରାପ୍ତି-ଆଶା-ମାର୍ଗକୁ ନିରେଖି ।
ସ୍ୱପନ ସଙ୍ଗ ବିଚ୍ଛେଦୁଁ ସେ ପ୍ରୋଷିତଭର୍ତ୍ତୃକା କି ଦୁଃଖୀ ॥ ୫୬
ଦ୍ୱିତୀୟା କହି ଜଗନ୍ମୟ ଜଙ୍ଗମମୂର୍ତ୍ତି କି ରୂପାସ୍ତ୍ର ।
ଭବ ଦମ୍ଭନାଶେ ମୋହନାସ୍ତ୍ର କରି କଲ ଯେ ସମନ୍ତ୍ର ॥ ୫୭
ପରୀକ୍ଷା ପାଇ ପ୍ରୟୋଗ କଲ ଯହିଁ ସଂସାରେ ସେ ଧନ୍ୟ ।
ଏକୁଁ ଅନେକ ହୋଇ ତାଙ୍କୁ ଦଶେ ଯେ କରାଇ ଉଚ୍ଛନ୍ନ ॥ ୫୮
ବିଦଗଧ ବୀର ବିରହ-ଅନଳେ ତା ଅନ ସମ୍ମତେ ।
ସାର୍ଥ କରିବାକୁ ଅନର୍ଥ ହୋଇଛି ତରିବ କି ସତେ ॥ ୫୯
ମୋ ପ୍ରଶ୍ନେ ବୋଇଲେ ଏକଥା ହୋଇଲା ଏବେ ଏ ବିଧାନେ ।
ତରିଲେ ନାହିଁ ସନ୍ତତେ ଦଗ୍ଧ ହେଲେ ସଗରନନ୍ଦନେ ॥ ୬୦
ହରିପଦ-ଗୁପ୍ତ-ଜଳ ପରଶରୁ ଯେ ପୁଣି ତୁମର ।
ହରର ଛେଦ ପାରିଜାତମାଳାକୁ ଲଭିବ ସେ ବର ॥ ୬୧

---

୫୫—ତାଙ୍କର ଅନ୍ୟ ମନୋହାରୀ ନାୟିକା ଅଛୁ ଏ ବିବେକୁଁ ଖଣ୍ଡିତା ( ସ୍ୱାମୀର ଅନ୍ୟ ସ୍ତ୍ରୀ ସମ୍ଭୋଗରେ ( ଈର୍ଷାଯୁକ୍ତା ନାୟିକାର ) ପ୍ରକୃତ କି କରିଅଛୁ । ସ୍ୱାଧୀନଭର୍ତ୍ତୃକା (ସ୍ୱାମୀକୁ ବଶ କରିଥିବା ନାୟିକା ) ପ୍ରକାର ତା ବାଞ୍ଛାରେ ପ୍ରୀତ ହୋଇଛୁ ।

୫୬—ବାସକସଜ୍ଜା (ବେଶଭୂଷା ହୋଇ ଶଯ୍ୟାକରି ସ୍ୱାମିର ଆଗମନକୁ ଅପେକ୍ଷା କରିଥିବା ନାୟିକା ) ପରି ପ୍ରାପ୍ତି ଆଶାରୂପ ପଥ ( ମାର୍ଗକୁ ) ଚାହିଁ ଉନ୍ନିଦ୍ର ହୋଇଛୁ । ସ୍ୱପ୍ନସଙ୍ଗ ବିଚ୍ଛେଦୁଁ ( ନୋହିବାରୁ ) ପ୍ରୋଷିତ ଭର୍ତ୍ତୃକା ( ପତି ବିଦେଶରେ ଥିବା ନାୟିକା ) ପରି ସେ ସୁନ୍ଦରୀ ଦୁଃଖୀ ହୋଇଛୁ କି ?

୫୭—ଦ୍ୱିତୀୟା ସଖୀ କହିଲା ରୂପାସ୍ତ୍ର ( କାମ ) ସେ ଜଗନ୍ମୟ ଜଙ୍ଗମ ମୂର୍ତ୍ତିଙ୍କୁ ( ଚଳନ୍ତ ପ୍ରତିମାକୁ ) ଭବ ଦମ୍ଭ ନାଶେ ( ଶିବଙ୍କର ଧୈର୍ଯ୍ୟ ନାଶ କରିବାକୁ ) ମୋହନାସ୍ତ୍ର କରି ସମନ୍ତ୍ର (ମନ୍ତ୍ରଯୁକ୍ତ) କଲା ।

୫୮-୫୯—ତା ଅନ ସମ୍ମତେ ସାର୍ଥ କରିବାରୁ ( ତାହାଙ୍କର ଅଭିପ୍ରାୟ ସାର୍ଥକ ନ ହେବାରୁ ) ଏ ଅନର୍ଥ ହୋଇଛୁ । ସେ ବୀର ବିରହାନଳରେ ବିଦଗ୍ଧ ହେଉଛୁ । ସତେ ତରିବ କି ?

୬୦-୬୧-ମୋ ପ୍ରଶ୍ନରେ ସେମାନେ ବୋଇଲେ—କପିଳ କୋପାନଳରେ ସଗରନନ୍ଦନମାନେ କଣ ସନ୍ତତେ ( ସର୍ବଦା ) ଦଗ୍ଧ ହେଲେ, ହରି-ପଦ ଗୁପ୍ତଜଳ ( ଗଙ୍ଗାଜଳ ) ସ୍ପର୍ଶରୁ ତରିଲେ ନାହିଁ ? ଏତେବ ଏହି ବିଧାନରେ ୯ କଥା

କଲେ ନିଶ୍ଚୟ ଅମରଋଷି ବାଣୀବଚନେ ଜନକ ।
ପାରିଲେ ତର ତାର କହ କୁମାର ଛାମୁରେ ଏତେକ ॥ ୭୨
ଭରସା ନ କଲେ କହ ଶୋଭାନିଧି ଦର୍ଶନ ଦେଇଛି ।
ସେ ରସାଳସା ସୁଲୋଚନା ରୁକ୍ମିଣୀ ପରାୟେ ହୋଇଛି ॥ ୭୩
ଉଦ୍ୟମ କର ମାଧବ ପରି ନୋହି ମାଧବ ସମାନେ ।
ତନୁବନ୍ତେ ଧନୁ ଧରି ନ ପାରିବେ ଅତନୁ କମ୍ପନେ ॥ ୭୪
ଅନାୟାସେ ବୀର-କିରୀଟୀ ପଦବୀ ସୁନ୍ଦର ଲଭିବେ ।
ନୀପପୁଷ୍ପ ପରି ଦେହ ଧରି ଭୀଷ୍ମ ବଇରି ତଳିବେ ॥ ୭୫
ଅବଧାନ ବକ୍ଷେ କହିଲେ କହିଲେ ସେ ଯେତେ ବଚନ ।
ଶିଖୀ ଶିଖଣ୍ଡୀ ହୋଇଛି ଯା ଶୋଭା କେ ପ୍ରମାଣ ଏମାନ ॥ ୭୬

---

ହେଲା, ଯେ ହର ( ମୃଗ )-ର ଗୃମର ଛେଦି ସ୍ୱର୍ଗସ୍ଥ ପାରିଜାତ ମାଳାକୁ ଲଭିବ ସେ ସୁନ୍ଦରୀର ବର ହେବ ।

୭୨—ଅମରଋଷି ( ଦେବର୍ଷି ନାରଦଙ୍କ ) ବାଣୀବଚନରେ ଜନକ ( ପିତା ) ଏହି ନିଶ୍ଚୟ କଲେ, କୁମାରଛାମୁରେ ଯାଇ ଏତେକ କହ—ତୁମ୍ଭେ ପାରିଲେ ନିଜେ ତୁମ ଏବଂ ସୁନ୍ଦରୀକୁ ତାର ।

୭୩—ଶୋଭାନିଧି ମୋତେ ଭରସା ନ କଲେ ମଧ୍ୟ ତାଙ୍କୁ କହ ମୋତେ ସେ ଦର୍ଶନ ଦେଇଛି, ସୁଲୋଚନା ଏବଂ ରୁକ୍ମିଣୀ ଯେପରି ମାଳତୀ ମାଧବ ଓ ଓ କୃଷ୍ଣଙ୍କ ଗୃହିଁ ରହିଥିଲେ, ସେ ରସାଳସା ସେହିପରି ତୁମ୍ଭଙ୍କ ଗୃହିଁ ରହିଛି ।

୭୪—ମାଳତୀମାଧବ ଉଦ୍ୟମ କରି ନ ପାରିବାରୁ ସୁଲୋଚନାକୁ ପାଇଲେ ନାହିଁ, କୃଷ୍ଣ ଉଦ୍ୟମ କରି ରୁକ୍ମିଣୀଙ୍କୁ ପାଇଥିଲେ । ତୁମ୍ଭେ ମାଧବ ( ମାଳତୀ-ମାଧବ ) ପରି ନୋହି ମାଧବ ( କୃଷ୍ଣଙ୍କ ) ସମାନ ଉଦ୍ୟମ କର । ଏପରି କଲେ ଅତନୁ ( କନ୍ଦର୍ପ ) ଧନୁଧରି ତନୁବନ୍ତେ ( ଦେହବନ୍ତମାନଙ୍କୁ ) କମ୍ପନେ ନପାରିବେ ( ଜିଣିପାରିବେ ନାହିଁ ) ।

୭୫—ସୁନ୍ଦର ଅନାୟାସରେ ବୀରକିରୀଟୀ ( ଅର୍ଜୁନ ) ଙ୍କର ପଦବୀ ( ମାର୍ଗ ) ଲଭିବେ । ବୈରୀମାନେ ନୀପପୁଷ୍ପ ( କଦମ୍ବଫୁଲ ପରି ) ଦେହ ଧରି ରୋମାଞ୍ଚିତ ହୋଇ ଭୀଷ୍ମ ଯୁଦ୍ଧକ୍ଷେତ୍ରରେ ଶୋଇଲାପରି ତଳିବେ ।

୭୬—ସେ ଯେତେ ବଚନ କହିଥିଲେ ତାହା ଆପଣଙ୍କ ଅବଧାନ ବକ୍ଷେ (ମନୋ-ଯୋଗ କରିବା ବକ୍ଷପୁରେ ) କହିଲି । ଶିଖଣ୍ଡୀ ଯୋଗୁ ଭୀଷ୍ମ ଧନୁ ଧରି ପାରି ନ ଥିଲେ, ସେ ସୁନ୍ଦରୀ ଶୋଭାରେ ( କେଶ ଶୋଭାରେ ) ଶିଖୀ ଶିଖଣ୍ଡୀ ( ମୟୂରପୁଚ୍ଛ ) ଲଜ୍ଜିତ ହୋଇଛି । ଅତଏବ ବୀରମାନେ ଦମ୍ଭହତ ହୋଇ ଧନୁଧରି ନ ପାରିବେ ଏହା ପ୍ରମାଣ ଅଟେ ।

ଅଶ୍ଳେଷ ଧ୍ୱନି ଶ୍ଳେଷ ଛଳ ବିରୋଧ ରୂପକ ଉତ୍ପ୍ରେକ୍ଷ ।
ସୁରସଜନିତ ହୃତ ଗିର ପୁଣି ଅଧିକ ସୁସ୍ନେହ ॥ ୬୭
ଜନକକୁମାରୀ ଅଙ୍କ ଅଧାବର ଯେ ମାର ମାରୀଚ ।
ତାଙ୍କ କୃପାରୁ ସେ ପାର ହେବ ବୋଲି ଧଇଲା ନାରାଚ ॥ ୬୮
ପଙ୍କ୍ତି ବଡଦାନ ସ୍ୟନ୍ଦନ ସାରଥି ହୋଇ ଯେ ସମ୍ଭବୀ ।
ମଞ୍ଜୁଳ ମଙ୍ଗଳଯୁକ୍ତ ନାମ ବହି ରକ୍ଷଣେ ପୃଥିବୀ ॥ ୬୯
ପାଦେ ଉପଯୋଗେ ଇନ୍ଦ୍ର ଯେ ସର୍ବଦା ଧୀବର ଅନନ୍ଦେ ।
ସବୁ ଦୁଇବର୍ଣ୍ଣ ନାମେ ଅଣି ବୁଧେ ମଜ୍ଜିବ ସେ ପଦେ ॥ ୭୦

---

## ସପ୍ତତ୍ରିଂଶ ଛାନ୍ଦ

ରାଗ—ପାହାଡ଼ିଆ କେଦାର



ଣ ସୁବୁଦ୍ଧି କଲେ ପ୍ରଚାର ଦେଶ ଦେଶକେ ସନ୍ଦେଶ ଚର ।
ବିଶ୍ୱାନନ୍ଦକ ଚମ୍ପାନଗର ନୃପତି ନିତ୍ୟେ ଯେ ।
ବନ୍ଦାରୁ ବୃନ୍ଦାରକ-ବୃନ୍ଦଙ୍କ ବନ୍ଦନ ନନ୍ଦସୁତ ନନ୍ଦକ—
ଧରର ବନ୍ଦର କରେ ମାହକ ବୀର ପ୍ରଭୁତ୍ୱେ ଯେ ।
ସମ୍ଭ୍ରାନ୍ତରେ ଯାହା ମିତ୍ର ବଇରୀ ଯେ । ପାଇ ଅଚଳଶିରୀ ଅଚଳଶିରୀ ଯେ ।
ମହିଷୀ ସଙ୍ଗେ ବନବିହାର ମହିଷ ସଙ୍ଗେ ବନବିହାର
ଚନ୍ଦ୍ରାତପର ଚନ୍ଦ୍ରାତପର ତଟଳ ବିହର ଚଯ ॥ ୧

---

୬୭—ଧ୍ୱନି, ଶ୍ଳେଷ, ଛଳ, ବିରୋଧ, । ରୂପକ ଓ ଉତ୍ପ୍ରେକ୍ଷରେ ଅଶ୍ଳେଷ ( ମିଶ୍ରିତ ) ସୁରସଜନିତ ( ରସପୂର୍ଣ୍ଣ ) ହୃତଗିର ( ବାକ୍ୟ ) ପୁଣି କୁମର ଅଧିକ ସୁସ୍ନେହ ହେଲେ ।

୬୮—ଜନକ କୁମାରୀ ( ସୀତାଙ୍କ ) ଅଙ୍କ ଅବଧାର ଯେ ( ରାମଚନ୍ଦ୍ର ) ମାରୀଚକୁ ମାରଥିଲେ ତାଙ୍କ କୃପାରୁ ସେ ରାଜପୁତ୍ର ପାରହେବ ବୋଲି ନାରାଚ ( ଶରକୁ ) ଧଇଲା ।

୬୯—ପଙ୍କ୍ତି ବଡ଼ଦାନ ( ଦଶ ) ସ୍ୟନ୍ଦନ ( ରଥ ) ସାରଥି ( ସୂତ-ସୁତ ) ଅର୍ଥାତ୍ ଯେ ଦଶରଥ ସୁତ ହୋଇ ପୃଥିବୀରକ୍ଷଣେ ମଞ୍ଜୁଳ ( ରାମ ) ମଙ୍ଗଳ ଯୁକ୍ତ ( ଭଦ୍ର ) ଅର୍ଥାତ୍ ରାମଭଦ୍ର ନାମ ବହିଲେ ।

୭୦—ଉପଯୋଗେ ଇନ୍ଦ୍ର ( ଉପେନ୍ଦ୍ର ) ତାଙ୍କ ପାଦେ ( ପଦେ ) ସର୍ବଦା ଅନନ୍ଦେ ଧୀବର (ଦାସ) ଅଟେ, ହେ ବୁଧେ ସବୁ ଦୁଇବର୍ଣ୍ଣକୁ ନାମରେ ଅଣି ସେ ପଦେ ମଜ୍ଜିବ ।

---

୧—ସୁବୁଦ୍ଧ ( ପଣ୍ଡିତମାନେ ) ଶୁଣ, ଚରମାନେ ଦେଶ ଦେଶକେ ଏହି ସନ୍ଦେଶ (ବାର୍ତ୍ତା) ପ୍ରଚାର କଲେ-ବନ୍ଦାରୁ ( ପୂଜନୀୟ ) ଯେଉଁ ବୃନ୍ଦାରକ

ବରବର୍ଣ୍ଣନା ଛବିରେ ଶୋହି ବରବର୍ଣ୍ଣନା କବିରେ ସେହି
ଦିବରେ ନାହିଁ ଭୁବିରେ କାହିଁ ଅଛି ନନ୍ଦିନୀ ଯେ ।
ସୁଷମେ ସମେ ନ ପାଇ ବରେ ପାଇଛି ବରେ ଯେ ସ୍ୱୟମ୍ବରେ
ଲକ୍ଷଣା ଏବେ ସେ ଅଡ଼ମ୍ବରେ ଲୋକବନ୍ଦନୀ ଯେ ।
ନାରୀତିଳକ ଦିବ୍ୟଫଳକ ବତ ଯେ । ଯେନି ଶନ ବିଶନ ଘାଗୁର୍ ଯୁତ ଯେ ॥
ଶୋଭାମଣ୍ଡଳେବିଗ୍ରହ ସତ ଭୂତନାଥରେ ଧୃଣି ରଞ୍ଜିତ
ଜୟାର୍ଥେ ନାନା ସୁମନାର୍ଚ୍ଚିତ ଶଧତାକୃତ ଯେ ॥ ୨

---

ବୃନ୍ଦ ( ଦେବତାମାନେ ) ସେମାନଙ୍କର ବନ୍ଦନ ( ପୂଜ୍ୟ ) ଓ ନନ୍ଦକଧରେ ( ନନ୍ଦକ ନାମକ ଖଡ୍‌ଗଧାରୀ ) ନନ୍ଦ-ସୁତ ( ଶ୍ରୀକୃଷ୍ଣଙ୍କ ) ଚମ୍ପା ନଗରନୃପତି ବିଶ୍ୱାନନ୍ଦଙ୍କ ନିତ୍ୟ ବନ୍ଦନ ମାନଙ୍କ ( କେବଳ ପୂଜା ) କରନ୍ତି, ଯାହାଙ୍କର ବୀର ପଣର ପ୍ରଭୁତ୍ୱରେ ମିତ୍ରମାନେ ଓ ବୈରୀମାନେ ଅଚଳଶିରୀ ( ଅଚଳ ସମ୍ପତ୍ତି ଓ ପର୍ବତରେ ଲୁଚିବା ଭାଗ୍ୟ ) ପାଇଛନ୍ତି । ମହିଷୀ ( ପାଟରାଣୀ ଓ ମଇଁଷି ) ତଳେ ବାହାରୁଛନ୍ତି ।

୨—ସେ ରାଜାଙ୍କର ଏକ ନନ୍ଦିନୀ ଅଛି, ସେହି ବରବର୍ଣ୍ଣନା ଛବିରେ (ଅତ୍ୟୁତ୍ତମା ସ୍ତ୍ରୀ ମୂର୍ତ୍ତିରେ) ଶୋହି ( ଶୋଭିତା ହୋଇଛି ) । କବିମାନଙ୍କ ବର୍ଣ୍ଣନାରେ ବର ( ଶ୍ରେଷ୍ଠ ), ତାପରି ଦିବିରେ ( ସ୍ୱର୍ଗରେ ) ନାହିଁ, ଭୁବିରେ କାହିଁ ବା-ହେବ । ସୁଷମେ (ଶୋଭାରେ) ସମେ ବରେ ନପାଇବାରୁ ସେ ଲୋକ ନନ୍ଦିନୀ (ଜଗତର ଆନନ୍ଦ ଦାୟିନୀ) ସ୍ୱୟମ୍ବର ବିଷୟରେ ଏକ ବର ପାଇଛି, ଏବେ ସେହିଲକ୍ଷଣାରେ ଅଡ଼ମ୍ବରେ ( ଏକସମାରୋହ ) ହୋଇଛି । ସେ ନାରୀ-ତିଳକ ଦିବ୍ୟ ଫଳକବତ ( ଢାଲପରି ) ହୋଇଛି, ଏ ଯେନି ବିଶନ ( ଅଶ୍ରୁରଞ୍ଜକନକ ) ଶନ ( ଗଣ୍ଡ ଓ ସ୍ତନରେ ) ଏବଂ ଘାଗୁର ( କଟି କଙ୍କଣିରେ ) ଯୁତହୋଇଛି, ଶୋଭାମଣ୍ଡଳେ ( ଶୋଭାରାଜ୍ୟରେ ) ସତ ବିଗ୍ରହ ( ଯୁଦ୍ଧ ) ଆରମ୍ଭ କରିଛି, ଜୟାର୍ଥେ ( ଜିଣିବାପାଇଁ ) ଭୂତନାଥରେ ( ଶିବସଦୃଶସ୍ତନରେ ) ରଞ୍ଜିତ ଓ ନାନା ସୁମନାଚିତ ( ପୁଷ୍ପଭୂଷିତ ) ହୋଇଛି । ସେ ସୁନ୍ଦରୀ ଏହିପରି ବାଧାତାହାରୀ କୃତ ହୋଇଛି । ଢାଲ ଶନ ବିଶନ ଓ ଘାଗୁର ( ଘୁଙ୍ଗୁରରେ ) ଯୁକ୍ତ ହୋଇଥାଏ, ଏବଂ ତାହାର ବିଗ୍ରହ ( ଦେହ ) ମଣ୍ଡଳେ ( ମଣ୍ଡଳାକାରରେ ) ଶୋଭାପାଏ, ସେ ଢାଲ ଭୂତନାଥରେ ( ଶିବମୂର୍ତ୍ତିରେ ) ରଞ୍ଜିତ ( ଚିତ୍ରିତ ) ଏବଂ ଜୟାର୍ଥେ ( ଜୟ ଉଦ୍ଦେଶ୍ୟରେ ) ନାନାସୁମନାର୍ଚ୍ଚିତ ( ବିବିଧ ପୁଷ୍ପରେ ପୂଜିତ ) ହୋଇଥାଏ ।

ହେଉ ନୃପତି ହେଉ କୁମାର ଯେହୁ ମଣ୍ଡିବ ତହିଁ ଶ୍ରମର
ଯୋଡ଼ିଲାକ୍ଷଣି ଉରେ କାମର ଗର୍ବ ସରିବ ଯେ ।
ଝଡ଼ି ପଡ଼ିବ ପାଣି କୃପାଣ ବୋଲିବ ଧନ୍ୱୀ ବାନ୍ଧିବ ବାଣ
ସନ୍ଧିଲ ମାନେ ଛୁଡ଼ିବ ଗୁଣ କସ କରିବ ଯେ ।
କରି ଦୂତଙ୍କ ଉକ୍ତି ମୁକ୍ତପସରା ଯେ । କେହୁ ଲୁଟିବା ଭାବ ରାଜନେ ଉଦ୍ୟ ଯେ ।
ପତଙ୍ଗ ପ୍ରଭାବରେ ବାହାର ଧନଞ୍ଜୟରେ ସ୍ନେହେ ଭର
ନ ଦେଇ କେହୁ ପ୍ରତିଉତ୍ତର ମୁନିଙ୍କ ପରି ଯେ ॥ ୩
ପାଟଳିପୁତ୍ର ସଭାରେ ପାତ୍ର ଢାଳନ୍ତେ ନେତ୍ର ଜାଣି ବଚନ ।
କବିତ୍ୱ କୃତ ବନ୍ଦୀପଠିତ ଦେଇ ଉତ୍ତର ଯେ ।
ଗୋଟିଏ ଚମ୍ପା ପୁଷ୍ପଭିତରେ ଆଉ ଯେତେକ ଦେଶମାତରେ
କେତେ କହିବା ପ୍ରଭୁ ତହିରେ ଦୀପ୍ତିସାଗର ଯେ ।
କେବା କ୍ଷମ ହେବାକୁ ମିତ୍ର ବଇରୀ ଯେ । ଯହିଁ ପୂର୍ବନରେଶ ଏମନ୍ତ କରି ଯେ ।
ଦାରକରରେ ଯେ ଦାରକର ସ୍ଥାନ ଛଡ଼ାଇ ସିନ୍ଧୁ ମଧ୍ୟର
କରାଇ ପୃଷ୍ଠଭେଦନ ସାର ସମ୍ପୃଷ୍ଟ ପରି ଯେ ॥ ୪

---

୩—ରାଜାହେଉ ବା ରାଜପୁତ୍ର ହେଉ ଯେ ମୃଗଶ୍ରମର ଛେଦନ କରି ତହିଁରେ (ଢାଲରୂପ ସୁନ୍ଦରୀଠାରେ) ମଣ୍ଡିବ, ସେ ଢାଲକୁ ଘାତ ଲଗାଇଲାପରି ସୁନ୍ଦରୀଙ୍କ ଉରରେ ଯୋଡ଼ିଲା କ୍ଷଣି କାମର ଗର୍ବ ସରିବ. ତାହାର (କାମର) ପାଣି କୃପାଣ (ହସ୍ତସ୍ଥିତ ଖଡ଼ଗ) ଝଡ଼ିପଡ଼ିବ । ତୁମ୍ଭେ ଅବା ବୋଲିବ ସେ କାମଧନ୍ୱୀ (ଧନୁର୍ବିଦ୍ୟାରେ ନିପୁଣ) ବାଣବାନ୍ଧିବ । କିନ୍ତୁ ସନ୍ଧିଲ-ମାନେ (ଶରସନ୍ଧାନ କଲାମାନେ) ଗୁଣ ଛୁଡ଼ିବ, ଅର୍ଥାତ୍ କାମର ଫୁଲ-ଧନୁରେ ଗୁଣ ହୋଇଥିବା ଭ୍ରମରମାନେ ପଦ୍ମଗନ୍ଧା ସୁନ୍ଦରୀର ଗନ୍ଧ ଘ୍ରାଣିଲାମାନେ ଉଡ଼ିଯିବେ ସୁତରାଂ ଗୁଣ ଛୁଡ଼ିବ । ଦୂତମାନଙ୍କର ଏହି ଉକ୍ତିକୁ ମୁକ୍ତପସରା କରି କେହି କେହି ରାଜନେ ଲୁଟିବା (ଲୁଟି-ନେବାକୁ) ଭାବ ଉଦ୍ୟ ହେଲେ, ପତଙ୍ଗମାନେ ଅଗ୍ନି ପ୍ରଭାବରେ ବାହାର ଧନଞ୍ଜୟରେ (ଅଗ୍ନିରେ) ସ୍ନେହଭର ହେଲାପରି, କେହି କାହାରିକୁ ମୁନିଙ୍କପରି ପ୍ରତ୍ୟୁତ୍ତର ନଦେଇ ଶୀଘ୍ର ବାହାରିଲେ ।

୪—ଦୂତ ପାଟଳିପୁତ୍ର ସଭାରେ ପହୁଞ୍ଚି ଏହିପରି କହନ୍ତେ ପାତ୍ର ନେତ୍ର ଢାଳି-ଦେବାରୁ (ଆଖିରେ ଠାରିଦେବାରୁ) ସେଠାବନ୍ଦୀ (ଭାଟ), ବଚନ କବିତ୍ୱକୃତ (ରଚନା କରି) ଉତ୍ତର ଦେଲେ । ଆମ୍ଭ ରାଜଧାନୀ ପୁଷ୍ପପୁର, ଚମ୍ପା ସିନା ପୁଷ୍ପଭିତରେ ଗୋଟିଏ, ଆଉ ଯେତେ ଦେଶମାନ ଅଛନ୍ତି ତାହା କେତେ କହିବା, ତହିଁରେ ପ୍ରଭୁ (ରାଜା) ଦୀପ୍ତି ସାଗର ଅଟନ୍ତି । ଏହାଙ୍କର ମିତ୍ର ବା ବୈରୀ ହେବାକୁ କିଏ ବା କ୍ଷମ ଅଛି । ଯହିଁ ପୂର୍ବ

ଶିବସୁନ୍ଦର ପୁର କୁମାର କରଛୁ ହୀନମୂରତ ମାର
ପୁଣି ନିପୁଣ ଗୁଣଗଣର ନବୀନ ଯୁବା ଯେ ।
ବାସ୍ତୁ-ପଦକୁ ଯେଣୁ ଲଭୁଥ ସୁନ୍ଦର-ପୁରନ୍ଦରୀ ବାଞ୍ଛି ତ
ଏ ଘେନ ଅଜ ଲକ୍ଷ୍ୟ ଲକ୍ଷିତ କରବ କେବା ଯେ ।
ଏତ ସମ୍ରାଟ ଅକ୍ଷ ହେବ କି ନାହିଁ ଯେ । ଶୁଣି ଗୁଣି ପୁରୋଧା ପ୍ରସ୍ତାବେ କହୁ ଯେ
ଡାକିଲେ ରଣେ କି ଜୂତପଣେ ନିବର୍ତ୍ତି ନାହିଁ କ୍ଷତ୍ରିୟ ଗୁଣେ
କଥିତ ଯୁଧିଷ୍ଠିର ପୁରାଣେ ବ୍ୟାସହିଁ ଲିଖ ଯେ ॥ ୫
ସଚିବ ଭଣି ଯେ ଦ୍ୱୀପେଶ୍ୱର କରଣେ ତାଙ୍କ ଯେ ଦ୍ୱୀପେଶ୍ୱର
କେଶରୀ ଛବ ଧାରଣ ଶର କରଜଛଲେ ଯେ ।
ସେ ରୁଣ୍ଡ ହୋଇଥିବେ ଯେ ତହିଁ ଦର୍ଶନେ ହୃଦ୍‌ଦରୀରେ ଥୋଇ
ମୁକ୍ତାମୁକୁଟ ଲୋଟାଇ ମଣ୍ଡି ଭଙ୍ଗମବଲେ ଯେ ।
ମୃଗପୁଚ୍ଛ ଛେଦନ କେତେମାତର ଯେ । ଅକ୍ଷି ହେଉ ବିଜୟ କରୁ କୁମାର ଯେ ।
ଅଜନନ୍ଦନ ଥାଉଁ ଶ୍ରୀରାମ ଭୀମ-କୋଦଣ୍ଡ ଖଣ୍ଡନେ କ୍ଷମ
ରାଜା ସମ୍ମତ ମନ୍ତ୍ରୀ ଉତ୍ତମ ଗମେ ସତ୍ୱର ଯେ ॥ ୬

---

ନରେଶ ( ଜରାସନ୍ଧ ) ଏମନ୍ତ କରଥିଲେ —ଦର କରେ ( କୃଷ୍ଣଙ୍କଠାରେ ) ଦର କର ( ଭୟ କାତର ) ହେବାରୁ ନିଜସ୍ଥାନ ( ମଥୁରା ) ଛଡ଼ାଇ ଫମ୍ପଟ (ଫକୁଆ) ମଣ୍ଡଳ ଲୁଚିଲ୍ପର ସିନ୍ଧୁ ମଧ୍ୟରେ ତାଙ୍କର ସାର ଫୁଟ ଭେଦନ (ପୁର) କରାଇଥିଲେ ।

୫—ସୁନ୍ଦରପୁର ( ସୌନ୍ଦର୍ଯ୍ୟର ଅଧାର ) କୁମାର ଶିବଙ୍କପର ମାରକୁ ହୀନ ମୂରତ ( ସୌନ୍ଦର୍ଯ୍ୟରେ ହୀନ ) କରଅଛୁ । ପୁଣି ସବୁଗୁଣରେ ନିପୁଣ ଅଟନ୍ତି, ନବୀନ ଯୁବାଙ୍କ ମଧ୍ୟରେ ଯେଣୁ ବାସ୍ତୁ ( ଜେଠା-ଇନ୍ଦ୍ର ) ପଦକୁ ଲଭିଛନ୍ତି ତେଣୁ ସୁନ୍ଦରୀମାନଙ୍କ ମଧ୍ୟରେ ପୁରନ୍ଦରୀ ( ଇନ୍ଦ୍ରାଣୀକି ) ବାଞ୍ଛା କରନ୍ତି । ଏ ଘେନ ଅଜ କେବା କେଉଁ ଲକ୍ଷ୍ୟକୁ ଲକ୍ଷିତ କରବ । ଏତ ସମ୍ରାଟ ( ଚକ୍ରବର୍ତ୍ତୀ ) ଅଟନ୍ତି, ଯିବାକୁ ଅକ୍ଷ ହେବ କି ନାହିଁ । ପୁରୋଧା ( ପୁରୋହିତ ) ଏହା ଶୁଣି ଗୁଣି ( ବିଚାର ) ପ୍ରସ୍ତାବକ୍ରମେ କହିଲେ । ରଣେ ( ଯୁଦ୍ଧକୁ ) କି ଜୂତପଣେ ( ଜୁଆଖେଳରେ ବାଜି ରଖିବାକୁ ) ଡାକିଲେ କ୍ଷତ୍ରିୟ ଗୁଣରେ ( କ୍ଷତ୍ରିୟପକ୍ଷରେ ) ନିବର୍ତ୍ତି ନାହିଁ । ବ୍ୟାସ ଲିଖିତ ପୁରାଣରେ ଯୁଧିଷ୍ଠିର ଏହାର ଦୃଷ୍ଟାନ୍ତ ରୂପେ କଥିତ ହୋଇ ଅଛନ୍ତି ।

୬—ସଚିବ ( ମନ୍ତ୍ରୀ ) ଭଣିଲେ ଯେ ଦ୍ୱୀପେଶ୍ୱର ରାଜା ତାଙ୍କ ଦ୍ୱିପେଶ୍ୱର ( ହସ୍ତୀ-ଶ୍ରେଷ୍ଠ ) କରଣେ ( କରବାକୁ ଯେଉଁ କୁମାର କେଶରୀ ( ସିଂହ ) ଛବିକି

ମନ୍ତ୍ରୀ ସମଦେ କହ୍ନ ପବନେ ଯେଉଁ ସୁନ୍ଦରେ ନାହିଁ
ବେଣୁ ପବନ ସଂଯୁକ୍ତେ ସେହି ପାଇଲା ପ୍ରାପ୍ତ ଯେ ।
ରସ ପ୍ରକଟ ହୋଇଲା କେତେ ପ୍ରଥମ ସିନ୍ଧୁ ବୃଦ୍ଧି ନିମନ୍ତେ
ଦ୍ୱିତୀୟେ ସାର ହେବା ଜଗତେ ଚିତ୍ତେ ଉଦୟ ଯେ ।
ଥିଲା ତୃତୀୟ ଲୋପ ହେଲା ଦ୍ୱିବିଧ ଯେ । ବନେ ଚତୁର୍ଥ ସଞ୍ଚାର ସମସ୍ତ ଯେ
ବଦନେ ହୋଏ ପଞ୍ଚମ ଜାତ ଷଷ୍ଠ ରିପୁରେ କରିବ ସ୍ଥିତ
ହୁଡ଼ିଲା ସପ୍ତ ଅଷ୍ଟମ ମାନ ନବରଞ୍ଜିତ ଯେ ॥ ୧୦

---

ଅଗସ୍ତି ଅଇଲା, ଅଗସ୍ତି ସିନ୍ଧୁକୁ ( ସମୁଦ୍ରକୁ ) ଗ୍ରାସ କରିଥିଲେ, ଏ ମନ୍ତ୍ରୀ ଅମୃତ ସନ୍ଦେହ ରୂପ ସିନ୍ଧୁକୁ ଗ୍ରାସକରିବ, ସେ ମୁନି ବାତାପି ନାମକ ରାକ୍ଷସନିସୂଦନ ( ବିନାଶକ ) ହୋଇଥିଲେ, ଏ ଆପଣଙ୍କର ତାପ ରୂପ ବାତାପିର ନିସୂଦନ ହେବ, ସେ ଉଇରେ ବଢ଼ୁଥିବା ବିନ୍ଧ୍ୟ ଗିରିର ବୃଦ୍ଧିକୁ ନାଶ କରିଥିଲେ, ଏ ପର୍ବତପରି ବଢ଼ିଥିବା ଦୁଃଖ ଚିନ୍ତାର ବୃଦ୍ଧିକୁ ନାଶ କରିବ; ସେ ଦକ୍ଷିଣ ଦିଗରେ ଉଦୟକୁ ଭଜି ରାଜିତ ହୁଅନ୍ତି, ଏ ଦକ୍ଷିଣ ( ଅନୁକୂଳ ) ଉଦୟ ଭାବ ( ଆଗମନକୁ ) ଭଜି ବିରାଜିତ ହୋଇ ଅଛନ୍ତି । ଯେବେ ଏ ହୋଇଲା ( ଅଗସ୍ତି ଉଦୟ ହେଲେ ) ତେବେ ଅବଶ୍ୟ ଏ ହେବ—ଗୁପ୍ତ ( ବିସ୍ତୃ ପଦରେ ଗୁପ୍ତ ) ସୁର-ତରଙ୍ଗଣୀ (ଗଙ୍ଗା) ପାଇ ରସ ( ଜଳ ) ତରଙ୍ଗରେ ଆଗ କଶ୍ୟପଜକୁ ( ଐରାବତକୁ ) ଭସାଇ ଦେଇ ସଲିଳେ ( ଜଳରେ ) ନେତ୍ର ଓ ମନକୁ ମଜ୍ଜାଇ ତୋଷ କରିବ । ମନ୍ତ୍ରୀର ଆଗମନରେ ଗୁପ୍ତ ସୁରତ-ରଙ୍ଗଣୀ ( ରତିନିପୁଣା ସୁନ୍ଦରୀ ) ପ୍ରକାଶ ପାଇ ଅଗ କନ୍ଦର୍ପ ରୂପ କଶ୍ୟପଜକୁ ରସ ( ଶୃଙ୍ଗାର ) ତରଙ୍ଗରେ ଭସାଇ ଦେଇ ସଲୀଳେ ( ଲୀଳା ସହିତରେ ) ନେତ୍ର ଓ ମନକୁ ମଜ୍ଜାଇ ତୋଷ କରିବ ।

୧୦—ରାଜାଙ୍କ ନିକଟରେ ହୋଇଥିବା ସମସ୍ତ କଥା ମାନ ମନ୍ତ୍ରୀ ସମଦେ ( ଗର୍ବର ସହିତ ) କହିଲା, ଯେଉଁ ସୁନ୍ଦର ରାଜପୁତ୍ର ଠାରେ ଚିନ୍ତାରୁ ପବନ ( ପ୍ରାଣ ବାୟୁ ) ନାହିଁ । ଏହା ଶୁଣି ସେହି ବେଣୁ ( ଦୁଇଜଣ ) ପବନ ସଂଯୁକ୍ତ ( ପ୍ରାଣବାୟୁରେ ଯୁକ୍ତ ହୋଇ ) ସଚେତ ଅବସ୍ଥାକୁ ପାଇଲା ପ୍ରାପ୍ତ ହେଲେ । ପ୍ରଥମ ରସ ( ଶୃଙ୍ଗାର ) ରୂପସିନ୍ଧୁ ବୃଦ୍ଧି ନିମନ୍ତେ ପ୍ରକଟହେଲା, ଦ୍ୱିତୀୟେ ସାରରସ ଜଗତେ ସାରହେବା ନିମନ୍ତେ ଚିତ୍ତରେ ଉଦୟ ହେଲା । ତୃତୀୟେ କରୁଣରସଥିଲା ଦ୍ୱିବିଧ ଲୋପ ହେଲା, ଚତୁର୍ଥ ଅଦ୍ଭୁତରସକୁ ମତ୍ତହୋଇ ବନବିହାର ପାଇଁ ସଞ୍ଚୟ କଲେ ( ବନରେ ଅଦ୍ଭୁତ ବିହାର ମାନ ହୃଦୟେ ସଞ୍ଚିଲେ ) ପଞ୍ଚମ ହାସ୍ୟ ବଦନରେ ଜାତ ହୋଏ, ଷଷ୍ଠ ଭୟାନକ ରିପୁ ମାନଙ୍କଠାରେ ସ୍ଥିତ କରିବ, ସପ୍ତମ ବୀଭତ୍ସ ଓ ଅଷ୍ଟମ ରୌଦ୍ର ଦୁହେଁ ବାହୁଡ଼ିଲେ ନବମ ଶାନ୍ତ ମାନ ରଞ୍ଜିତ ହେଲା ।

ଜ୍ୟୋତିଷରାୟେ ସେ ସଙ୍ଗେ ଥିଲା ହୋଇଲା ଅନୁକୂଳ ବୋଇଲା
ସୁନ୍ଦରୀ ଅଙ୍ଗମାନ ଧାଇଁଲା ଶୁଭ ପ୍ରଧାନ ସେ ।
ହାସ ନୟନ ଗୁଣିଲା କ୍ଷଣି ଗୋପୀ ଧୀବରୀ ଡାକିଲେ ଶୁଣି
ଦଧି ମତ୍ସ୍ୟ ଗୋ ଭାବନ୍ତେ ପୁଣି କଣ୍ଠ ଗମନ ଯେ ।
ପାରାବତ ସମସ୍ତ ହଂସ ଗୃଳିବା ଯେ । ଦିଶିଯାଇଁ ପୁଲକମୟ ସେ ଯୁବା ଯେ ।
ସୁମନ୍ଥୁଁ ଉରୁ କଦଳୀତରୁ ଦଶେ ଯାମଳ ଲଳିତ ଗୃରୁ
ଦଶା ପାଲଟି ହେଲା ବିଗୃରୁଁ ମହାଉତ୍ସବା ଯେ ॥ ୧୧
ଲକ୍ଷିତ ଉଭା ଶୋଭାଏ ଦେଖା ସ୍ତନ ଚୁଚୁକ ଅଧର ଯୋଖା
କୁମ୍ଭେ କି ପୂଗ ପଲ୍ଲବଶାଖା ସ୍ଥାପି ତହାଳ ଯେ ।
ଉଚ୍ଛନ୍ନ ଦ୍ୱିଜ ଚରଣ ଯେଣୁ ହେଲା ମଙ୍ଗଳାରୋପଣ ତେଣୁ
କୋମଳ ନବନୀତ ପ୍ରମାଣୁ ଦନ୍ତ ତଣ୍ଡୁଳ ଯେ ।
ଦୂର୍ବାଙ୍କୁର ସୁବର୍ଣ୍ଣାଳଙ୍କାର ଦୃଶ୍ୟ ଯେ । ହୋଏ ସୁକର୍ମ ଅତିଶୟ ପ୍ରକାଶ ଯେ ।
ମୁଖେ ଦର୍ପଣ ଦୃଷ୍ଟି ରଚନା ଘେନିଲା କାନ୍ତିକି ଗୋରୋଚନା
ବାଣୀ ମଙ୍ଗଳାଷ୍ଟକ ଭାବନା କରେ ମାନସ ଯେ ॥ ୧୨

---

୧୧—ଜ୍ୟୋତିଷ ରାୟେ ( ଜଣେ ପ୍ରଧାନଜ୍ୟୋତିଷ ) ସଙ୍ଗେ ଥିଲା, ଅନୁକୂଳ ବେଳାହୋଇଲା ବୋଲି ସେ ବୋଇଲା, ସେ ସୁନ୍ଦର ଶୁଭ ପ୍ରଧାନ ( ପ୍ରଧାନ ଶୁଭଲକ୍ଷଣ ) ସୁନ୍ଦରୀ ଅଙ୍ଗମାନ ଧାଇଁଲା, ସୁନ୍ଦରୀର ହାସ ଓ ନୟନକୁ ଗୁଣିଲାକ୍ଷଣି ଗୋପୀ ଓ ଧୀବରୀ ( କେଉଟୁଣୀ ) ଶୁଣି ( ଲୋକମାନଙ୍କୁ ଶୁଣାଇ ) ଦଧିନେବ ଓ ମତ୍ସ୍ୟ ନେବ ବୋଲି ଡାକିଲେ; ହାସ ଦଧି ନୟନ ମତ୍ସ୍ୟ । ପୁଣି ସୁନ୍ଦରୀର କଣ୍ଠ ଓ ଗମନକୁ ଭାବରେ ପାରାବତ ଓ ସମସ୍ତ ହଂସର ଗୃଳିବା ଦିଶିଯାଇଁ ସେ ଯୁବା ପୁରୁଷ ପୁଲକମୟ ( ରୋମାଞ୍ଚିତଶରୀର ) ହେଲେ, ସୁନ୍ଦରୀର କଣ୍ଠ-ପାରାବତ ଗମନ ମତ୍ତହଂସ ଗମନ । ସୁନ୍ଦରୀର ଉରୁ ସ୍ମରଣ କରୁ କରୁ ଯାମଳ ( ଯାଆଁଳା ) ଗୃରୁ ( ମନୋରମ ) ଲଳିତା କଦଳୀତରୁଦଶେ, ( ଏହାଦେଖି ମୋହର ଦଶା ପାଲଟି ଗଲା ଭାବି ).ମହା ଉତ୍ସବା ( ଅତି ଉଲ୍ଲସିତ ) ହେଲେ ।

୧୨—ସୁନ୍ଦରୀର ଲକ୍ଷିତଭାବେ ଉଭାହେବା ଏ ଶୋଭାକୁ ଦେଖାଏ—ଚୁଚୁକ ଓ ଅଧରରେ ଯୋଖା ( ଯୁକ୍ତ ହୋଇ ଥିବା ) ସ୍ତନ ପୂଗ ( ଗୁଆ ) ଓ ପଲ୍ଲବ ଶାଖା ( ନବପଲ୍ଲବ ) ରେ ଯୁକ୍ତ କୁମ୍ଭେ ତହାଳେ ସ୍ଥାପି ଉଚ୍ଛନ୍ନ ( ଉଦ୍‌ବେଗ ) ରୂପ ଦ୍ୱିଜ ( ବ୍ରାହ୍ମଣ ) ଯେଣୁ ବରଣ ହେଲା ତେଣୁ ମଙ୍ଗଳା-ରୋପଣ କଲା, ସେଥିରେ ନବନୀତ ପ୍ରମାଣୁ ( ଲହୁଣୀ ପରି ) କୋମଳ-ଦନ୍ତ ତଣ୍ଡୁଳ ( ଅକ୍ଷତ ) ସୁବର୍ଣ୍ଣାଳଙ୍କାର ଦୁର୍ବାଙ୍କୁରପରି ଦେଖାଗଲା; ତେଣୁ ସୁକର୍ମ (ଉତ୍ତମ କର୍ମ ) ଅତିଶୟ ପ୍ରକାଶ ହୋଏ । ମୁଖରୂପ ଦର୍ପଣରେ

ଅଣିଲା ପୁଷ୍ପକଳାପ ବେଶେ ଗନ୍ଧସାରକୁ ଶ୍ରୀଅଙ୍ଗବାସେ
ପ୍ରଦୀପ କାମ ତମସ ନାଶେ ସିଦ୍ଧାର୍ଥ ଜାତ'ଯେ ।
ମନ୍ତ୍ରୀ ବଚନେ ପୁରୋଧାସୁତ ଲୋକାଗୃରରେ ମଙ୍ଗଳ କୃତ
ଯେ ବିରଚିତ ସେ ବୀରଚିତ୍ତ ହୃଷ୍ଟ ଲଭିତ ଯେ ।
ସେହି ସମୟେ ପୁଣି ଯେ ପାଠଯୋଷୀ ଯେ । ଦୁର୍ଗାମାଧବ ଲକ୍ଷ୍ମୀନୃସିଂହ ଭାଷି ଯେ
ବିଜୟୀ ହୋଇ ରାଜସମାଜେ କନ୍ୟାରତନ ଲାଭ ଲଭି ଯେ
ସତ୍ୱରେ କରି ବାହୁଡ଼ା ବିଜେ ଦ୍ୱିଜେ ମନାସି ଯେ ॥ ୧୩
ଧରାଇ ମୋତି-ବିତାନ ପରେ ଅମାରୀଶୂନ୍ୟ କରୀପୃଷ୍ଠରେ
ଆସନ କଲା ସାଦୀ ପ୍ରକାରେ ଅଙ୍କୁଶ ଧୃତ ଯେ ।
କୁମ୍ଭରେ ଘାତକୃତଲକ୍ଷିତ ନୋହେ ଉରଜେ କାଏ ଗର୍ବିତ
ଭାବି ଜନିତ କି ନଖକ୍ଷତ ଦେବି ଏମନ୍ତ ଯେ ।
ଶୁଣି ଡଗରାଡାକ ନାଗରା ସ୍ୱନ ଯେ । କିଛୁ ନ ମଣି ସାଜି ବାହାର ସୈନ୍ୟ ଯେ
ଜାଣି ମନକୁ ପ୍ରିୟାପାଶକୁ ପେଷି ଲେଉଟିଲେ ଆଖିରେ ତାଙ୍କୁ
କଲେ ବିଦେହଗରେ ଦେହକୁ ଲକ୍ଷବିଧାନ ଯେ ॥ ୧୪

---

ହୃଷ୍ଟରଚନା କରି ଉତ୍ତମ କାନ୍ତିକ ଶରୀର ( ଶୋଭାକୁ ) ଗୋରୋଚନା କରି ଦେଲା, ତାହାର ବାଣୀ ମଙ୍ଗଳାଷ୍ଟକ ଏହା ମାନସେ ଭାବନା କଲେ ।

୧୩—ବେଶେ ( ବେଶ କେଶପାଇଁ ) ପୁଷ୍ପକଳାପ (ପୁଷ୍ପସମୂହ) ଶ୍ରୀଅଙ୍ଗ ବାସପାଇଁ ଗନ୍ଧସାର ( କର୍ପୂର ) ଅଣିଲା, କାମର ତମସ ( ଦୁଃଖରୂପ ଅନ୍ଧାର ) ନାଶିବାକୁ ପ୍ରଦୀପ ଅଣିଲା, ସିଦ୍ଧାର୍ଥ ଜାତହେଲା ( ମଙ୍ଗଳାରୋପଣ ଆରମ୍ଭ ହେବାରୁ ମନୋରଥ ସିଦ୍ଧି ଜାତହେଲା ) । ମନ୍ତ୍ରୀ ବଚନରେ ପୁରୋଧା ସୁତ ଲୋକାଗୃରରେ ମଙ୍ଗଳାରୋପଣ କୃତ ( ଅନୁଷ୍ଠାନ ) ବିରଚିତ ହେବାରୁ ସେ ବୀରଙ୍କର ଚିତ୍ତ ହୃଷ୍ଟ ( ହର୍ଷ ) କୁ ଲଭିତ ( ଲାଭକଲା ), ପୁଣି ସେହି ସମୟରେ ପାଠଯୋଷୀ ଦୁର୍ଗା, ମାଧବ ଓ ଲକ୍ଷ୍ମୀ, ନୃସିଂହ ବୋଲି ଭାଷିଲେ, ରାଜ ସମାଜେ ବିଜୟୀ ହୋଇ କନ୍ୟା ରତନ ଲାଭ କରି ସତ୍ୱରେ ବାହୁଡ଼ା ବିଜେ କରି ଏହା ଦ୍ୱିଜମାନେ ମନାସିଲେ ।

୧୪—ଅମାରୀ ଶୂନ୍ୟ ପରେ ( ଉପରେ ) ମୋତି ବିତାନ ( ମୋତିଯୁକ୍ତ ଚାନ୍ଦୁଆ ) ଧରାଇ ଅମାରୀ ଶୂନ୍ୟେ ( ହାଉଦା ରହିତ ) କରୀ ପୃଷ୍ଠରେ ଆସନ କଲେ ସାଦୀ ( ହସ୍ତୀପକ ) ପ୍ରକାରେ ଅଙ୍କୁଶକୁ ଧଇଲେ । ଏ ( ହସ୍ତୀ କୁମ୍ଭ ) ଗର୍ବିତ ସୁନ୍ଦରୀ ଉରଜେ ( ସ୍ତନରେ ) ଲକ୍ଷିତ ( ସମାନ ) ନୋହେ— ଏହାରି କୁମ୍ଭରେ ( ହସ୍ତୀଗଣ୍ଡରେ ) ଘାତ କଲେ ଓ ଏହିପରି ସୁନ୍ଦରୀର ସ୍ତନରେ ନଖକ୍ଷତ ଦେବି ମନେ ଏମନ୍ତ ଭାବି ମନରେ ଜନିତ ( ଜାତ ) ହେଲା କି ? ଡଗରା ଡାକ ଓ ନାଗରାସ୍ୱନ ( ବାଦ୍ୟ ) ଶୁଣି ସୈନ୍ୟମାନେ

ବେଗ କରନ୍ତେ ଗତି ମନ୍ଥର ସିଂହାବଲୋକନର ପ୍ରକାର
ପୁରୁଷେ କଲେଁ ଯେ ଅଙ୍ଗୀକାର ଗୃହିଁ ଯୁବତୀ ଯେ
ଏ କି ଅଦ୍ଭୁତ ମଣୁ ଅଦ୍ଭୁତ ଥିଲା ଅଦ୍ଭୁତ ହେଲା ସଂଭୂତ
ଚନ୍ଦ୍ରେ ଉଦିତ କଳଙ୍କୁଁ ଜାତ ସଲିଳପଙ୍କ୍ତି ଯେ ।
ନାରୀ ମାନ ବାଣିଜ୍ୟ ସଙ୍ଗତେ ଗଲେ ଯେ । ସୀତା ରାମ ଏ କାର୍ଯ୍ୟେ ମନାଇଥିଲେ
ଅଖେଟଲୀଳା ଭ୍ରମ ତୁଟିଲା ହୃଦଗହନେ କାମ ଘୋଟିଲା
ବହନେ ଧୈର୍ଯ୍ୟମୃଗ କାଟିଲା ରାମା କର୍ମିଲା ଯେ ॥ ୧୫
ଜାତ ସ୍ୱତାପ ଶାନ୍ତି ହେବାରେ ତୁଟି ପ୍ରବାସ କାଏ ବଗୁରେ
ଢାଳି ଲୋତକ ସ୍ତନ ଉପରେ ମୁଖ ନିବେଶି ଯେ ।
ପ୍ରାଣପୁରୁଷ ଦୂର ହୋଇବ କେହୁ ଶରୀର ପୁଣି ରହିବ
କେଉଁ ବଚନ କରେ ଦଇବ ହୋଇଲେ ଘୋଷି ଯେ ।
ପୁଂସଗଣ ଭାବନା ଏମନ୍ତ ହେଲା ଯେ । ରାଜସେବକ ଧାତା କଁପାଇ କଲା ଯେ
ପ୍ରିୟା ଗୃହମୁଖୁ ମେଲଣି ହୋଇ ଅସିବା ଡର ଯହିଁରେ ନାହିଁ
କି ପାଞ୍ଚୁ ଥିବ ପରାଣସହି ଡୋଳାପେଲୁଲା ଯେ ॥ ୧୬

---

ସାଜି ( ସଜ୍ଜିତହୋଇ ) କିନ୍ତୁ ନ ମଣି ବାହାର ହେଲେ ଜାଣି ରାଜପୁତ୍ର ମନକୁ ପ୍ରିୟାପାଶକୁ ପେଷି ଅଖିରେ ତାଙ୍କୁ ( ପ୍ରିୟାଙ୍କୁ ) ଲେଖିଲେ, ଏବଂ ବିଦେହ ଶରେ ( କାମବାଣରେ ) ଦେହକୁ ଲକ୍ଷ ବିଧାନ କଲେ ।

୧୫—ସୈନ୍ୟମାନେ ଗତି ବେଗ କରନ୍ତେ ମନ୍ଥର ( ମନ୍ଦ ) ହେଲା, ପୁରୁଷମାନେ ସିଂହାବଲୋକନ (ସିଂହପରି ପଛକୁ ଲେଉଟି ଗୃହିଁବା ) ପ୍ରକାରକୁ ଅଙ୍ଗୀକାର କରନ୍ତେ ଯୁବତୀମାନେ ଗୃହିଁ ରହିଲେ, ଏ କି ଅଦ୍ଭୁତ ହେଲାବୋଲି ମଣୁଥିଲେ କିନ୍ତୁ ସେ ଯେ ଅଦ୍ଭୁତ ଅବସ୍ଥାଥିଲା ତହିଁରୁ ପୁଣି ଅଦ୍ଭୁତସମ୍ଭୂତ ( ଜାତ ) ହେଲା, ଚନ୍ଦ୍ରେ ( ଚନ୍ଦ୍ର ସଦୃଶ ନାରୀମାନଙ୍କ ମୁଖରେ ) ଉଦିତ ( ପ୍ରକାଶିତ ) କଳଙ୍କୁ ( ପଦ୍ମନେତ୍ରରୁ ) ସଲିଳପଙ୍କ୍ତି ( ଜଳବିନ୍ଦୁ ଶ୍ରେଣୀ ) ଜାତହେଲା ଏହା ଅତିପରମାଦ୍ଭୁତ ଅଟେ । ନାରୀମାନ ( ବଣିକ ସ୍ତ୍ରୀମାନେ କେବଳ ) ବାଣିଜ୍ୟ ସଙ୍ଗତେ ଗଲେ, ଏ କାର୍ଯ୍ୟେ ( ପୁରୁଷ ସଙ୍ଗେ ନାରୀଯିବା ବିଷୟରେ ) ସୀତା ରାମଙ୍କୁ ମନାଇ ସଙ୍ଗରେ ଯିବାକୁ ବର ପାଇଥିଲେ, ଅନ୍ୟ ସ୍ତ୍ରୀମାନେ ପୁରୁଷସଙ୍ଗେ ନ ଯାଇ ଭ୍ରମୁ ( ବିଭ୍ରମରୁ ) ଅଖେଟ ( ମୃଗୟା ) ଲୀଳା ଘଟିଲା, ହୃଦଗହନେ ( ହୃଦୟ ରୂପ ବନରେ ) କାମ ( ବ୍ୟାଧରୂପୀ କାମ ) ବହନେ ଧୈର୍ଯ୍ୟମୃଗକୁ କାଟିଲା, ତେଣୁ ରାମା ( ନାରୀମାନେ ) କର୍ମିଲେ ।

୧୬—ଜାତହେବା ସ୍ୱତାପ (ନିଜମନସ୍ତାପ) ଶାନ୍ତ ହେବା ନିମିତ୍ତ ପ୍ରବାସ ତୁଟି, ଏ ବଗୁର କର କେଉଁ ନାରୀ ସ୍ତନରୂପ ଶମ୍ଭୁ ଉପରେ ଲୋତକ ଜଳ ଢାଳି

ନିଶା ହୋଇବ ବରଷାକାଳ ଘୋଟିବ ଚିନ୍ତା ଘନ ପଟଳ
ହିମାଂଶୁଜ୍ୟୋତ୍ସ୍ନା ତଡ଼ିତଜାଳ ଉଦିତ ବେଳ ଯେ ।
ପଡ଼ିବ ପଞ୍ଚଶରକୁଳିଶ ଝଡ଼ିବ ଦମ୍ଭଗିରି-ଶିଖର
ବଢ଼ିବ ଶୋକନଦୀ ବିଶେଷ ଉଚ୍ଛନ୍ନ ଜଳେ ଯେ ।
ଭ୍ରମ-ଭ୍ରମିରେ ଭ୍ରମି ପରି ବୁଡ଼ିବା ଯେ । ମାର-ମକରମୁଖେ ନିଷ୍ଟେ ପଡ଼ିବା ଯେ
ତରୁଣୀ-ମଣି ଜାନୁ-ତରଣୀ ଅବଲମ୍ବକୁ ନ ପାଇ ପୁଣି
କି ଦଣ୍ଡ କଲେ କୋଦଣ୍ଡପାଣି କେହ୍ନେ ତରିବା ଯେ ॥ ୧୭
ନ ଚଳି ଚଳି ଶୃଙ୍ଗାର ବୀର ରସ ବିରୋଧୀ ବଳାତକାର
ହେଲାଅଦ୍ଭୁତ ଦେଖା ସେଠାରେ ଜଳୁ ହେବାରେ ଯେ ।
ପଦାତିପଙ୍କ୍ତି ରଥୀ ରାଜିତ ମାହୁନ୍ତ ପଦଯାନ ଭ୍ରମିତ
ସାମଗ୍ରୀ ଚଳେ ବାହନ ଭୃତ୍ୟ ଭାରବାହାରେ ଯେ ।
ଯୋଗୀ ଯୋଗ ନୋହିଲା ଜନସଙ୍କୁଳେ ଯେ । ମହାହର୍ଷେ ବଶ ଚପଳେ ଚଳେ ।
ନୃପତିସୁତେ ବିନୟ କୃତ ସେ ଚତୁରଙ୍ଗ ରଙ୍ଗେ ଗମିତ
ବହୁତରୂପେ ହୁଏ ଲକ୍ଷିତ ସୁନ୍ଦରୀ ଭୁଲେ ଯେ ॥ ୧୮

---

ମୁଖ କମଳକୁ ନିବେଶ କଲା । ପ୍ରାଣପୁରୁଷ ( ସ୍ୱାମୀ) ଦୂର ହେବ, ତୋର ପୁଣି କେହ୍ନେ (କିପରି) ରହିବ, ଦଇବ କେଡ଼େ ବିଚାର କରେ ଏହା ଘୋଷି ହେଲେ, ହଂସଗଣଙ୍କର ଏମନ୍ତ ଭାବନା ହେଲା ଧାତା କିପାଇ ଆମ୍ଭମାନଙ୍କୁ ରାଜସେବକ କଲା, ଯହିଁରେ ( ରାଜସେବକ ହେବାରେ ) ପ୍ରତ୍ୟାଗମରୁ ମେଲାଣି ହୋଇ ଆସିବା ତର ନାହିଁ । ଡୋଲାପିତୁଲା ( ନୟନପିତୁଲା ) ପ୍ରାଣସଖୀ କି ପାଞ୍ଚୁଥିବେ ।

୧୭—ନିଶା ବରଷାକାଳ ହୋଇବ, ଚିନ୍ତାରୂପ ଘନପଟଳ ( ମେଘମାଳ ) ଘୋଟିବ, ହିମାଂଶୁ ଜ୍ୟୋତ୍ସ୍ନା ( ଚନ୍ଦ୍ର କିରଣ) ରୂପ ତଡ଼ିତଜାଳ (ବିଜୁଳି-ସମୂହ ) ଉଦିତହେଲାବେଳେ ପଞ୍ଚଶରରୂପ କୁଳିଶ ( ବଜ୍ର ) ପଡ଼ିବ, ଦମ୍ଭଗିରି ରୂପ ଶିଖର ଝଡ଼ିବ, ଶୋକ ରୂପ ନଦୀ ଉଚ୍ଛନ୍ନତା ରୂପ ଜଳରେ ବିଶେଷ ବଢ଼ିବ, ଆମ୍ଭେମାନେ ସେହି ବୃଦ୍ଧ ନଦୀର ଭ୍ରମରରୂପ ଭ୍ରମିରେ ( ଭଉଁରିରେ ) ଭ୍ରମି ବୁଲି ବୁଲି ବୁଡ଼ିବା ଏବଂ ମାର ( କନ୍ଦର୍ପ ) ରୂପ ମକର ( ମଗର ) ମୁଖରେ ନିଷ୍ଟେ ପଡ଼ିବା, ତରୁଣୀମଣିର ଜାନୁ ରୂପ ତରଣୀ ( ନୌକାର ) ଅବଲମ୍ବନକୁ ( ଆଶ୍ରାକୁ ) ନ ପାଇ କେହ୍ନେ (କିପରି) ତରିବା—କୋଦଣ୍ଡପାଣି ( ଧନୁର୍ଦ୍ଧାରୀ ରାଜା ) କି ଦଣ୍ଡ କଲେ ।

୧୮ —ନ ଚଳି ଚଳି ଅର୍ଥାତ୍ ଯିବାକୁ ଇଚ୍ଛା କରି ମଧ୍ୟ ଯାଇପାରିଲେ ନାହିଁ ! ବୀର-ରସ ବଳାତ୍କାରରେ ଶୃଙ୍ଗାର ରସର ବିରୋଧୀ ହେଲା, ଏ ଅଦ୍ଭୁତ ଭାବ ସେଠାରେ ଜଳୁ ( ଜାଡ୍ୟ ) ହେବାର ଦେଖାଗଲା, ପଦାତିପଙ୍କ୍ତି ରଥୀ,

ଖଡ଼୍‌ଗ ଫଳକ ତିଳକ ଭଲ୍ଲ ବାଣ କମାଣ ଭ୍ରୂନେତ୍ର ମେଳ
ତୂଣୀର ନାସା ଅତି ମଞ୍ଜୁଳ କୁନ୍ତ କଟାକ୍ଷ ଯେ ।
ଚତୁର ବିଧ ବାଦ୍ୟ ବାଜେଣି ବଳୟ ବଳା ମୁଦି କିଙ୍କିଣି
ଶବଳ-ଚେଳ ଅଞ୍ଚଳ କାଣି ଚଞ୍ଚଳେ ଦୀପ୍ତ ଯେ ।
ଉଚ୍ଚ ଶତାଙ୍ଗ କୁଚ ବଉଳାଙ୍ଗସ୍ଥ ଯେ । କଣ୍ଠ ଭୂଷା ବିଦ୍ରୁମ ମାଳିକା ହାର ଯେ ।
ଚକ୍ର ଛାଟଙ୍କ ପାଶ ଯେ ଶୁଣ୍ଡ ତୁରଙ୍ଗରଙ୍ଗ ତରଙ୍ଗିତ
ମତ୍ତମ ତଙ୍ଗ ଗମନ ଗତି ସଙ୍ଗମେ ଭ୍ୱର ଯେ ।। ୧୯
ଅନ୍ୟ ଦେଶିଙ୍କ ଶ୍ରଦ୍ଧା ବଢ଼ାଇ ପଥେ ଅଗତ ଦେଖିବା ପାଇଁ
ମୁଖଡିଣ୍ଡିମ ପ୍ରକାଶ ହୋଇ ଗ୍ରାମନାରୀରେ ଯେ ।
ଶ୍ରବଣେ ମଠନ କୁମାର ପାଞ୍ଚ ଗୁଣ ଟଙ୍କାର ଧନୁକୁ ଅଞ୍ଚି
ମଦନ ପରି ଚମକ ବଚ ନିଜ ଶରୀରେ ଯେ ।

---

ସଜ୍ଜିତ ଓ ମାତ୍ସୁତ, ସମସ୍ତେ ଭ୍ରମିତ ପାଦଯାନ କଲେ (ପାଦରେ ଗମନ କଲେ) ସେମାନଙ୍କର ସାମଗ୍ରୀ ବାହକ, ଭୃତ୍ୟ (ଶୁଙ୍କର) ଏବଂ ଭାର ବାହାରେ (ଭାରଆମାନଙ୍କ ଦ୍ୱାରା) ଚଳେ, ଜନ ସଙ୍କୁଳେ (ଲୋକଗହଳରେ) ଯୋଗୀମାନଙ୍କର ଯୋଗ (ଧ୍ୟାନ) ହୋଇ ପାରିଲା ନାହିଁ ।

ଅର୍ଥାନ୍ତର—ଯୋଗୀ (ସଂଯୋଗିମାନଙ୍କପରି) ଯୋଗ (ବିଦାୟ) କାଳରେ ସଂଯୋଗ ନୋହିଲା ଜନ ସଙ୍କୁଳେ (ଅବିବାହିତ ଯୁବକମାନେ) ମହା ହରଷରେ ବଶ ହୋଇ ଚପଳେ ଚଳନ୍ତି । ବିନୟ କୃତ (ବିନୀତ) ସେ ଚତୁରଙ୍ଗ ସୈନ୍ୟ ନୃପତି ସଙ୍ଗେ (ରାଜପୁତ୍ରଙ୍କ ସହିତ) ରଙ୍ଗେ ଗମିତ (ଗଲେ) ବହୁତ ରୂପେ ନାନା ପ୍ରକାର ସୁନ୍ଦରୀ ତୁଲେ ଲକ୍ଷିତ ହୁଏ ।

୧୯—ସୁନ୍ଦରୀ କଲ୍ ତିଳକପରି ଖଡ଼ଗ, ଭଲ୍ଲପରି ଫଳକ (ଢାଲ୍) ନେତ୍ରମେଳେ ଭ୍ରୂଲତା ପରି ବାଣ ସହିତ କମାଣ (ଧନୁ), ନାସା ତୂଣୀର (ଶରମୁଣା) ଅତି ମଞ୍ଜୁଳ (ମନୋହର) କଟାକ୍ଷ ପାତ କୁନ୍ତାସ୍ତ୍ର, ବଳୟ (କଙ୍କଣ) ବଳା, ମୁଦି, କିଙ୍କିଣି (କଟିଘୁଙ୍ଗୁର) ପରି ଚତୁର୍ବିଧ ବାଦ୍ୟ ବାଜେଣି (ବାଜିବା) ଚଞ୍ଚଳେ ଦୀପ୍ତ [ ଅତିଶୟ ଚଞ୍ଚଳ ] ଅଞ୍ଚଳ [ ପଣନ୍ତ ] ପରି ଶବଳ ଚେଳ [ ପତାକାବସ୍ତ୍ର ] ଉଚ୍ଚ କୁଚପରି ଶତାଙ୍ଗ [ ରଥ ], କଣ୍ଠ ଭୂଷା ବିଦ୍ରୁମ ମାଳିକା ହାର [ ପୋହଳାମାଳି ] ପରି ରଥସ୍ଥ ବଉଳଙ୍ଗସ୍ଥ ଛାଟଙ୍କ [କର୍ଣ୍ଣଭୂଷଣ] ପରି ରଥଚକ୍ର ଶୁଣ୍ଡ [କର୍ଣ୍ଣ] ପରି ପାଶ [ରଥଦାଉଡ଼ି] ତରଙ୍ଗିତ [ ଦେହଶୃଙ୍ଖଳ୍ୟ ଭଙ୍ଗ ] ପରି ତୁରଙ୍ଗ ରଙ୍ଗ [ଘୋଟକ କ୍ରୀଡ଼ା ] ମତ୍ତ ମାତଙ୍ଗ ଗମନ ଗତି ସଙ୍ଗମେ [ ସୁନ୍ଦରୀଙ୍କ ସଙ୍ଗମରେ ] ଭ୍ୱର [ ଉଜ୍ଜ୍ୱଳ ] ହୋଇଛି ।

୨୦—ଦେଖିବା ପାଇଁ ପଥରେ ଆଗତ ଗ୍ରାମନାରୀ ମାନଙ୍କଠାରେ ଅନ୍ୟ ଦେଶିମାନଙ୍କ ଶ୍ରଦ୍ଧା ବଢ଼ାଇବା ପାଇଁ ମୁଖ ଡିଣ୍ଡିମ [ ହୁଳହୁଳି ] ପ୍ରକାଶ ହେଲା ।

ଏହି ଷୋଡ଼ଶାକ୍ଷର ଯେତେ ଷୋଡ଼ଶୀ ଯେ । ଗୃହିଁ ପାଞ୍ଚକୁ ଭଲ ଅଙ୍କ ପ୍ରକାଶି ।
ନେତ୍ର ଚଞ୍ଚଳ ମାନସ ନେଲ ତାହା ସ୍ଥିରକୁ ଏ ଯେ ବହିଲ
ଭଲ ଭାଗ୍ୟରେ ମିଶି ପାହିଲ ହୋଇଲେ ଘୋଷି ଯେ ॥ ୨୦
କଥା ହୋଇଲେ ତରୁଣୀଗଣ ଅମ୍ଭ ବଲ୍ଲଭ ଏ ହେଲେ ଜାଣ
ହୁଅନ୍ତା ଦୀନ କ୍ଷଣଦା କ୍ଷଣ ପର୍ଯ୍ୟନ୍ତ ସହି ରେ ।
ବଲ୍ଲଭୀ ହୋଇ ବଲ୍ଲବୀ ପର ଶୁଚି ପ୍ରକାଶ ବନେ ବିହରି
ଅଶେଷ ତୋଷେ ମଣ୍ଡଳୀ କରି ମୋହନ ମୋହି ଯେ ।
ସାର୍ଥ ହୁଅନ୍ତା ମନୋରଥ ଜନମ ଯେ । ଶୁଣି କହି ହୋଇଲେ ସ୍ଥବିରା ସ୍ତୋମ ।
ଯେ ରାଜରାଜ ପ୍ରିୟତନୁଜ ଗୁଣ ସୁନ୍ଦରେ କେବଳ ହେଜ
ବ୍ୟର୍ଥ ପତିବ୍ରତକୁ ତେଜ କରି ତା ପ୍ରେମ ଯେ ॥ ୨୧

---

ମାର ଏ ହୁଳହୁଳ ଶ୍ରବଣେ ମନେ ପାଞ୍ଚିଲେ—'ଯେ ମଦନ ଧନୁକୁ ଅଞ୍ଚି ଗୁଣ ଟଙ୍କାରେ ପଞ୍ଚ' ଏହି ଷୋଡ଼ଶାକ୍ଷରକୁ ମନେ ପାଞ୍ଚି ନିଜ ଶରୀରେ ଚମକ ( ଭୟ ) କୁ ବହିଲେ । ଯେତେ ଷୋଡ଼ଶୀ ନାରୀ ସେମାନେ କୁମାରଙ୍କ ଗୃହିଁ "ମଦନ ପର" ଏହି ପାଞ୍ଚ ଅକ୍ଷରକୁ ଭଲ ଅଙ୍କ ପ୍ରକାଶିଲେ, ନେତ୍ର ଚଞ୍ଚଳ ( ଚାଞ୍ଚଲ୍ୟ ) କୁ ମାନସ ନେଲ, ଅର୍ଥାତ୍ ମନ ଚଞ୍ଚଳ ହେଲା । ଏ ଯେ ( ନେତ୍ର ) ତାହା ସ୍ଥିର (ସ୍ଥିରତାକୁ) ଭଜିଲା, ଅର୍ଥାତ୍ ନେତ୍ରସ୍ଥିର ହେଲା । "ଅଜ ଭଲ ଭାଗ୍ୟରେ ମିଶି ପାହିଲ" ଏହା ଘୋଷିହେଲେ ।

୨୧—ସେହି ତରୁଣୀ ଗଣ ଏପରି କଥା ବାର୍ତ୍ତା ହେଲେ ଯେ ଏ ପୁରୁଷ ଅମ୍ଭ ବଲ୍ଲଭ (ସ୍ୱାମୀ) ହେଲେ ଦୀନ ଓ କ୍ଷଣଦା ( ରାତି ) କ୍ଷଣ ପର୍ଯ୍ୟନ୍ତ ହୁଅନ୍ତା । ବଲ୍ଲବୀ ( ଗୋପୀ ) ମାନେ ବନେ ବିହରି ରାସ ମଣ୍ଡଳୀରେ ମୋହନ ( କୃଷ୍ଣଙ୍କ ) ମୋହିଲ ପରି ଅମ୍ଭେମାନେ ବଲ୍ଲଭୀ ( ପ୍ରିୟା ) ହୋଇ ବନେ ବିହରି ଶୁଚି ( ଶୃଙ୍ଗାର ) ପ୍ରକାଶ ଅଶେଷ ତୋଷେ ( ଅତି ଆନନ୍ଦରେ ) ମଣ୍ଡଳୀ ( ରାସ ମଣ୍ଡଳୀ ) କରି ମୋହନ ( ସୁନ୍ଦରଙ୍କ ) ମୋହିତ କରନ୍ତାଇଁ । ତେବେ ଅମ୍ଭମାନଙ୍କର ମନୋରଥ ଓ ଜନ୍ମ ସାର୍ଥ ହୁଅନ୍ତା. ଏହା ଶୁଣି ସ୍ଥବିରା ସ୍ତୋମ ( ବୃଦ୍ଧା ସମୂହ ) କହି ହୋଇଲେ, ଯେଉଁ ସୁନ୍ଦର ରାଜ ରାଜ ପ୍ରିୟତନୁଜ ( ରାଜାଧିରାଜଙ୍କର ପ୍ରିୟ ପୁତ୍ର ) ଗୁଣରେ ଓ ସୁନ୍ଦର ପଣରେ ସଂସାରରେ ଜଣେ ବୋଲି ହେଜ, ତା ସହ ପ୍ରେମକରିବା ବାଞ୍ଛାରେ ବ୍ୟର୍ଥରେ ପତିବ୍ରତାକୁ ତେଜନ୍ତୁ ସେ ତୁମ୍ଭଠାରେ ରସିବ ନାହିଁ ।

ଶୁଣି କଲେ ସେ ପ୍ରତିଉତ୍ତର ଯେନ କୁବୁଜା କେତେ ମାତର
ଭୋଗ କଲା ସେ ଜଗଦୀଶ୍ୱର ଏ କଣ ଥିଲା କି ।
ଏବେ ନୋହିଲେ ପଛେ ହୋଇବ କାମକାମନା ମୁନିଙ୍କ ଭାବ
ଏ ସତ ରାମମୂର୍ତ୍ତି ସମ୍ଭବ ସଂଶୟ ଗଲା ଯେ ।
ଯେଉଁ ଯୁବତୀ ଯେଉଁ ବୃନ୍ଦାର ତହିଁ ଯେ ଥିଲେ ପରବାସୀ ସେ ତାହାଙ୍କୁ କହି
ହେବ ତୁମ୍ଭର ଯୋଗରେ ଯୋଗ ଅମ୍ଭ ମଧ୍ୟସ୍ଥ ହୁଅ ଗୋ ବେଗ
ରାଧିକାଦୂତୀ କୃଷ୍ଣରେ ଭୋଗ ତମସେ ହୋଇ ଯେ ॥ ୨୨
ସେ ବୋଲେ ଅଗ ତୁମ୍ଭର ହେଉ ଏ ବୋଲେ ମାତା ମାତା କି କହୁ
ଅମ୍ଭମାନଙ୍କୁ ଛୁଇଁବ କାହୁଁ ଦିବ୍ୟସୁନ୍ଦର ଯେ ।
ଏତେବେଳେ ତାର ନୋହିଲା ପ୍ରୀତି ନିଦ୍ରା ପ୍ରବେଶେ ହୋଇବ ଦୂତୀ
ସ୍ୱପନଯୋଗେ ହେବତି ରତିରସ ପ୍ରସାର ଯେ ।
ତହିଁ ହେବ ଉତ୍ତରକୁରୁର ଭୋଗ ଯେ । ଯଥା ଦିବା ବିଯୋଗରାତ୍ରେ ସମ୍ଭୋଗ ।
ତପେ ମନାଇ ବ୍ରହ୍ମର୍ଷିଙ୍କି ଅଣିଲେ ସେ ବିଚ୍ଛେଦଘାତକୀ
ନୋହିବ ନିକି ଅଣି ମଁତକି ଗଲା ଉଦ୍‌ବେଗ ଯେ ॥ ୨୩

---

୨୨—ଏହା ଶୁଣି ସେମାନେ ପ୍ରତିଉତ୍ତର କଲେ ଯେନ ( ବିଚାର କର ) କୁବ୍‌ଜା ବା କେତେମାତ୍ର ସେ ଜଗଦୀଶ୍ୱର ( ଶ୍ରୀକୃଷ୍ଣ ) ଙ୍କୁ ଭୋଗକଲା ଏହା କଣ ଜଣା ଥିଲା କି ? ଏବେ ନୋହିଲେ ପଛେ ମୁନିଙ୍କ କାମ କାମନା ଭାବ ହୋଇବ ( ମୁନି ମାନେ ବନରେ ରାମଙ୍କୁ ଦେଖି କାମଭୋଗ କାମନା କରି ଥିବାରୁ ଗୋପୀ ହୋଇ ଜନ୍ମିଲେ )ଏ ସତ ରାମମୂର୍ତ୍ତି ସମ୍ଭବ ହୋଇଛି ଏଥିରେ ସଂଶୟ ନାହିଁ ସେଥିରେ ଯେଉଁ ବୃନ୍ଦାର ଯେଉଁ ଯୁବତୀ ପରବାସୀ ଥିଲେ ସେ ବୃନ୍ଦା ତାଙ୍କୁ କହିଲେ ତୁମ୍ଭର ମଧ୍ୟସ୍ଥ ଯୋଗରେ ଅମ୍ଭର ଯୋଗ ( ମିଳନ ହେବ ), ବେଗହୁଅ, ଯେପରି ତମସେ ( ଅନ୍ଧାରରେ ) ରାଧିକା-ଦୂତୀ କୃଷ୍ଣରେ ଭୋଗ ହୁଅଇ, ଅର୍ଥାତ୍ ଶ୍ରୀକୃଷ୍ଣ ବିରହାତୁର ସମୟରେ ଅନ୍ଧାରରେ ରାଧିକା ବୋଲି ଦୂତୀକୁ ଭୋଗ କରିଥିଲେ ।

୨୩—ସେ ବୃନ୍ଦା ବୋଲେ ଅଗ ତୁମ୍ଭର ଯୋଗ ହେଉ,ଏ ଯୁବତୀ ବୋଲେ ଗୋ ମାତା ମାତା । ( ଅଛ ) ତୁ କଣ କହୁଛୁ, ଦିବ୍ୟ ସୁନ୍ଦର ଅମ୍ଭମାନଙ୍କୁ କାହୁଁ ଛୁଇଁବ । ସାକ୍ଷାତରେ ପ୍ରୀତି ନୋହିଲେ ମଧ ଏତେବେଳେ କଣ ତାର ପ୍ରୀତି ନୋହିବ କି ?—ନିଦ୍ରା ପ୍ରବେଶରେ ସ୍ୱପ୍ନ ଯୋଗରେ ଦୂତୀ ହୋଇବ, ତହିଁରେ ରତିରସ ପ୍ରସାର ( ଶୃଙ୍ଗାରର ବିସ୍ତାର ) ହେବତ ? ତହିଁରେ କେବଳ ଉତ୍ତର କୁରୁର (ସ୍ୱର୍ଗର) ଭୋଗହେବ—ସ୍ୱର୍ଗରେ ଯେପରି ଦିନରେ ବିଯୋଗ ଓ ରାତ୍ରରେ ସମ୍ଭୋଗ ସେହିପରି ହେବ । ତପସ୍ୟାରେ ବ୍ରହ୍ମର୍ଷିଙ୍କି ମନାଇ ଅଣିଲେ ସେ ବିଚ୍ଛେଦଘାତକୀ ନୋହିବ କି । ଅର୍ଥାତ୍ ବହୁକାଳ

ନୃପନନ୍ଦନା କୁମରବରେ କେବଳ ଦାଣେ ଅଷ୍ଟ ଦିଗରେ
ଏହି କଳ୍ପନା ବୁଦ୍ଧି ଉଦ୍ଭୁରେ କର ନିଷ୍ଟପ୍ପ ଯେ ।
ଅଇରାବତ ଶମ୍ବୁକ ଜାଣି ପୁଣ୍ଡରୀକକୁ ନୟନେ ଆଣି
ଘେନି ବାମନ ଗମନଠାଣି ଅନୁପମେୟ ଯେ ।
ପୁଣି କୁମୁଦ ହାସେ ପ୍ରକାଶମାନ ଯେ । କରେ ଅଞ୍ଜନ କେଶେ ଚରମେ ସ୍ଥାନ ।
ଭୂଷିତ ପୁଷ୍ପଦନ୍ତ ଶୋଭିତ ସୌନ୍ଦର୍ଯ୍ୟ ସାର୍ବଭୌମ ଉଚିତ
ସୁପ୍ରତୀକରେ ସାର ଜଗତ ଚିତ୍ତରଞ୍ଜନ ଯେ ॥ ୨୪
ତନ୍ମୟଭାବେ ରହିବାଠାବେ ବୀଣାବାଦନ ଶ୍ରବଣେ ଦ୍ରବେ
ବାଳା ପ୍ରବୀଣାପଦ ସ୍ୱଭାବେ ଅଶ୍ଳେଷ କରେ ଯେ ।
ଗୁଣାନୁବାଦନୀତ ବେଭାରେ ଶୋଭିତ ତୁମ୍ବ କୁଚ ସ୍ଥିରରେ
ବେଣୀ ରୋମାଳୀ ପ୍ରବାଳସାରେ ଯୁକ୍ତ ରାଗରେ ଯେ ।
ଜାତ ଇଙ୍ଗିତଗୀତ ସପତସ୍ୱରେ ଯେ । ସିଂହ କଚ୍ଛପ କଟି ଜଘନ ଧରେ ଯେ ।
ଭ୍ରମେ ଖଟଖଟୀ ଧାତୁ ବଲ୍ଲକୀଯୁକ୍ତ ମୋ ଉତ୍ପ୍ରେକ୍ଷିତ ହେବ କି
ପୋଟା ତାର ଏ ଭାବନା ତର୍କି କହେ ସୁଧୀରେ ଯେ ॥ ୨୫

---

ରାଜି ହେବାରୁ ସର୍ବଦା ସମ୍ଭୋଗ । ଉଦ୍‌ବେଗ ଗଲ ବୋଲି ମସ୍ତକ ( ମନକୁ ) ଆଣ ।

୨୪—କୁମରବରକୁ କେବଳ ନୃପ ନନ୍ଦନା ( ରାଜପୁତ୍ରୀ ) ଅଷ୍ଟ ଦିଗରେ ଦାଣେ, ଏହି କଳ୍ପନା ନିଷ୍ଟପ୍ପ କର ବୁଦ୍ଧିରେ ବରୁବେ. ଐରାବତକୁ ( ପୂର୍ବଦିଗହସ୍ତୀ ଓ ନାରଙ୍ଗ ) ସୁନ୍ଦରୀର ଶମ୍ବୁକ ( ଓଷ୍ଠ ) ଜାଣିଲା. ପୁଣ୍ଡରୀକକୁ ( ଅଗ୍ନି-କୋଣ ହସ୍ତୀ ଓ ପଦ୍ମକୁ ) ନୟନରେ ଆଣିଲା, ବାମନ (ଦକ୍ଷିଣ ଦିଗହସ୍ତୀ ) କୁ ଅନୁପମେୟ ସୁନ୍ଦରୀର ଗମନ ଠାଣି ଘେନିଲା, ପୁଣି ହାସରେ କୁମୁଦ ( ନୈଋତ କୋଣ ହସ୍ତୀ ଓ କଇଁଫୁଲ ପ୍ରକାଶମାନ ହେଉଛି ) ଅଞ୍ଜନ ( ପଶ୍ଚିମଦିଗ ହସ୍ତୀ ଏବଂ କଜ୍ଜ୍ୱଳ ) ଚରମେ କେଶେ ( ପୃଷ୍ଠ ଭାଗରେ ପତିତ କେଶରେ ) ସ୍ଥାନ କରେ, ପୁଷ୍ପଦନ୍ତ (ବାୟୁକୋଣ ହସ୍ତୀ ଓ କୁନ୍ଦପୁଷ୍ପ ସଦୃଶ ଦନ୍ତରେ ) ସୁନ୍ଦରୀ ଭୂଷିତା ହୋଇ ଶୋଭା ପାଉଛି । ସାର୍ବଭୌମ ( ଉତ୍ତର ଦିଗ ହସ୍ତୀ ଏବଂ ଚକ୍ରବର୍ତ୍ତୀ ) ସୁନ୍ଦରୀର ସୌନ୍ଦର୍ଯ୍ୟ ଜଗତରେ ସାର୍ବଭୌମ [ ଚକ୍ରବର୍ତ୍ତୀ ] ହେବା ଉଚିତ । ସୁପ୍ରତୀକରେ [ ଐଶାନ୍ୟ ଦିଗ ହସ୍ତୀ ଏବଂ ସୁନ୍ଦର ଦେହରେ ] ସାର ହୋଇ ଜଗତର ଚିତ୍ତକୁ ରଞ୍ଜିତ କରୁଅଛି ।

୨୫—ତନ୍ମୟଭାବେ [ ସୁନ୍ଦରୀ ଚିନ୍ତାମଗ୍ନ ଭାବରେ ] ରହିବା ଠାରେ ବୀଣା ବାଦନ ଶ୍ରବଣରେ ଦ୍ରବୀଭୂତ ହୋଇ ରହିଲା—ବାଳା ପ୍ରବୀଣା [ପଣ୍ଡିତା ଓ ଉତ୍କୃଷ୍ଟ ବୀଣା ] ପଦକୁ ସ୍ୱଭାବରେ ଅଶ୍ଳେଷ [ ଆଲିଙ୍ଗନ ] କରୁଛି, ବୀଣା ବେଭାରେ ଗୁଣାନୁବାଦନୀ ( ଗୁଣ ଦ୍ୱାରା ଶବ୍ଦ କାରଣୀ ) ସୁନ୍ଦରୀ ଗୁଣାନୁ-

ନବନାଗରୀ ଶୋଭି ନଗରୀ ଦ୍ୱିଜଶ୍ରେଣୀରେ ମହାମାଧୁରୀ
ରାଜା ବଦନେ ପ୍ରସନ୍ନ ଧରି ଉରଜେ ଦକ୍ଷା ଯେ ।
ସୁହସିତ ଶୂଦ୍ରହାସରେ କରି ମାଳୀବ୍ରଜରେ ପୁଣି ପ୍ରବି
ପାଟଳ ଗମନକୁ ଅଦର କରନ୍ତି କଥା ଯେ ।
ଅର୍ଦ୍ଧପ୍ରୟୋଗ ଅର୍ଥେ ମନ୍ତ୍ରିଜ ଭଣି ଯେ । ଅଛି ସଭେଦ ବୋଇଲେ ତୁ କି ପ୍ରତି ।
ଅର୍ଦ୍ଧ ପରରେ ହୋଇଛି ସତ ନୋହୁଛି ବେନି ଅଙ୍ଗ ମିଶ୍ରିତ
ଏ ଯେନି କରି ଅଛି ଉଦିତ ଏମନ୍ତ ବାଣୀ ଯେ ॥ ୨୨

ବାଦମୀ (ନାନାଗୁଣରୂପିଣୀ), ଉଇଲୁଚ ଓ ସ୍ପୃଚ [ପିଙ୍ଗୁ] ବୀଣାର ତୁମ୍ବୀପରି ଶୋଭିତ, ବୀଣା ପ୍ରବାଳସାରେ ( ଉତ୍ତମ ବୀଣାଦଣ୍ଡରେ ) ଏବଂ ଧାଗରେ ଯୁକ୍ତ ହୋଇପରି ସୁନ୍ଦରୀ ବେଣୀ ରୋମାଳରେ ଏବଂ ରାଗ ( ସ୍ନେହରେ ) ଯୁକ୍ତା, ବୀଣା ସପ୍ତସ୍ୱରେ ( ସପ୍ତସ୍ୱରକୁ ) ଜାତ କଲାପରି ସୁନ୍ଦରୀ ଇଙ୍ଗିତ ଗୀତ ଜାତ କରୁଅଛି ବୀଣା ସିଂହ ଓ କଚ୍ଛପୀ ଦ୍ୱାରା ପ୍ରକାଶ ହୁଏ । ସୁନ୍ଦରୀ ସିଂହ ଓ କଚ୍ଛପଛବିଙ୍କ କଟୀ ଜଘନରେ ଧାରଣ କରଅଛି, ଅତଏବ ସବେଙ୍କ ବଂଶଧାର ଭ୍ରମର ଯୁଗଳ ବୀଣାସଦୃଶୀ ସୁନ୍ଦରୀ ମୋର ଜନ୍ମସ୍ଥିତା ହେବ କି ? ତାହାର ଏ ଭାବନାକୁ ତର୍କ ଯୋଗ୍ୟ ସୁଧୀରେ କହିଲା ।

୨୨—ସେ ନବନାଗରୀ ନଗରୀ ପରି ଶୋଭା ପାଉଛି, ନଗରୀ ଦ୍ୱିଜ ( ବ୍ରାହ୍ମଣ ) ଶ୍ରେଣୀରେ ମହ ମାଧୁରୀ ହୋଇଥାଏ, ତହିଁରେ ରାଜା ବଦନରେ ପ୍ରସନ୍ନ ଭାବକୁ ଧରିଥାନ୍ତି, ସେ ଉରଜେ ( ବୈଶ୍ୟମାନଙ୍କରେ ) ଦକ୍ଷା ଅର୍ଥାତ୍ ବାଣିଜ୍ୟରେ ନଗରୀ ଶ୍ରେଷ୍ଠା, ଏବଂ ଶୂଦ୍ରମାନଙ୍କର ( ଶୁଦ୍ରର ମାନଙ୍କର ) ହାସ ପରିହାସରେ କରି ସୁହସିତ ( ସୁନ୍ଦରୀ, ମାଳୀ ଏବଂ ବ୍ରଜ ( ଗୋପାଳ ) ମାନଙ୍କରେ ପୁଣି ପ୍ରବିଥାଏ, ପାଟଳ ( ପାଟଗ୍ରାମାନଙ୍କର ) ଗମନକୁ ଆଦରିଥାଏ । ସୁନ୍ଦରୀ-ଦ୍ୱିଜ (ଦନ୍ତ ) ଶ୍ରେଣୀରେ ମହା ମାଧୁରୀ ହୋଇଛି, ରାଜା ବଦନେ [ ଚନ୍ଦ୍ରବଦନରେ ] ପ୍ରସନ୍ନ ଭାବକୁ ଧରିଛି, ଉରଜେ ( ସ୍ତନରେ ) ଦକ୍ଷଅଛେ, ସୁଦ୍ରହାସରେ ( ସୁନ୍ଦରହାସରେ ସୁନ୍ଦର ମନ୍ଦହସନରେ ) କରି ସୁହସିତ [ ସୁନ୍ଦର ] ହୋଇଲା, ପୁଣି ମାଳୀବ୍ରଜରେ ( ମାଳାସମୂହରେ ) ପ୍ରବିଛି ଓ ପାଟଳ ଗମନକୁ ( ଅପଣଙ୍କ ନଗରୀ ପାଟଳୀ ପୁରକୁ ଆସିବାକୁ ) କଥା [ କଥାଳ ] କରିଛି । ଏମନ୍ତ ଶୁଣି ଅର୍ଦ୍ଧପ୍ରୟୋଗ ଅର୍ଥେ [ ପାଟଳୀପୁର ନ କହି ପାଟଳୀ କହିବାରୁ ] ମନ୍ତ୍ରୀଜ [ ମନ୍ତ୍ରୀପୁତ୍ର ] କହିଲା—ତୁ କି ବୋଇଲୁ, ଗୋଲପ ନାମର ଅର୍ଦ୍ଧ ପ୍ରୟୋଗ କଲୁ. ପୁଣି ଶ୍ଲେଷାର୍ଥ ମଧ୍ୟରେ ଟୀ-ଭେଦ [ ସକାରର ଭେଦ, ଶୂଦ୍ରହାସ ଓ ସୁଦ୍ରହାସ ] ହୋଇଛି ? ଯୋଗ୍ୟ କହିଲା—ଅର୍ଦ୍ଧପରରେ ( ଅଧେପରରେପୁ ) ହୋଇଛି, ବେନିଅଙ୍ଗ ମିଶ୍ରିତ ନୋହୁଛି ଏହା ସତ, ଏ ଯେନି

ଉତଣେ ରମଣୀମଣିଙ୍କ ଦଶେ ଦଶେ ସୁନ୍ଦରରତନ ଦଶେ
ଯେଣୁ ସେ ବଜ୍ରଧର ଅନାରେ ଶିଖାରେ·ଶୋହୁ ଯେ ।
ମନ୍ଦ ହାସରେ ରାଜ ସାକ୍ଷାତ ସେ ପୁଣ୍ୟଜନ ସିନ୍ଧୁ ରେ ସ୍ଥିତ
ସଦାଗତ ଯେ ଅଲକାଯୁକ୍ତ ଗଉରୀ ମୋହୁ ଯେ ।
ମୀନନୟନୀ ଲକ୍ଷ୍ୟ ଯେମନ୍ତ ବାରେ ଯେ । ପୁଂସଲକ୍ଷ୍ୟ ରାମାରେ ସେହିପ୍ରକାରେ ।
ନାରୀ-ପୁରୁଷେ ସାର ଏ ବେନି କ ଘେନା ଘେନି ଘେନି ଅବନୀ ।
ଜାତ ହୋଇଲେ ମିତ ମିତଣୀ ପ୍ରଶଂସା କରେ ଯେ ॥ ୨୨
ଏହି ସମୟେ ନୃପନନ୍ଦନ ନୃପନନ୍ଦନା ପ୍ରୀତି ବନ୍ଦନ ।
ସଖା ସଖୀଙ୍କ ଅଗେ କଥନ ରସ ରହସ୍ୟେ ଯେ ।
ପୀରତି ସୂର୍ଯ୍ୟ ଚନ୍ଦ୍ର ହୋଇଛୁ ସେ ମୁଁ ସୁଶୀଳ ସୁଶୀଳା ଇଚ୍ଛି
ଦିନ ରଜନୀ ଉଦୟ ଅଛୁ ପରଶ ବଶେ ଯେ ।
ଦେଖି ବିରହାନଳ ଜାତ କରଇ ଯେ । ଲେଖି କ୍ଷଣ କ୍ଷଣକେ ଦ୍ରବାଇ ଦେଇଯେ ।
ଦ୍ୱିମଣି କେଉଁ ରୂପେ ମିଶିଲ । ପ୍ରାଣୁ ଅଧିକ ପୂରବୁ କଲ ।
ଏ ଚମତ୍କାର କାହୁଁ ଶିଖିଲ ବିଧାତା ବନ୍ଧୁ ଯେ ॥ ୨୮

---

ଏମନ୍ତ ବାଣୀ ( ଅର୍ଦ୍ଧ ପ୍ରୟୋଗ ଓ ସଭେଦବାଣୀ ) ଉଦିତ ( ପ୍ରକାଶିତ ) କରନ୍ତି ।

୨୭—ଉତଣେ ରମଣୀମଣିଙ୍କ ସୁନ୍ଦରରତ୍ନ ଦଶେ୨ (ପ୍ରତିଦିଗରେ) ଦଶେ, ଯେଣୁ ଯେ ଅନାରେ(ସର୍ବଦା) ବଜ୍ରଧର (ହୀରକ ଖଚିତ)ଶିଖାରେ(ମୁକୁଟରେ (ଶୋଭିତ ମନ୍ଦହାସରେ ରାଜିତ, ସାକ୍ଷାତ୍ ପୁଣ୍ୟଜନ (ଧାର୍ମିକ), ସିନ୍ଧୁରେ (ହସ୍ତୀରେ) ସ୍ଥିତ, ସଦାଗତ ( ସର୍ବଦାଗମନଶୀଳ ) ଅଲକା ( ଚୂର୍ଣ୍ଣ କୁନ୍ତଳ ) ରେ ଯୁକ୍ତ, ଗୌରୀ ( ସୁନ୍ଦରୀ ) ମାନଙ୍କର ମୋହନ କାରୀ, ଓଡଣୁ ସେ ସୁନ୍ଦର ବଜ୍ରଧର ( ଇନ୍ଦ୍ର ପୂର୍ବଦିଗ ) ଶିଖାରେ ଶୋହୁ (ଅଗ୍ନି-ଅଗ୍ନିକୋଣ) ହାସରେ ରାଜିତ ମନ୍ଦ (ଯମ-ଦକ୍ଷିଣଦିଗ) ସଦାଗତ (ପବନ-ବାୟୁକୋଣ) ଅଲକାଯୁକ୍ତ ( କୁବେର ଉତ୍ତରଦିଗ ) ଏବଂ ଗୌରୀଙ୍କ ମୋହିତ କରିଛନ୍ତି । ( ଶିବ-ଐଶାନ୍ୟ କୋଣ ) ଏହି ପ୍ରକାର ଦଶଦିଗ ସୂଚିତହେବ । ମୀନ-ନୟନୀ ବୀରଠାରେ ଯେମନ୍ତ ଲକ୍ଷ୍ୟ ରଖିଛି, ରାମାଠାରେ ପୁଂସ ମଧ୍ୟ ସେହିପ୍ରକାର ଲକ୍ଷ୍ୟରଖିଛି ।ନାରୀ ଓ ପୁରୁଷ ମଧ୍ୟରେ ସାର ( ଶ୍ରେଷ୍ଠ ) ଏ ବେନି ( ସୁନ୍ଦରୀ ଓ ସୁନ୍ଦର) ଇତ୍ୟାଦି ଘେନା ଘେନି କ ଘେନି ଅବନୀରେ ଜାତ ହୋଇଲେ ମିତ ମିତଣୀ ( ଦୁହିଙ୍କର ସଖା ସଖୀ ) ଏହି ପ୍ରକାର ପ୍ରଶଂସା କରନ୍ତି ।

୨୮—ଏହି ସମୟରେ ନୃପନନ୍ଦନ ଏବଂ ନୃପନନ୍ଦନା ଦୁହେଁ ପରସ୍ପର ପ୍ରୀତିକି ବନ୍ଦନ ( ପ୍ରଶଂସା ) କରି ରସ ରହସ୍ୟେ ( ରସକୌତୁକରେ ) ସଖା ସଖୀଙ୍କ ଅଗରେ କଥନ କଲେ—ଆମ୍ଭ ପ୍ରୀତି ସୂର୍ଯ୍ୟଚନ୍ଦ୍ର ପରି ହୋଇଛି ।

କହିଲେ ସଖୀ ସଖୀ ତାଙ୍କର ଯହୁଁ ବହିଲ ଏ ଚମତ୍କାର
ଯହୁଁ ବହିବ ବେନି ଶରୀର କଣ୍ଠବା ଭାବ ଯେ ।
ଦୁହେଁ ଦୁହିଙ୍କ ପତି ହୋଇବ ଲକ୍ଷ୍ୟକୁ ଅଜ ପ୍ରୀତି ନ ଥିବ
ନିଶି ଦିବସ ଲବ ସରବ ପ୍ରାପ୍ତ ସ୍ୱଭାବ ଯେ ।
ଭୃଙ୍ଗ ପୁଷ୍ପ ସ୍ନେହରେ ଅଛି କି ଶଙ୍କା ଯେ । ଶୁଣି ମୂକ ରସିକ ଭାଷେ ରସିକା ଯେ ।
କଣ୍ଟକ ରହି ସଂଯୋଗ ନାହିଁ କେତକୀ ମଧୁବ୍ରତରେ ତହିଁ
କୁରଙ୍ଗରଙ୍ଗ ସେମନ୍ତ ହୋଇ ଜନ୍ମାଇ ଦଙ୍କା ଯେ ॥ ୨୯

---

ଯେ ( ସୂର୍ଯ୍ୟକାନ୍ତମଣି ) ସୁଶୀଳ ( ସୂର୍ଯ୍ୟ ଚନ୍ଦ୍ର ) ସୁଶୀଳା ( ଚନ୍ଦ୍ରକାନ୍ତ ମଣି) ଙ୍କ ଇଚ୍ଛା କରନ୍ତି, ଦିନରେ ଓ ରଜନୀରେ ଉଦୟ ହୁଅନ୍ତି, ତାଙ୍କ ସ୍ପର୍ଶବଶରୁ ସୂର୍ଯ୍ୟକାନ୍ତ ମଣିରୁ ଅଗ୍ନି ଜାତ ହୁଏ ଓ ଚନ୍ଦ୍ରକାନ୍ତମଣି ଦ୍ରବେ । ସେ ମୁଁ ସୁଶୀଳାକୁ ଇଚ୍ଛା କରୁଛି ଦିନ ରଜନୀଠାରେ ଅଶା ନିଶାର ଉଦୟ ହେଉଛି, ସେ ଚନ୍ଦ୍ରା ସ୍ପର୍ଶରେ ଦେଖ କେବେ ବଡ଼ବାନଳ ଜାତ କରୁଛି, କ୍ଷଣ କ୍ଷଣକେ ପୁଣି ଦ୍ରବାଇ ଦେଉଛି । ପରସ୍ପର ବିରୋଧି ଦ୍ୱିମଣି ( ସୂର୍ଯ୍ୟକାନ୍ତ ମଣି ଓ ଚନ୍ଦ୍ରକାନ୍ତ ମଣିର ଭାବ ) କେଉଁରୂପ ମିଶିଛି, ପରକୁ ପ୍ରାଣରୁ ଅଧିକ କଲା, କି ଆଚ! ଏ ଚମତ୍କାର କାହୁଁ ଶିଖି ବିଧାନ କଲା ।

୨୯—ତାଙ୍କର ସଖୀ ସଖୀ କହନ୍ତେ ଯହୁଁ ( ଯେ ) ଏ ଚମତ୍କାର ବହିଲ ତହୁଁ ( ସେ ) ବେନି ଶରୀର କଣ୍ଠବା ଭାବ ( ଆଲିଙ୍ଗନକୁ ) ବହିବ, ଦୁହେ ଦୁହିଙ୍କର ପତି ( ରକ୍ଷକ ) ହୋଇବେ ପ୍ରୀତି ( ଉଭୟଙ୍କର ପ୍ରୀତି ) ଅନ୍ୟ ଲକ୍ଷ୍ୟକୁ (ଜଗତକୁ) ନ ଥିବ । ସ୍ୱଭାବରେ ନିଶିଦିବସ ( ରାତ୍ରଦିନ )ଲବ-ପ୍ରାପ୍ତ ସରବ । ଭୃଙ୍ଗ ଓ ପୁଷ୍ପର ସ୍ନେହ ବିଷୟରେ ଶଙ୍କା ଅଛିକି ? ଏହା-ଶୁଣି ରସିକ ମୂକ ହେଲ, ରସିକା ଭାଷିଲ—ରେ ସହି । କଣ୍ଟକ ରହିବାରୁ କେତକୀ ଓ ମଧୁବ୍ରତର ( ଭ୍ରମରର ) ସଂଯୋଗ ହୁଏ ନାହିଁ । କୁରଙ୍ଗରଙ୍ଗ ( ମୃଗପୁଚ୍ଛ ଛେଦନ ନିୟମ ) ସେ ମତ ହୋଇ ଦଙ୍କା ( ଭୟ ) ଜାତ କରଇ ।

ବୋଇଲା ଅଳୀ କିପାଁଇ ଭଜୁ ନୋହିଲା ହୁଏ କରମବନ୍ଧୁ
କରିଅଛନ୍ତି ସମୁଦ୍ର ଚୁଳୁ କେବଳ ନରେ ଯେ ।
ନରେ ସମସ୍ତେ ଇନ୍ଦ୍ର ହୋଇଛନ୍ତି ନରେ ଧରଣୀ ଟେକି ଧରିଛନ୍ତି
ଏ ସ୍ୱୟମ୍ବରେ ସୁଯୋଗ ଅଛି । କୁମରବରରେ ଯେ ।
ସୀତା ରାମ କଲେଟି ପୂର୍ବକାଳରେ ଯେ । କଲେ ଗିରି ବନ୍ଧନ କୀର୍ତ୍ତି ବାନରେ ଯେ
ବିପଦ ହୋଇଛନ୍ତି ଅନ୍ତର ଚିନ୍ତା ସେ ବେନି ପଦ୍ମପଦୁର
ଉପେନ୍ଦ୍ର ବୀରବର ଭ୍ରମର ସଦା ତହିଁରେ ଯେ ॥ ୩୦

---

# ଅଷ୍ଟବିଂଶ ଛାନ୍ଦ

ରାଗ—ବସନ୍ତବରାଡ଼ି


ଜ୍ଞ ସୁଜନ ରଞ୍ଜନ ପଦମାନ ମାନସେ କରିବ ବିଚାର ।
ଅଳ୍ପ ବୁଦ୍ଧିବୃତ୍ତି ଉତ୍ପତ୍ତି ନରମାନେ ବାନରମୁଷ୍ଟି ପରକାର ।
ଛାଡ଼ନ୍ତି । ନାହିଁ ଅମ୍ଭେ ବଡ଼ ଏ ଗର୍ବ ।
ଏ ଗୀତ ସବିତା ପଦ ପ୍ରଭାବରେ ତାମସ ତମସ ନାଶିବ ॥ ୧

---

୩୦—ଅଳୀ ( ସଖୀ ) ବୋଇଲା—ରେ ସୁନ୍ଦରୀ । ତୁ କିପାଁଇ ଭାବୁଛୁ କରମବନ୍ଧୁ ନୋହିବା କଥା ହୁଏ, ନରେ ( ଜଣେଲୋକ ଅଗସ୍ତିମୁନି ) ସମୁଦ୍ରକୁ ଚୁଳୁ କରିଅଛନ୍ତି, ସମସ୍ତେ ନରେ ( ନହୁଷ ନୃପତି ) ଇନ୍ଦ୍ର ହୋଇଛନ୍ତି, ନରେ ( ଅର୍ଜୁନ ) ଧନୁହୁଳରେ ଧରଣୀକୁ ଟେକି ଧରିଛନ୍ତି; ଏ ସ୍ୱୟମ୍ବରେ କୁମର ବରେ ସୁଯୋଗ ( ଉତ୍ତମ ସୁନ୍ଦର ସଂଯୋଗ ଅଛି, । ପୂର୍ବକାଳରେ ସୀତା ରାମ କଲରେ ଗିରି ( ପର୍ବତ ) ବନ୍ଧନକଲେ, ବାନରମାନଙ୍କର କୀର୍ତ୍ତି ହେଲା ବିପଦ ( ସମସ୍ତ ବାଧାବିଘ୍ନ ) ଅନ୍ତର ( ଦୂର ) ହୋଇଛି, ସେ ବେନିଙ୍କର ( ସୀତାରାମଙ୍କର ) ପଦ୍ମପାଦ ଚିନ୍ତି ଉପେନ୍ଦ୍ର ବୀରବର ସଦା ତହିଁ ( ପାଦପଦ୍ମରେ ) ଭ୍ରମର ଅଟେ ।

୧—ହେ ବିଜ୍ଞବ୍ୟକ୍ତିମାନେ ସୁଜନରଞ୍ଜନ ( ଉତ୍ତମଲୋକମାନ, ମନୋମୁଗ୍ଧକର ) ପଦମାନ ମାନସେ ବିଚାର କର, ଅଳ୍ପ ବୁଦ୍ଧିବୃତ୍ତି ( ଜ୍ଞାନ ) ଉତ୍ପତ୍ତି ( ଜନ୍ମିଥିବା ) ଲୋକେ ବାନର ମୁଷ୍ଟିପରି "ଅମ୍ଭେ ବଡ଼" ଏ ଗର୍ବ ଛାଡ଼ନ୍ତି ନାହିଁ, ସେମାନଙ୍କର ତାମସ ( ତମୋଗୁଣ ) ରୂପ ତମସ (ଅନ୍ଧକାରକୁ ) ଏ ଗୀତରୂପ ସବିତା ( ସୂର୍ଯ୍ୟ ) ପଦ ( କିରଣସଦୃଶ ପଦମାନଙ୍କ ( ପ୍ରଭାବରେ ନାଶ କରିବ ।

ଶରାଜମାନ ନାରାଜ ଧନୁର୍ଦ୍ଧର ରାଜବଂଶୀ-ରାଜନନ୍ଦନ ।
କନ୍ୟାରତ୍ନ ଲଭ ଅବେଶେ ସୁବେଶେ ପ୍ରବେଶ ଚମ୍ପାବତୀପୁର ।
ଶୁଣିଲେ । ଅମରେ ରହିଲେ ସ୍ତବଧେ ।
ବ୍ରହ୍ମାଣ୍ଡଭାଣ୍ଡ ତୂର୍ଣ୍ଣରେ ପୂର୍ଣ୍ଣ ହେଲା ଯେଉଁ ବୀରତୂର ଶବଦେ ॥ ୨
ପତଙ୍ଗହୟ ପତଙ୍ଗ ଯେ ଆତଙ୍କ ଦେଖି ଚରିଲ ଦଣ୍ଡପନ୍ତ ।
ଛନ୍ଦହେବା ବନ୍ଦ ହେବା ପାଶ ନଳ ଭ୍ରମେ ଉଦ୍‌ବେଗ ବେଗଗତ ।
ପାଦାନ୍ତ । ବଳପ୍ରବଳରେ ଗମନ୍ତେ ।
ରେଣୁଏ ଅଣୁଏ ଛିଦ୍ର ନ ରଖିଲେ ଅକାଶ ପ୍ରକାଶ ନିମନ୍ତେ ॥ ୩
କୁଞ୍ଜର କୁଞ୍ଜର ପୁଞ୍ଜର ଗମନେ ସୁମନେ ସୁମନେଶ ଭାଳେ ।
ପକ୍ଷହନ୍ତା ମୁହିଁ କାହା ପକ୍ଷ ପାଇ ଅଚଳ ଅଚଳାରେ ଚଳେ ।
ସଭଙ୍ଗ । ଅଭଙ୍ଗ ରୂପକଙ୍କୁ ଧାଯ଼ି ।
ଦନ୍ତ-କଟକେ ତୁଙ୍ଗ ପୃଥୁଳକାୟ ଶିକଳା-ଧାତୁଧାରେ ଶୋହି ॥ ୪

---

୨—ନାରାଜ ( ଶର ) ଓ ଧନୁର୍ଦ୍ଧାରୀ ରାଜବଂଶୀୟ ରାଜନନ୍ଦନ ( ସମୂହ ) କନ୍ୟାରତ୍ନ ଲଭର ଆବେଶରେ ( ଆଶାରେ ) ସୁବେଶ ହୋଇ ଚମ୍ପାବତୀ-ପୁରରେ ପ୍ରବେଶ ହେଲେ । ଯେଉଁ ବୀରତୂରୀର ଶବ୍ଦରେ ବ୍ରହ୍ମାଣ୍ଡଭାଣ୍ଡ ତୂର୍ଣ୍ଣରେ ( ଶୀଘ୍ର ) ପୂର୍ଣ୍ଣହେଲା ଅମରେ ( ଦେବତାମାନେ ) ତାହାକୁ ଶୁଣି ସ୍ତବ୍ଧ ହୋଇ ରହିଲେ ।

୩—ପତଙ୍ଗହୟ ( ସୂର୍ଯ୍ୟଙ୍କର ଘୋଡ଼ାମାନେ ) ଓ ପତଙ୍ଗ ( ପକ୍ଷିମାନେ ) ଚରିଲ ( ପତାକା ) ତହିଁରେ ଦଣ୍ଡପନ୍ତକ ଦେଖି ପତାକା ( ପାଶ ) ଦଣ୍ଡ ( କାଣ୍ଡଅନଳ ) ଭ୍ରମରେ ଛନ୍ଦହେବା ଏବଂ ବନ୍ଦହେବା ବୋଲି ଉଦ୍‌ବେଗ ( ଚଞ୍ଚଳ ) ହେଲେ ଏବଂ ଗତ କଲେ । ପାଦାନ୍ତ ( ପଦାଗୃହୀ ସୈନ୍ୟମାନେ ) ବଳ ପ୍ରବଳରେ ଗମନ୍ତେ ରେଣୁ ଏ ( ଧୂଳିମାନେ ) ଅକା-ଶର ପ୍ରକାଶନିମନ୍ତେ ଅଣୁଏ ଛିଦ୍ର ରଖିଲେ ନାହିଁ, ଅର୍ଥାତ୍ ଧୂଳିଘୋଟି ଯିବାରୁ ଅକାଶ ଟିକିଏ ମାତ୍ର ଦିଶିଲା ନାହିଁ ।

୪—କୁଞ୍ଜର କୁଞ୍ଜର ପୁଞ୍ଜର (ହସ୍ତୀଶ୍ରେଷ୍ଠ ସମୂହର) ଗମନରେ ସୁମନେଶ (ଦେବେନ୍ଦ୍ର) ସୁମନେ ଭାଳଇ—ମୁଁ ପର୍ବତମାନଙ୍କର ପକ୍ଷହନ୍ତା ସେ ଅଚଳ ( ପର୍ବତ-ମାନେ ) ଏବେ କାହାର ପକ୍ଷ ( ସହାୟ ) ପାଇ ଅଚଳାରେ (ପୃଥିବୀରେ) ଚଳନ୍ତି । ଏଠାରେ ସଭଙ୍ଗ, ଅଭଙ୍ଗ, ଦୁଇ ପ୍ରକାର ରୂପକଙ୍କୁ ଧାୟ ( ବରୁଥାଇଁ ) ହସ୍ତି ଦନ୍ତକଟକ ( ଦନ୍ତବଳୟ ) ଓ ଶିକଳା ( ଶାଙ୍କୁଳୀ ଓ ଧାତୁଧାର ( ମଦଧାର ) ରେ ଶୋଭନ୍ତ, ପୁଣି ତୁଙ୍ଗ ( ଉଚ୍ଚ ) ପୃଥୁଳକାୟ ( ଦୀର୍ଘଶରୀର ) ପର୍ବତ ଦନ୍ତ ( ଶୃଙ୍ଗ ) କଟକ (ନିତମ୍ବ)ରେ ଓ ଗୌରକାଦ ଟିକଳାଧାତୁ ଧାରରେ ଶୋଭନ୍ତ, ପୁଣି ତୁଙ୍ଗ ଓ ପୃଥୁଳ-

ସିନ୍ଧୁ ଜାତକୁଳେ ପ୍ରବଳ ତରଙ୍ଗେ ବାଡ଼ବ ରଙ୍ଗେ ଭ୍ରମବଧି ।
ସିନ୍ଧୁ ଜାତକୁଳେ ପ୍ରବଳ ତରଙ୍ଗେ ବାଡ଼ବ ରଙ୍ଗେ ଭ୍ରମ ବଧି ।
ଶଉରେ । ସର୍ବଯମକ ଭାବ ଇଚ୍ଛି ।
ମେଳ ତ୍ରିବେଣୀ ରଙ୍ଗ ଦାଟଶ କି ବସେ ଅକାଳେ ପ୍ରଳୟ ହେଉଛି ॥ ୫
ରଥେ ଘନ ଘନପଥେ ଯେ ଗମନ ଅମ୍ବରମଣ୍ଡନେ ରୁଚିର ।
ଗୃଦ୍ଧ-ଦର୍ପଣି ଝଟ ଝଟ ଝଟକେ ନେଏ ଅଟକ ନିରନ୍ତର ।
ପ୍ରକଟ । ଚକ୍ର କଟକଟ ରଟରେ ॥
କେକୀ ଟେକି ପୁଚ୍ଛ ଗଣକ ଗଣିଲେ କି ହେଉଛି ଭୂଜସ୍ତମ୍ଭରେ ॥ ୬

---

କାଯ୍ୟା ଦନ୍ତକଟକ ଶିକଳାଧିରୁଧାରାଠାରେ ସଭଙ୍ଗ ଓ ତୁଙ୍ଗ ପୃଥୁଳ-କାୟଠାରେ ଅଭଙ୍ଗ ।

୫—ସେ ସ୍ଥାନ ସିନ୍ଧୁପରି ହୋଇଛି—ସିନ୍ଧୁ ( ସମୁଦ୍ର ) ପ୍ରବଳ ତରଙ୍ଗେ ( ଉତ୍କଟ ଲହରୀ ) କୂଳରେ ଏବଂ ବାଡ଼ବରଙ୍ଗେ ( ବାଡ଼ବାଗ୍ନି କ୍ରୀଡ଼ାକୁ ) ଓ ଭ୍ରମ ( ଭଉଁରୀ ) ବଧି କି ମଧ୍ୟରେ ଜାତ କରଇ । ଏଠାରେ-ସିନ୍ଧୁଜାତ କୁଳେ ( ସିନ୍ଧୁ ଦେଶୀୟ ଘୋଟକ ମାନେ ) ଏବଂ ବାଡ଼ବ ( ଅନ୍ୟାନ୍ୟ ଘୋଟକ ମାନେ ) ପ୍ରବଳ ତରଙ୍ଗେ ( ଅତି ଚଞ୍ଚଳତାରେ ) ରଙ୍ଗେ ଭ୍ରମବଧି ( ଚକ୍ର-ଦେବା ବଧିକ ) କରୁଛନ୍ତି । ଶଉରେ ଏହିପରି ସର୍ବ ଯମକ ଭାବକୁ ଇଚ୍ଛା କରୁଥାଇଁ, ପୃଶ୍ନି ରଙ୍ଗ ଉଶେ ( କଳା ଧଳା ରଙ୍ଗ ତ୍ରିବର୍ଣ୍ଣ ହେତୁ ) ଭାବୁଥାଇଁ ଏ କି ବସେ ( ତ୍ରିବେଣୀ—ଗଙ୍ଗା, ଯମୁନା, ସରସ୍ୱତୀ ) ମେଳହୋଇ ଅକାଳେ ପ୍ରଳୟ ହେଉଛି ?

୬—ରଥେ ( ରଥମାନେ ) ଘନ ( ମେଘ ) ଅଟନ୍ତି ମେଘ ଘନପଥରେ ( ଆକା-ଶରେ ) ଗମନ କରନ୍ତି ଏମାନେ ଘନ ( ନିବିଡ଼ ଭାବରେ ) ପଥରେ ଗମନ କରୁଅଛନ୍ତି, ଯେ ମେଘ ଅମ୍ବର ( ଆକାଶକୁ ) ଏ ରଥ ଅମ୍ବର ( ବସ୍ତ୍ର ) ମଣ୍ଡନରେ ମନୋହର । ମେଘରେ ଥିବା ବିଜୁଳୀପରି ରଥରେ ଥିବା ଗୃଦ୍ଧ ଦର୍ପଣି ଝଟଝଟ ଝଟକେ ନେଇ ଗତିକୁ ନିରନ୍ତର ଅଟକ କରୁଛି । ମେଘ ଗର୍ଜନ ସଦୃଶ ପ୍ରକଟ ହେଉଥିବା ଚକ୍ରର କଟ କଟ ରଟରେ ( ଶବ୍ଦରେ ) କେକୀ ( ମୟୂର ମାନେ ) ବର୍ଷାକାଳ ହେଲା ବୋଲି ପୁଚ୍ଛକୁ ଟେକିଲେ । ଏ ସବୁ ଦେଖି ଗଣକ ( ଜ୍ୟୋତିଷମାନେ ) ଗଣିଲେ—ଭୂ-ଜ ( ମଙ୍ଗଳ ) ସ୍ତମ୍ଭରେ ଅଛନ୍ତି ବର୍ଷାର ଅଗମ କିପରି ହେଉଛି । ମଙ୍ଗଳ ସ୍ତମ୍ଭ ହେଲେ ବର୍ଷା ହୁଏ ନାହିଁ ।

ମନ୍ତ୍ରୀବର ବେଗ କହେ ନୃପବର୍ଗ ଅଭିଧାନ ବଣ୍ଠାନନ୍ଦଙ୍କ ।
କାନ୍ତ୍ୟାଦି କାଣ୍ଡ ପ୍ରକାଶ ତ୍ରିଲୋକେ ଜାତ କୃତ-ଶ୍ଳୋକବୃନ୍ଦଙ୍କ ।
ଉତ୍ତମ । ବର୍ଣ୍ଣ ଉଜ୍ଜ୍ୱଳ ସର୍ବେ ତହିଁ ।
ଉପବନ ହେବ ସ୍ୱଭାବେ ପୁସ୍ତକ ଲେଖା ଭାବେ ଦେବା ରଖାଇ ॥ ୭
ରାଜା ସମ୍ମତ ଏରୂପେ ଶେଷପତ୍ର ଶର ଉଦୟ ହେବା ଅଛି ।
ଗୁଣ ସଂଯୋଗରେ ପୂଜନ କରିବା ଗଣେଶ୍ୱରଜାତ ଅସୁଛି ।
ସଚିବ । ଜାଣଇ ଯେ ଯେତେ ରାଜନ ।
ତେତେ ଆଦର କରି ରଖି ଉଦ୍ୟାନେ ରତ୍ନ ବାସ ଦେଲେ ବହନ ॥ ୮

---

୭—ରାଜପୁତ୍ରମାନଙ୍କୁ ଦେଖି ମନ୍ତ୍ରିବର ବଣ୍ଠାନନ୍ଦ ରାଜାଙ୍କୁ ବେଗରେ କହିଲେ, ଏ ନୃପ-ବର୍ଗ ଅଭିଧାନ ଶାସ୍ତ୍ର ଅଟନ୍ତି; ଅଭିଧାନ କାନ୍ତ୍ୟାଦି କାଣ୍ଡ ( ବର୍ଗ ) ଓ ତ୍ରିଲୋକରେ ( ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ) ଜାତ ( ଉତ୍କୃଷ୍ଟ ) ଶ୍ଳୋକ ବୃନ୍ଦଙ୍କୁ ପ୍ରକାଶ କରେ, ତହିଁରେ ଉତ୍ତମ ବର୍ଣ୍ଣ ଓ ସର୍ବେ ( ସର୍ବନାମ ମାନେ ) ଉଜ୍ଜ୍ୱଳ ହୋଇଥାନ୍ତି । ରାଜପୁତ୍ର ମାନେ ପରସ୍ପର ବର୍ଗ, କାନ୍ତ୍ୟାଦି ( ବେଶ ଭୂଷାଦି ) ଓ କାଣ୍ଡ ପ୍ରଭୃତିରେ ( ଶାସ୍ତ୍ର ପ୍ରଭୃତିରେ ) ପ୍ରକାଶ ପାଉଛନ୍ତି, କୃତ ଶ୍ଳୋକ ବୃନ୍ଦଙ୍କୁ ( ଧାର୍ମିକମାନଙ୍କ ) ତ୍ରିଲୋକରେ ଜାତ ( ଜଣିଛନ୍ତି ) ସର୍ବେ ଉତ୍ତମ ବର୍ଣ୍ଣ ( ସଦ୍‌ବଂଶୀୟ ) ଏବଂ ଉଜ୍ଜ୍ୱଳ ( କଳଙ୍କ ହୀନ ) ଏମନ୍ତ ରାଜବୃନ୍ଦଙ୍କୁ, ଉପବନ ସ୍ୱଭାବରେ ପୁସ୍ତକ ହେବ, ତହିଁରେ ଏହି ରାଜାମାନଙ୍କୁ ଲେଖା ଭାବେ ( ଅକ୍ଷର ଧାଡ଼ିପରି ଶ୍ରେଣୀ ବନ୍ଧକରି ) ରଖାଇ ଦେବା ।

୮—ଏ କଥାରେ ରାଜା ସମ୍ମତ ହୋଇ ଏରୂପେ କହିଲେ—ପୁସ୍ତକର ଶେଷ-ପତ୍ରରେ ଶର ଉଦୟ ହୁଏ ଅର୍ଥାତ୍ ଶେଷପତ୍ରଟି ଚିହ୍ନିତ ହୁଏ ଓ ସେ ଗୁଣ ( ଡୋର ) ସଂଯୋଗରେ ଗଣେଶ୍ୱର ଯାତ ( ଗଣେଶ ଚତୁର୍ଥୀ ଯାତ୍ରାରେ ) ପୂଜନ ହୁଏ । ସେଠାରୁ ଗଣେଶ୍ୱର ଜାତ ( ରାଜ ଗଣେଶ୍ୱର ଦୀପ୍ତି ସାଗର ରାଜାଙ୍କର ପୁତ୍ର ପୁଷ୍ପକେତୁ ) ଆସୁଛି, ସେ ସପତ୍ର ( ଯାନ-ସହିତ ) ହୋଇ ଶର ( ଅସ୍ତ୍ରରୂପେ ଉଦୟ ପ୍ରବେଶ ) କରିବାର ଅଛି, ଅତଏବ ସେ ରାଜପୁତ୍ରଙ୍କୁ ଓ ଅନ୍ୟାନ୍ୟମାନଙ୍କୁ ଗୁଣସଂଯୋଗରେ ( ଶୌର୍ଯ୍ୟାଦି ଗୁଣାନୁସାରେ ) ପୂଜନ କରିବା ଉଚିତ ହେଉଛି ! ଏମନ୍ତ ଶୁଣି ସଚିବ ( ମନ୍ତ୍ରୀ ) ଯେ ଯେତେ ରାଜା ତାହା ତ ଜାଣଇ, ତାଙ୍କୁ ତେତେ ଆଦର କରି ଉଦ୍ୟାନେ ରଖି ବହନ ରତ୍ନ ବାସ ଦେଲେ ।

ସେ ବନ ନନ୍ଦନ ସମାନ ବନ୍ଦନ ସଦା ସୁମନାବର ଥାଇ ।
ପାଶେ କଉଶିକୀ ସେ ମନ୍ଦାକିନୀ କି ସୁରସନ୍ତାପକୁ ହରଇ ।
ଦେଖନ୍ତି । ରାଜନେ ଦୁହିଙ୍କ ଶୋଭନ ।
କରନ୍ତି ସଲିଳେ ପରଭୃତ ସ୍ୱନ ସଲିଳେ ପରଭୃତ ସ୍ନାନ ॥ ୯
ଖେଳୁଛନ୍ତି କଳକଣ୍ଠ ଚଳୁଛନ୍ତି କଳକଣ୍ଠ ଅନ୍ବରତର ।
କାହିଁ କୁମୁଦ ଗନ୍ଧସାର ସ୍ୱାଦ୍ୟାଦ କାହିଁ କୁମୁଦ ଗନ୍ଧସାର ।
ଭ୍ରମରେ । ରାଜିତ ଭ୍ରମରେ ରାଜିତ ।
କେ ମଧୁର ବାସ କେ ମଧୁର ବାସ ବେନି ମଧୁର ବାସ ସତ ॥ ୧୦
ମାଳିନୀପୁର ମାଳିନୀ ଫୁଲ ତୋଳୁଁ ସେ ବନେ ମାଳିକା ରଚନେ ।
ଲକ୍ଷ ନୃପତି ଲକ୍ଷ୍ୟ ଲୋଭେ ପ୍ରବେଶ ଶୁଣାଇଛେ ଦେଖି ଲୋଚନେ ।
ବାହୁଡ଼ୁଁ । ମଗଧଦେଶ ମନ୍ତ୍ରୀସୁତ ।
ଯେଉଁ ଫୁଲ ମାଗି ଯହିଁରେ ସବିଶୀ ନୃପଜାଠାରେ ହେବ ଖ୍ୟାତ ॥ ୧୧

---

୯—ସେ ବନ ନନ୍ଦନ ସମାନ ବନ୍ଦନୀୟ ହୋଇଛି । ନନ୍ଦନ ବନରେ ସଦାସୁମନାବର ( ଦେବେନ୍ଦ୍ର ) ଥାଏ, ଏଠାରେ ସୁମନାବର ( ଉତ୍କୃଷ୍ଟ ପୁଷ୍ପମାନ ) ଅଛି, ସେ ବନର ପାଶରେ ଥିବା କୌଶିକୀନଦୀ ମନ୍ଦାକିନୀ ( ସ୍ୱର୍ଗଙ୍ଗା ) କି ? ମନ୍ଦାକିନୀ ସୁର ( ଦେବତା ମାନଙ୍କର ) ସନ୍ତାପକୁ ହରଇ, ଏ ସୁର ( ସୂର୍ଯ୍ୟଙ୍କର ) ସନ୍ତାପକୁ ( ପ୍ରଖର କିରଣ ତାପକୁ ) ହରୁଛି । ରାଜାମାନେ ଦୁହିଙ୍କର ( ବନ ଓ ନଦୀର ) ଶୋଭାକୁ ଦେଖୁଛନ୍ତି । ବନରେ ପରଭୃତ ( କୋକିଳମାନେ ) ସଲୀଳ ( କ୍ରୀଡ଼ା ସହିତରେ ) ସ୍ୱନ କରନ୍ତି, ନଦୀରେ ପରଭୃତ ( ରାଜାଙ୍କ ପାଳିତ ଲୋକମାନେ ) ସ୍ନାନ କରନ୍ତି ।

୧୦—ଅନ୍ବରତର ( ସର୍ବଦା ) ବନରେ କଳକଣ୍ଠ ( ମୟୂରମାନେ ) ଖେଳୁଛନ୍ତି, ନଦୀରେ କଳକଣ୍ଠ ( ହଂସମାନେ ) ଚଳୁଛନ୍ତି ( ପହଁରୁଛନ୍ତି ) କାହିଁ ( ବନର କେଉଁଠାରେ ) କୁମୁଦ ( ଗମ୍ଭାରି ବା ଧାତକୀ ବୃକ୍ଷ ) ଗନ୍ଧସାର ( ଚନ୍ଦନବୃକ୍ଷ ) ସ୍ୱାଦ୍ୟାଦ ( ସ୍ୱାଦୁ ଦାତା ) ହୋଇଛନ୍ତି ଓ କାହିଁ [ ନଦୀର କେଉଁଠାରେ ] କୁମୁଦର ଗନ୍ଧ ( ବାସନା ) ସାର ହୋଇଛି, ବନ ଭ୍ରମରରେ ରାଜିତ ( ଶୋଭିତ ) ନଦୀ ଭ୍ରମରେ ( ଜଳଭଉଁରିରେ ) ଶୋଭିତ । କେ ( ବନରେ ) ମଧୁର ( ବସନ୍ତ କାଳର ) ବାସ (ବାସସ୍ଥାନ) ଓ କେ [ ନଦୀରେ ] ମଧୁର [ ଜଳର ] ବାସସ୍ଥାନ ସତ । ଦୁହେଁ ମଧୁର [ ସୌନ୍ଦର୍ଯ୍ୟର ବାସସ୍ଥାନ ]

୧୧—ମାଳିନୀ ପୁର [ ଚମ୍ପାପୁର ] ମାଳିନୀ ମାଳିକାରଚନେ [ ହାର ଗୁନ୍ଥିବାକୁ ], ସେ ବନରେ ଫୁଲତୋଳୁଁ ଲକ୍ଷ ସଂଖ୍ୟକ ନୃପତି ଲକ୍ଷ୍ୟ ଲୋଭେ [ ଲକ୍ଷ ବିନ୍ଧିବା ଲୋଭରେ ] ପ୍ରବେଶ କଲେ । ମାଳିନୀ କେତେ ରାଜାଙ୍କ ନାମ ଶୁଣି

ଶୁଦ୍ଧାନ୍ତେ ହେମା-ସଖୀ କଥା ଏକାନ୍ତେ ନବକାମ ରତି ଲାଳସେ ।
ଆସିଲେ କି ନାହିଁ କିପରି ଜାଣିମା ଶୁଣି ରମଣୀମଣି ଭାଷେ ।
   ପ୍ରସ୍ଥାନ । ନ କରଥିଲେ ସେ ପ୍ରସ୍ଥାନ ।
କରବ ଟିକି ଶମନ-ଭବନକୁ ଜୀବନ ବୁଝ ଏ ବଧାନ ॥ ୧୨
ବାଣୀକା କହୁ ସାରଙ୍ଗ ଚଞ୍ଚଳାକ୍ଷୀ ଗ୍ରହ ଅଶଙ୍କା ଏଥି ନାହିଁ ।
ଅବଧି ବରଷେ ତା ନୀର ତୃଷାର୍ତ୍ତି ଜାଣି ସାରଙ୍ଗ ଥାଏ ଯହିଁ ।
   ନୋହିଲେ । ଜଳଦ ବୋଲନ୍ତେ କେ ଘନେ ।
ସେ ରସଦମୂର୍ତ୍ତି ତୁ ତାହା ତୃଷାର୍ତ୍ତି ଆସିବେଣି ରସ ପ୍ରଦାନେ ॥ ୧୩
କହେ କାଦମ୍ବିନୀ ସମୟ ହେଲଣି ହରଷ-ନଦୀ ଉଛୁଳିବ ।
   ନୀବି-ବନ୍ଧ ଅସ୍ତବ୍ୟସ୍ତ ଲଭି ଲଜ୍ଜା-ହଂସ ଦୂରକୁ ପଳାଇବ ।
   କି ଗୁଣି । ମାଳିନୀ ଏକାଳେ ଅଇଲା ।
ଶଶୀକଳା ଫୁଲମାଳା ଗୁହି ଅଜ ଅଳ୍ପ କାହିଁକି ପଗୁରିଲା ॥ ୧୪

---

ଯେତେ ରାଜାଙ୍କୁ ଲୋକେ ଦେଖି ଥାଆନ୍ତି, ମଗଧଦେଶ ମନ୍ତ୍ରୀସୁତ ଯେଉଁ ଫୁଲମାଗି ଯହିଁରେ ସରାଗୀ [ ସ୍ନେହୀ ] ହେଲା, ମାଳିନୀ ଯାଇ ନୃପଜାଠାରେ କହିବା ବେଳେ ତାହା ଖ୍ୟାତ ହେବ ।

୧୨—ନବକାମ ସଦୃଶ ପୁଷ୍ପକେତୁ ରତି ସଦୃଶ କୋଟିବ୍ରହ୍ମାଣ୍ଡସୁନ୍ଦରୀର ଲାଳସାରେ ଆସିଲେ କି ନାହିଁ କିପରି ଜାଣିମା ଏ କଥା ଶୁଦ୍ଧାନ୍ତରେ [ ଅନ୍ତଃପୁରରେ ] ହେମାସଖୀ ଏକାନ୍ତେ କହନ୍ତେ ରମଣୀମଣି ତାହାଶୁଣି ଭାଷେ ସେ ପୁରୁଷ ପ୍ରସ୍ଥାନ କର ନ ଥିଲେ [ ନ ଆସିଥିଲେ ] ମୋ ଜୀବନ ଶମନଭବନକୁ ( ଯମାଳୟକୁ ) ପ୍ରସ୍ଥାନ କରିବଟି କି,ଏ ବଧାନ ବୁଝ ।

୧୩—ବାଣୀକା ସଖୀ କହିଲା—ରେ ସାରଙ୍ଗ [ ଖଞ୍ଜନ ] ଚଞ୍ଚଳାକ୍ଷି । ଏଥିରେ ଗ୍ରହଦୋଷ ଅଶଙ୍କା ଅବଧି [ ପର୍ଯ୍ୟନ୍ତ ] ନାହିଁ । ଯେପରି ତୃଷାର୍ତ୍ତି ସାରଙ୍ଗ [ ଚାତକ ] ଯହିଁ ଥାଇ ତାହା ଜାଣି ମେଘ ତା ନୀର ବର୍ଷଇ, ନୋହିଲେ ଘନେ [ ମେଘକୁ ] କେହି ଜଳଦ ବୋଲନ୍ତେ କି ? ସେହିପରି ସେ ସୁନ୍ଦର ରସମୂର୍ତ୍ତି, ତୁ ତାହା ପାଶ ତୃଷାର୍ତ୍ତିନୀ ଅବଶ୍ୟ ସେ ରସ ପ୍ରଦାନେ ଆସିବେଣି ।

୧୪—କାଦମ୍ବିନୀ ସଖୀ କହିଲା—ସମୟ ହେଲଣି ହର୍ଷରୂପନଦୀ ଏଥର ଉଛୁଳିବ ନୀବିବନ୍ଧରୂପ ବନ୍ଧ ଅସ୍ତବ୍ୟସ୍ତ ଲଭିବ, ଲଜ୍ଜାରୂପ ହଂସ ଦୂରକୁ ପଳାଇବ ମାଳିନୀ କି ଗୁଣି ( ବିଚାରି ) ଏ କାଳେ ଅଇଲା, ଶଶୀକଳା ସଖୀ ଫୁଲ-ମାଳାକୁ ଗୁହି ଅଜ ଅଳ୍ପ କାହିଁ କି ପଗୁରିଲା ।

ପଚ୍ଛରିଲାକୁ ଉଚ୍ଚାରିଲା ପ୍ରସନ୍ନ ଆନନେ ସେ କେଳିକାନନେ ।
ନରନାୟକ ଯେତେକ ପୃଥ୍ୱୀଯାକ ପୂରି ଗଲେ ତହିଁ ସଘନେ ।
ଦେଖି ମୁଁ । ଜାଣିଲି ତିନି ତଥ୍ୟ କରି ।
ସମ୍ପଦେ ମଦେ ପ୍ରମୋଦେ ବୀରପଦେ ଅଧିକ କହୁଛି ବିସ୍ତରି ॥ ୧୫
ନଷ୍ଟେ ତ୍ରିପୁର ଜିଣିଛି କାଶୀଶ୍ୱର ନୁହଇ କାଶୀଶ୍ୱର ସେହି ।
ବିଦେହ ରାଜା ଆସିଅଛି ବିଦେହରାଜା ଏଥି ଏ ଭେଦ ନାହିଁ ।
କୋଦଣ୍ଡ । କାଣ୍ଡ ଯହିଁରେ ତା ନିର୍ମାଣ ।
ସେ ପୁର ନୃପଜ ବିଜେ ଚନ୍ଦ୍ରପ୍ରଭା ସ୍ୱଭାବେ ସେ ଜ୍ୟୋତିରିଙ୍ଗଣ ॥ ୧୬
ଗୁରୁ କବି ଛବି ମିଳିବେନି ବେନି ପାଖେ ଥିଲେ ମୋତେ ଦିଶିଲା ।
ଦୃଷ୍ଟିଏ ତହୁଁ ଗୋଟିଏକ ଖସିଲା ମୋର ନିକଟକୁ ଆସିଲା ।
ମୋ ନେତ୍ର । ମୀନ ସୁଖ ଭୋଗ ଅଣିଲା ।
ମାଗିଲା ସୁଗନ୍ଧଫୁଲ ଯେତେ ଦେଲି ତହିଁରୁ କିଛି ନ ଭେଦିଲା । ୧୭

---

୧୫—ପଚ୍ଛରିବାକୁ ( ଏକଥା ପଚ୍ଛରିଥିବା ଲୋକକୁ ) ପ୍ରସନ୍ନ ( ଅନେକ ପ୍ରସନ୍ନ-ବଦନରେ ) ମାଳିନୀ ଉଚ୍ଚାରିଲା ( କହିଲା ), ସେ କେଳିକାନନେ ପୃଥ୍ୱୀଯାକ ଯେତେକଜଣର ନାୟକ ( ରାଜା ) ସଘନେ ପୂରିଗଲେ । ମୁଁ ସେମାନଙ୍କୁ ଦେଖି ତହିଁ ମଧ୍ୟରୁ ସମ୍ପଦେ ( ଭାଗ୍ୟରେ ) ମଦେ ( ଅହଙ୍କାରରେ ) ପ୍ରମୋଦେ ( ଆନନ୍ଦରେ ) ଏବଂ ବୀରପଦେ ( ବୀର-ପଣରେ ) ଅଧିକ ବୋଲି ଯେଉଁ ତିନିଜଣଙ୍କୁ ତଥ୍ୟ କରି ଜାଣିଲି ତାହା ବିସ୍ତରି କହୁଛି ।

୧୬—କାଶୀଶ୍ୱର ( କାଶୀରାଜା ) ନଷ୍ଟେ ତ୍ରିପୁର ( ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ) କୁ ଜିଣିଛି କିନ୍ତୁ ସେ କାଶୀଶ୍ୱର ( ତ୍ରିପୁରାସୁର ବିଜୟୀ ଶିବ ) ନୁହଇଁ, ଆଉ ବିଦେହ ଦେଶ ରାଜା ଆସିଛି ସେ ଅତିଶୟ ସୁନ୍ଦର ଏ ଭେଦ ବିଦେହ ରାଜା ( କନ୍ଦର୍ପ ) ଏଥିରେ ନାହିଁ, ତା ( କନ୍ଦର୍ପର ) କୋଦଣ୍ଡ କାଣ୍ଡ ( ଧନୁଶର ) ଯହିଁରେ ନିର୍ମାଣ ସେ ପୁର ( ପୁଷ୍ପପୁର ) ନୃପଜ ( ରାଜପୁତ୍ର ପୁଷ୍ପକେତୁ ) ଚନ୍ଦ୍ରପ୍ରଭା ( ଚନ୍ଦ୍ରତୁଲ୍ୟ ଦୀପ୍ତିକି ) ଧରି ବିଜେ କରିଛନ୍ତି, ତାଙ୍କ ପ୍ରଭାବରେ ସେ ରାଜା ଦୁହେଁ ଜ୍ୟୋତିରିଙ୍ଗଣ ଖଦ୍ୟୋତପରି ନିସ୍ତେଜ ଦିଶୁଛନ୍ତି ।

୧୭—ଗୁରୁ ( ବୃହସ୍ପତି ) କବି ( ଶୁକ୍ର ) ଦୁହିଁଙ୍କର ଛବି ( କାନ୍ତି ) ଧରି ବେନିମିଳି ବେନି ପାଖେ ଥିଲେ ମୋତେ ଦିଶିଲା, ତହୁଁ ଏ ଦୃଷ୍ଟି ( ଏପରି-ଦିଶିଲା ) ଯେ ଗୋଟିଏକ ଖସିଲା ଏବଂ ମୋ ନିକଟକୁ ଆସିଲା, ମୋ ନେତ୍ରରୂପ ମୀନର ସୁଖଭୋଗକୁ ଆଣିଲା, ଅର୍ଥାତ୍ ଜ୍ୟୋତିଷ ମତରେ ବୃହ-ସ୍ପତିଙ୍କର ମୀନ ସ୍ୱ ଗୃହ, ଏବଂ ଶୁକ୍ର ମୀନରେ ତୁଙ୍ଗୀ ଏ ଭେଦ ତନ୍ମଧ୍ୟରୁ

ମୁଁ ବୋଲନ୍ତେ ଯାହା ଇଚ୍ଛା ତାହା ନିଅ ଉଦ୍‌ବେଗେ ଉଲ୍ଲାସକୁ ବହି ।
ଗୁନ୍ଥିଲି ଗଣି ନେଲ ଚମ୍ପା ବତିଶ ସୂତାରେ ବୀରବଶ କହି ।
 ମୋହୁଛୁ । ଭୁବନ ବର୍ଣ୍ଣମଙ୍ଗଳରେ ।
ସେଠାରେ ବସି କି ରସିକ କୁମାର ଶିରମଣ୍ଡନ କଲା ଧୀରେ ॥ ୧୮
ମିଥ୍ୟା କହେ ପୁର କି କର ଜାଣିଲି ଧେନିମ ବା ହୃଦଭାଗରେ ।
ଫୁଲ ମାଗିବା ପୁରୁଷେ ପଚାରୁଛୁ ତୁମ୍ଭ ଗୃହ କେଉଁ ନଗରେ ।
 କହୁଛୁ । ହସିଲା ହୋଇ ସେ ମୃଦୁଳେ ।
ଚୁରବର୍ଣ୍ଣେ ଗୁରୁଅଙ୍କ ହେବ ତଳେ ପାଟଳୀପନ୍ନର ଆଣିଲେ ॥ ୧୯
ମୋ ସଦ୍ମେ ଥିଲା ପୋଟା ପର ଗୋଟାଏ ତହିଁ ଦାଣ୍ଡ ସେ କହୁଥିବ ।
ଜାତ ନଳିନୀ ଖଟଣି ମାଳିନୀ ଏ ତେଣୁ ବାରଣେ ଏ ଭାବ ।
 ବାଳା ଯେ । ପଞ୍ଚୁରସାଳ ପରି ଦେହୀ ।
କଣ୍ଠ ପ୍ରବେଶ ଶ୍ରବଣରେ କନକ-କଣ୍ଟକୀଫଳ ଲକ୍ଷ୍ୟ ବହି ॥ ୨୦

---

ଜଣେ ଅସି ମୋ ନେତ୍ର ମୀନର ସୁଖଭୋଗ ଆଣିଲା । ଫୁଲ ମାଗିଲା, ମୁଁ ଯେତେ ସୁଗନ୍ଧଫୁଲ ଦେଲି ସେ ତହିଁରୁ କିଛି ଘେନିଲା ନାହିଁ ।

୧୮—ମୁଁ, ଯାହା ଇଚ୍ଛା ତାହା ନିଅ, ଏହା ବୋଲନ୍ତେ ଉଦ୍‌ବେଗରେ ଉଲ୍ଲାସକୁ ବହି ଚମ୍ପା ବତିଶ ଗଣିନେଇ ସୂତାରେ ଗୁନ୍ଥିଲା ଏବଂ କହିଲା—ଏଥିରେ ବୀର ( ରାଜପୁତ୍ର ) ବସ; ଅର୍ଥାତ୍ ଚମ୍ପାପୁର ଜେମାଠାରେ ରାଜପୁତ୍ର ବଶ ବୋଲି ଜଣାଇଲା; ଆଉ ଦେଖିଲି ବର୍ଣ୍ଣ ମଙ୍ଗଳରେ ( ରୂପ ଶୋଭାରେ ) ଭୁବନ ମୋହୁଛୁ ଏପରି ଏକ ରାଜପୁତ୍ର ସେଠାରେ ବସିଛୁ, ସେ କି ରସିକ, ସେ ମାଳାକୁ ନେଇ ଧୀରେ ଶିର ମଣ୍ଡନା କଲା ।

୧୯—ହୃଦଭାଗରେ, ଘେନିମ ଏ ଯେ ମିଥ୍ୟା କହେ କାରଣ ତାଙ୍କର ପୁର ( ନଗର ) ଏ କିପରି ଜାଣିଲି; କିନ୍ତୁ ଯେଉଁ ପୁରୁଷ ଫୁଲ ମାଗିଲା ତାକୁ ମୁଁ ପଚାରୁଛୁ, ତୁମ୍ଭ ଗୃହ କେଉଁ ନଗରେ ? ସେ ପୁରୁଷ ହସିଲା ହୋଇ ମୃଦୁଳେ ( କୋମଳ ଭାବରେ ) କହୁଛୁ ପାଟଳିପନ୍ନର ଚୁରବର୍ଣ୍ଣ ( ଚତୁର୍ଥ ବର୍ଣ୍ଣ, ପ ) ତଳେ ଗୁରୁଅଙ୍ଗ ( ହ୍ରସ୍ୱ ଉକାର ) ଆଣିଲେ ସେ ନଗର ନାମ ହେବ, ଅର୍ଥାତ୍ ପାଟଳିପୁର ।

୨୦—ମୋ ସଦ୍ମ (ଗୃହରେ ) ଏକବର୍ଷକାଳ ରହିଥିବା ପୋଟା ( ନପୁଂସକ-ପୁରୁଷ ) ପର ଜଣେ ସେଠାରେ ଦାଣ୍ଡିଲା ଜାତ ନଳିନୀ ( ପଦ୍ମିନୀ ଜାତି-ରାଜକୁମାର ) ଏ ଖଟଣି ମାଳିନୀ ଏମନ୍ତ ସେ ପୋଟା କହୁଥିବ, ତେଣୁ ଏ ଭାବ ବାରଣଲେ । ଯେ ବାଳା ପଞ୍ଚୁରସାଳ ( ଆମ୍ବ ) ପ୍ରାୟ ଦେହୀ ( ଦେହକୁ ଧରିଅଛୁ ) ସେ କଣ୍ଠ ସମୟରେ ପ୍ରବେଶ ହେବାର ଶୁଣି କନକ କଣ୍ଟକୀଫଳ ( ସୁବର୍ଣ୍ଣ ପଣସ ) ର ତୁଲ୍ୟ ( ତୁଳନାକୁ ) ବହିଲା ।

ଦେଇ ଶାଢ଼ୀ ଚୁଡ଼ି ଗୁଣା ମୁଦ୍ରି ବଳା ସୁବର୍ଣ୍ଣେ ରଜତେ ଗଢ଼ଲେ ।
ମାଜଣା କରାଇ ଉମାଙ୍କ ଶିବଙ୍କ ଯା ଜଣା ସଖୀଏ କହିଲେ ।
ସେ ଧନ । ପ୍ରାପତ ହେଉ ଏ ଯୋଡାରେ ।
ପ୍ରେମ-ବାଣିଜ୍ୟେ ଲାଭ ଲଭି ନିଧନ କରୁ ବିରହ ଦୁର୍ଦ୍ଦଶାରେ ॥ ୨୧
ପାଞ୍ଚିରୁ ଧନ ସେ କାହିଁ ଲଭି କେହି ପାଇବ ଘେନ ତୁ ଗୁଣିକ ।
ଓଷ୍ଠ ମାଣିକ୍ୟରୁ ଜାତ କରାଇବ ଅନୁରାଗ-ବାଣୀ ମାଣିକ ।
ସୁହାସ । ମୋତି କରାଇ ଅଡଯାତ ।
ହର-ଭଣ୍ଡାରେ ଅର୍ଜନ ଦନ୍ତ-ହୀରା ଥୁଆଇ ହୋଇବ ତୃପତ ॥ ୨୨
ଏମନ୍ତ ଶୁଣି ସେ ମାଳାକାରତରୁଣୀ ମେଲାଣି ହୋଇ ଯିବାବେଳେ ।
ତଟିନୀ ତଟରେ ଯୁବାବରେ ଭେଟି ନେଉଟି ଭଙ୍ଗୀ ରେଖୀ ମିଳେ ।
କହିଲା । ଅପରାଧ କ୍ଷମା କରାଇ ।
ମୋ ନିତ ଗଞ୍ଜା ତାମ୍ବୁଲ ପଦ୍ମଦଳ ଶଯ୍ୟାକୁ ଗଲା ତହିଁ ପାଇଁ ॥ ୨୩

---

୨୧—ସଖୀମାନେ ମାଳିନୀଙ୍କ ଶାଢ଼ୀ, ସୁବର୍ଣ୍ଣେ ଓ ରଜତେ ନିର୍ମିତ, ଚୁଡ଼ି, ଗୁଣା, ମୁଦ୍ରି, ବଳା, ଗଢ଼ଲେ ଦେଇ କହିଲେ, ତୁ ଯା ଶିବଙ୍କୁ ଓ ଉମାଙ୍କ ମାଜଣା କରାଇ ଜଣା, ସେ ଧନ ଏ ଯୋଡାର ପ୍ରାପ୍ତ ହେଉ, ପ୍ରେମବାଣିଜ୍ୟରେ ଲାଭ ଲଭି ବିରହ ଦୁର୍ଦ୍ଦଶାରେ ନିଧନ ( ବିନାଶ ) କରୁ ।

୨୨—ତୁ ଅବା ମନରେ ପାଞ୍ଚିରୁ ସେ ଧନ କାହିଁ, କେହି (କାପରି) ଅବା ସେ ଲାଭ ପାଇବ, ତୁତ ଗୁଣିକ, ଘେନ ( ବିଚାର କର ) ସୁନ୍ଦରୀ ପାଠଲପୁର ରାଜପୁତ୍ରକୁ ପାଇଲେ ଓଷ୍ଠ ମାଣିକ୍ୟରୁ ( ମାଣିକତୁଲ୍ୟ ରଙ୍ଗ ଅଧରରୁ ) ଅନୁରାଗ ବାଣୀ ( ସ୍ନେହବାଣୀରୂପେ ) ମାଣିକ୍ୟ ଜାତ କରାଇବ, ସୁହାସ ମୋତି ( ମୋତି ତୁଲ୍ୟ ଶୁକ୍ଳ ହାସ ) ଅଡଯାତ ( କାରବାର ) କରାଇ ହରଭଣ୍ଡାରେ ( ଗଣ୍ଡସ୍ଥଳରେ ) ଅର୍ଜନ (ଲାଭ) ରୂପେ ଦନ୍ତ ହୀରା ଥୁଆଇ (ଦନ୍ତକ୍ଷତ କରାଇ ) ତୃପ୍ତ ହୋଇବ ।

୨୩—ସେ ମାଳାକାର ତରୁଣୀ ( ମାଳିନୀ ) ଏମନ୍ତ ଶୁଣି ମେଲାଣି ହୋଇ ଯିବା-ବେଳେ ତଟିନୀତଟରେ ( ନଦୀକୂଳରେ ) ଯୁବାବରେ ( ପୁଷ୍ପକେତୁଙ୍କୁ ) ଭେଟି ଲେଉଟି ଆସୁଥିବା ଭଙ୍ଗୀ ରେଖୀ ( ଚତୁରୀ ଦୂତୀ ) ମିଳିଲା ଏବଂ କହିଲା ଅପରାଧ କ୍ଷମା କରାଇ ମୋ ନିତଗଞ୍ଜା ତାମ୍ବୁଲ ଓ ପଦ୍ମଦଳ ଶଯ୍ୟାକୁ ତହିଁ (ପଦ୍ମଦଳପାଇଁ) ଗଲା ।

ରେ ବିମ୍ବାଧର ନିଯୋଗ ପାନ ଧର ନଦୀରୁ ସନାଳ ସାରସ ।
କରକେ ଉପାଠୁ ଗୋଟିଏ କୂଳରେ ବକୁଳ ତଳରେ ପ୍ରବେଶ ।
ଜଗତ-ବନ୍ଦନ ରାଜନନ୍ଦନେ ।
ଦେଖି ନ ଥିବ କାହା ଆଖି ତେମନ୍ତ ସୁନ୍ଦର ଚଉଦଭୁବନେ । ୨୪
କଳାକେ ଚନ୍ଦ୍ରକୁ ତୁଳା କେ କରିବ ଏସନ ପ୍ରସନ୍ନ ବଦନ ।
ସେହୁ ବପୁ ଗୁହିଁ ହରବପୁ ଗର୍ବ ନ ରଖି ବୋଲାଇ ମଦନ ।
ପୁରୁଷ-ଋଷଭ ସେ ନିଶ୍ଚେ ଅଟନ୍ତି ।
ନନ୍ଦନୀ ତୁହି ଗୋପାଳ-ଶ୍ରେଷ୍ଠଙ୍କର ଲକ୍ଷଣା ଇଚ୍ଛା ତୋ ସଙ୍ଗତ । ୨୫
ନରବରଜ ଢାଳିଲେ ଯେ ନୀରଜନେତ୍ର ଦ୍ୱିଜମିତ୍ର ଉପରେ ।
ସେମୋତେ ପୁଚ୍ଛିଲେ ହେ ବାଳେ ଏ ହିତ ନୋହେଟି କଦା ପ୍ରେତଜ୍ୱରେ ।
ସହଜେ । ଏ ବିଷପ୍ରସୂନ ବୋଲାଇ ।
କରଗ୍ରହଣଯୋଗ୍ୟ ଜନ ନ ମିଳି ପ୍ରବୃଦ୍ଧ ଭାବ ଅଛୁ ପାଇ । ୨୬

---

୨୪—ରେ ବିମ୍ବାଧର ନିଯୋଗ ( ଖଟଣି ) ପାନ ଧର ସନାଳ ( ନାଡ଼ ସହିତ ) ସାରସ ( ପଦ୍ମ ) କରକେ ( କଢ଼ୀ ନଦୀରୁ ଉପାଠୁଁ ନଦୀ କୂଳରେ ଗୋଟିଏ ବକୁଳତଳରେ ଜଗତନନ୍ଦନ ( ପୂଜ୍ୟ ) ରାଜନନ୍ଦନ ପ୍ରବେଶ ହେଲେ, କାହା ଆଖି ତେମନ୍ତ ସୁନ୍ଦର ଚଉଦଭୁବନେ ଦେଖିନଥିବ ।

୨୫—ତାହାଙ୍କର ପ୍ରସନ୍ନବଦନ ସହିତ ଚନ୍ଦ୍ରଙ୍କୁ କଳାକେ କେ ତୁଳା କରିବ ( ସମାନ କରିବ ) ସେହୁ ବପୁ ( ଶରୀରକୁ ) ଗୁହିଁ, ହରବପୁ ( କାମ ) ଗର୍ବ ନ ଦେଖି ମଦନ ବୋଲାଇ ଅର୍ଥାତ୍ ମଦ ( ଗର୍ବ ) ନ ( ନାହିଁ ) ସେ ନିଶ୍ଚେ ପୁରୁଷ ଋଷଭ ( ଶ୍ରେଷ୍ଠ ) ଅଟନ୍ତି ସୁତରାଂ ଋଷଭ ( ବୃଷଭ ) ହେଲେ, ତୁହି ଗୋପାଳଶ୍ରେଷ୍ଠ ( ଭୂପତିଶ୍ରେଷ୍ଠଙ୍କର ) ସୁଲକ୍ଷଣା ନନ୍ଦନୀ ( ଦୁହିତା ) ସୁତରାଂ ସେ ଗୋପାଳଶ୍ରେଷ୍ଠ ( ଗଉଡ଼ଶ୍ରେଷ୍ଠ ) ହେଲେ ତୁ ତାଙ୍କର ନନ୍ଦନୀ ( ସୁରଭୀବତ୍ସା ) ହେଲୁ ଅତଏବ ପୁରୁଷ ବୃଷଭ ତୋ ସଙ୍ଗତ ( ସଙ୍ଗମ ) ଇଚ୍ଛା କରଇ ।

୨୬—ନରବରଜ ( ରାଜାଧିରାଜ ପୁତ୍ର ) ଦ୍ୱିଜ ( ବ୍ରାହ୍ମଣ ) ମିତ୍ରଙ୍କ ଉପରେ ଯେ ନୀରଜନେତ୍ର (ପଦ୍ମନେତ୍ର) ଢାଳିଲେ ଅର୍ଥାତ୍ ଦ୍ୱିଜମିତ୍ରଙ୍କ ଆଖିରେ ଠାରି ଦେଲେ ତହୁଁ ସେ ମୋତେ ପୁଚ୍ଛିଲେ—ହେ ବାଳେ, ଏ ( ପଦ୍ମପତ୍ର ), କଦାପି ପ୍ରେତଜ୍ୱରରେ ହିତ ନୋହେଟି (ହିତକାରୀ ହେବନାହିଁ) ଏ ସହଜେ ବିଷପ୍ରସୂନ ( ପଦ୍ମ ) ବୋଲାଏ ସୁତରାଂ ବିଷ ପ୍ରସୂନ ( ବିଷଫୁଲ ) ବୋଧହୁଏ । କରଗ୍ରହଣଯୋଗ୍ୟ ( ସୁବେଦ୍ୟ ) ନ ମିଳିବାରୁ ରୋଗ ପ୍ରବୃଦ୍ଧଭାବ ( ବୃଦ୍ଧିଭାବକୁ ) ପାଇଛୁ, ଶ୍ଳେଷାର୍ଥ—କର ଗ୍ରହଣ ଯୋଗ୍ୟଜନ ( ପାଣିଗ୍ରହଣ କରିବା ଭଳି ଯୋଗ୍ୟ ଜନ ସ୍ୱାମୀ) ନମିଳିବାରୁ ପ୍ରେତଜ୍ୱର (କାମଜ୍ୱର) ବୃଦ୍ଧି ହୋଇଅଛୁ, ସେ ପଦ୍ମ ପତ୍ରରେ ଉପଶମ ଲଭିବ ନାହିଁ ।

ଛଳପର୍ଣ୍ଣ ଫଳ ରସାଳହୃଦୟୁ ପର କର୍କଶ ମଧ୍ୟେ ଥାଇ ।
ଜାତ ଜୀମୂତେ ଏ ହୃତ ହେବ କିଅ ଏମନ୍ତ ବ୍ୟାଧି ଥିଲେ ହୋଇ ।
ସଙ୍କେତ । ଦେଖି ବୋଇଲି ଦିଅ ଦେଲେ ।
ପୂର୍ବେରେ ଭବକଣ୍ଠେ ଥିଲା ସୁରଭି ସୁରଭିମାଳା ବୀର ଗଲେ ॥ ୨୭
ଧରିଲି ହରିତବର୍ଣ୍ଣରୁ କହିଲି ଗଢ଼ା ଗେଣ୍ଡୁ ଏ ଗୋଶୀର୍ଷରେ ।
ଖଣ୍ଡୁ ଏ ସଂଶୟ ଦେଖ ଚତୁର ଏ ଫଳ ହେବ କେଉଁ ବଶରେ ।
ଧେନ ଯେ । ଅଳୀ ଅଙ୍ଗୁଳି ଘାତ କଲା ।
ହୃଦୟ ଜଦୟ କଠିନକୁ ଜାଣି ଭାଙ୍ଗି ଶୋଭାଙ୍ଗୀ ହସ୍ତେ ଦେଲା ॥ ୨୮
ସୁନା ପଠା ଖୋଲା ବ୍ୟକତ ମର୍କତ ମିନା ଫୁଙ୍କା ଲିପି ଝଳାତ ॥
ଅଭୁତ କେତକୀ ପର୍ଣ୍ଣେ ଅଳି ଅଳି ହୋଇ କି ମିଳିନ୍ଦ ମିଳିତ ।
ପରାଗ । ଯୋଗ ହୋଇଥିଲା ପରରେ ।
ସେ ଗନ୍ଧସାର ଶେଷ କାହିଁ ରହିଛି ପଢ଼ିଲା ଉତ୍ଫୁଲ୍ଲ ଶରୀରେ ॥ ୨୯

---

୨୭—ରସାଳ ହୃଦୟୁ ( ଅମ୍ବଠାକୁଅ ) ପର କର୍କଶ ( କଠିନ ପଦାର୍ଥ ) ମଧ୍ୟରେ ରହିଛି । ଜୀମୁତେ ( ପର୍ବତେ ) ଜାତ ଏ ଛଳପର୍ଣ୍ଣଫଳ ( ଚନ୍ଦନଫଳ ) ଏମନ୍ତ ବ୍ୟାଧି ( ଉପରୋକ୍ତ ରୋଗ ) ହୋଇଥିଲେ କିଅ ହୃତ ହେବ । ମୁଁ ସଙ୍କେତ ଦେଖି ବୋଇଲି, ଦିଅ—ସେ ଦେଲେ । ପୂର୍ବେ ଭବ କଣ୍ଠେ ଯେଉଁ ସୁରଭିମାଳା (ସୁବର୍ଣ୍ଣଚମ୍ପକମାଳା) ଥିଲା ତାହା ବୀରଗଳାରେ ଅଛି ।

୨୮—ମୁଁ ଯେ ଦେଇଥିବା ଗେଣ୍ଡୁକୁ ଧରିଲି ଓ ହରିତ ବର୍ଣ୍ଣରୁ ( ଈଷତ୍ ପୀତବର୍ଣ୍ଣ ଦିଶିବାରୁ ) କହିଲି—ଏ ଘୋରି ହୋଇଥିବା ଗୋଶୀର୍ଷରେ ( ଗୋରଚନାରେ ) ଗଢ଼ା ଗେଣ୍ଡୁ । ଅହୋ ଚତୁରୀ ! ଏବେ ଦେଖ, ଏ କେଉଁ ବଶରେ ( କାରଣରେ ଫଳହେବ, ମୋର ଏ ସଂଶୟ ଖଣ୍ଡୁ ( ଖଣ୍ଡିତହେଉ ) । ଅଳୀ ( ସଖୀ ) ତାହା ଧେନ ଅଙ୍ଗୁଳିଘାତ କଲେ ହୃଦୟ ଜଦୟ କଠିନକୁ ଜାଣି ଅର୍ଥାତ୍ ତହିଁମଧ୍ୟରେ ଥିବା ଶଠାଙ୍କୁ ବୁଝି ଭଙ୍ଗୀ କରି ଶୋଭାଙ୍ଗୀ ( ସୁନ୍ଦରୀ ) ହସ୍ତେ ଦେଲା ।

୨୯—ସୁନାପଠା ଖୋଲା ହୋଇ ତହିଁରେ ମର୍କତ ମଣିର ମିନା (କାରୁକାର୍ଯ୍ୟ) ଫୁଙ୍କା ହୋଇ (ଝଳାତ ହେଲାପରି ) ହଳଦିଆ କାଗଜରେ ଲିପି (ଅକ୍ଷରପନ୍ତି) ବ୍ୟକ୍ତ ହୋଇ ଅଛି । ଅଦ୍ଭୁତ ( ଆଶ୍ଚର୍ଯ୍ୟ କଥା ) କେତକୀ ପତ୍ରରେ ଅଳି ଅଳି ( ଧାଡ଼ି ୨ ) ହୋଇ ମିଳିନ୍ଦ ( ଭ୍ରମର ) ମିଳିତ ହୋଇଛନ୍ତି କି ? ତାଙ୍କ ଦେହରେ ପରାଗ ( ପୁଷ୍ପରେଣୁ ) ଯୋଗହେଲାପରି ସେ ଘୋରି ଗନ୍ଧ ସାର (ଚନ୍ଦନ) ଶେଷ କାହିଁ ରହିଛି ( କେଉଁ ଠାରୁ ଲାଗିଛି ) ଏମନ୍ତ ପଦକୁ ଉତଫୁଲ୍ଲ ( ରୋମାଞ୍ଚ ) ଶରୀରରେ ପଢ଼ିଲା ।

ରାମା ଯେମନ୍ତ ଅଭିରାମା ତେମନ୍ତ ନାମ ପୁଣି ବହୁ ବହିଲ ।
ଉର୍ବଶୀ ଅପୂର୍ବ ସୁନ୍ଦରୀ ସ୍ୱର୍ଗରେ ତୋହେ ଦେଖି ଏବେ ହୋଇଲା ।
ସୁକେଶୀ । ଅରମ୍ଭା ଅ'କାର ହୀନରେ ।
ରମ୍ଭା ବୋଲାଇଲା ତିଲୋତ୍ତମା ହେଲା ତିଳେ ସୁଷମା ସମାନରେ ॥ ୩୦
ଗୁଣ ତୁଳନାରେ ତୁଳନା ନୋହୁଛି ରତିଙ୍କେ ରତି ବୋଲାଉଛୁ ।
ଭସ୍ମକାନ୍ତି ତାହାଠାରେ ଥିବା ନାହା ପଞ୍ଚବିଶିଖେ ବଢାଇଛନ୍ତି ।
ତୋ ନେନେ । ତହୁଁ ସେ ସାକ୍ଷାତ ଉଦୟ ।
ନୀଳାଭାବ ଥିଲା ଲୀଳାଭାବ ହେଲା ଜାତ ତରଙ୍ଗେ କୁବଳୟ ॥ ୩୧
ବର୍ତ୍ତନାବଧି ସିଦ୍ଧି କଲା କବିଙ୍କ ହୃଦେ ହୋଇ ବନମାଳିକା ।
ଶ୍ରବଣେ ତପୀ ବନରେ ଚ୍ୟୁତ ହୋଇ ବ୍ୟାପି ସେ ଯାଇଥିବ ଏକା ।
ନିଷ୍ଠୁର । ରାଜୀବ ଉପମା ସୃଷ୍ଟିରେ ।
ଭକାଳ ଜନ ମୁଁ ଅଶୋକ ଜନମୁଁ ସମ୍ପୂର୍ଣ୍ଣ କାମନା ଦୃଷ୍ଟିରେ ॥ ୩୨

---

୩୦—ତହିଁରେ ଲେଖାଅଛି—ହେ ରାମା ! ତୁ ଯେମନ୍ତ ଅଭିରାମା (ସୁନ୍ଦରୀ) ବହୁ ପୁଣି ତୋର ତେମନ୍ତ ନାମ ( କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ) ବହିଲୁ, ସ୍ୱର୍ଗରେ ଅପୂର୍ବ ସୁନ୍ଦରୀ ଉର୍ବଶୀ ତୋତେ ଦେଖି ଏବେ ଅ-ପୂର୍ବ ସୁନ୍ଦରୀ (ଅସୁନ୍ଦରୀ) ବୋଲାଇଲା, ଆଉ ଏକ ସୁକେଶୀ ଅରମ୍ଭା ( ସୌନ୍ଦର୍ଯ୍ୟ ଗର୍ବିତା ) ଅପ୍ସରା ଅ-କାର ହୀନରେ ( ରୂପରେ ହୀନା ହେବାରୁ ଅ-ହୀନା ହୋଇ ) ରମ୍ଭା ବୋଲାଇଲା । ଅନ୍ୟ ଏକ ଅପ୍ସରା ତିଳମାତ୍ର ସୁଷମାରେ ସମାନ ହେବାରୁ ତାହାର ନାମ ତିଲୋତ୍ତମା ହେଲା ।

୩୧—କାମସ୍ତ୍ରୀ ସୁନ୍ଦରୀର ଗୁଣ ତୁଳନାରେ ସମ୍ପୂର୍ଣ୍ଣ ସମାନ ନୋହି ରତିଏ ମାତ୍ର ତୁଳନୀୟା ହେବାରୁ ରତି ନାମ ଧରିଛି । ଏବଂ କାମ ଭସ୍ମ ହେବା କାଳରୁ ତାହାଠାରେ ( ରତିଠାରେ ) ଥିବା ନିଜ ନାହା ( ସ୍ୱାମୀର ) ପଞ୍ଚ ବିଶିଖେ ( ପଞ୍ଚବାଣରେ—ନୀଳୋତ୍ପଳ, ନବମଲ୍ଲିକା, ଚୂତ, ପଦ୍ମ ଓ ଅଶୋକ ଶରରେ ) ସେ ( ରତି ) ତୋତେ ବଢାଇଛନ୍ତି ( ପୂଜା କରିଛନ୍ତି ) । ତହୁଁ ସେ ( ଶରସବୁ ) ତୋ ନେତ୍ରରେ ସାକ୍ଷାତ ଉଦୟ ( ପ୍ରକାଶ ) ପାଇଛନ୍ତି । ତୋ ଚକ୍ଷୁରେ ନୀଳଭାବ ( ନୀଳିମା ) ପୂର୍ବରୁ ଥିଲା, କିନ୍ତୁ ରତି ଶରମାନଙ୍କରେ ବଢାଇବାରୁ ତରଙ୍ଗରେ ( ଲହରୀରେ ) କୁବଳୟ ( ନୀଳପଦ୍ମ ) ଖେଳା କଲାପରି ଲୀଳାଭାବ ( ଚକ୍ଷୁର ଚଞ୍ଚଳ ଭଙ୍ଗୀ ) ଜାତ ହେଲା ।

୩୨—କବିମାନଙ୍କ ହୃଦୟରେ ନବମାଳିକା ( ନୂତନମାଳା ) ପରି ହୋଇ ବର୍ତ୍ତନା ବଧିମାନଙ୍କୁ ସିଦ୍ଧି କଲା, ଅର୍ଥାତ୍ କବିମାନେ ଚକ୍ଷୁର ବର୍ତ୍ତନା ବଧିକି ହୃଦରେ ହାର କଲେ । ସେ ଚକ୍ଷୁ ବନବାସୀ ତପୀ ମାନଙ୍କର ଶ୍ରବଣ ନିମିତ୍ତ ସେବ-

ତ୍ରିବଳୀ ତ୍ରିପଥଗା ପାଶେ ଉଦରେ ରୋମାଳୀ କଳ୍ପବୃକ୍ଷ ଜାତ ।
ଅଧର ମନ୍ଦାର ଶ୍ରୀଅଙ୍ଗ ସୁଗନ୍ଧ ପାରିଜାତଙ୍କ ଆମୋଦିତ ।
    କଟାକ୍ଷେ । ସୁଖ ସନ୍ତାନ ଜାତ କରୁ ।
ଶୀତଳତା ହରିଚନ୍ଦନ କାମଦା ନୋହିବୁ ପାଞ୍ଚ ସୁରତରୁ ॥ ୩୩
ମୃଗପଚ୍ଛ ପୁଚ୍ଛ କଦା ନୋହେ ଲକ୍ଷ୍ୟ ତୋ କେଶ ଗର୍ଭକ ନିମନ୍ତେ ।
ଛେଦନ କରି ନିବେଦନ କରିବି ଏ ଦୋଷ କ୍ଷମା କଲେ ମୋତେ !
    ତୋ ଇଚ୍ଛା । ଚୂଡ଼ା ବନ୍ଧନ କରିବାରେ ।
ଥିଲେ ଚନ୍ଦ୍ର ଉରେ ବସିଲ ପ୍ରକାରେ ଯୋଗ ହେଉଛନ୍ତି ଏଥିରେ ॥ ୩୪
ହେଲି ଅତିଶୟ ସଂଶୟ ଅନ୍ତର ଅନ୍ତରଗତରୁ ବାଳାର ।
ଶ୍ରବଣେ କରି ସୀତା ରାମ ଭାବନା ସଜନୀ ତନି ଜରଜର ।

---

ନରେ ଚୂତ ହୋଇ ( ଆମ୍ରବକୁଳ ରୂପରେ ) ଏକା ବ୍ୟାପି ଯାଇଥିବ । ଉପମା ସୃଷ୍ଟିରେ ଚକ୍ଷୁ ନିଷ୍ଟୟ ରାଜୀବ ( ପଦ୍ମ ) । ମୁଁ ତୋତେ ଭଜିଲି ଜନ୍, ତୋ ଦୃଷ୍ଟିରେ ଅଶୋକ ( ଶୋକହୀନ ଅବସ୍ଥା ) ଜନ୍ମୁ, ମୋ କାମନା ସଂପୂର୍ଣ୍ଣ ହେଉ ।

୩୩—ସ୍ୱର୍ଗଙ୍ଗା କୂଳରେ କଳ୍ପବୃକ୍ଷ ପରି ତ୍ରିବଳି ରୂପ ତ୍ରିପଥଗା ( ଗଙ୍ଗା ) ପାଶରେ ଉଦରରେ ରୋମାଳି ରୂପ କଳ୍ପବୃକ୍ଷ ଜାତ ହୋଇଛି, ଅଧର ମନ୍ଦାର ସଦୃଶ ଶ୍ରୀଅଙ୍ଗର ସୁଗନ୍ଧ ପାରିଜାତଙ୍କ ପରି ଆମୋଦିତ ( ଆନନ୍ଦିତ ) କରୁଛି, ତୁ କଟାକ୍ଷରେ ( ଚାହାଁଣିରେ ) ସୁଖକୁ ସନ୍ତାନ ରୂପେ ଜାତ କରୁଛୁ, ତୋହର ଦେହ ଶୀତଳତା ହରିଚନ୍ଦନ ( ପୀତଚନ୍ଦନପରି ). ଏମନ୍ତେ ତୁ ପାଞ୍ଚ ସୁରତରୁ ( ଦେବତରୁ = କଳ୍ପବୃକ୍ଷ, ମନ୍ଦାର, ପାରିଜାତକ, ସନ୍ତାନ ଓ ହରିଚନ୍ଦନ ) ହେଲୁ ତେବେ କାମଦା ( ବାଞ୍ଛାଫଳ ଦାୟିନୀ ) ନୋହିବୁ କି ?

୩୪—ମୃଗର ପଚ୍ଛ ପୁଚ୍ଛ ତୋ କେଶଗର୍ଭକ ( ଖୋସା ) ନିମନ୍ତେ କଦାପି ଲକ୍ଷ୍ୟ ନୋହେ, ମୋତେ ( ମୋପକ୍ଷରେ ) ଏ ଦୋଷ କ୍ଷମା କଲେ ପୁଚ୍ଛ ଛେଦନ କରି ନିବେଦନ କରିବି, ତହିଁରେ ତୋହର ଚୂଡ଼ା ବନ୍ଧନ କରିବାର ଇଚ୍ଛା ଥିଲେ କରିବୁ । ଚନ୍ଦ୍ର ଉପରେ ( ବକ୍ଷରେ ) ମୃଗ ବସିଲା ପ୍ରକାରେ ଯୋଗ ମଧ୍ୟ ଏହାଠାରେ ହେଉଛନ୍ତି ।

୩୫—ଏହା ଶ୍ରବଣେ ବାଳାର ଅନ୍ତର୍ଗତରୁ ଅତିଶୟ ସଂଶୟ ଅନ୍ତର ହେଲା, ତନି ସଜନୀ (ସଖୀ) ସୀତାରାମ ଭାବନା କରି ହର୍ଷରେ ଜରଜର ହେଲେ । ସେ ସୀତା ପୁଣି ଯୋଜନ ଗନ୍ଧା ଏବଂ ସୁନ୍ଦରରେ ( ମନୋହର ରୂପରେ ) ଜନକ ଋଷିଙ୍କର ତୋଷ ଦାନରେ ଉତ୍ପନ୍ନ ହୋଇଥିଲେ, ସେ ରାମ ପୁଣି

ସେ ପୁଣି । ଯୋଜନଗନ୍ଧା ସୁହ୍ମିତରେ ।
ଜନକ ତୋଷ ଦାନରେ ତତ୍ପର ସେବାଡ ଭଞ୍ଜ ଗାରବରେ ॥ ୨୫

---

## ଊନତ୍ରିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ



ରସିକଜନ ମଜ୍ଜନ କର ମନ ସଖୀ ଶିଖାଇଲେ ଧୀର ।

ଲେଖ ଗୋ ଶଠାଉ ଅନ୍ଧାର ତୁଟାଉ ଘୋଟାଉ କାମ-ଅନ୍ଧାର ସେ ।
ଚରମ-ଶିଖରୀ ଶିଖ । ଭୂଷଣ ପୂଷଣ ଦେଖ ସେ ॥ ୧
ହେ ତର୍କ ଚତୁରୀ ଭାରତଭୂମି ପର କାଗଜ କର ଅସକ୍ତ ।
ବୀରକିରୀଟ କରାୟତ୍ତେ କରବ କର୍ଣ୍ଣ-ଦ୍ରୋଣ-ରକ୍ତ ବ୍ୟକ୍ତ ସେ ।
କୃଷ୍ଣ ପ୍ରବଳେ ପ୍ରକାଶ । ଉତ୍ତର ଦେବ ସନ୍ତୋଷ ସେ ॥ ୨

---

ଯୋଜନ ଗନ୍ଧା ସୀତାଙ୍କ ସହିତ ସୁହ୍ମିତରେ ( ମନୋହର ହୋଇ ) ଜନକ ( ପିତା ଦଶରଥଙ୍କର ) ତୋଷ ଦାନରେ ତତ୍ପର ହୋଇଥିଲେ ।

---

୧—ହେ ରସିକ ଜନମାନେ ! ଏ ଗୀତରେ ମନକୁ ମଜ୍ଜନ କର । ସଖୀମାନେ ଧୀର କରି ଶିଖାଇଲେ—ଆଗୋ ସୁନ୍ଦରୀ ! ଶଠାଉ ଲେଖ, ସେ ସନ୍ଦେହ ଅନ୍ଧକାରକୁ ତୁଟାଉ ଏବଂ କାମ ଅନ୍ଧକାରକୁ ଘୋଟାଉ । ଦେଖ ଚରମ ଶିଖରୀ ଶିଖ ( ଅସ୍ତାଚଳ ଶିଖରକୁ ) ପୂଷଣ ( ସୂର୍ଯ୍ୟ ) ଭୂଷଣ କଲେଣି, ଅର୍ଥାତ୍ ସୂର୍ଯ୍ୟ ଅସ୍ତ ହେଲେଣି ।

୨—ଚତୁରୀ ତର୍କି ଭାରତ ଭୂମିପର କାଗଜକୁ କରିବାକୁ ଅସକ୍ତ ( ଯତ୍ନବାନ୍ ) ହେଲ । ଭାରତଭୂମିରେ ବୀର କିରୀଟ ( ଅର୍ଜୁନ ) କରାୟତ୍ତେ ( ହସ୍ତାଧୀନରେ ) କର୍ଣ୍ଣ, ଦ୍ରୋଣ ପ୍ରଭୃତି ବୀରମାନଙ୍କର ରକ୍ତକୁ ବ୍ୟକ୍ତ କରିଥିଲେ ଅର୍ଜୁନ କୃଷ୍ଣ ପ୍ରବଳେ ( ଶ୍ରୀ କୃଷ୍ଣଙ୍କ ବଳରେ ) ପ୍ରକାଶିତ ହୋଇଥିଲେ, ସେ ଯୁଦ୍ଧରେ ଉତ୍ତର ( ବିରାଟପୁତ୍ର ) ଏବଂ ଦେବତା ମାନେ ସନ୍ତୋଷକୁ ଲଭିଥିଲେ । କାଗଜ ବୀର କିରୀଟ ( ବୀର ଶ୍ରେଷ୍ଠ ପୁଷ୍ପ କେତକୀର ) କରାୟତ୍ତେ ( ହସ୍ତାଧୀନରେ ) କର୍ଣ୍ଣଦ୍ରୋଣ ( କାନବାଙ୍କ ) ରକ୍ତ ଲିଖିତ ଅକ୍ଷରମାନଙ୍କୁ ବ୍ୟକ୍ତ କରିବ । କୃଷ୍ଣ ପ୍ରବଳେ ( ଅନ୍ଧକାରେ ) ପ୍ରକାଶ ପାଇବ ( ଦିଶିବ ) ଓ ସନ୍ତୋଷ ଜନକ ଉତ୍ତରକୁ ଦେବ ।

ହେ ବାଳାମଣି ଦେଲା ବାଳାଙ୍ଗନା ନେଲା ବିଦ୍ୟାନିଧି ଭେଟି ସୁଖୀ ।
ଏ କିସ ପତ୍ରରୁଁ ଉପରେ ଏ ସନ୍ଧ୍ୟା-ବନ୍ଦନା ବୋଲିଁ ସେ ଦେଖି !
ପ୍ରାତସ୍ମରଣୀ ଏହି । ହେବ ବୋଲିଗଲା ଦେଇ ସେ ॥ ୩
ହେ ଦେଲା ଯେ କୁମାରର ସେ ଆତୁର ମାରେ ଶିର ପ୍ରହାରିବା ବଶେ ।
ବୋଇଲା ପୁଣି କିସ ଏଥି ଲେଖିବା ଶୁଣି ଯଶୋବନ୍ତ ଭାଷେ ଯେ ।
ଅନନ୍ତ ଶୋଭା ଏ ପତ୍ର । ହେବ ତାରତରେ ଚିତ୍ର ସେ ॥ ୪
ହେ ଅଡ଼ଣି ଜାଣି ଯୋଡ଼ିଲା ହୃଦେ ଅଣି ଭେଦ ନୋହିବା ଉଦ୍‌ବେଗେ ।
ଏ କାଳେ ରଜନୀମୁଖ ପ୍ରକଟି ଘୋଟିଗଲା ଗୃହଦ୍ୱାରେ ସେ ।
ତମ ତା ସଙ୍ଗେ ବାହାରି । ଲୋକ କଳା ଇଚ୍ଛା କରି ସେ ॥ ୫
ହେ ଉତ୍ତରେ ହିମାଦ୍ରି କାଳୀ ଜନ୍ମସ୍ଥାନ ଭ୍ରମଣି ବେଳ ତା ହୋଇ ।
ଦକ୍ଷିଣରେ କାଳପୁର ସ୍ୱର୍ଗଙ୍ଗାକୁ ସନ୍ଧ୍ୟା ସ୍ମରି ଆସଇ ସେ ।
ଏଣୁ କାଳ ପଡ଼ି କି ସେ । ଦୁଇ ଦିଗରେ ବିକ୍ଷେପେ ॥ ୬

---

୩—ବାଳାମଣି ଦେଲା, ବାଳାଙ୍ଗନା (ବାଳିକା) ତାହା ନେଲା । ତାକୁ ବିଦ୍ୟାନିଧି ଭେଟି ସୁଖୀହୋଇ ଏ କିସ ପତ୍ରରୁ, ଉପରେ (ଶିରରେ) ଏ ସନ୍ଧ୍ୟା ବନ୍ଦନା ବୋଲିଁ ଏସ ଦେଖିଲା । ପୁଣି ବାଳାଙ୍ଗନା ଏ ପତ୍ର ପ୍ରାତଃ ସ୍ମରଣୀୟ ହେବ ବୋଲି କହି ଦେଇଗଲା ।

୪—ବିଦ୍ୟାନିଧି ସେ ପତ୍ର ନେଇ କୁମାରକୁ ଦେଲା, ସେ ଶିର ପ୍ରହାରିବାବଶରେ ମାରେ ( କାମରେ ) ଆତୁର ହୋଇଛି,ସାଦା କାଗଜ ଦେଖି ବୋଇଲା—ଏଥିରେ ପୁଣି କିସ ଲେଖିବା ? ଶୁଣି ଯଶୋବନ୍ତ ଭାଷିଲା—ଏ ସୁଦଗ୍ଧ ପ୍ରେରିତ ପତ୍ର, ଏହାର ଶୋଭା ଅନନ୍ତ (ଆକାଶ) ପରି । ଆକାଶ ରାତ୍ରିରେ ତାରତରେ (ନକ୍ଷତ୍ର ମାନଙ୍କରେ) ଚିତ୍ରିତ ହେଲାପରି ଏ ରାତ୍ରିରେ ଉଜ୍ଜ୍ୱଳତର ରୂପେ ଚିତ୍ରିତ ହେବ ଅର୍ଥାତ୍ ଅନ୍ଧକାରରେ ପଢ଼ାଯିବ ।

୫—କୁମାର ସେ ପତ୍ରକୁ ଅଡ଼ଣି ଜାଣି କାମଶର ଭେଦ ନୋହିବା ନିମିତ୍ତ ଉଦ୍‌ବେଗେ ( ଚଞ୍ଚଳହୋଇ ) ହୃଦେ ଆଣି ଯୋଡ଼ିଲା । ଏକାଳେ ରଜନୀ ମୁଖ ( ସନ୍ଧ୍ୟା ) ପ୍ରକଟି ଗୃହଦ୍ୱାରରେ ଘୋଟିଲା, ତା ସଙ୍ଗେ ତମ ( ଅନ୍ଧକାର ) ବାହାରି ଲୋକ ( ସଂସାରକୁ ) କଳା କରିଦେବାକୁ ଇଚ୍ଛା କଲା ।

୬—ଉତ୍ତରେ ହିମାଦ୍ରି ( ହିମାଳୟ ) କାଳୀଙ୍କର ଜନ୍ମସ୍ଥାନ, ତାହାର ଭ୍ରମଣି ବେଳ ହେବାରୁ ସେ ଭ୍ରମଣ କରିବାକୁ ବାହାରିଲା । ଦକ୍ଷିଣରେ କାଳପୁର ( ଯମପୁର ) ସେ ସ୍ୱର୍ଗଙ୍ଗାକୁ ସନ୍ଧ୍ୟାସ୍ମରି ( ସନ୍ଧ୍ୟାସ୍ମରଣ ) କରିବାକୁ ଆସିଲା । ଏଣୁ ଉତ୍ତର ଦକ୍ଷିଣ ଦୁଇ ଦିଗରେ କାଳ ( କାଳବର୍ଣ୍ଣ ) ବିକ୍ଷେପରେ ପୂରିଲା କି ?

ହେ ଅରୁଣ ସଙ୍ଗ ବାରୁଣୀ ରଙ୍ଗ ସୌଧ-ପ୍ରାସାଦ ପୂର୍ବ ଧବଳା ।
ଗୃହଦିଗ ନାରୀ ନ ଦିଶୁ ରୌମାଳୀ ବିଦ୍ରୁମ ମୁକୁତାମାଳୀ ॥
ଉଦରେ ଉରଜେ ଖୋଜି । ପ୍ରେମବଳେ ଭ୍ରମେ ମଜ୍ଜି ॥ ୭

ହେ ଜଗତୀ ନିଷ୍ଠେଁ ଜଗତୀ ଗୃହଦିଗ ଗୃହଭଦ୍ରରେ କି ଠିକ ।
କଳା ଧଳା ବର୍ଣ୍ଣ ତୃତୀୟ ଲେପନ ହିଙ୍ଗୁଳେ ଶାଳିତ ଏକ ।
ଊର୍ଦ୍ଧ୍ବେ ଉଦେ ଏକତାରା । ମଦନ-ପ୍ରଦୀପ ପରା ॥ ୮

ହେ ଏମନ୍ତ ସାୟଂକାଳେ ସେ ପ୍ରେମପନ୍ନ ସୁବର୍ଣ୍ଣ ଗୁପତସ୍ଥାନ ।
ହେବାରୁ ବ୍ୟାପିଲା ଟଙ୍କ ପ୍ରଭାବରେ ଲୁଟିବା ଭାବିଲା ମନ ।
ସ୍ଫୁଟିତଦୃଷ୍ଟେରେ ପୁଣି । ପଡ଼ିଲା କୁମରମଣି ॥ ୯

---

୭—ଅରୁଣ ସଙ୍ଗରୁ ବାରୁଣୀ ( ପଶ୍ଚିମଦିଗ ) ରଙ୍ଗ ବର୍ଣ୍ଣ ହେଲା, ସୌଧପ୍ରାସାଦ ( ଚନ୍ଦ୍ରର ପ୍ରସନ୍ନତା ) ପୂର୍ବ ଦିଗକୁ ଧବଳାୟ କଲା । ଉତ୍ତର ଓ ଦକ୍ଷିଣ ଦିଗର ନାରୀଙ୍କର ରୌମାଳୀ, ପଶ୍ଚିମ ଓ ପୂର୍ବଦିଗରେ ନାରୀଙ୍କର ବିଦ୍ରୁମ ( ପୋହଳାମାଳୀ ) ଓ ମୁକ୍ତାମାଳୀ ନ ଦିଶୁଁ ସେମାନେ ରୌମାଳୀକି ଉଦରରେ ଓ ବିଦ୍ରୁମ ମାଳୀ ମୁକ୍ତାମାଳୀକୁ ଉରଜେ ( ସ୍ତନରେ ) ଖୋଜି ପ୍ରେମବଳରେ ଭ୍ରମରେ ମଜ୍ଜିଲେ ।

୮—ଜଗତୀ ( ସଂସାର ) ନିଷ୍ଠେଁ ଜଗତୀ ( ଅଟ୍ଟାଳିକା ) ହେଲା, ସେ ଗୃହ ଭଦ୍ରରେ ( ଗୃହପ୍ରକୋଷ୍ଠରେ ) ଠିକ ହୋଇଛି, ଉତ୍ତର ଦକ୍ଷିଣ ଓ ପୂର୍ବ ଏ ତୃତୀୟ ( ତିନି ) ଭଦ୍ରରେ କଳାଧଳା ବର୍ଣ୍ଣଲେପନ ହୋଇଛି, ପଶ୍ଚିମରେ ଏକ ଭଦ୍ରହିଙ୍ଗୁଳରେ ଶାଳିତ ( ଶୋଭ କରା ) ହୋଇଛି । ଊର୍ଦ୍ଧ୍ବ ଭାଗରେ ମଦନ ପ୍ରଦୀପ ( କାମଦୀପ ବା ମନଦୀପ ) ପରି ଏକତାରା ଉଦୟ ହୋଇଛି ।

୯—ଏମନ୍ତ ସାୟଂକାଳରେ ସେ ପ୍ରେମ ପନ୍ନ ସୁବର୍ଣ୍ଣ ( ସୁନା ଓ ଉତ୍ତମ ବର୍ଣ୍ଣ)ର ଗୁପ୍ତସ୍ଥାନ ହେବାରୁ ( ସୁନାର ପୋତାସ୍ଥାନ ପରି ଉତ୍ତମ ବର୍ଣ୍ଣ ମାନଙ୍କର ସ୍ଥାନ ହେବାରୁ ) ଟଙ୍କ ( ଟଙ୍କକ ) ପ୍ରଭାବରେ ବ୍ୟାପିଲା ଅର୍ଥାତ୍ ଯେପରି ଏକସ୍ଥାନରେ ସୁନା ବହୁଦିନରୁ ପୋତା ହୋଇଥିଲେ ତାହା ଜଖ ହୋଇ ରାତ୍ରରେ ସେ ସ୍ଥାନକୁ ପ୍ରକାଶ କରେ ସେହିପରି ସେ ପ୍ରେମ ପନ୍ନ କାନ୍ତ ବିରହକ୍ତ ଲିଖିତ ବର୍ଣ୍ଣ ମାନଙ୍କରେ ରାତ୍ରିରେ ଜକ ଜକ ହୋଇ ଦିଶିଲା ଏବଂ କୁମରର ମନକୁ ଲୁଟି କରିବାକୁ ବସିଲା । ସେ କୁମରମଣି ପୁଣି ସ୍ଫୁଟିତ ଦୃଷ୍ଟିରେ ( ନିଷ୍ଟଳ ନେତ୍ରରେ ) ପଢ଼ିଲା ।

ହେ ବେନି ସରାଗରେ ଶ୍ରେଷ୍ଠ ବୋଲି ଅଛୁ ସଂସାରେ ତୁ ସାର ବାଣୀ ।
ସ୍ମରଶର-ଦର ଭୋଗ ହେଲା ଅଜୁଁ ଜଡ଼ଭାବ ଭଜେ ପୁଣି ।
ଏ ଯେଣୁ କାଳ ବାସନା । ଦୀନ କ୍ଷୀଣଭାବ ସିନା ॥ ୧୦

ହେ ହେବ ଅଗ୍ରତେ ବସନ୍ତେ ସୁଖଦାନୀ ଗିରିସମ ସ୍ତନଶୋଭୀ ।
ତଦନ୍ତେ ଅଭେଦ ଦବା ନଳି ହେବ ଘନରସମୟୀ ଲଭି ।
ଏହି କଳ୍ପନା ଥାଇ । ବହ୍ନି ଦେଇଛୁ ଘଟାଇ ॥ ୧୧

ହେ କାଞ୍ଚନଗୋରୀ ହୃଦୟ ସଂପୁଟକ ନିକଷ୍ଟ କାଚରେ ନିର୍ମିତ ।
ପ୍ରୀତି ଯେ ମାଣିକ୍ୟ ଗୁପତେ ରଖିଲେ ଅନୁରାଗ ବିମ୍ବ ଖ୍ୟାତ ।
ବାଣୀ-ପ୍ରବାହେ ବିଳାସ । ସଦା କରେ କୀର୍ତ୍ତି-ହଂସ ॥ ୧୨

---

୧୦।୧୧—ବେନି ( ତୁହିଙ୍କର ) ସରାଗରେ ଶ୍ରେଷ୍ଠ ହୋଇଅଛୁ ବୋଲି ସଂସାରରେ ତୁ ସାର ( ତୁମ୍ଭେ କେବଳ ଶ୍ରେଷ୍ଠ ) ଏହି ବାଣୀ ଅଛୁ ସଖୀ ମୁଖରେ ଅଛି ଅତଏବ ସ୍ମର-ଶର-ଦର ( କାମବାଣ ଭୟ ଦଶା ) ଅଦ୍ଧୁଁ ଭୋଗ ହେଲା ପୁଣି ଜଡ଼ଭାବ ( ସ୍ତମ୍ଭାଦି ସାତ୍ତ୍ୱିକ ଭାବ ) ଭଜିଲା ଏ ଯେଣୁ କାମବାସନା ( ନୀଳବସନା ) ନଦୀ ( ଦୁଃଖୀ ) ହୋଇ କ୍ଷୀଣ ଭାବ ( କୃଶତାକୁ ) ଭଜିଲା ସିନା । ଗିରି ସମ ସ୍ତନଶୋଭୀ ତୁମ୍ଭ ଅଗ୍ରତେ ବସନ୍ତେ ନିଜେ ସୁଖୀ ହୋଇ ତୁମ୍ଭର ସୁଖଦାନୀ ହେବ । ତଦନ୍ତେ ଘନରସମୟୀ ( ନିବିଡ଼ ଶୃଙ୍ଗାର ରସପୂର୍ଣ୍ଣ ) ଅବସ୍ଥାକୁ ଲଭିବାରୁ ତୁହିଙ୍କର ଦବାନଳି ଅଭେଦ (ମିଳନ) ହେବ । ଏହି କଳ୍ପନା କେବଳ ମନରେ ଥାଇ ( ରହିଛି ) ଏ ଯୋଗକୁ ବହ୍ନି ଘଟାଇ ଦେଇଛୁ । କାଳପକ୍ଷରେ-ସ୍ମର ( ସ୍ମରଣୀୟ ) ସଂସାରରେ ଏ ବାଣୀ ଅଛୁ-ଅଦ୍ଧୁଁ ଶରଦକାଳର ଭୋଗ ହେଲା ଉତ୍ତାରୁ ତୁଷାର ( ହେମନ୍ତ ) ହୁଅଇ, ପୁଣି ସେ ଜଡଭାବ ଭଜେ ( ଶୀତକାଳ ରୂପ ଧରଇ) ଏ ଯେଣୁ ଏ କାଳ ବଶ ହୋଇ ଦିନ କ୍ଷୀଣଭାବ (ସାନ) ହୁଏ ସିନା । ତହିଁ ଉତ୍ତାରୁ ଅଗ୍ରତେ ( ଆଗରେ ) ସୁଖଦାନୀ ବସନ୍ତ କାଳ ହେଲାରୁ ଗ୍ରୀଷ୍ମକାଳ ହୁଏ, ସେ ସମୟରେ ସ୍ତ୍ରୀମାନେ ପଦ୍ମାବଳୀ ଗଳାରେ ସ୍ତନ ଶୋଭୀ ହୁଅନ୍ତି ତଦନ୍ତେ ଘନ ( ମେଘ ) ରସମୟୀ ( ଜଳମୟୀ ) ଅବସ୍ଥା ଲଭିବାରୁ ଦବା-ନଳି ଅଭେଦ ହୁଏ ଅର୍ଥାତ ଜଣାଯାଏ ନା ।

୧୨—କାଞ୍ଚନଗୋରୀ ଆମ୍ଭ ସଖୀର ହୃଦୟରୂପ ସଂପୁଟକ ( ଫରୁଆ ) ନିଷ୍କଟ କାଚରେ ନିର୍ମିତ ହୋଇଛି । ତହିଁରେ ପ୍ରୀତିରୂପ ମାଣିକ୍ୟକୁ ଗୁପ୍ତରେ ରଖିଲେ ସୁଦ୍ଧା ଅନୁରାଗ ବିମ୍ବ ( ସ୍ନେହରୂପ ପ୍ରତିବିମ୍ବ ) ଖ୍ୟାତ ( ପ୍ରକାଶ ) ହୋଇ ପଡ଼ୁଛି ଏବଂ ତୁମ୍ଭ କୀର୍ତ୍ତିରୂପ ହଂସ ବାଣୀ ପ୍ରବାହରେ ( ବାକ୍ୟ-ସ୍ରୋତରେ ) ସର୍ବଦା ବିଳାସ କରୁଛି, ଅର୍ଥାତ୍ ସବୁବେଳେ ତୁମ୍ଭ ଯଶ ଗାଉଛି ।

ହେ ଦ୍ରବଣ କରଇ ଶଉକୁ ଚରଣ ଶ୍ରବଣେ ପଡ଼ିଲ୍ଲ ମାତ୍ର ।
ଯିବା ଜୀବକୁ ଲେଉଟାଇ ରଖଇ ହୋଇ ସଞ୍ଜୀବନ ମନ୍ତ୍ର ।
ଏତକ ଦେବବନ୍ଦନ । ନୋହେ ପଲ୍ଲବ ପଠନ ॥ ୧୩

ହେ ରସିକ-ଇନ୍ଦୀବର ଶୋଭା-ମନ୍ଦର କର ପଦ୍ମନେତ୍ର ଦେଇ ।
ଏଡ଼େ ଅନୁସର ଯେ ପୁଣି ଶ୍ରୀହସ୍ତେ ଦେଲ ଅନୁଗ୍ରହ ପାଇ ।
ମସ୍ତକେ ମଣ୍ଡିବ ନାହିଁ । ଏ ଗର୍ବ ବିକଳ୍ପ କାହିଁ ॥ ୧୪

ହେ ପଢ଼ିଲ ମାନରେ ଗୁହିଁଲା ମିନରେ ବୋଇଲ ଘନଜଘନା ।
ଯେତେକ ଲେଖଇ ଚତୁରୀ ଗୁଣ୍ଡୁରୀ ବଡ଼ ଘେନା:ଘେନା ଘେନା ।
ତାପର ସ୍ନେହୀରେ ଲାଭ । ନାହିଁ ନ ଥିଲ ନୋହିବ ॥ ୧୫

ହେ ଅତି ସନ୍ଦର୍ଭ ରସଗର୍ଭ ଲିପିକେ ତା କିଣା କଲଣି ମୋତେ ।
ସ୍ନେହେ ସ୍ଥାନ କଲ ବଚନ ମାନଙ୍କ ପୁନଃପୁନଃ କି ନିମନ୍ତେ ।
ନବଲଳନା ଲେଖଇ । ସେ ପ୍ରଭୁ ମୁଁ ତା ବନସ୍ଥୀ ॥ ୧୬

ହେ ସଚିବସୁତ କହିଲ ନ ଘେନ କି କିଣା ସେବକକୁ ପୋଷି ।
ଶ୍ରୁତି-ମୁଖେ ପାନ କରିବାକୁ ବେଳେ ବେଳେ ଦିଏ ସୁଧାରାଶି ।
ପ୍ରମାଣ ଏକଥା ମିଛ । ବୋଲି ବୀର କୃତକୃତ ॥ ୧୭

---

୧୩—ଯେଉଁ ସୁନ୍ଦରୀର ଚରଣ ଶ୍ରବଣେ ( କର୍ଣ୍ଣରେ ) ପଡ଼ିଲାମାତ୍ରେ ଶଉକୁ ଦ୍ରବଣ ( ତରଳ ) କରଇ, ଏବଂ ସଞ୍ଜୀବନମନ୍ତ୍ର ହୋଇ ଯିବା ଜୀବକୁ [ ଯାଇଥିବା ପ୍ରାଣକୁ ] ଲେଉଟାଇ ରଖଇ ସେ ସୁନ୍ଦରୀ ନିଶ୍ଚୟ ଦେବତୁଲ୍ୟ ବନ୍ଦନୀୟା, କେବଳ ଦେବତାମାନଙ୍କର ପଲ୍ଲବ ପଢ଼େ ନାହିଁ ଏତକ ଦେବ ବନ୍ଦନ [ ଦେବତାଙ୍କର ପ୍ରଶଂସା ] ।

୧୪—ହେ ରସିକ ଇନ୍ଦୀବର ( ରସିକଭ୍ରମର ) । ଆମ୍ଭ ସଖୀ ପଦ୍ମନେତ୍ରକୁ ତୁମ୍ଭର ଶୋଭାମନ୍ଦର କର ଦେଇଛ । ବିକଳ୍ପ ( ବିଗୁର କର ) ଯେ ଏଡ଼େ ଅନୁସରନ୍ତି ସେ ପୁଣି ତୁମ୍ଭେ ଶ୍ରୀହସ୍ତେ ଦେଲ ଅନୁଗ୍ରହ ( ମୃଗପୁଚ୍ଛ ) ପାଇଲେ ମସ୍ତକେ ମଣ୍ଡିବ ନାହିଁ ଏ ଗର୍ବ କାହିଁ ?

୧୫—ପଢ଼ିଲମାନଙ୍କେ ମିନକୁ ଗୁହିଁଲ ଏବଂ ବୋଇଲ—ଚତୁର ଘନଜଘନା ଯେତେ ଗୁଣ୍ଡୁରୀରେ ଲେଖଇ ତାହା ବଡ଼ ଘେନା ଘେନି । ଆବ ସ୍ନେହୀ-ମାନଙ୍କ ମଧ୍ୟରେ ତାପର ନାହିଁ ନଥିଲ ବା ନୋହିବ ।

୧୬—ଅତିରସଗର୍ଭ ସନ୍ଦର୍ଭ (ରଚନା ) ଲିପିକେ ( ଗୋଟିଏ ମାତ୍ର କଥାରେ ) ମୋତେ ତା କିଣା କଲଣି, ନବଲଳନା ( ନୂତନା ସ୍ତ୍ରୀ ) ସ୍ନେହେ ସ୍ଥାନ କଲ ବଚନ ମାନଙ୍କ କି ନିମନ୍ତେ ପୁନଃ ପୁନଃ ଲେଖଇ ସେ ପ୍ରଭୁ ମୁଁ ତାହାର ବିନସ୍ଥୀ ଅଟେ ।

୧୭—ସଚିବ ସୁତ ( ମନ୍ତ୍ରୀପୁତ୍ର ) କହିଲ—ନ ଘେନ କି ପ୍ରଭୁ କିଣା ସେବକକୁ ପୋଷି ଶ୍ରୁତିମୁଖେ ( କର୍ଣ୍ଣରେ ) ପାନ କରିବାକୁ ବେଳେ ସୁଧାରାଶି

ହେ ଏସମୟେ ସନ୍ଧ୍ୟା ଅନ୍ତର ଭୁବନେ ତମିର ରହିଲା ପୂର ।
ମିଶିଗଲା ଶଶୀପ୍ରଭା ବେନିମଲ୍ଲ ହୋଇଲେ କି ଧରାଧର ।
ପ୍ରହରକେ ଧ୍ୱନିକାରୀ । କପୋତ ହୁଁ କୃତ କର ॥ ୧୮

ହେ ପଲ୍ଲବ ସ୍ଥଳ କିରଣଙ୍କଳ ଦୁଇ ବନଭୂମି ଶବ ଦିଶି ।
ସେ କି ଶିଷ୍ୟଗଣ କରନ୍ତି ବଖାଣି ବଳବାନ କଷାକଷି ।
ପ୍ରକମ୍ପ ପବନେ ତହିଁ । କେ କାହାକୁ ପେଲି ଦେଇ । ୧୯

ହେ ଶାଖୀ ସାକ୍ଷୀ ପର ପୁଷ୍ପ-ହାସ ଧରି କଉତୁକ ଅବଧାନୀ ।
ଶୃଙ୍ଗାରରେ ବୀରରସ ବ୍ୟଭିଚ୍ୟର ଲକ୍ଷଣ ସମସ୍ତେ ଘେନି ।
ରତ ଯେ ରଣ ବୋଲାଇ । ତା ପ୍ରକାଶ କାଳ ଏହି ॥ ୨୦

ହେ ଶୁଚିରସେ ନୃପସୁତ ବୀର ରସେ ଏଣୁ ଏ ବର୍ଣ୍ଣନା ସିଦ୍ଧି ।
କୋଟିବ୍ରହ୍ମାଣ୍ଡସୁନ୍ଦରୀ ଶୋଭାର୍ଣ୍ଣବେ ବୁଡ଼ାଇ ଦେଇଛି ବୁଦ୍ଧି ।
ସ୍ତମ୍ଭବଶ ହୋଇ ବସି । ତନ୍ମୟ-ମାନସେ ଭ୍ରମି ॥ ୨୧

---

ଯାଏ, ହେ ମିତ୍ର ! ଏକଥା ପ୍ରମାଣ ଏହା ବୋଲି ବୀର କୃତକୃତ୍ୟ ହେଲେ ।

୧୮—ଏସମୟରେ ସନ୍ଧ୍ୟା ଅନ୍ତର ହେଲା ଭୁବନେ ତମିର (ଅନ୍ଧକାର) ପୂର ରହିଲା, ତାସଙ୍ଗେ ଶଶୀପ୍ରଭା (ଚନ୍ଦ୍ରଆଲୋକ) ମିଶିଗଲା, ଏପରି ଦିଶିଲା—କୃଷ୍ଣ ଗୌର ବେନିମଲ୍ଲ ଧରାଧର ହୋଇଲେ କି ? ମାଲ୍ମାନେ ପ୍ରହରକେ ହୁଂକାର କଲାପରି ଏ କୃଷ୍ଣଗୌର ମଲ୍ଲ ଦୁହେଁ କପୋତର ହୁଂ କୃତରେ କର ପହରକେ ଧ୍ୱନିକାରୀ ହୋଇଛନ୍ତି ।

୧୯—ପଲ୍ଲବସ୍ଥଳ (ପତ୍ରସ୍ଥାନ) ଏବଂ ଚନ୍ଦ୍ରକିରଣ ଙ୍କଳ, ଏ ଦୁଇରେ ବନଭୂମି ଶବତ ଦିଶିଲା ସେ କି ଦୁଇ ମଲ୍ଲର ଶିଷ୍ୟଗଣ, କିଏ ବଳବାନ ଏହା କଷାକଷି (ଦୁଝାଦୁଝି) ହେବାକୁ ମଲ୍ଲ ବଖାଣି କହନ୍ତି ? ତହିଁ (ସେଠାରେ) ସେସବୁ ପବନରେ କମ୍ପିବା ଦ୍ୱାରା କେ କାହାକୁ ପେଲି ଦିଅଇ କି ?

୨୦—ଶାଖୀ (ବୃକ୍ଷମାନେ) ସାକ୍ଷୀ ଲୋକପରି ପୁଷ୍ପହାସକୁ ଧରି କୌତୁକ ଦେଖିବାରେ ଅବଧାନୀ (ମନୋଯୋଗୀ) ହୋଇଛନ୍ତି । ଏଠାରେ ଶୃଙ୍ଗାରରେ ବୀରରସ ବର୍ଣ୍ଣନା ବ୍ୟଭିଚ୍ୟର ଲକ୍ଷଣ ହେଲା କିନ୍ତୁ କବିସମସ୍ତେ ଘେନି ଏମନ୍ତ ବୋଲ ହୋଇଛି, କାରଣ, ରତ (ଶୃଙ୍ଗାର) ଯେ ସେ ରଣ (ଯୁଦ୍ଧ) ବୋଲାଏ । ତାହାର ପ୍ରକାଶକାଳ ଏହି ଅଟେ ।

୨୧—କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଶୋଭାର୍ଣ୍ଣବେ (ଶୋଭାସମୁଦ୍ରରେ) ବୀର ନୃପସୁତ ବୁଦ୍ଧିକି ବୁଡ଼ାଇ ଦେଇଛି ବୋଲି ଶୁଚିରସ (ଶୃଙ୍ଗାର ରସରେ), ରସେ (ବସିଛି), ଏଣୁ ଏ (ଶୃଙ୍ଗାରରେ ବୀରରସ) ବର୍ଣ୍ଣନା ସିଦ୍ଧିହେଲା । ସେ ନୃପସୁତ ସ୍ତମ୍ଭ ବଶହୋଇ ତନ୍ମୟମାନସରେ ଭ୍ରମିଲା ।

ହେ ଭାବ ରତ୍ନନିଧି ଧନକୁ ବୋଲିବା ମନକୁ ସହଜେ ମୋହି ।
ଭାବ-ରତ୍ନ-ନିଧି ନୟନ ଉପରେ ଲୀଳା କରେ ସଦା ରହି ।
ମୂଳ ହେଲା ଲଭିବାର । ହୋଇଲା ସ୍ଥାନ ଗୋଚର ॥ ୨୨
ହେ ଦଣ୍ଡକବନବିହାରୀ ଦେଇଛନ୍ତି ଏ ବର ଜାଣିଲି ମୋରେ ।
ଦଣ୍ଡକ ବନବିହାରୀ ହୋଇଥିବ ବନ୍ଧୁ ସଖୀ ସଙ୍ଗତରେ ।
ଯିବ ମୋ ଲୋଚନ ପଡ଼ି । ଥିବ ଦେହେ ଶାଢ଼ୀ ଜଡ଼ି ॥ ୨୩
ହେ ବଶ ମନ୍ଦାକ୍ଷ କରିଥିବ ଉରଜ ଜଘନ ବ୍ୟକ୍ତ ଭୀତ ।
ବଶ ମନ୍ଦାକ୍ଷ-କୋଣେ ଗୁହିଁ ଦେବାରେ କରୁଥିବ ମୋର ଚିତ୍ତ ।
ସେ କାଳ ଭୋଗକୁ ଚିନ୍ତେ । ସ୍ୱର୍ଗଭୋଗ ହୋଇ କେତେ ॥ ୨୪
ହେ କରୁ କରୁ ଭାବ ଭାବନା କରୁଣା ବରୁଣାଳୟ ପ୍ରିୟାର ।
କ୍ରମଶ କ୍ରମଶ ନିଯାମାକୁ ଶେଷ କରେ ହୋଇ ଉଜାଗର ।
ଉଷା ପ୍ରମାଣ ପ୍ରକାଶେ । ସହସ୍ରକର ସକାଶେ ॥ ୨୫

---

୨୨—ଭାବ (ଭାବନାକର) ଧନକୁ (ସୁନ୍ଦରୀକୁ) ଅଷ୍ଟରତ୍ନ ନବନିଧିରୂପା ବୋଲିବା କାରଣ, ରତ୍ନ ଓ ନିଧିମାନଙ୍କପରି ସେ ସହଜରେ ମନକୁ ମୋହିତ କରଇ । ସେ ସୁନ୍ଦରୀ ଭାବରତ୍ନ ନିଧି ( ଭାବାଦି ରତ୍ନର ସ୍ଥାନ ), ମୋନୟନ ଉପରେ ( ନେତ୍ରରେ ) ରହି ସଦା ଲୀଳା ( ଖେଳା ) କରଇ । ଏବେ ତାର ସ୍ଥାନ ଗୋଚର ହୋଇଲା, ଅତଏବ ତାକୁ ଲଭିବାର ମୂଳ ( ନିଶ୍ଚୟ ) ହେଲା ।

୨୩—ଦଣ୍ଡକବନବିହାରୀ ( ରାମଚନ୍ଦ୍ର ) ମୋତେ ଏ ବର ( ତାକୁ ଲଭିବା ବର ) ଦେଇଛନ୍ତି ଏହା ମୁଁ ଜାଣିଲି । ବନ୍ଧୁ ସଖୀସଙ୍ଗତରେ ଦଣ୍ଡକ (ଦଣ୍ଡେମାତ୍ର ବନବିହାରୀ ( ଜଳବିହାରୀ ) ହୋଇଥିବ, ତା ଦେହରେ ଶାଢ଼ୀ ଜଡ଼ିଯାଇ ଥିବ ତେତେକବେଳେ ମୋ ଲୋଚନ ତା ଉପରେ ପଡ଼ିଯିବ ।

୨୪—ଉରଜ ( ସ୍ତନ ), ଓ ଜଘନ ବ୍ୟକ୍ତ ( ଦୃଶିବା ) ଭୀତ (ଭୟରେ) ମନ୍ଦାକ୍ଷ ( ଲଜ୍ଜା ) ତାକୁ ବଶ ( ଅୟତ୍ତ ) କରିଥିବ । ମନ୍ଦାକ୍ଷକୋଣେ (ମନ୍ଦ ମନ୍ଦ କରି ଆଖି କୋଣରେ) ଗୁହିଁଦେବାରେ ମୋର ଚିତ୍ତ ବଶ କରୁଥିବ । ବର୍ତ୍ତମାନ ମୁଁ ସେହି ଭୋଗକୁ ଚିନ୍ତା କରୁଛି, ତାସଙ୍ଗେ ସ୍ୱର୍ଗଭୋଗ ଅବା କେତେ ହୋଇବ ।

୨୫—କରୁଣା ବରୁଣାଳୟ ( ଦୟାସାଗର ) ପ୍ରିୟାର ଭାବନା କରି ୨ ଉଜାଗର ହୋଇ କ୍ରମଶ ୨ ନିଯାମାକୁ ( ରାତିକୁ ) ଶେଷକରେ । ଯେପରି ସହସ୍ର କର ସହସ୍ରବାହୁ (ବାଣାସୁର ) ସକାଶେ ଉଷା ( ଉଷାନାମ୍ନୀ ତାହାର କନ୍ୟା ) ପ୍ରକାଶେ ସେହିପରି ସହସ୍ରକର ( ସୂର୍ଯ୍ୟଙ୍କର ) ସକାଶରେ ( ପ୍ରାତଃ-କାଳ ପ୍ରକାଶିଲା ଏ ପ୍ରମାଣ ।

ହେ କୁମୁଦ ବିକାଶ ତୁଟି ତୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ ।
ହରଷ ବିରସ ପାଲଟା ପାଲଟି ମଧୁଲିଟ ବିଟ କିସେ ।
ବେନି ରସେ ଧୋଇ ଚିତ୍ତ । ହେଉଛନ୍ତି ଗତାଗତ ॥ ୨୬

ହେ କୁକୁଟ ରଟେ କି ଅନ୍ଧାର ଦୂତ ତୁ ଲଜକୁ ନବୀନା ଚିତ୍ତୁଁ ।
ଘଉଡ଼ିଥିଲୁ ସେ ବାହୁଡ଼ି ଆଲୋକ ସାହାରେ ତୋ ନାଶ ହେତୁ ।
ତୁ ଗୋପ୍ୟ ମନ୍ଦିରେ ଲୁଚ । ପାରିବୁ କି ତାକୁ ପାଞ୍ଚ ॥ ୨୭

ହେ ଶିବାଳୟେ ଶଙ୍ଖ ବାଜିଲେ ବାଜିଲେ ନାହିଁଟି ତର୍ଜିଲେ ଜାରେ ।
ପରସଦନେ ଅତନୁଫୁଲ କାଣ୍ଡ ଡରେ ଲୁଚିଥିଲୁ ଯାରେ —
ଲୋହକାଣ୍ଡେ ତନୁବନ୍ତ । ଦେଖି କରିବେଟି ହତ ॥ ୨୮

ହେ ଏକାଳେ ପୁଣି କୁମର କର ପ୍ରାତଃସ୍ମରଣ ବାଳାକୁ ଭାବ ।
ପାଇଓଷ୍ଟେ ବାଳ-ଅରୁଣ ଲକ୍ଷ୍ୟକୁ ନେନେ ସ୍ଫୁଟ-କଞ୍ଜ ଛବ ।
ଅମ୍ବର-ମଞ୍ଜୁଳକାନ୍ତି । ଆଲୋକେ ସୁଖ ବିସ୍ତାରି ॥ ୨୯

---

୨୬—କୁମୁଦ ବିକାଶ (କଇଁଫୁଟିବା) ତୁଟି୨ ଯାଇ ପଦ୍ମ ଫୁଟି୨ ଆସଇ । ମଧୁଲିଟ (ଭ୍ରମର) ବିଟ ( ଲମ୍ପଟ ) ଦୁହେଁ ହର୍ଷ ଓ ବିରସକୁ ପାଲଟା ପାଲଟି (ବଦଳା ବଦଳି) କଲେ କି ? ସେ ଦୁହେଁ ବେନିରସେ ( ହର୍ଷ ବିଷାଦ ଉଭୟରସରେ ) ଚିତ୍ତ ଦେଇ ଗତାଗତ କରୁଛନ୍ତି । ଅର୍ଥାତ୍ ପ୍ରଭାତରେ ଭ୍ରମରମାନେ ଆନନ୍ଦିତ ହେଲେ ଏବଂ ବିଟ ପୁରୁଷମାନେ ଦୁଃଖିତ ହେଲେ ।

୨୭—ରେ ଅନ୍ଧାରଦୂତ । ତୁ ନବୀନାମାନଙ୍କର ଚିତ୍ତରୁ ଲଜକୁ ଘଉଡ଼ିଥିଲୁ, ଏବେ ତୋ ନାଶହେତୁ ସେ ଆଲୋକ ସାହାରେ ( ସାହାଯ୍ୟରେ ) ବାହୁଡ଼ୁଛୁ, ତୁ ଗୋପ୍ୟମନ୍ଦିରେ ରହି ତାକୁ ଲୁଚେଇପାରିବୁ କି ? କୁକ୍କୁଟ ଏହାପାଇଁ ରଟେ କି ?

୨୮—ଶିବାଳୟରେ ଶଙ୍ଖ ବାଜିଲେ, ସେ ଶଙ୍ଖ ବାଜିଲେ ନାହିଁ ଜାରେ ( ଲଟ୍-ପୁରୁଷମାନଙ୍କୁ ) ତର୍ଜିଲେ—ତୁ ଅତନୁ (କାମର) ଫୁଲ କାଣ୍ଡ ଡରେ ପର ସଦନେ ( ପରଘରେ ) ଲୁଚିଥିଲୁ, ଏବେ ଯା, ନୋହିଲେ ତନୁବନ୍ତ ( ଦେହବନ୍ତ ଲୋକେ ) ତୋତେ ଦେଖି ଲୋହକାଣ୍ଡରେ ହତ କରି-ବେଟି ?

୨୯—ପୁଣି ଏକାଳେ କୁମର ବାଳାକୁ ପ୍ରାତଃସ୍ମର କର ଭାବିଲା, ବାଳାର ଓଷ୍ଠରେ ବାଳ ଅରୁଣ ଲକ୍ଷ୍ୟକୁ ନେତ୍ରରେ ସ୍ଫୁଟ କଞ୍ଜ ( ବିକଶିତପଦ୍ମ ) ର ଛବିକୁ ପାଇଲା ସେ ବାଳା ପ୍ରାତଃକାଳ ପରି ଅମ୍ବର ମଞ୍ଜୁଳ କାନ୍ତି ( ପ୍ରଭାତ ଆକାଶ ଉଜ୍ଜ୍ୱଳକାନ୍ତି, ବାଳା ବସ୍ତ୍ରରେ ମନୋହାରିଣୀ ) ଏବଂ ପ୍ରଭାତ ଆଲୋକ ଦ୍ୱାରା ସୁଖ ବିସ୍ତାରଇ ବାଳା ଆଲୋକେ ( ଦର୍ଶନମାନେ ) ସୁଖକୁ ବିସ୍ତାରଇ ।

ହେ ଉପଇନ୍ଦ୍ର ପ୍ରାତଃସ୍ମରଣ ଯେ ଦୀନବନ୍ଧୁ ଉଦିତ ସଂସାରେ ।
ସ୍ୱନାମ ତରମେ ଚନ୍ଦ୍ର ରଖିବାରୁ ଭବତମ ନାଶିବାରେ ।
ମୁଖାବ୍ଜେ ସ୍ମିତ ଶ୍ରୀ ସ୍ଥିତ । ଦେଖୁ ବିଭୀଷଣେ ଦତ୍ତ ॥ ୩୦
ହେ କରପଦ ରକ୍ତାମ୍ବୁଜ ଯଶ ଅଦ୍‌ଭୁତ ସମ୍ଭୂତ ବସନ୍ତ ।
ଖ୍ୟାତ ହର ଧନୁଭଙ୍ଗରେ ଅହଲ୍ୟା ତାରଣେ ନୀଳାବ୍ଜମୂର୍ତ୍ତି ।
ରଞ୍ଜନ ମୁନି ରଞ୍ଜାଇ । ଏହି ପଞ୍ଚରତ୍ନ ଧ୍ୟାୟି ॥ ୩୧



୩୦।୩୧—ଭବତମ ( ସଂସାରରେ ଅନ୍ଧକାର ) ନାଶିବାରେ ଦିନବନ୍ଧୁ ( ସୂର୍ଯ୍ୟ ) ସଂସାରରେ ଉଦିତ ହେଲେ, ଅବ୍‌ଜରେ ( ପଦ୍ମରେ ) ସିତ ଶ୍ରୀ ( ବିକଶିତ ଶୋଭାକୁ ) ସ୍ଥିତ କଲେ, ଦେଖୁଁ ( ଦେଖିବାମାତ୍ରେ ) ବି (ଚେରଙ୍କପକ୍ଷୀଙ୍କୁ) ଭୀଷଣ (ଭୟକୁ) ଦତ୍ତ କଲେ, କର ପଦ ( କିରଣ ବିଭବଦ୍ୱାରା ) ରକ୍ତାମ୍ବୁଜ ( ରକ୍ତପଦ୍ମରେ ) ଯଶକୁ ଅଦ୍ଭୁତ ରୂପେ ସମ୍ଭୂତ କଲେ ଓ ନୀଳାବ୍ଜ ( ନୀଳପଦ୍ମ ) କୁ ରଞ୍ଜନ ( ବିକଶିତ କଲେ ) ଯେ ଦୀନବନ୍ଧୁ ( ବିଷ୍ଣୁ ) ସେ ସ୍ୱନାମ (ରାମ) ତରମେ ( ପଛରେ ) ଚନ୍ଦ୍ର ରଖିବାରୁ ( ରାମଚନ୍ଦ୍ର-ରୂପରେ ) ଆବିର୍ଭୂତ ହୋଇ ଭବତମ ( ସଂସାରରପାପ ) ନାଶ କରିବାରେ ଉଦିତ ହୋଇଥିଲେ, ତାଙ୍କ ମୁଖାବ୍ଜ ( ମୁଖ ପଦ୍ମରେ ) ଯେଉଁ ସ୍ମିତ ଶ୍ରୀ ( ମନ୍ଦହାସ ଶୋଭା ) ସେ ସ୍ମିତ ଶ୍ରୀ ( ଆନନ୍ଦ ସମ୍ପତ୍ତି ) ହେଲା, ତାକୁ, ଦେଖୁଁ ( ଦର୍ଶନମାତ୍ରକେ ) ବିଭୀଷଣକୁ ଦତ୍ତ କରିଥିଲେ, ହର ଧନୁ ଭଙ୍ଗରେ ( ଶିବଧନୁ ଭାଙ୍ଗିବାରେ ) ଏବଂ ଅହଲ୍ୟା ତାରଣରେ ରକ୍ତାମ୍ବୁଜ ( ରକ୍ତପଦ୍ମ ) ସଦୃଶ କର ଓ ପଦର ଯଶ ଅଦ୍ଭୁତ ରୂପେ ସମ୍ଭୂତ ( ଜାତ ) ହୋଇ ବସନ୍ତ ( ସ୍ଥିତିକି ) ଖ୍ୟାତ ( ପ୍ରକାଶ) କରନ୍ତି ଏବଂ ରଞ୍ଜନ ( ଅନୁରାଗ ଜନକ ) ନୀଳାବ୍ଜମୂର୍ତ୍ତି ( ନୀଳପଦ୍ମସଦୃଶରୂପ ) ମୁନିମାନଙ୍କ ମନ ମଜାଇ ଦେଇଥିଲା ଅର୍ଥାତ୍ ସେମାନେ ସ୍ତ୍ରୀରୂପରେ ସହବାସ ସୁଖ କାମନା କରିଥିଲେ, ଏହି ପାଞ୍ଚରତ୍ନ ରୂପ ( ହାସ, ହୀରକ ଓ ମୁକ୍ତାପରି, ହସ୍ତପଦ, ପଦ୍ମରାଗ ମଣି ଓ ପ୍ରବାଳ ପରି, ଓ ମୂର୍ତ୍ତି ନୀଳମଣିପରି ) ରାମଚନ୍ଦ୍ରଙ୍କୁ ଚିତ୍ତରେ ଧ୍ୟାୟିବା ଦ୍ୱାରା ଉପେନ୍ଦ୍ରଭଞ୍ଜ ପ୍ରାତଃସ୍ମରଣ କଲେ ।



## ତ୍ରିଂଶ ଛାନ୍ଦ

ରାଗ—ସିନ୍ଧୁ ଦେଶାକ୍ଷ



ସିବେ ରସିକ କୋବିଦ ଜନେ ଯେ ଏ ଛାନ୍ଦ ରୃତୁରୀ ଶୁଣି ।
ପ୍ରଭାତରେ ପ୍ରଭାତରେ ଚନ୍ଦମୃଗ ଆଗତ ଶବଦ ଶୁଣି ।
ସେ ନୃପେ । ଯାନମାନଙ୍କ ଆରୋହି ।
ପନ୍ତି ପନ୍ତି ଗତ ଗୃହରେ ପରୁରନ୍ତି ଚମରୁ ଭ୍ରମଇ କାହିଁ ॥ ୧
ସେହି ନଗର ନାଗରୀ ଶ୍ରେଣୀ ଶ୍ରେଣୀ ଦେଖିବା ଲୋଭେ ବାହାର ।
ଶ୍ୟାମଳା ଭଳେ ଗଉରୀ ସେ ବିଧାନେ ସାବର୍ଣ୍ଣା ସେହି ପ୍ରକାର ।
ସେ ରାମା । କାହିଁରେ ନ ମିଶେ କେହି ।
ପଡ଼େ ଯାହାଠାରେ ନେତ୍ର ତାହାଠାରେ ଜଡ଼େ ଆନ ଲୋଡ଼େ ନାହିଁ ॥ ୨
ସୁରମଣି-ମଣି ବର୍ତ୍ତନା ରମଣୀ ବର୍ତ୍ତନା କେ କରୁ ଶେଷ ।
ଆଉ କି କହିବା ରୂପବନ୍ତ ଯହିଁ ହୋଇଛୁ ପ୍ରଥମରସ ।
ସେ ବାମା । ଡାଳୁଛନ୍ତି ନେତ୍ର ଡୋଳା ।
ପବନେ ଚଳେ କି ଜବନେ ଜବନେ ଇନ୍ଦିବର ଭୃଙ୍ଗମେଳା ॥ ୩

---

୧—ରସିକ କୋବିଦ ( ପଣ୍ଡିତ) ଜନମାନେ ଏ ଛାନ୍ଦ ରୃତୁରୀ ଶୁଣି ରସିବେ । ସେ ନୃପମାନେ, ପ୍ରଭାତରେ ( ଅଲୋକମୟ ) ପ୍ରଭାତରେ ଚନ୍ଦମୃଗ (ଅଷ୍ଟର୍ଦ୍ଧ- ଦୈବୀମୃଗ ) ଆଗତ ଶବ୍ଦ ଶୁଣି ଯାନମାନଙ୍କ ଆରୋହି ( ଚଢ଼ି ) ପନ୍ତି ପନ୍ତି (ଧାଡ଼ି ଧାଡ଼ି) ହୋଇ ଗତ କରି ଗୃହମାନଙ୍କ ପରୁରନ୍ତି—ଚମରୁ ( ମୃଗ ) କାହିଁ ଭ୍ରମଇ ?

୨—ସେହି ନଗରର ନାଗରୀମାନେ ଦେଖିବା ଲୋଭରେ ଶ୍ରେଣୀ ଶ୍ରେଣୀ (ଦଳ୨) ହୋଇ ବାହାର ହେଲେ । ଶ୍ୟାମଳା ( କାଳୀ ) ମାନେ ଭଳେ ଗୌରୀ (ଗୋରୀ)ମାନେ ଭଳେ ସେହି ବିଧାନରେ ସାବର୍ଣ୍ଣା ( ସାବେଳୀ ) ମାନେ ସେହିପ୍ରକାର ସେ ରାମା ( ରମଣୀମାନେ ) କେହି କାହିଁରେ ନ ମିଶେ । ନେତ୍ର ଯାହାଠାରେ ପଡ଼େ ତାହାଠାରେ ଜଡ଼ିଯାଏ ଆନକୁ ଲୋଡ଼େନାହିଁ ।

୩—ଯାହାଙ୍କର ବର୍ତ୍ତନା ସୁରମଣି ମଣି ( ଇନ୍ଦ୍ରନୀଳମଣି ) ସେ କାଳୀ ସ୍ତ୍ରୀ ମାନଙ୍କର ବର୍ତ୍ତନା କେ ଶେଷ କରିପାରେ । ଆଉ କି କହିବା, ଯହିଁ ( ଯେଉଁ- ମାନଙ୍କଠାରେ ) ପ୍ରଥମ ରସ ( ଶୃଙ୍ଗାର ରସ ) ରୂପବନ୍ତ ( ମୂର୍ତ୍ତିମାନ ) ହୋଇଛୁ । ସେ ବାମାମାନେ ନେତ୍ର ଡୋଳା ଡାଳୁଛନ୍ତି । ଭୃଙ୍ଗମେଳା ( ଭ୍ରମର ଯୁକ୍ତ ) ଇନ୍ଦିବର ( ନୀଳକଇଁ ) ପବନେ ଜବନେ ଜବ ( ଅତିବେଗରେ ) ଚଳେ କି ?

ନାସା ଫୁଲ୍ଅଚ୍ଛି ପ୍ରବାଳ ମାଣିକ୍ୟ ବଣଣି ହେଉଛି ଠେକ ।
ସେ କୀର ଅଧର-ବିମ୍ବକୁ ଝାମ୍ପେ କି ଉତ୍ଫୁଲ୍ଲେ ଗୁଲେ ହୋଟିକ
ସେ ଶ୍ୟାମା । ଗତି ଜିଣ୍ଟେଁ ମତ୍ତକରୀ ।
ଖୋଷା ମାଧୁରୀ ରାହୁ ଗ୍ରହୁଁ ଧଇର୍ଯ-ବିଧୁକୁ କବଳ କରି ॥ ୪
ଅସ ଅସ ଡକାଡକିରେ ସେ ଡାକ ପକାଉଅଛନ୍ତି ପିକେ ।
ପଶି ଶ୍ରୁତିବିଲେ ଅନ୍ଧାର କରଇ ଜ୍ଞାନକୁ ହୃଦୟୁଁ ଯାକେ ।
ସେ ଶ୍ୟାମା । ବଳା ମୃଦୁ ନାଦ ଭଲି ।
ସେହି ଶବଦ ସ୍ତବଧ ଧ୍ୟାନ ଛଳେ ଯୋଗିବୃନ୍ଦରେ କି ଦେଲି ॥ ୫
ମଞ୍ଜୁ ବିଦ୍ୟୁତ୍‌କାନ୍ତି କନକବ୍ରତତୀ ଗତି-ହଂସ ବହି ଚଳେ ।
ରୋହିଣୀ ସଙ୍ଗ ହରିଦ୍ରାଙ୍କିତ ଅଙ୍ଗ ଉଦେ କି ଇନ୍ଦୁ ନିର୍ମଳେ ।
ସେ ଗୋରୀ । ମୁଖଶୋଭା ସେ ଲକ୍ଷଣା ।
ନାସା ଫୁଲବାରେ ଚଳେ ସ୍ୱାସବସା କୁନ୍ଦନନବାଡ଼ ଗୁଣା ॥ ୬

---

୪—ନାସା ଫୁଲ୍ଅଚ୍ଛି ତହିଁରେ ଥିବା ପ୍ରବାଳ ମାଣିକ୍ୟ ବଟଣି ଠେକ ହେଉଛି, ସେ ( ନାସା ) କୀର ( ଶୁକପକ୍ଷୀ ) ତହିଁରେ ଥିବା ବଣଣି ହୋଟି ( ଅଣ୍ଡ ) ଅଧର ବିମ୍ବଫଳ, ସେ କୀର ଅଧର ରୂପ ବିମ୍ବଫଳକୁ ଝାମ୍ପିବାକୁ ଅଣ୍ଡକୁ ଉତ୍ଫୁଲ୍ଲହୋଇ ଗୁଲେ କି ? ସେ ଶ୍ୟାମା ରମଣୀର ଗତି ଜିଣ୍ଟପୁ ମତ୍ତକରୀ— ଖୋଷା (ମୁଣ୍ଡ ଜୁଡ଼ା ) ମାଧୁରୀ ରାହୁ, ତାକୁ, ଗ୍ରହୁଁ ( ଗ୍ରହିବା ମାନେ ) ଧୈର୍ଯ୍ୟରୂପ ବିଧୁ ( ଚନ୍ଦ୍ରକୁ ) ସେ କେବଳ ( ଗ୍ରାସ ) କରି ଦେଉଛି ।

୫—ଅସ ଅସ ଡକା ଡକିରେ ସେମାନେ ପିକେ ( କୋକିଲମାନଙ୍କ ) ଡାକ ପକାଉଛନ୍ତି । ସେ ଶବ୍ଦ ଶ୍ରୁତିବିଲେ ( କର୍ଣ୍ଣ ରନ୍ଧ୍ରରେ ) ହୃଦୟୁ ଯାକେ ପଶି ଜ୍ଞାନକୁ ଅନ୍ଧାର କରଇ । ସେ ଶ୍ୟାମାର ବଳା ଓ ମୃଦର ନାଦ ( ଶବ୍ଦ ) ଭଲି, ସେହିଶବ୍ଦ ଧ୍ୟାନଛଳରେ ଯୋଗି ବୃନ୍ଦରେ ସ୍ତବ୍ଧ ( ମୌନାବସ୍ଥାକୁ ଦେଲି ।

୬—ମଞ୍ଜୁ ( ମନୋହାରିଣୀ ) ବିଦ୍ୟୁତ୍‌କାନ୍ତି ( ଗୌରବର୍ଣ୍ଣା ) ସ୍ତ୍ରୀମାନେ କନକ ବ୍ରତତୀ ( ସୁବର୍ଣ୍ଣଲତା ) ସେମାନଙ୍କର ଗତି ରୂପକ ହଂସ ତାଙ୍କୁ ବହି ( ବହନ କରି ) ଚଳାଇ ପରି ଦିଶୁଛି । ରୋହିଣୀ ( ନକ୍ଷତ୍ରୀ ) ସଙ୍ଗ ( ସହବାସରୁ ) ହରିଦ୍ରାଙ୍କିତ ଅଙ୍ଗ ( ହରିଦ୍ରାଯୁକ୍ତ ଶରୀର ) ଇନ୍ଦୁ ( ଚନ୍ଦ୍ର ) ନିର୍ମଳରେ ଉଦୟ ହେଲେ କି ? ସେ ଗୋରୀର ମୁଖ ଶୋଭା ସେ ଲକ୍ଷଣା ( ଉପମାକୁ ) ଧରିଛି । ତାଙ୍କର ନାସା ଫୁଲ୍ବାରୁ ସ୍ୱାସବସା କୁନ୍ଦନନବାଡ଼ ଗୁଣା ଚଳେ ।

ଅଛୁର ସିହାଣୀ ନୟନତରଙ୍ଗ ଗୃହିଁଣି ହୋଇଛୁ ସଙ୍ଗ ।
ଏଣିକ ତେଣିକ ଏକାକ କରୁଛୁ ସ୍ୱଇଚ୍ଛାବଶରେ ରଙ୍ଗ ।
ସେ ଗୋସ୍ୱୀ । ଭଚକୁଚ ମନ ମୋହୁ ।
ପ୍ରେମ ରତ୍ନ ଭର କାମ'ଭଣ୍ଡାରେ କ ହେମସଂପୁଟକ ଥୋଇ ॥ ୭
ଦରବକାଶ ଫୁଲ ତୁଲ ସୁହାସ କଥାକୁହା ଭଙ୍ଗି ସେହୁ ।
ସ୍ୱର ଶୁଣିଥିଲେ ତରୁଣୀକୁଳ ଯେ କୁଳରେ ରହନ୍ତେ ନାହିଁ ।
ସେ ଗୋସ୍ୱୀ । କୁଡ଼ାଛବ ଜାନଗୁଡ଼ା ।
ସେହୁ ବନ୍ଧନେ ବନ୍ଧନ ହୋଇ ମନ ଅନ୍ୟ ନ କରଇ ଲୋଡ଼ା । ୮
ପାହୁଡ଼ ହୁଡ଼ନା ବୋଲି କ ପହଣ୍ଡ ମଣାଉଛୁ ବାର ବାର ।
ଝିଙ୍କାର ଝଙ୍କାରେ ବାଧୀ ହୋଇଅଛୁ ଝମକମୁଦ ଯାହାର ।
ସେ ଗୋସ୍ୱୀ । ସହଜେ ମୋହନ ଛବ ।
ଯାବତ କବବ୍ଧେ ଯାହା ଗୃତୁସ୍ୱକ ବର୍ଣ୍ଣନା କରନ୍ତି କବ ॥ ୯
ଜମ୍ବୁ-ଜମ୍ବାଳ-ପିତୁଳା ପରେ ଢାଳ ବଧି ନୀଳମଣି କାଚ ।
ପ୍ରତିଭ୍ୱ ଏ ଦଶି ପ୍ରଭୁକୁ ପ୍ରକାଶି ବବେକ ବଶାକୁ ପାଞ୍ଚ ।
ସେ ବାମା । ଉରଜ ପୃଥୁଳ ତୁଙ୍ଗ ।
ଶାରଦଜ୍ୱର ଅନ୍ତର ନାଶେ ପାତ ଆସଇ କ ପାତୁଳଙ୍ଗ ॥ ୧୦

---

୭—ଅଛୁରମଧ୍ୟ ସେ ସିହାଣୀ (ଚତୁରୀର) ନୟନତରଙ୍ଗ ଗୃହିଁଣିର ସଙ୍ଗହୋଇଛୁ ଏଣୀ ( ହରଣୀ ) ସ୍ୱଇଚ୍ଛାବଶରେ ଏଣିକ ତେଣିକ ଗୃହିଁ ରଙ୍ଗ ( କ୍ରୀଡ଼ା ) କରୁଛୁ କ ? ସେ ଗୋସ୍ୱୀର ଭଚକୁଚ ମନକୁ ମୋହୁଛୁ । କାମ ପ୍ରେମରତ୍ନ ଭର ( ପୂର୍ଣ୍ଣକର ) ହେମ ସଂପୁଟକ ( ସୁବର୍ଣ୍ଣ ଫରୁଆକୁ ) ନକ ଭଣ୍ଡାରେ ଥୋଇଛୁ କ ?

୮—ସୁହାସ ଓ କଥା କୁହା ଭଙ୍ଗି ଦର ବକାଶ ( ଅଳ୍ପ ପ୍ରସ୍ଫୁଟିତ ) ଫୁଲ ତୁଲ ( ସମାନ ) ସେହୁ ସ୍ୱର ଶୁଣିଲେ ତରୁଣୀକୁଳ କୁଳରେ ରହନ୍ତେ ନାହିଁ । ସେ ଗୋସ୍ୱୀର କୁଡ଼ା ଛବ ଜାନଗୁଡ଼ା ଅଟେ, କୁଡ଼ା ବନ୍ଧନରେ ମନ ବନ୍ଧନ ହୋଇ ଅନ୍ୟ ଲୋଡ଼ା ନ କରଇ ।

୯—ପାହୁଡ଼ (ଅଳଙ୍କାର ବଶେଷ) ହୁଡ଼ନା ବୋଲି ବାରବାର ପହଣ୍ଡ ମଣାଉଛୁ କ? ଯାହାର ଝମକ ମୁଦ ( ଝୁମ୍ପକାଲଗା ମୁଦ ) ଝିଙ୍କାର ପକ୍ଷୀର ଝଙ୍କାରଶବ୍ଦରେ ବାଧୀ ହୋଇଛୁ, ସେ ଗୋସ୍ୱୀ ସହଜରେ ମୋହନ ଛବ ଅଟେ । କବମାନେ ଯାହାର ଗୃତୁସ୍ୱକ ଯାବତ କବବ୍ଧେ ( ସମସ୍ତ କବବ୍ଧରେ ବର୍ଣ୍ଣନା କରନ୍ତି ।

୧୦—ବଧି ଜମ୍ବୁଜମ୍ବାଳ ପିତୁଳା ( ସୁବର୍ଣ୍ଣ ପିତୁଳା ) ଉପରେ ନୀଳମଣି କାଚ ଢାଳଲ ପର ସାବେନା ସ୍ତ୍ରୀମାନଙ୍କର ପ୍ରତିଭ୍ୱ ( କାନ୍ତି ) ଦସୁଛୁ । ତାହାର

ପଲ୍ଲବ ପତନ ଧଇର୍ଯ୍ୟ କଠିନ କଟାକ୍ଷ ଏସନ ଦଶେ ।
ନେତ୍ର ଅଞ୍ଜନସୂତ୍ର-ବନ୍ଧା ଖଞ୍ଜନ ପୁଣି ଉଡ଼େ ପୁଣି ବସେ ।
ସେ ବାମା । ନାସାରେ ବିରାଜେ ନଥ ।
ତୂଣୀର ଉପରେ ସ୍ୱର୍ଣ୍ଣର କର୍ଷଣୀ ଥୋଇଛନ୍ତି କି ମନମଥ ॥ ୧୧
ସରଣୀ-ସରିତେ ତରଣୀ ଗ୍ରସିଲ୍ଲ ପରାୟେ ଗତି ପ୍ରମାଣ ।
ବେଣୀ-ପଟ୍ଟିଶ କି ଦେଖାନ୍ତି ମାରକୁ ଏ ଘେନି ଜଗତ ଜିଣ ।
ସେ ବାମା । ଢୋଡ଼ର ଖୁଣ୍ଟି ଅ କହୁ ।
ଝମ ଝମ ନାଦ ଦମ ଦମ ହୃଦ ଶ୍ରବଣେ କରାଇ ଦେଇ ॥ ୧୨
ଶୁଣି ହେଲେ ଗୁଣି ହେଲେ ନୃପଗଣେ ପୁଣି ସୁହୃଦରେ ଭଣି ।
ଧନ୍ୟ ପ୍ରଶଂସାରେ ହସାରେ ବିବିଧ ସୁକାନ୍ତ ତରୁଣୀଶ୍ରେଣୀ ।
ହେ ସାଧୁ । ଏକେ ଏକେ ମନୋହର ।
ସମସ୍ନେହରେ ଲୋକନ କରିବାରେ ବିଲୋଚନ ହେଲେ ହର ॥ ୧୩

---

ପ୍ରଭାକୁ ( ଦୀପ୍ତିକି ) ପ୍ରକାଶି ଶବେକ ବଣାକୁ ପାଞ୍ଚ । ସେ ବାମାର ସ୍ଥୂଳ ଓ ତୁଙ୍ଗ ( ଉଚ୍ଚ ) ଉରଜ ( ସ୍ତନ ) ଶରହଜ୍ୱର ଅନ୍ତର ନାଶ କରିବାକୁ ମାତୁଲିଙ୍ଗ (ଟଭ୍ରା) ପାଚ ଅସଇ କି ?

୧୧—ପୁଣି ଧୈର୍ଯ୍ୟ କଠିନ ପଲ୍ଲବ ପତନ ଓ କଟାକ୍ଷ ( ଗୃହିଁବା ) ଏସନ ଦଶେ ଅଞ୍ଜନରୂପ ସୂତ୍ରରେ ବନ୍ଧା ନେତ୍ର ଖଞ୍ଜନ ପକ୍ଷୀ ( କଜ୍ୱଳପାଚ ) ପୁଣି ଉଡ଼େ ପୁଣି ବସେ, ସେ ବାମାର ନାସାରେ ନଥ ଏପରି ବିରାଜେ ମନ୍ମଥ (କାମ) ତୂଣୀର ( ଶରମୁଣ୍ଡା ) ଉପରେ ସ୍ୱର୍ଣ୍ଣର କର୍ଷଣି ( ଧନୁର୍ଗୁଣ ଆକର୍ଷଣ କରିବା ପାଇଁ ଅଙ୍ଗୁଳିରେ ଥିବା ମୁଦ୍ରିକା ବିଶେଷକୁ ) ଥୋଇଛନ୍ତି କି ? ନାସା ତୂଣୀର ପରି ନଥ ମୁଦପରି ।

୧୨—ସରିତେ ( ନଦୀରେ ) ତରଣୀ ( ନୌକା ) ଗ୍ରସିଲ୍ଲ ପ୍ରାପ୍ତ ସରଣୀରେ ( ବାଟରେ ) ଗତି କରିବା ପ୍ରମାଣ ଅଟେ । ସେ ବାମାର ଢୋଡ଼ର ନାମକ ପାଦଭୂଷା ଖୁଣ୍ଟି ଅପରି ମାରକୁ ବେଣୀରୂପ ପଟ୍ଟିଶ (ଖଡ୍ଗ) ଦେଖାନ୍ତି କି ? ଏବଂ ଝମ ଝମ ନାଦ ଶ୍ରବଣରେ ହୃଦକୁ ଦମ ଦମ କରାଇ ଦେଇ ଏ ଘେନି ଜଗତ ଜିଣ ବୋଲି ମାରକୁ କହନ୍ତି ।

୧୩—ନୃପଗଣେ ହେଲେ ଶୁଣି ଗୁଣିହେଲେ ପୁଣି ସୁହୃଦରେ (ମିତ୍ରକୁ ) କହିଲେ ସୁକାନ୍ତ ( ସୁନ୍ଦରୀ ) ଏହି ବିବିଧ ତରୁଣୀ ଶ୍ରେଣୀ ହସାରେ ପ୍ରଶଂସାରେ ଧନ୍ୟ ଅଟନ୍ତି । ହେ ସାଧୁ । ଏମାନେ ଏକେ ଏକେ ମନୋହର ହର ଏହି ବିବିଧ ତରୁଣୀଙ୍କୁ ସମାନ ସ୍ନେହରେ ଲୋକନ ( ଦର୍ଶନ ) କରିବାରେ ବିଲୋଚନ ହେଲେ ।

ମହେଶ ମୋହେ ବହି କାଳୀ ଗଉରୀ ଦ୍ୱିବିଧରୂପକୁ ଉମା ।
ପରସ୍ପର ପ୍ରତିବିମ୍ବରେ ଦେଖାଇ ପୁଣି ସାବର୍ଣ୍ଣୀ ସୁଷମା ।
ହେ ସାଧୁ ! ନିଶ୍ଚେଁ କଲେ ଏ ନାୟିକା ।
ଚମ୍ପାବତୀ ପୁରୀ ଗ୍ରାମଟୀକା ପର ଅମରାବତୀ ଅଳକା ॥ ୧୪
ଶୋଭାରେ ଅପସରାଇ ଅପସରା ଏଥି ପ୍ରମଦାଏ ସତ ।
ମହୀ ଅପସର ସେହି ଅପସରୀ ସବୁ ନୋହି ସ୍ୱର୍ଗସ୍ଥିତ ।
ହେ ସାଧୁ ! କିନ୍ନରୀମାନେ କି ନାରୀ ।
ବୋଲଇ ମାନେ ତୁରଙ୍ଗାସ୍ୟେ ଭଜିଲେ କୁବେରକୁ ଅଶେ କର ॥ ୧୫
ପାନ ସାମନ୍ତବଲ୍ଲଭୀଏ ବଡ଼ଭି ଏ କାଳେ ଶୋଭିତ କରୁଁ ।
ବେଗେ ବ୍ୟବହାର ସାର ଗମ ପଦ ନିଜେ ପ୍ରଗୃହୁଁ ପ୍ରଗୃହୁଁ ।
ହେ ସାଧୁ ! ନାରଦ ବୀଣା ବଜାଇ ।
ଊର୍ଦ୍ଧ୍ୱେ ଗମନ ଘେନି ମନେ ଗୃହିଁଲେ ସାତବର୍ଣ୍ଣେ ମଗ୍ନ ହୋଇ ॥ ୧୬

---

୧୪—ଉମା ଏମନ୍ତ ଦେଖି ମହେଶଙ୍କୁ ମୋହିବା ପାଇଁ କାଳୀ ଗୌରୀ ଦ୍ୱିବିଧ ରୂପକୁ ବହିଲେ, ପୁଣି ପରସ୍ପରର ପ୍ରତିବିମ୍ବରେ ( ଉଭୟ ଛାୟାରେ ଉଗ୍ର-ତାର ମୂର୍ତ୍ତିରେ ) ସାବର୍ଣ୍ଣୀ ( ସାବେର୍ଣ୍ଣୀଙ୍କର ) ସୁଷମା ,(ଶୋଭାକୁ ) ଦେଖା-ଇଲେ । ହେ ସାଧୁ ! ଏହି ନାୟିକାମାନେ ନିଶ୍ଚେ ଚମ୍ପାବତୀ କି ପୁରୀ(ନଗରୀ) କଲେ, ଅମରାବତୀ ( ଇନ୍ଦ୍ରପୁରୀ ) ଓ ଅଳକା ( କୁବେରପୁରୀ ) ଏ ଦୁହେଁ ଏହା ତୁଳନାରେ ଗ୍ରାମଟୀକା ( ଖଣ୍ଡିଏ ଖଣ୍ଡିଏ ଶ୍ରେଷ୍ଠ ଗ୍ରାମ ) ପର କିନ୍ତୁ ନଗରୀ ନୁହେଁ ।

୧୫—ଏଥିରେ ପ୍ରମଦାଏ ( ସ୍ତ୍ରୀମାନେ ) ଶୋଭାରେ ଅପ୍‌ସରାମାନଙ୍କୁ ଅପସରାଇ ( ଘୁଞ୍ଚାଇ ) ଦେଲେ, ଏହା ସତ । ସେହି ଅପ୍‌ସରୀମାନେ ଏମାନଙ୍କ ସରି ନୋହି ମହୀରୁ ଅପସରଯାଇ ସ୍ୱର୍ଗସ୍ଥିତ ହେଲେ । ହେ ସାଧୁ ! କିନ୍ନରୀମାନେ ଏମାନଙ୍କୁ ଦେଖି ଅମ୍ଭେ କି ନାରୀ ବୋଲଇବା ଏହି ମାନେ (ଅଭିମାନରେ) କୁବେରକୁ ( କୁ+ବେର=କୁତ୍ସିତ ଦେହ ହେତୁ କୁବେର ନାମକୁ ) ଅଶେ କର ତୁରଙ୍ଗାସ୍ୟେ ( ଘୋଟକମୁଖ କିନ୍ନରମାନଙ୍କୁ ) ଭଜିଲେ ।

୧୬—ଏକାଳେ ପାନ ସାମନ୍ତଙ୍କ ବଲ୍ଲଭୀଏ ( ସ୍ତ୍ରୀମାନେ ) ବେଗେ ବ୍ୟବହାର ସାର ଗମ ( ଗୃହ ) ଏ ପଦ ( ଏ ବାକ୍ୟ ) ନିଜେ ପ୍ରଗୃହୁଁ ପ୍ରଗୃହୁଁ ( କହୁଁ କହୁଁ ) ବଡ଼ଭି ଶୋଭିତ କରୁଁ ଅର୍ଥାତ୍ କୋଠାଉପର ଗୃହରେ ଅରୋହଣ କରୁଁ ରାଜାମାନେ ତାଙ୍କର ମଧୁରକଣ୍ଠ ନିଃସୃତ ସାତବର୍ଣ୍ଣ ( ସା ର ଗ ମ ପ ଧ ନି ) ରେ ମଗ୍ନ ହୋଇ ନାରଦ ବୀଣାବଜାଇ ଊର୍ଦ୍ଧ୍ୱେ ଗମନ କରନ୍ତି କି ଏହା ମନେ ଘେନି ଗୃହିଁଲେ ।

ନାରୀ ବାର ବାଣୀ ଭୂପେ ଭଣି ଯୋଷା ଈରଷା ଛାଡ଼ି ନ ପାର ।
ସ୍ୱର୍ଗ ଘଞ୍ଚଣ୍ଟବେ ସୁରସୁନ୍ଦରୀଙ୍କି ଜଛେ ଗମନ ଅଦର ।
ହେ ବନ୍ଧୁ । ବୋଲି ଗୃହ୍ୟବଟୁ ଭାଷେ ।
ଏ ସତ୍ୟ ରମ୍ଭାକୁ ଜାନୁ-ଅର୍ଗଳରେ ବାନ୍ଧିଲେଣି ଛନ୍ଦ ବାସେ ॥ ୧୭
ପ୍ରତିଉତ୍ତର ପରମ ମନୋରମ ରମଣୀଙ୍କ ସ୍ଥାନ ଏହି ।
କୋଟିବ୍ରହ୍ମାଣ୍ଡସୁନ୍ଦରୀ ଯେ ଏମନ୍ତ ଶୋଭା ଥିବ ପୁଣି ବହି ।
ହେ ସାଧୁ । ଲକ୍ଷ୍ୟ ନ ପାରିବେ କରି ।
ବ୍ୟାସ ବାଲ୍ମୀକ କାବ୍ୟ ଧାତା ଗଣେଶ ଶେଷ ସାରଦା ସଗୁରି ॥ ୧୮
ଚମ୍ପା-ନରବର ଯେବେ ସ୍ୱୟମ୍ବର କରିଥାନ୍ତେ ଦେଖନ୍ତାଇ ।
ଶତ ପିତୁଳା କରି ନେତ୍ର-ପିତୁଳା ପଟ୍ଟରେ ତାହା ଲେଖନ୍ତାଇ ।
ହେ ସାଧୁ । ମନେ ସଦା ରଖନ୍ତାଇ ।
ଯେ ଲଭନ୍ତା ତାକୁ କୋଟି ପୁରନ୍ଦରପଦ ନେଲି ଯୋଖନ୍ତାଇ ॥ ୧୯

---

୧୭—ହେ ଭୂପେ (ରାଜାମାନେ) ଶେଷକୁ ଏ ନାରୀ ବାଣୀ ବୋଲି ଜାଣି ଭଣିଲେ—ଯୋଷା (ଏ ସ୍ତ୍ରୀମାନେ) ଈର୍ଷ୍ୟା ଛାଡ଼ି ନ ପାରି ସୁରସୁନ୍ଦରୀଙ୍କି (ଅପ୍ସରୀମାନଙ୍କ) ସ୍ୱର୍ଗ ଘଞ୍ଚଣ୍ଟବେ ବୋଲି ଜଡଛେ ଗମନ ଅଦରଲେ କି ? ଏମନ୍ତ ଶୁଣି ଗୃହ୍ୟବଟୁ (ରାଜାଙ୍କନିକଟରେ ଥିବା ପରହାମକ) ଭାଷିଲେ-ହେ ବନ୍ଧୁ । ଏହା ସତ୍ୟ, ଏମାନେ ରମ୍ଭାକୁ ବାସେ (ବସ୍ତ୍ରରେ) ଛନ୍ଦ ଜାନୁ ଅର୍ଗଳରେ ଆଣି ବାନ୍ଧିଲେଣି । ରମ୍ଭା (ଅପ୍ସରାବିଶେଷ ଓ କଦଳୀବୃକ୍ଷ) ସ୍ତ୍ରୀମାନଙ୍କର ଜଙ୍ଘ ପ୍ରଦେଶକୁ କଦଳୀ ବୃକ୍ଷ ସହିତ ତୁଳନା କରାଯାଏ ।

୧୮—ରାଜାମାନେ ପ୍ରତ୍ୟୁତ୍ତର କଲେ—ଏହି ନଗରୀ ପରମ ମନୋରମ ରମଣୀ ମାନଙ୍କର ସ୍ଥାନ ଅଟେ ପୁଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯେ କେମନ୍ତ ଶୋଭା ବହିଥିବ । ହେ ସାଧୁ । ବ୍ୟାସଦେବ, ବାଲ୍ମୀକ, କାବ୍ୟ (ଶୁକ୍ର) ଶେଷ (ବାସୁକି) ସାରଦା (ସରସ୍ୱତୀ) ଧାତା (ବିଧାତା) ଗଣେଶ ଏମାନେ ସଗୁରି ଲକ୍ଷ୍ୟ (ତୁଳନା) କରି ନ ପାରିବେ ।

୧୯—ଚମ୍ପାନଗରୀର ନରବର (ରାଜା) ଯେବେ ସ୍ୱୟମ୍ବର ସଜ୍ଜ କରିଥାନ୍ତେ ତେବେ ତାହାକୁ ଦେଖନ୍ତାଇ ଏବଂ ତାହାକୁ ଶତ ପିତୁଳା କରି ନେତ୍ର ପିତୁଳା ଉପରେ ଲେଖନ୍ତାଇ । ହେ ସାଧୁ । ସଦା ମନେ ରଖନ୍ତାଇ ତାକୁ ଯେ ଲଭନ୍ତା ସେ କୋଟି ପୁରନ୍ଦର (ଇନ୍ଦ୍ର) ପଦ ନେଲି ବୋଲି ଯୋଖନ୍ତାଇ (ମନେ କରନ୍ତେ) ।

ଏ କାଳେ ମିଳି ଜେମା ପାଶେ କଲ୍ୟାଣୀ ପ୍ରକାଶି ମଧୁର ଭାଷ ।
ଜଗତୀମୋହନୀ ବିଳମ୍ବ ନ କର ଜଗତୀ ଗତିରେ ରସ ।
ରେ ବାଳା । ସୀତା ଧନୁ-ସ୍ୱୟମ୍ବରେ ।
କେତେ ରାଜାଥିଲେ ଶ୍ରୀରାମ ଭାଙ୍ଗିଲେ ପୁଣି କହେ ଦୃଷ୍ଟାନ୍ତରେ ॥ ୨୦
ଦନ୍ତ ତୁଲ ପାଇ ସୂଚୀଭେଦ ହୋଇ କେତେ ମୋତି ହେଲେ ହାର ।
କେତେ ଶୁକ୍ତିଯୋଗେ ଭସ୍ମ ପାନ ସଙ୍ଗେ ସଙ୍ଗ ହୋଇଲା ତାଙ୍କର ।
ରେ ବାଳା । ଯେତେକ ଏତେକ ନୋହି ।
ବ୍ୟର୍ଥ ହୋଇଲେ କାୟକ୍ଲେଶ ବିନା ମନୋରଥ ସାର୍ଥ କାହିଁ ॥ ୨୧
କାମଶରେ ବିନ୍ଧା ବିରହ-ଅନଳେ ଦଗ୍ଧ ହେଉଅଛୁ ନିତି ।
ତୋ ହେତୁ ପୁଷ୍ପକେତୁ ନାମ କୁମାର ବିଚାର ନ କରୁ ମତି ।
ରେ ବାଳା । ତୋତେ ସେ ଲଭିବ ସତି
ଶୁଣି ସେ ସଖୀ ସେବକୀ ସଙ୍ଗେ ରଙ୍ଗେ ବଡ଼ଭି ମଣ୍ଡେ ତୁରିତ ॥ ୨୨

---

୨୦—କଲ୍ୟାଣୀ ( ମାଙ୍ଗଲ୍ୟା ସଖୀ ) ଏକାଳେ ଜେମାପାଶେ ମିଳି ମଧୁରଭାଷ ( ବାଣୀ ) ପ୍ରକାଶିଲେ—ରେ ଜଗତୀ ମୋହିନୀ ! ବିଳମ୍ବ ନ କର ଜଗତୀ ଗତିରେ ରସ ( କୋଠାଉପରକୁ ଯାଅ ), ରେ ବାଳା ! ସୀତାଙ୍କର ସ୍ୱୟମ୍ବର ଧନୁସ୍ୱୟମ୍ବରରେ କେତେ କେତେ ରାଜା ଥିଲେ, କିନ୍ତୁ ଶ୍ରୀରାମ ଧନୁ ଭାଙ୍ଗିଲେ ସେହିପରି ତୋହର ଅଭିଳଷିତ ପୁରୁଷ ମୃଗପୁଚ୍ଛ ହରଣ କରିବ ଏହା ପୁଣି ଦୃଷ୍ଟାନ୍ତରେ କହିଲେ ।

୨୧—ତୋ ଦନ୍ତସଙ୍ଗେ ତୁଲ (ସମାନ) ହେବାପାଇଁ କେତେ ମୋତି ସୂଚୀଭେଦ ( ଛୁଞ୍ଚିରେ ଫୋଡ଼ା ) ହୋଇ ତୋର ହାର ହେଲେ ଓ କେତେ ଶୁକ୍ତି ( ଶାମୁକା ) ଯୋଗେ ( ଯୋଗକର ) ଭସ୍ମହେଲେ, ଚୂନରୂପେ ପାନସଙ୍ଗେ ତାଙ୍କର ତୋ ସଙ୍ଗ ଲାଭ ହୋଇଲା । ରେ ବାଳା ! ଯେତେକ ମୋତି ଓ ଶାମୁକା ଏତେକ ( ଫୋଡ଼ା ଓ ପୋଡ଼ା ) ନୋହିଲେ ସେମାନେ ବ୍ୟର୍ଥ ହୋଇଲେ ( ତୋ ସଙ୍ଗ ନ ପାଇଲେ ), ଅତଏବ କାୟକ୍ଲେଶ ବିନା ମନୋରଥ ସାର୍ଥ ( ସଫଳ ) କେଉଁଠାରେ ।

୨୨—ପୁଷ୍ପକେତୁ ନାମକ କୁମାର ତୋ ହେତୁ ନିତି କାମଶରେ ବିନ୍ଧାହେଉଛି ଓ ବିରହ ଅନଳେ ଦଗ୍ଧ ହେଉଅଛି ତୁ ଏହା ମତି ( ମନରେ ) ବିଚାର କରୁ ନାହୁଁ । ରେ ବାଳା ! ତୋତେ ସେ ଲଭିବ ଏହା ସତ ଅଟେ । ସେ ସଖୀ ଏହାଶୁଣି ସେବକୀ ( ଦାସୀ ) ସଙ୍ଗେ ରଙ୍ଗେ ( ଆନନ୍ଦରେ ) ତୁରିତ ବଡ଼ଭି ( ଅଟ୍ଟାଳିକାକୁ ) ମଣ୍ଡନ କଲେ ।

ପଞ୍ଚଶ୍ରୀସାସ୍ତ୍ରୀ ପର ଦେଇ ନୟନ ବାତାୟନେ ଗୁହିଁବାରେ ।
ଯନ୍ତ୍ରୀ ଗଲାଇ ବରଜ କଙ୍କପତ୍ର ଗୋତ୍ର ବାନ୍ଧିଲ ପ୍ରକାରେ ।
ସେ ଯେଣୁ । ଚଣ୍ଡୀ ନାମକୁ ଗୃହୀତ ।
ମତ୍ସ୍ୟଗଣ ଲଖେ ଷ-ଭେଦ କରିବାବେ ଶରପ୍ରହାର ବହୁତ ॥ ୨୩

ଜଗତୀ ଗବାକ୍ଷେ ଦଶେ କଛୁ କଛୁ ମୁଖ ହାସ ମନୋହର ।
ପୂର୍ବାଦ୍ରି ଲତାନ୍ତରେ ଉଦେ ଇନ୍ଦୁ କି ଗଳପଡ଼େ ଫଳ କର ।
ସେ ବଂସେ । ପାଶେ ମିଳେ ଅଳିଅଳୀ ।
ଝଙ୍କାରେ ତହିଁ ଝମକ ମନସିଜ ଫିଙ୍ଗିଲ ପର ସାବେଲା ॥ ୨୪

ସୃଷ୍ଟି ସ୍ୱଜାଙ୍କ ଦୃଷ୍ଟି ଗତ ସେଠାକୁ ଗୃହୁଁ ଗୃହୁଁ ହେଲ ଯହୁଁ ।
କାଗଜଚଙ୍ଗାକ କଉତୁକୀ ଠେକ ନାରେଖିଲ ପର ତହୁଁ ।
ସେ ନେତ୍ର । ପିଛଡ଼ା ଛଡ଼ାଇ ଦେଲ ।
ଏଥି ସୁନ୍ଦରୀଶିରୋମଣି ରମଣୀ ବଳେ ଏ ବବେକ ହେଲ ॥ ୨୫

---

୨୩—ପଞ୍ଚଶ୍ରୀସ୍ଥିତ ସାସ୍ତ୍ରୀପର ବାତାୟନେ (ଜଳାକବାଟିରେ) ନୟନଦେଇ ଗୃହିଁବାରେ ଯନ୍ତ୍ରାରେ ଗଲାଇ ବରଜ କଙ୍କପତ୍ରଗୋତ୍ର (ଶରସମୂହ) ବାନ୍ଧିଲ ପରାରେ ଦଶିଲ । ସେ ଯେ ଚଣ୍ଡୀ (ମାନିନୀ) ନାମକୁ ଗୃହୀତ (ପ୍ରାପ୍ତ) ହୋଇଛୁ ତେଣୁ ଚଣ୍ଡୀ (ଦୁର୍ଗା) ହେଲ । ମତ୍ସ୍ୟଗଣ (ସ୍ୱଜାମାନେ) ଷ-ଭେଦ (ଶଠାରେ ଷ) କରିବାବେ ମହିଷାସୁର ହେଲେ ତାଙ୍କ ଲଖେ (ଲକ୍ଷ୍ୟକର) ଚକ୍ଷୁଶର ପ୍ରହାର କରିବା କଥା ବହୁତ ହେଲ ।

୨୪—ଜଗତୀ (ଅଟାଳିକାର) ଗବାକ୍ଷେ (ଜଳାକବାଟିରେ) ହାସରେ ମନୋରମ ହୋଇଥିବା ମୁଖ କଛୁ କଛୁ (ଅଳ୍ପ ଅଳ୍ପ) ଦଶେ, ପୂର୍ବାଦ୍ରି (ଉଦୟଗିରିର) ଲତାନ୍ତରେ (ଲତାମଧ୍ୟରେ) ଇନ୍ଦୁଉଦେ ହୋଇଛୁ କି ? ତାହାର କର (କାରଣ) ଫଳ ଗଳପଡ଼େ କି ? ସେ ମୁଖଗବାକ୍ଷ ଭିତରେ ଥାଇଁ ଏହିପ୍ରର ଦଶିଲ । ମୁଖ ଇନ୍ଦୁପର, ଚବାକ୍ଷ ଲତାପର, ହାସ କିରଣପର, କୋଠା ପୂର୍ବାଦ୍ରିପର । ସେ ମୁଖର ବାସରେ ଅଳିଅଳି (ଭ୍ରମର ଶ୍ରେଣୀ) ପାଶରେ ମିଳିଲେ ଓ ଝଙ୍କାରିଲେ, ମନସିଜ (କାମ) ତାହାର ଯାବେଲା ଅସ୍ତ୍ରକୁ ଝମକ (ଝିଙ୍କି) ଫିଙ୍ଗିଲପର ଦେଖାଗଲେ ।

୨୫—ଯହୁଁ ସେଠାକୁ ଗୃହୁଁ ଗୃହୁଁ ସୃଷ୍ଟି ଯାକ ସ୍ୱଜାଙ୍କର ଦୃଷ୍ଟି ଗତ (ଗଲ), ତହୁଁ ସେ ସୁନ୍ଦରୀ କୌତୁକୀ ହୋଇ କାଗଜ ଚଙ୍ଗାକ ଠେକ ନାରେଖିଲ ପର ନେତ୍ର ପିଛଡ଼ାକୁ ଛଡ଼ାଇ ଦେଲ । ତାହାପରେ ସୁନ୍ଦରୀଶିରୋମଣି ରମଣି ଏଥିବଳେ ଏ ବବେକ ସେମାନଙ୍କର ହେଲ ।

ଲାବଣ୍ୟ-ସାଗରୁ ପ୍ରଦୀପ୍ତ-ଲହରୀ ଜାଲ-ମାର୍ଗେ କି ବାହାର ।
ଚତୁରୀ ନୟନ-ତରଙ୍ଗ ଗୃହ୍ଣରୀ ବାଟାୟନେ ସେହୁପର ।
 ସେ ଧାମେ । ଏ ଚକ୍ଷୁ ହଂସ ଉଡ଼ିକି ।
କି ଭାଗ୍ୟ ଅମ୍ଭ ପରେ ବାଳା ଈକ୍ଷଣ ପତନ ହୋଇଲା ଠିକି ॥ ୨୬
ସିନ୍ଧୁରେ ରତ୍ନାକର ପଦ ଲୋଭରେ ମଜ୍ଜି ରତ୍ନ ନ ପାଇଲେ ।
ସ୍ନାନ ପର୍ବଦଫଳ ନୋହେ ବିଫଳ ଏ କଥା ହେଲାତ ଭଲେ ।
 ସେ ଅଜ । ସାର୍ଥ ହେବ ଜାତ ଜନ୍ମ ।
ଶ୍ରବଣ କରିବ ଅମ୍ଭ ନାମ ବାଳା କେହୁ ଦେଉଥିଲେ କହି ॥ ୨୭
ସେ ବଶ ହେବାକୁ ସଂସାରେ କେ ଅଛୁ ଯେ ଅଛୁ ସେ ନାହିଁ ଏଥ ।
ଜଗତମୋହନ ମୂରତି ମାଧବ ଭସ୍ମୀଭୂତ ମନମଥ ।
 ସେ ବାଳା । ହୋଇ ଯେ ରହସ୍ୟ ବଶ ।
ଏକେ ଏକେ ଏକେ ବୋଲି ପୁଚ୍ଛୁଥିବ କି ଶୁଭୁଥିବ ସେ ଭାଷ ॥ ୨୮
ମୋହନସ୍ୱର ପୂର୍ଣ୍ଣ କୃଷ୍ଣ-ବେଣୁରେ କୃଷ୍ଣକେଶୀ ବଚନରେ ।
ପଶୁ ପାଷାଣର ବଶ ତରଳକୁ କରୁଥିବ ରଚନରେ ।
 ସେ ସ୍ୱରେ । ବୋଲନ୍ତାଇ ବଡ଼ ନୋହି ।
ଅଖେଟ ଘଣ୍ଟିନାଦେ ଚନ୍ଦ୍ର ଦର୍ଶନେ ବଶ ତରଙ୍ଗର ସେହି ॥ ୨୯

---

୨୬—ଲାବଣ୍ୟ ସାଗରରୁ ପ୍ରଦୀପ୍ତ ( ଦୀପ୍ତ ) ରୂପ ଲହରୀ ଜାଲମାର୍ଗରେ ବାହାରିଲା କି ? ସେହିପରି ଚତୁରୀର ନୟନ-ତରଙ୍ଗ ଗୃହ୍ଣରୀ ବାଟାୟନେ ( ଜଳାକବାଟି ଛିଦ୍ରରେ ) ବାହାରିଲା । ଅତଏବ ସେ ସ୍ଥାନକୁ ଅମ୍ଭମାନଙ୍କର ଏ ଚକ୍ଷୁରୂପ ହଂସ (ମୀନ) ଧାମେ (ଦଉଡ଼ଇ) । ଅମ୍ଭର କି ଭାଗ୍ୟଟି, ଅମ୍ଭ ଉପରେ ବାଳାର ଈକ୍ଷଣ ପତନ ହୋଇଲା ଠିକି ?
୨୭—ରତ୍ନାକର ପଦ ଲୋଭରେ ସିନ୍ଧୁରେ ( ସମୁଦ୍ରରେ ) ମଜ୍ଜି ( ବୁଡ଼ି ) ରତ୍ନ ନ ପାଇଲେ ମଧ୍ୟ ସ୍ନାନ ପର୍ବଦଫଳ ବିଫଳ ନୋହେ, ଏ କଥା ଭଲେ ହେଲାତ । ଅଜ ଜାତକ ( ଜନ୍ମ ) ହି ( ନିଶ୍ଚୟ ) ସାର୍ଥ ( ସଫଳ ) ହେବ, ଅମ୍ଭ ନାମ କେହି କହି ଦେଇଥିଲେ ସେ ବାଳା ଶ୍ରବଣ କରିବ ।
୨୮—ସେ ସୁନ୍ଦରୀର ବଶ ହେବାକୁ ସଂସାରରେ କେ ଅଛୁ, ଯେ ଅଛୁ ସେ ଏଥ (ଏଠାରେ) ନାହିଁ । ଜଗତ ମୋହନ ମୂର୍ତ୍ତି ( କୃଷ୍ଣ ) ମା-ଧବ ( ଲକ୍ଷ୍ମୀପତି ) ହୋଇଛନ୍ତି । ମନ୍ମଥ (କାମ) ଭସ୍ମୀଭୂତ ହୋଇଛି । ସେ ବାଳା ରହସ୍ୟ ବଶ ହୋଇ ଏକେ ଏକେ (ଗୋଟି ଗୋଟି) କରି ଏ କେ (କିଏ) ବୋଲି ପୁଚ୍ଛୁଥିବ, ସେ ଭାଷ କି ଶୁଭୁଥିବ ।
୨୯—ଯେଉଁ ମୋହନସ୍ୱର କୃଷ୍ଣଙ୍କ ବେଣୁ (ବଂଶୀରେ) ପୂର୍ଣ୍ଣ, ସେହିସ୍ୱର କୃଷ୍ଣକେଶୀ ( କଜ୍ଜ୍ୱଳ କେଶୀ ) କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବଚନରେ ପୂର୍ଣ୍ଣ ହୋଇଛି ।

ବ୍ୟକତ ପଦତ ବାଳା ବଚନରେ ଅବ୍ୟକତ ପଦ ପିକେ ।
ବସନ୍ତେ ଭାଷନ୍ତେ ଉଦ୍ଦୀପନକାରୀ ତାଙ୍କୁ ପ୍ରଶଂସନ୍ତି ଲୋକେ ।
ସେ ରାମା । ସ୍ୱରକୁ ଈଶ୍ୱର କେହ୍ନ ।
ଶୁଣି ଭ୍ରାନ୍ତୀଭୂତେ ଶମ୍ଭୁ ବୋଲାଇଲେ ପାଷାଣ ଶରୀର ବହ୍ନ ॥ ୩୦
ରାମପଦବସ୍ତୁଁ ପୁରାଣରେ ଅଛୁ ସୁମୂର୍ତ୍ତି ହୋଇଲା ଶିଳା ।
ରାମ ପଦବସ୍ତୁଁ ଏବେ ସୁମୂର୍ତ୍ତିଙ୍କ ଶିଳା କର ଜଣେ କଲା ।
ସେ ବାଳା । ହରପ୍ରାପ୍ତେ ସର୍ବହୃଦେ ।
ବ୍ୟାପି ଯିବା ଘେନି ଏକ ଭାବନା ଏ ମନମାନଙ୍କରେ ଉଦେ ॥ ୩୧
ପୂର୍ବେ ବନ୍ଧୁଥିଲେ ସ୍ୱଚ୍ଛ ମନ୍ମଥରୂପ ପୁଣି ରଘୁବଂଶେ ଜାତ ।
ଯହୁଁ ବଡ଼ ନାହିଁ ବ୍ରହ୍ମାଣ୍ଡେ ଏ ଘେନି ରାଘବ ନାମ ବହତ ।
ସେ ପ୍ରଭୁ । ଚରଣେ ଶରଣ ପଶି ।
ଭଞ୍ଜ ଉପେନ୍ଦ୍ର ଭଞ୍ଜ ବୀରବର ଯେ ଗୀତ ବନ୍ଧାନେ ବସି ॥ ୩୨

---

ଅତ ଏବ ସେ ବାକ୍ୟ ବଚନରେ ପଶୁକୁ ବଶ ଓ ପାଷାଣକୁ ତରଳ କରୁଥିବ ସେ ସ୍ୱରକୁ ଏମନ୍ତ ବୋଲନ୍ତାଇ କିନ୍ତୁ ଏହା ବଡ଼ କଥା ନୁହେ କାରଣ ସେହ୍ନ ପଶୁ ( ମୃଗ ) ଅଖେଟ ( ପାରଧି ) ଘଣ୍ଟି ନାଦରେ ବଶହୁଏ । ସେହ୍ନପାଷାଣ ( ଚନ୍ଦ୍ରକାନ୍ତ ମଣି ) ଚନ୍ଦ୍ର ଦର୍ଶନରେ ତରଳ ହୁଏ ।

୩୦—ବାଳା ବଚନରେ ପଦ ବ୍ୟକ୍ତ (ସ୍ପଷ୍ଟ) କିନ୍ତୁ ପିକେ ପଦ ଅବ୍ୟକ୍ତ (ଅସ୍ପଷ୍ଟ) ପିକ ବସନ୍ତରେ ଭାଷନ୍ତେ ଉଦ୍ଦୀପନକାରୀ ହେବାରୁ ତାଙ୍କୁ ଲୋକେ ପ୍ରଶଂସା କରନ୍ତି; କିନ୍ତୁ ସେ ରାମାର ସ୍ୱରକୁ କେହ୍ନ ଈଶ୍ୱର ( ଶିବ ) ଶୁଣି ଭ୍ରାନ୍ତୀଭୂତହୋଇ ପାଷାଣ ଶରୀର ବହ୍ନ ଶମ୍ଭୁ ବୋଲାଇଲେ ।

୩୧—ପୁରାଣରେ ଅଛୁ ଯେ ରାମଚନ୍ଦ୍ରଙ୍କ ପଦସ୍ପର୍ଶ ବସ୍ତୁ ଶିଳାରୂପା ଅହଲ୍ୟା ସୁମୂର୍ତ୍ତି ( ରୂପବତୀ ) ହେଲା । ଏବେ ଜଣେ ରାମା ପଦ ( ବାକ୍ୟ ) ବଶରୁ ସୁମୂର୍ତ୍ତିଙ୍କ ( ସୁନ୍ଦର ଶିବ ମୂର୍ତ୍ତିକୁ ) ଶିଳାକର କଲା । ସେ ବାଳା ହରପ୍ରାପ୍ତ ସର୍ବ ହୃଦୟରେ ବ୍ୟାପିଯିବାରୁ ମନ ମାନଙ୍କରେ ଏ ଏକଭାବନା ଉଦେ ହେଲା ।

୩୨—ଯେ ପୂର୍ବେ ସ୍ୱଚ୍ଛ ମନ୍ମଥରୂପ ବନ୍ଧୁଥିଲେ ପୁଣି ରଘୁବଂଶରେ ଜାତ, ଯାହାଙ୍କ ଠାରୁ ବ୍ରହ୍ମାଣ୍ଡରେ ବଡ଼ନାହିଁ, ଏ ଘେନି ଯେ ରାଘବ ନାମରେ ଖ୍ୟାତ, ସେ ପ୍ରଭୁ ଚରଣେ ଶରଣ ପଶି ବୀରବର କବି ଉପେନ୍ଦ୍ରଭଞ୍ଜ ଗୀତ ବନ୍ଧାନରେ ବସିଲେ ।

# ଏକତ୍ରିଂଶ ଛାନ୍ଦ

ରାଗ—ଚିନ୍ତାକେରାଡ଼ି



ଶ୍ୱାନନ୍ଦ ରାଜଶେଖରୀ ଶେଖରୀଦ୍ୱାର ଅଜିରରେ ମିଳି ଟଏ ।
ଦେଖିଲେ ଲେଖିଲେନେକେ ନୃପତିଏ ବାଟବ କନ୍ଦଳୀ-କେଳି ଯେ
ହୋଇଛି । ଅଙ୍ଗ- ତରଙ୍ଗରେ ଝଳି ଯେ ।
ସ୍ୱର୍ଣ୍ଣଜରକସ ନୀଳପାଟବସ୍ତ୍ର କନ୍ଦଳୀ ଯେମନ୍ତ ଚଳି ଯେ ॥ ୧
ଦଶେ ଦଶେ ଦଶେ ଖେଳେ କି ଚାରୁଲୀଜଡ଼ିତ ତଡ଼ିତ ସ୍ୱଚ୍ଛେ ଯେ ।
ନୀଳ ନିର୍ମଳ ଜଳଧରଖଣ୍ଡେ କି ଗୋଡ଼ାଇଛି ପଛେ ପଛେ ଯେ ।
ମାନସ । ଏସନ ଉପମା ଇଚ୍ଛେ ଯେ ।
ଲୋଭିତକରୁଛି ଶୋଭିତ ହୋଇଛି ଲୋମଚକ୍ର କାନ୍ତି ପୁଚ୍ଛେ ଯେ ॥ ୨
ନିକଟ ଦୂର ପ୍ରକଟ ଦରଶନ ସେ ମୃଗ କ୍ଷଣକେ ଦେଲା ଯେ ।
ଦ୍ୱିବିଧ ନଦରନଳୀ ଆଦରକୁ ସମସ୍ତ ଈକ୍ଷଣ ନେଲା ଯେ ।
ଆତୁର । ଅନିମେଷ ଉପୁଜିଲା ଯେ ।
ଚମ୍ପାନରବର ଯେ ପାର ଗୃମର ଛେଦ ଏକାଳେ ବୋଇଲା ଯେ ॥ ୩

---

୧—ନୃପତିଏ ( ରାଜାମାନେ ) ବିଶ୍ୱାନନ୍ଦ ରାଜଶେଖରୀ ( ରାଜଶ୍ରେଷ୍ଠଙ୍କ ) ଶେଖରୀ ଦ୍ୱାର ( ସିଂହଦ୍ୱାର ) ଅଜିରରେ ( ଅଗଣାରେ ) ମିଳି ବାଟବ କନ୍ଦଳୀ ( ଅଶ୍ଚର୍ଯ ମୃଗର ) କେଳି ( କ୍ରୀଡ଼ା ) ନେକେ ଦେଖିଲେ ଓ ଲେଖିଲେ । ଏହାର ଅଙ୍ଗ ତରଙ୍ଗ ( ଦେହଶୃଙ୍ଖଳା ) ଏପରି ଝଳି ହୋଇଛି ଯେ ଯେମନ୍ତ ସ୍ୱର୍ଣ୍ଣଜର କସ ( ସୁବର୍ଣ୍ଣ ଜରି ଯୁକ୍ତ ) ନୀଳପାଟ ବସ୍ତ୍ର କନ୍ଦଳୀ ( ନୀଳପାଟ ବସ୍ତ୍ରର ପତାକା ) ଚଳଇ ।

୨—ଲୋମ ଚକ୍ରଯୁକ୍ତ ଏବଂ ପୁଚ୍ଛେ ଶୋଭିତ ହୋଇଥିବା ସେହି ଅଶ୍ଚର୍ଯ ମୃଗର କାନ୍ତି ମାନସକୁ ଲୋଭିତ କରୁଛି ଓ ଏସନ ଉପମାକୁ ଇଚ୍ଛା କରୁଛି ଯେ ଚାରୁଲୀ ଜଡ଼ିତ ସ୍ୱଚ୍ଛ ତଡ଼ିତ ( ବିଜୁଳି ) ଦଶେ ୨ ଦଶେ ଓ ଖେଳେ କି ? ତା ପଛେ ପଛେ ଖଣ୍ଡେ ନୀଳବର୍ଣ୍ଣ ନିର୍ମଳ ଜଳଧର ଗୋଡ଼ାଇଛି କି ? ଲୋମଚକ୍ର ଚାରୁବଳୀ କାନ୍ତି ବିଜୁଳି ପୁଚ୍ଛ ମେଘ ଖଣ୍ଡପରି ।

୩—ସେ ମୃଗ କ୍ଷଣ କ୍ଷଣକେ ନିକଟରେ ଓ ଦୂରରେ ପ୍ରକଟ ହୋଇ ଦର୍ଶନ ଦେଲା, ଅର୍ଥାତ୍ ଅତି ବେଗହେତୁ ସେହିକ୍ଷଣି ଦୂରରେ ସେହିକ୍ଷଣି ନିକଟରେଦେଖାଗଲା । ଏଣୁ ସମସ୍ତଙ୍କର ଈକ୍ଷଣ ( ଚକ୍ଷୁ ) ଦ୍ୱିବିଧ ନଦରନଳୀ ଆଦରକୁ ( ନିକଟରେ ଓ ଦୂରରେ ଦେଖାଯିବା ଦର୍ଶନ ଯନ୍ତ୍ରର ମର୍ଯ୍ୟାଦାକୁ ) ନେଲା । ଆତୁର ମଧ୍ୟ ଅନିମେଷ ( ପଲକ ନପଡ଼ିବା ) ଉପୁଜିଲା, ପଲକ

ବାଜୀ ଗତ ଜାଣି ଚମତ୍ରୀ ଭ୍ରମଣି ଦେଖି ଅପ୍ରଦର୍ପ ହର ଯେ ।
ବାଜୀ ଗତ ପର ତୁରଙ୍ଗ ଧପଟ ଲମ୍ପଟ ବଶେ ଅଦର ଯେ ।
ରାଜନେ । ଜଣେ ଜଣେ ହୋଇ ଭର ଯେ ।
ବାଜୀ ନ ପାଇ ପାଇବ ବାଜୀ କାହିଁ, ବାଜୀ ପଛ ପଙ୍ଗୁ ପର ଯେ ॥ ୪
ହୃଦୟତଟ ଗ୍ରାସେ ହ୍ରୀ-ସରିତ ବୃଦ୍ଧି ହେଲା ସ୍ୱେଦଜଳ ଯେ ।
ଦୀନ ହେବାରେ ମ୍ଳାନ ହେଲା ତତ୍ପର ମୁଖବିଧୁ ମହୋଜ୍ଜ୍ୱଳ ଯେ ।
ତାଙ୍କର । ଅଯଶ-ରାହୁ କବଳ ଯେ ।
ହାସ-ପୀୟୂଷକୁ ପାନ କରଦେଇ ସନ୍ଧିକାଳ ହୋଇ ମେଳ ଯେ ॥ ୫
ଉଚ୍ଚେ ଭଣେ ଜନ ବାହୁଜେ ସୁବର୍ଣ୍ଣ ବଳବାନେ ଊଣା ଘେନ ଯେ ।
ଏ ଜୀବ ବଧାତା-ବଣିକ ଧର୍ମଟି କଷକୁ କେଉଣ୍ଡ ଭଜନ ଯେ ।
ନୋହିଲେ । ବୋଇଲେ ଭଲ ସର୍ଜନ ହେ ।
ହେମ-ସାରଙ୍ଗର ଲୀଳା ଅଷ୍ଟାକ୍ଷର ଗୃହଗ୍ରାମେ ମୁନରଞ୍ଜନ ହେ ॥ ୬

---

ପଡ଼ିଲା ନାହିଁ । ଏକାଳେ ଚମ୍ପା ନରବର ( ରାଜା ) ଯେ ପାଇ ମୃଗଶୃଙ୍ଗର ଛେଦନ କର ବୋଲି ବୋଇଲେ ।

୪—ରାଜାମାନେ ଚମତ୍ରୀ ମୃଗର ଭ୍ରମଣି କୁ ଦେଖି ବାଜୀ ଉର୍ଦ୍ଧ୍ୱର ଗତ ଜାଣି ( ମନେ କରି ) ଅପ୍ରଦର୍ପ ( ଗର୍ବ ) ହରିଲେ ( ଗ୍ଲାନିଲେ ) କେତେ କେତେ ରାଜାମାନେ ଲମ୍ପଟବଶେ ( ଲମ୍ପଟହେବାରୁ ) ଜଣେ ଜଣେ ହୋଇ ଭର ବାଜୀରଗତପର ତୁରଙ୍ଗ ଧପଟକୁ ଅଦରିଲେ ( ବେଗରେ ଘୋଡ଼ା ଚପଟାଇଲେ ) କିନ୍ତୁ ଯାହାକୁ ବାଜୀ ( ଶର ) ପାଇ ନାହିଁ ତାକୁ ବାଜୀ ( ଘୋଡ଼ା ) କାହିଁ ପାଇବ । ସୁତରାଂ ଅଶ୍ୱାରୋହୀ ରାଜାମାନେ ମୃଗପଛରେ ବାଜୀ ( ଘୋଡ଼ା ) ପଛରେ ଦୌଡ଼ିବା ପଙ୍ଗୁପର ହେଲେ ।

୫—ସେହି ରାଜାମାନଙ୍କର ହ୍ରୀସରିତ ( ଲଜ୍ଜାରୂପନଦୀ ) ହୃଦୟତଟ ଗ୍ରାସରେ ସ୍ୱେଦଜଳ ( ଝାଳ ) ରୂପେ ବୃଦ୍ଧିହେଲା । ସେମାନେ ଦୀନ ( ଦୁଃଖିତ ) ହେବାରୁ ମହୋଜ୍ଜ୍ୱଳ ମୁଖବିଧୁ ( ମୁଖଚନ୍ଦ୍ର ) ତତ୍ପର (ଶୀଘ୍ର) ମ୍ଳାନ ( ନିସ୍ତେଜ ) ହେଲା । ସନ୍ଧିକାଳ ( ପୂର୍ଣ୍ଣିମା ଓ ପ୍ରତିପଦର ମଧ୍ୟବର୍ତ୍ତୀ ଗ୍ରହଣକାଳ ) ରେ ଅଯଶରୂପ ରାହୁମେଳ ହୋଇ ତାଙ୍କର ମୁଖଚନ୍ଦ୍ରକୁ କବଳ ( ଗ୍ରାସ ) କରିବା ଦ୍ୱାରା ହାସରୂପ ପୀୟୂଷ ( ଅମୃତକୁ ) ପାନକରି ଦେଲେ ।

୬—ଜନମାନେ ଉଚ୍ଚରେ ଭଣିଲେ—ବାହୁଜେ (କ୍ଷତ୍ରିୟମାନେ ) ସୁବର୍ଣ୍ଣ ଏମାନେ ବଳବାନେ ( ସୁବର୍ଣ୍ଣଠେକ ସ୍ୱରୂପ କ୍ଷତ୍ରିୟବଳରେ ) ଊଣାହେଲେ ଏହା ଘେନ । ତେଣୁ ଏ ଜୀବ (ମୃଗ) ବଧାତା—ବଣିକର କଷ୍ଟିପଥର ହେଲା ଏଥିରେ କଷକୁ ( ପରୀକ୍ଷିତ ହେବାକୁ ) ଏମାନେ ଭଜନ ନୋହିଲେ, ପୁଣି ବୋଇଲେ ବଧାତା ଏ ହେମ ସାରଙ୍ଗ ( ସୁବର୍ଣ୍ଣମୃଗର ) ଭଲ ଲୀଳା ସର୍ଜନ

ଆଦ୍ୟ ପ୍ରାନ୍ତ ତେଜ ନୃପଜ ମୁଖକୁ ଚାହିଁ ମନ୍ତ୍ରୀଜ ଉଚ୍ଚାରେ ଯେ ।
ଦ୍ୱିତୀୟ ସପ୍ତମ ଉଦୟ ହୃଦୟ କୁରଙ୍ଗ କମ୍ପ ପ୍ରଚାରେ ଯେ ।
ତିନି ଛ । କ୍ଷତ୍ରିୟେ ହେବା ବିଚାରେ ଯେ ।
କୁମାର ପଦରୁ ଜାଣି ମଧ୍ୟପଦ ତୁରଙ୍ଗ ତହିଁ ଆଦରେ ଯେ ॥ ୭
ଅଗ୍ରେ ଲକ୍ଷି ନୋହି ବାତବାହନ ବାହ ବିଶିଖ ସନ୍ଧାନୁ ଯେ ।
କୁମର ଚାମର ଖଣ୍ଡି ମଣ୍ଡି କରେ ଯମୁନା ଜାତ ନଳନୁ ଯେ ॥
ଅଦ୍ଭୁତୁଁ । ଅଦ୍ଭୁତ ଲକ୍ଷ୍ୟ ବିଧାନ ଯେ ।
ଶୂନ୍ୟ ପଡ଼ିଲା ଜଡ଼ିଲା ପାରିଜାତମାଳା ଗଳାରେ ବହନ ଯେ ॥
ବନ୍ଦୀ ବନ୍ଦନା କଲେ କୀର୍ତ୍ତି କରକ ଟେକି ଏ କି ରାମରାଜେ ଯେ ।
କ୍ଷତ୍ରିୟ ଗର୍ବ ମର୍ଦ୍ଦନ ରାମାକାମେ ଚାମର ଛେଦ ନାରାଜେ ଯେ ।
ଅତ୍ୟନ୍ତ । ଶୁଭ ରୁଚିରେତ ସାଜେ ଯେ ।
ଦେଖ ବକ୍ର ଭୁଷା ଏ ବାଣୀରେ ହେଲେ ଭୁଞ୍ଜତେ ହାସୀ ସହଜେ ଯେ ॥ ୯

---

କରିଛି । ଏହି ଅଷ୍ଟାକ୍ଷର ( ହେମ ସାରଙ୍ଗର ଲୀଳା ) ଚାରିଭାଗରେ ସୁରଞ୍ଜନ ହେଲା ଅର୍ଥାତ୍ ଆର ପାଦରେ ଏହି ଆଠ ଅକ୍ଷର ଚାରିଭାଗରେ ( ହେଲ, ମଲ ସାର, ରଙ୍ଗ ) ଅର୍ଥ କରା ଯାଇଛି ।

୭—ମନ୍ତ୍ରୀ ଜ ( ମନ୍ତ୍ରୀପୁତ୍ର ) ନୃପକୁମାର ପୁଷ୍ପକେତୁର ମୁଖକୁ ଚାହିଁ ଉଚ୍ଚାରିଲା ହେମ ସାରଙ୍ଗର ଲୀଳା, ଏହି ଅଷ୍ଟାକ୍ଷରର ଆଦ୍ୟ ପ୍ରାନ୍ତ (ହେଲ) କୁ ତେଜ ଏମନ୍ତ ବୋଲନ୍ତେ ଦ୍ୱିତୀୟ ସପ୍ତମ ଅକ୍ଷର ( ମଲ ) ଏହି ଚାରିର କୁରଙ୍ଗର ହୃଦୟରେ ଉଦିତ ହୋଇ କମ୍ପକୁ ପ୍ରଚାରିଲା । କୁମାର ପୁଷ୍ପ-କେତୁ କ୍ଷତ୍ରିୟମାନଙ୍କ ମଧ୍ୟରେ ତିନି, ଛ, ଅକ୍ଷର ( ସାର ) ହେବାକୁ ବିଚାରି ଘୋଡ଼ାକୁ ଚାଳିବାରୁ ତୁରଙ୍ଗ ( ଅଶ୍ୱ ) ପଦଚାଳନ ଭଙ୍ଗିରୁ ତା ଅଭିପ୍ରାୟ ଜାଣି ମଧ୍ୟପଦ ( ରଙ୍ଗ = କପଟ କ୍ରୀଡ଼ାକୁ ) ଆଦରିଲା ।

୮—ବାତ ବାହନ ( ମୃଗ ) ଏବଂ ବାହ ( ଘୋଟକ ) ଏ ଦୁହିଙ୍କର ଚକ୍ଷ ଅଗ୍ରରେ ଲକ୍ଷି ( ଲକ୍ଷ୍ୟ କରି ) ନୋହିଲା, ବିଶିଖ ( ଶର ) ସନ୍ଧାନରୁ କୁମାର ଚାମର ଖଣ୍ଡି କରେ ମଣ୍ଡିଲା, ସେ ନଳନୁଁ ( ପଦ୍ମରୁ ) ଯମୁନାଜାତ ହେଲପରି ଦିଶିଲା । ଏ ଲକ୍ଷ୍ୟବିଧାନ ଅଦ୍ଭୁତୁଁ ଅଦ୍ଭୁତ ( ଅତି-ଆଶ୍ଚର୍ଯ୍ୟ ) ହେଲା । ଏହି ସମୟରେ ପାରିଜାତ ମାଳା ଶୂନ୍ୟ ପଡ଼ିଲା, ଓ ବୀର ଗଳାରେ ବହନ ଜଡ଼ିଲା । ହସ୍ତ ପଦ୍ମଧରି-ମୃଗଚାମର ଯମୁନା ପରି ।

୯—ବନ୍ଦୀମାନେ କରକ ( ଗୋଟିଏ କର ) ଟେକି କୀର୍ତ୍ତି ବନ୍ଦନା କଲେ—ଏ କି ରାମରାଜା ? କାରଣ ରାମଚନ୍ଦ୍ର ରାମା କାମେ ( ସ୍ତ୍ରୀ କାମନାରେ ) ଶିବ ଧନୁ ଭାଙ୍ଗି କ୍ଷତ୍ରିୟମାନଙ୍କର ଗର୍ବ ମର୍ଦ୍ଦନ ଏବଂ ନାରାଜେ ( ଶରରେ ) ମାରିଚର

ମାଳବେଶ ମାଳବେଶ ତପ କରି ଯିବା ଅର୍ଥେ ମନ କଲେ ଯେ ।
ଗୌଡ଼ର ଗତ ଗୌଡ଼ପାତ ଅରମ୍ଭିଲା ଦଳ ସବର୍ଣ୍ଣତ୍ୱ ଥିଲା ଯେ ।
ହସ୍ତୀର । ପ୍ରକାର ହସ୍ତିନାପତି ଯେ ।
ଦଗ୍ଧୀଭୂତେ ସୁବାସିଂହ ବାହନରେ ଦରୀରେ ଲୁଚିବା ମତି ଯେ ॥ ୧୦
ନ ଦେଇ ଉତ୍ତର ଉତ୍ତରକୋଶଳ ନରେଶ ସନ୍ଧୁର ଗତ ଯେ ।
ମଲ୍ଲର-ଧବ ମଲ୍ଲର ପିଣ୍ଡ ଭାବ ନିରେଖି ଅଶ୍ରୁତ୍ର କୃତ ଯେ ।
ସିନ୍ଧୁପ । ସିନ୍ଧୁରେ ଭାସିବ ମତ ଯେ ।
ମହେଶ୍ୱରୀ ରାଜା ମାହେଶ୍ୱରୀ ପୂଜା ବ୍ୟର୍ଥ ଭାବିଲ ଚିତ୍ତ ଯେ ॥ ୧୧
ମନ୍ଥ ସେ ଦଣ୍ଡ ମଥୁରା-ଭୂପ ଦର୍ପ କ୍ଷୀର ଘୃତ ଗଲା ବହି ଯେ ।
ବେପଥୁ ଅନେ ନ ଗଲା କାଶୀଶ୍ୱର ବେପଥୁ ପୂରିତ ଦେହୀ ଯେ ।
କୁଣ୍ଡୀଶ । ଚଣ୍ଡୀଶ କି କଲେ କହି ଯେ ।
କୁନ୍ତଳା-ନାଥର କୁନ୍ତଳ ଫିଟିଲା ବନ୍ଧା ଅବକାଶ ନାହିଁ ଯେ ॥ ୧୨

---

ଗୁମର ଛେଦିଲା ପରି ଏ ନାୟକେ ମୃତ ଗୁମର ଛେଦ ଷଣ୍ଢସ୍ୱମାନଙ୍କର ଗର୍ବ ମର୍ଦ୍ଦନ କଲେ । ପୁଣି ଦେଖ ଏ ଇନ୍ଦ୍ର, ଇନ୍ଦ୍ରଙ୍କର ବଜ୍ରଭୂଷା (ବଜ୍ର-ଭୂଷଣ) ଅତ୍ୟନ୍ତ ସ୍ଫୁରିତ ରୁଚିରେ (ଅଗ୍ନିବଦୀପ୍ତିରେ) ସାଜେ (ଶୋଭା-ପାଏ), ଏହାଙ୍କର ବଜ୍ରଭୂଷା (ହୀରକଭୂଷଣ) ଅତ୍ୟନ୍ତ ସ୍ଫୁରିତ ରୁଚିରେ (ଶୁଭ୍ରଜ୍ୟୋତିରେ) ସାଜେ, ବଜ୍ର ପତନରେ ଭୂଭୃତେ (ପର୍ବତମାନେ) ନାଶୀ (ମୃତ) ହେଲାପରି ଭଟ୍ଟ ମାନଙ୍କର ଏ ବାଣୀରେ ଭୂଭୃତେ (ରାଜା-ମାନେ) ସହଜେ ନାଶୀ (ମୃତ) ହେଲେ ।

୧୦—ମାଳବ ଦେଶର ରାଜା ମାଳାରେ ବେଶ (ଭୂଷିତ) ହୋଇ ତପସ୍ୟା କରି-ବାକୁ ଯିବାପାଇଁ ମନ କଲା । ଗୌଡ଼ଦେଶର ପତି (ରାଜା) ର, ଦଳ, ଦଳ ଦୁଇବର୍ଣ୍ଣ ସବର୍ଣ୍ଣତ୍ୱ (ସାଦୃଶ୍ୟ) ଥିବାରୁ ଗୌଡ଼ର ପରି ଗତ (ଯିବାକୁ) ଆରମ୍ଭ କଲା । ହସ୍ତିନାପତି ହାତୀପରି ସ୍ୱବା (ପୃଷ୍ଠକେତୁର) ବାହନରେ ଦଗ୍ଧୀଭୂତ (ମୃତ) ହୋଇ ଦରୀରେ (ପର୍ବତ ଗୁହାରେ) ଲୁଚିବାକୁ ମତି କଲା ।

୧୧—ଉତ୍ତର କୋଶଳର ନରେଶ (ରାଜା) ଉତ୍ତର ନ ଦେଇ ସନ୍ଧୁର (ଶତ୍ରୁ) ଗୃହଗଲା । ମଲ୍ଲରଧବ (ମଲ୍ଲାରଦେଶ ରାଜାର) ପିଣ୍ଡ (ଶରୀରକୁ) ମଲ୍ଲର (ମୃତକଳେବର) ଭାବପରି ନିରେଖି ଲୋକେ ଅଶ୍ରୁତ୍ର କୃତ (ଅଶ୍ରୁ-ପୂର୍ଣ୍ଣହେଲେ), ସିନ୍ଧୁପ (ସିନ୍ଧୁଦେଶ ରାଜା) ସିନ୍ଧୁରେ (ସମୁଦ୍ରରେ) ଭାସିବା ମତ ହେଲା, ମାହେଶ୍ୱରୀ ରାଜା ମାହେଶ୍ୱରୀ (ଦୁର୍ଗା) ଙ୍କର ପୂଜା ବ୍ୟର୍ଥ ହେଲା ବୋଲି ଚିତ୍ତରେ ଭାବିଲା ।

୧୨—ସେ ଲଙ୍କାରୂପ ମନ୍ଥନ ଦଣ୍ଡ ହୃଦୟକୁ ମନ୍ଥନ କରିବାରୁ କ୍ଷୀର ସଦୃଶ ମଥୁରା ଭୂପଙ୍କର ଦର୍ପ (ଗର୍ବ) ଘୃତପରି ବହିଗଲା । କାଶୀଶ୍ୱର ବେପଥୁ (କମ୍ପ)

କାଞ୍ଚିପତି ପାଞ୍ଚି ମହାର୍ଘୀ ଭାଷିବ ହସି କନ୍ୟାରତ୍ନ କାହିଁ ଯେ ।
ସେ ବାଣୀ ବାଣକୁ ପରନ୍ଧାଣକର ଅଢେଣି ଖୋଜିଲେ ନାହିଁ ଯେ ।
ମିଥିଲ । ରାଜାକୁ ମନ୍ତ୍ରିଲ ତହିଁ ଯେ ।
ଏ ଚନ୍ଦ୍ରା ମୁଁ ଯାଗ ଧର୍ମ କରି ଅଗ ଅସିଥିଲି କାହିଁ ପାଇଁ ଯେ । ୧୩
ଶଙ୍କାସନ-ଇନ ଶଙ୍କା ରାମନାମେ ମାରୀଚ ପରିରେ ସଞ୍ଚି ଯେ ।
ଶ୍ରୀନଗରେଶ୍ୱର ନଗରେ ନଗରେ ଶବର ଗତକ ରଚି ଯେ ।
ଉର୍ଜକୁ । ଜହ୍ନୁସ୍ୱିନୀପତି ମୁଞ୍ଚି ଯେ ।
ହୋଇଣ ଭ୍ରାନ୍ତକ ଗଣିକାଭ୍ରାନ୍ତଙ୍କ ମଧ୍ୟେ ମନ୍ଥପତି ଲୁଚି ଯେ ॥ ୧୪
ଋଷିନରେଶ ରୁଷିଲ ମହିଲା ପ୍ରାୟୁ ମହୀମୁଖେ ଯାଏ ଯେ ।
ବଜ୍ରପୁରନାଥ ପାଶେ ବଜ୍ରପାତ ହେଲା ପରି ମୋହ ପାଏ ଯେ ।
ନାସ୍ତ୍ରପୁ । ଷଟ୍‌ପଦ ଷଟ୍‌ପୁରରାୟେ ଯେ ।
କେତକୀ ଲକ୍ଷ୍ୟ ସଙ୍ଗ ଲେଉଡ଼ି ବାହୁଡ଼ି ଉଡ଼ି ପଳାଇଲା ପ୍ରାୟେ ଯେ ॥ ୧୫

---

ପୂର୍ଣ୍ଣଦେହୀ ହେବାରୁ ( ଥରବାରୁ ) ବାପଥ ଅନେ (ଅବାଟ ଭନ୍ଦୁବାଟରେ) ଗଲା ନାହିଁ, କୁଣ୍ଡୀଶ ( କୁଣ୍ଡିଦେଶରାଜା ) ଚଣ୍ଡୀଶ ( ଶିବ ) ଙ୍କ କଟଲ ବୋଲି କହିଲା, କୁନ୍ତଳଦେଶ ରାଜାଙ୍କର କୁନ୍ତଳ ( କେଶ ) ଫଟିଲା, କାନ୍ଧ-ବାକୁ ଅବକାଶ ମିଳିଲା ନାହିଁ ।

୧୩—କାଞ୍ଚିପତି ପାଞ୍ଚିଲେ—ମହାର୍ଘୀ ( ପାଟରାଣୀ ) ହସି ଭାଷିବ—କନ୍ୟାରତ୍ନ କାହିଁ ? ସେ ବାଣୀରୂପ ବାଣକୁ ( ରୁ ) ପରନ୍ଧାଣ କରିବ ଏପରି ଅଢେଣି ଖୋଜିଲେ କାହୁଁ ଦେଖାଗଲା ନାହିଁ । ତହୁଁ ମିଥିଳା ରାଜାକୁ ଏ ଚନ୍ଦ୍ରା ମନ୍ତ୍ରିଲ—ମୁଁ ଯାଗଧର୍ମ କରି ଅଗ କାହିଁପାଇଁ ଅସିଥିଲି ।

୧୪—ମାରୀଚ ରାମନାମରେ ଭୟ କଲାପରି କୋଶଳ ଦେଶର ଇନ ( ରାଜା ) ଶଙ୍କା ସଞ୍ଚିଲ ( ହୃଦୟରେ ଭୟକୁ ଧରିଲ ) ଶ୍ରୀନଗରେଶ୍ୱର ( କାଶ୍ମୀର ରାଜା) ନଗରେ ନଗରେ (ପର୍ବତେ ପର୍ବତେ) ଶବର ପରି ଗତକ ରଚିଲେ । ଜହ୍ନୁସ୍ୱିନୀପତି ଭ୍ରାନ୍ତକ ହୋଇଣ ଉର୍ଜକୁ ( ଉତ୍ସାହକୁ ) ମୁଞ୍ଚିଲେ ମନ୍ଥପତି ଗଣିକ ଭ୍ରାନ୍ତଙ୍କ ( ବେଶ୍ୟାସ୍ତ୍ରୀମାନଙ୍କ ) ମଧ୍ୟରେ ଲୁଚିଲେ ।

୧୫—ଋଷି ନରେଶ ( ମିଥିଳାଧିପତି ) ରୁଷିଲା ମହିଳା ( କାମିନୀ ) ପ୍ରାୟୁ ମହୀମୁଖେ ଯାଏ ( ତଳକୁ ମୁହଁ ପୋତି ପଳାଇଲେ ) । ବଜ୍ରପୁର ନାଥ ପାଶରେ ବଜ୍ରପାତ ହେବା ମୋହକୁ ପାଇଲେ । ଷଟ୍‌ପଦ ( ଭ୍ରମର ) କେତକୀ ସଙ୍ଗ ଲେଉଡ଼ି ହତାଶ ହୋଇ ଉଡ଼ି ପଳାଇଲା ପରି ଷଟ୍‌ପୁର ରାଜା କେତକୀ ଲକ୍ଷ୍ୟ ସୁନ୍ଦରୀର ସଙ୍ଗଲେଉଡ଼ି ମୃଗପୁଚ୍ଛ ଛେଦନରେ ଅସମର୍ଥ ହୋଇ ବାହୁଡ଼ି ପଳାଇଲା ।

ନେପାଳପାଳ କପାଳେ ହସ୍ତମାରି ଗଲା ପୁର ପର୍ଯ୍ୟନ୍ତେ ଯେ ।
କେରଳଈଶ କେରଳ ଦେଶ ଧରି ଯାଇ ନ ପାରେ ଭ୍ରମତେ ଯେ ।
ଉତ୍କଳ । ରାଜାହିଁ ଉତ୍କଟ ହତେ ଯେ ।
ଅଧିକ ନୃପେ ଏରୂପେ ଦର୍ପଧିକ ସାମାନ୍ୟ କହିବା କେତେ ଯେ ॥ ୧୬
ଲଗୁଡ଼ ପ୍ରହାରେ ଗୋଗୋଷ୍ଠ ସମାନେ ଅପମାନେ ପଳାଇଲେ ଯେ ।
ଝଟିତ କୁଜ୍ଝଟି ପ୍ରକଟିଲା ପରି ରେଣୁ ଅନ୍ଧକାରେ ହେଲେ ଯେ ।
ଏଣୁ କେ । କାହା ମୁଖ ନ ଗୃହିଁଲେ ଯେ ।
ବ୍ରୀଡ଼ା-ପୀଡ଼ା କ୍ରୀଡ଼ା ଅଧିକେ ନୋହିଲା ପ୍ରଳୟେ ଅନ୍ତ ପାଇଲେ ଯେ ॥ ୧୭
ସୁମନ-ଧନୁ ଶରେ ଶୋଭା ପ୍ରକାଶ ପ୍ରଭା ଶିଖୀପରେ ପୁଣି ଯେ ।
କୁମାରଙ୍କୁ ମାର କରଣ ସମସ୍ତେ ଏମନ୍ତ ଚିତ୍ତରେ ଗୁଣି ଯେ ।
ମାଳିନୀ । ନୃପତି ଅଦରେ ଅଣି ଯେ ।
ନେଲା ବୀର କରୁଁ ଗୃମର ସଚିବ ପ୍ରଯାବଣ ବେଣୀପାଣି ଯେ ॥ ୧୮

---

୧୬—ନେପାଳ ପାଳ ( ନେପାଳ ରାଜା ) କପାଳେ ହସ୍ତମାରି ନିଜପୁର ପର୍ଯ୍ୟନ୍ତ ଗଲା । କେରଳ ଈଶ କେରଳ ( କେଳା ) ଦେଶଧରି ଭ୍ରମିତ ଯାଇ ନ ପାରେ । ଉତ୍କଳ ରାଜା ଉତ୍କଟ ( ଗର୍ବ ) ହତ ହୋଇ ଫେରିଗଲେ । ଏରୂପେ ଅଧିକ ରାଜାମାନେ ଦର୍ପହତ ହେଲେ । ସାମାନ୍ୟ ରାଜାମାନଙ୍କ କଥା ଅଉ କେତେ କହିବା ।

୧୭—ଲଗୁଡ଼ (ଠେଙ୍ଗା) ପ୍ରହାରରେ ଗୋ ଗୋଷ୍ଠ ( ଗୋରୁପଲ ) ସମାନ ରାଜାମାନେ ଅପମାନରେ ପଳାଇଗଲେ । ଝଟିତ (ଶୀଘ୍ର) କୁଜ୍ଝଟି ( କୁହୁଡ଼ି ) ପରି ରେଣୁ ( ଧୂଳି ) ପ୍ରକଟିଲାରୁ ଅନ୍ଧକାର ହେଲା । ଏଣୁ କେହି କାହାର ମୁଖ ଗୃହିଁଲେ ନାହିଁ । ବ୍ରୀଡ଼ା ପୀଡ଼ା (ଲଜ୍ଜାବାଧା) ର କ୍ରୀଡ଼ା (ଲୀଳା) ଅଧିକ ନୋହିଲା, କାରଣ ପ୍ରଳୟରେ ( ପ୍ରଳୟ ସଦୃଶ ହୁହୁଡ଼ରେ ) ଅନ୍ତ, ( ପାର ) ପାଇଲେ ।

୧୮—ସୁମନ (ପାରିଜାତ ପୁଷ୍ପ) ର ଧନୁଶରରେ ଶୋଭାକୁ ପୁଣି, ଶିଖୀ (ଘୋଟକ) ପରେ ପ୍ରଭାକୁ ପ୍ରକାଶ କରିବାରୁ ସମସ୍ତେ କୁମାରଙ୍କୁ ( ପୁଷ୍ପକେତୁଙ୍କୁ ) ସୁମନ ଧନୁଶରେ ( ଫୁଲଧନୁରେ ) ଶୋଭା ପ୍ରକାଶିବାରୁ ମାର ( କନ୍ଦର୍ପ ) ଏବଂ ଶିଖୀପରେ ( ମୟୂର ଉପରେ ) ପ୍ରଭା ପ୍ରକାଶିବାରୁ କୁମାର ( କାର୍ତ୍ତିକେୟ ) କରି ଚିତ୍ତରେ ଗୁଣିଲେ । ତାଙ୍କୁ ମାଳିନୀ ନୃପତି ( ଚମ୍ପାପୁର-ରାଜା ) ଆଦର କରି ଆଣିଲେ, ସଚିବ (ମନ୍ତ୍ରୀ) ବେଣୀପାଣି ( ବୁଦ୍ଧିହସ୍ତ) ପ୍ରଯାବଣ ସେ ବୀର କରୁ ଗୃମର ନେଲା ।

ବାଜନ୍ତି ଅସଂଖ୍ୟ ଶଙ୍ଖ ମଧୁରୀ ଯେ ମାଧୁରୀ ମଙ୍ଗଳରାଗେ ଯେ ।
ଅନ୍ତଃପୁରକୁ ପୁରୋଧା ସଇରନ୍ଧ୍ରୀ ହସ୍ତେ ଦେଇଁ ନେଲା ବେଗେ ଯେ ।
ସେ ପଞ୍ଚ-। ମହୁଷୀ ଭୋଗିନୀ ବର୍ଗେ ଯେ ।
ଦେଖାଇ ବୋଇଲା ହେଲା ବରବର ବରବରନାକୁ ଯୋଗେ ଯେ ॥ ୧୯
ବାଳା ଶତଦଳ ଦଳନ-ନୟନ ଦଉ ଥାଇ ଅସିବାରେ ଯେ।
ଗୃମର ପ୍ରବେଶ ଏ ଶବ୍ଦେ ନିବେଶ ନିବେଶେ ଶ୍ରୁତି ସଧୀରେ ଯେ ।
ମନରେ । ଭରେ ଏ କାମେ କାଶୀରେ ଯେ ।
ବିତଥ ନୋହେ ଦେଇ କେତେ କୀଟବ କି ସ୍ତବ କରୁଛୁ ହରେ ଯେ ॥ ୨୦
ଦିବସ ଶେଷ ଯାମିନୀ ପରବେଶ ତମୋନୁଦ ତମ ହର ଯେ ।
ଏକାଳେ କୁମାର ବିଶ୍ୱାନନ୍ଦ ନୃପ ସଙ୍ଗେ ସଭା ଶୋଭା କର ଯେ ।
ଦେଖନ୍ତି । ପ୍ରମଦା ପୁରୁଷ ପୂରି ଯେ ।
ଚତ୍ୱରେ ସତ୍ୱରେ ବାରବାମାବାର ନର୍ତ୍ତିକା ନୃତ୍ୟ ପ୍ରଚୁର ଯେ ॥ ୨୧

---

୧୯—ଅସଂଖ୍ୟ ଶଙ୍ଖ ଓ ମଧୁରୀ ( ମହୁରୀ ) ମାଧୁରୀ ମଙ୍ଗଳ ରାଗରେ ବାଜନ୍ତି । ପୁରୋଧା ମୃଗପୁଚ୍ଛକୁ ସୈରନ୍ଧ୍ରୀ ( ପର ଗୃହ ସ୍ଥିତା ଶିଳ୍ପ କାରିଣି ) ହସ୍ତେ ଅନ୍ତଃପୁରକୁ ଦେଇଁ ସେ ବେଗେ ନେଲା । ପଞ୍ଚମହୁଷୀ ( ପାଟରାଣୀ ) ଭୋଗିନୀ ବର୍ଗେ ( ଅନ୍ୟାନ୍ୟ ରାଣୀ ମାନଙ୍କୁ ) ତାକୁ ଦେଖାଇ ବୋଇଲା ବର ବର୍ଣ୍ଣନା ( ସୁନ୍ଦରୀକୁ ) ବର ବର ( ଶ୍ରେଷ୍ଠବର ) ଯୋଗରେ ହେଲା ।

୨୦—ବାଳା ଶତଦଳ-ଦଳନ-ନୟନ ( ପଦ୍ମକଳିତ ନେତ୍ରକୁ ) ଥାଇ ଅସିବାରେ ଦଉକରିଥିଲା । ଗୃମର ପ୍ରବେଶହେଲା ଏ ଶବ୍ଦରେ ନିବେଶ (ମନୋଯୋଗ) ଦେଇ ଶ୍ରୁତି ( କର୍ଣ୍ଣକୁ ) ସଧୀରେ ନିବେଶ ( ଅର୍ପଣ ) କଲା । ମନରେ ଭରେ ବିତଥ ( ମିଥ୍ୟା ) ନୁହେ, ମୁଁ ଏ କାମେ ( କାମନାରେ ) କାଶୀରେ ହରେ ( ଶିବଙ୍କୁ ) କେତେ କୀଟବ ( ଧୂ ସ୍ତବ ପୁଷ୍ପ ) ଦେଇ ସ୍ତବ କରିଛି କି ।

୨୧—ଦିବସ ଶେଷହେଲା ଯାମିନୀ ( ରାତି ) ପ୍ରବେଶ ହେଲା, ତମୋନୁଦ (ପ୍ରଦୀପ) ଚନ୍ଦ୍ରପ୍ରଭୃତି ତମକୁ ହରଣ କଲେ । ଏ କାଳେ କୁମାର ବିଶ୍ୱାନନ୍ଦ ନୃପଙ୍କ ସଙ୍ଗରେ ସଭାର ଶୋଭା ବିଧାନ କଲେ । ପ୍ରମଦା ( ସ୍ତ୍ରୀ ) ଓ ପୁରୁଷମାନେ ପୂର୍ଣ୍ଣହୋଇ ଦେଖନ୍ତି । ନର୍ତ୍ତିକା ବାରବାମା ବାର ( ବେଶ୍ୟା ସମୂହ ) ଚତ୍ୱରେ (ଅଗଣାରେ) ସତ୍ୱରେ ନୃତ୍ୟ ପ୍ରଚୁରକଲେ ।

କିବା ସେ ମେନା ଉର୍ବଶୀ ତିଳୋତ୍ତମା ରମ୍ଭାଦି ମଣ୍ଡେ ଅବନୀ ଯେ ।
ମର୍ଦ୍ଦଳ ସ୍ୱନକୁ ବହୁଳ ଜନକୁ ବନ୍ଧୁ କରି ନିଶ୍ଚେ ମାନି ଯେ ।
ହେଲା ସେ । ମହା ଉଦ୍ଦୀପନସ୍ଥାନୀ ଯେ ।
ଗାୟକେ କି ମୂର୍ତ୍ତିମନ୍ତ ହାହା ହୁହୁ ହାହା କରି ସର୍ବେ ସେନି ଯେ । ୧୨
ସେ କି କଇଳାସ ତାଳରେ ପ୍ରକାଶ ଅଦଯତ ମନ ମୋହୁ ଯେ ।
ଶୋଭନୀ ସାରୀ ସିଦ୍ଧ ମଠାଲିଙ୍ଗନ ଜନଙ୍ଗମା ରୂପକହିଁ ଯେ ।
ନିପ୍ରଷ୍ଠା । ଏକତାଳୀ ଯୁକ୍ତ ଯାହିଁ ଯେ ।
ସରିମାନ ଉତ୍ତୁଙ୍ଗ ଶିବ ବଚନରେ ତେବସ୍ରୀ ପ୍ରକଟ ଯହିଁ ଯେ । ୧୩
ବସତ ସିଂହନନ୍ଦନ ପ୍ରଷି ନଳକୁବର ବିଳାସ କହୁଁ ଯେ ।
ନାନ୍ଦୀ ମୁଖରେ ଶ୍ଲୋକ ବଖାଣରେ ଲଘୁ ଗୁରୁ ସ୍ପୃଶନ୍ତି ଯେ ।
ନିମାଦ । ଦ୍ରୁତରେ ବିରାମ ଅଛି ଯେ ।
ନବଗ୍ରାମ ପଞ୍ଚ ତତ୍ତ୍ୱ ଅଷ୍ଟକଳା ଚନ୍ଦ୍ରବିମ୍ବ ପ୍ରକାଶୁଛି ଯେ । ୧୪

---

—ସେହି ନର୍ତ୍ତକୀ ବେଶ୍ୟାମାନଙ୍କୁ ଦେଖି ମନେ ହେଲା ମେନକା ଉର୍ବଶୀ ତିଳୋତ୍ତମା ଓ ରମ୍ଭା ପ୍ରଭୃତି ସ୍ୱର୍ଗର ଅପ୍ସରାମାନେ ଅବନୀ ( ପୃଥିବୀକୁ ) ମଣ୍ଡନ କଲେ କି ? ମର୍ଦ୍ଦଳସ୍ୱନକୁ ବହୁଳ ଜନକୁ ( ମର୍ଦ୍ଦଳ ବଜାଉଥିବା ଲୋକଙ୍କୁ ) ସମସ୍ତେ ନିଶ୍ଚେ ବନ୍ଧୁ ( ବନ୍ଧୁତା ) କରି ମାନିଲେ । ସେ ସ୍ଥାନ ମହାଉଦ୍ଦୀପନ ସ୍ଥଳୀ ହେଲା । ଗାୟକମାନେ କଣ ମୂର୍ତ୍ତିମନ୍ତ ( ଦେହଧାରୀ ) ହାହା ହୁହୁ ନାମକ ହାହା ( ଗନ୍ଧର୍ବ ) ବୋଲି ମନରେ ସେନିଲେ ।

—ସେ ସଙ୍ଗୀତ ସ୍ଥଳ କୈଳାସ କି ? କୈଳାସ ତାଳରୂପରେ ପ୍ରକାଶିତ, ଅଦଯତ ( ଗଣେଶଙ୍କ ) ମନକୁ ମୋହିତ କରିଲ ଶୋଭନୀ ( ସୁନ୍ଦରୀ ) ସାରୀ ମାନେ ସିଦ୍ଧ ମଠାଲିଙ୍ଗନ ( ତପସ୍ୱୀମାନଙ୍କ ଆଶ୍ରମରେ ରହି ) ଜନ-ଙ୍ଗମାରୂପ ( ଜନ ହରଣ କରିବାର ) ବାଦ୍ୟ କରୁଥାନ୍ତି । ଯାହିଁ ନିପ୍ରଷ୍ଠା ( ଶ୍ରେଷ୍ଠ ଅଳଙ୍କାର ) ଏବଂ ତାଳୀ ଶବ୍ଦରେ ଏକତ୍ର ଯୁକ୍ତ ହୋଇଥାନ୍ତି । ଯହିଁ ଗୌରୀଙ୍କର ଉତ୍ତୁଙ୍ଗ ( ଅନ୍ଧକା, ମାନ ) ଶିବଙ୍କ ଗୃହ ବଚନରେ ସଖି ( ହରଦେବୀ ) ତ ଆପ୍ରକଟ ହୋଇଥାଏ ସଙ୍ଗୀତ ସ୍ଥଳ ତାଳରେ ପ୍ରକାଶିତ ମୃଦଙ୍ଗ ଅଦ ଓ ଯତତାଳ ମନକୁ ମୋହିତ କରୁଛି, ନିସାରୀ ତାଳ ଶୋଭା ( ଶୋଭିତ ) ହୋଇଛି, ଙ୍ଗମା ଏବଂ ରୂପକ ତାଳ ଜନରମ୍ୟ ହେଉଛି । ତାହିଁ ନିପ୍ରଷ୍ଠ ଏକତାଳୀ ସରିମାନ ଓ ଉତ୍ତୁଙ୍ଗ ଧନ୍ଦତାଳ ଯୁକ୍ତ ହୋଇଛି ଯହିଁ ଗୌରୀବଦନରେ ଶିବ ( ମଙ୍ଗଳ ) ବଚନ ପ୍ରକାଶ କରିବାରେ ଏ ଦୁଇ ତାଳ ପ୍ରକଟ ହୋଇଛି ।

୧୪—କୈଳାସରେ ସିଂହ ଏବଂ ନନ୍ଦନ ( କାର୍ତ୍ତିକେୟ ) ବସତ ହୋଇଥାନ୍ତି, ପ୍ରଷି ନଳକୁବର ( କୁବେର ପୁତ୍ର ) ବିଳାସ ( କ୍ରୀଡ଼ାକୁ ) କରନ୍ତି, ତତ୍ସ୍ତ୍ରି-

କା ଅଯୋଧ୍ୟା ରାମ ଲକ୍ଷ୍ମଣ ବହେ ସେ ବାଦକକୁଳେ ଅଗମ୍ୟ ଯେ ।
ଶୁଦ୍ଧ ସାଲଗ ଗ୍ରସ୍ତା ଲଗ ବଧିରେ ସୁନ୍ଦର ନିଦାନ ଧାମ ଯେ ।
ଆହତ । ନାହାତ କେତନେ କ୍ଷମ ଯେ ।
ମେଦନୀ-ନନ୍ଦନୀ ପାବନୀ ଦୀପନୀ-ତାରାବଳୀ ଯୁକ୍ତେ ରମ୍ୟ ଯେ ॥ ୨୫

ମାନେ ଶିବଙ୍କୁ ନାନ୍ଦୀ ପ୍ରମୁଖରେ (ବନ୍ଦନାରମ୍ଭରେ) ଶ୍ଳୋକଗାନ ବ୍ୟାଖ୍ୟାତ କରିବାରେ ଲଘୁ ଓ ଗୁରୁସ୍ୱର ଉପୁଜାଇ, ତହିଁରେ ବିମାନ (ମୂର୍ଚ୍ଛିତ) ଦ୍ରୁତ (ଚଞ୍ଚଳ) ଓ ବିରାମ (ବିଶ୍ରାମ) ମଧ୍ୟ ଥାଏ । ଏଠାରେ ପୁଣି ଏ ଏକତାଳ ମଧ୍ୟରୁ ସିଂହ ନନ୍ଦନ ତାଳ ବାଦିତ ହୋଇଛି । କେହି ନଳକୁବର (ଫୁଙ୍କା ବାଦ୍ୟ) ବଜାଇ ବିଳାସକୁ ଇଚ୍ଛା କରୁଥାନ୍ତି, ଗାୟକମାନେ ନାନ୍ଦୀ ପ୍ରମୁଖରେ (ନାନ୍ଦୀତାଳପ୍ରାରମ୍ଭରେ) ଶ୍ଳୋକ (ଗୀତ ପ୍ରବନ୍ଧର) ବ୍ୟାଖ୍ୟାତରେ (ପ୍ରସିଦ୍ଧି ଦେଖାଇବାରେ) ତାଳର ଲଘୁ ଗୁରୁ ଉପୁଜୁଛି । ତହିଁରେ ତାଳ ଏବଂ ସ୍ୱରର ବିମାନ (ଅତିଦୀର୍ଘ) ଓ ଦ୍ରୁତ (ଚଞ୍ଚଳ) ପରେ ବିରାମ (ବିଶ୍ରାମ) ଅଛି । ପୁଣି ସେ ସ୍ଥାନ ନଭ (ଆକାଶ) ପ୍ରାୟ ହୋଇଛି, ଆକାଶ ପଞ୍ଚ ଷଷ୍ଠ ଅଷ୍ଟକଳାପୂର୍ଣ୍ଣ ଚନ୍ଦ୍ର ବିମ୍ବକୁ ପ୍ରକାଶ କରିଥାଏ, ଏଠାରେ ଚନ୍ଦ୍ରବିମ୍ବ (ଝାଞ୍ଜବାଦନ) ତାଳଦ୍ୱାରା ପଞ୍ଚ, ଷଷ୍ଠ, ଅଷ୍ଟତାଳକୁ ପ୍ରକାଶ କରୁଛି ।

୨୫—ସେ ସ୍ଥଳ ଅଯୋଧ୍ୟା କି ? ଅଯୋଧ୍ୟା ରାମ ଲକ୍ଷ୍ମଣଙ୍କୁ ବହଇ, ଶୁଦ୍ଧ (ଶୁଦ୍ଧ) ସାଲଗସ୍ଥାପ୍ୟା (ଅକାଶସ୍ପର୍ଶୀ ପ୍ରାଚୀର ଦ୍ୱାରରେ) ବାଦକ ବଳେ (ବାଦମାନଙ୍କର) ଅଗମ୍ୟ, ସୁତରାଂ ବଧିରେ ଲ-ଗ (ଶତ୍ରୁର ଗମନରେ) ସୁନ୍ଦର (ଅତଦ୍ରୂପ) ହୁଅଇ, ତହିଁ ନିଦାନ (ଇକ୍ଷ୍ୱାକୁବଂଶୀୟ ରାଜାମାନଙ୍କର) ଧାମ (ବାସସ୍ଥାନ) ଏବଂ ତହିଁ ଦୀପନୀ (ପ୍ରଭାବତୀ) ପାବନୀ (ପବିତ୍ର କାରିଣୀ) ମେଦନୀନନ୍ଦନୀ (ସୀତା) ତାରାବଳୀ (ମୁକ୍ତାହାର) ଯୁକ୍ତରେ ରମ୍ୟ ହୋଇଥାନ୍ତି । ଏଠାରେ ସଙ୍ଗୀତ ଦେହେଁ ରାମ (ମନୋହର) ଲକ୍ଷଣମାନଙ୍କୁ ବହଇ ତାହା ଅନ୍ୟ ବାଦକକୁଳେ ଅଗମ୍ୟ (ଅଗୋଚର) ଶୁଦ୍ଧ, ସାଲଗ, ଗ୍ରସ୍ତା, ଲଗ, ଏବଂ ସୁଡ଼ ପ୍ରଭୃତି ଛନ୍ଦଲକ୍ଷଣର ନିଦାନ (ମୂଳ କାରଣ) ପ୍ରକାଶ ହେବାର ଧାମ (ସ୍ଥାନ) ହୋଇଛି, ଆହତ ନାହତ (ଲିତ ଏବଂ ଅଲିତ) କେତନେ (ଶବ୍ଦରେ) କ୍ଷମ ହୋଇ ମେଦନୀ, ନନ୍ଦନୀ, ପାବନୀ, ଦୀପନୀ, ତାରାବଳୀ ପ୍ରଭୃତି ଲକ୍ଷଣ ଯୁକ୍ତରେ ରମ୍ୟ ହୋଇଛି ।

ତାର ମନ୍ଦର ଘୋର ଗ୍ରାମସାରରେ ପୁଷ୍ଟି ଇନ୍ଦ୍ରପ୍ରସ୍ଥ ସମ ଯେ ।
ନିଷାଦ ଋଷଭ ପ୍ରଗୁର ସେବତ ଅଟଇ ଗାନ୍ଧାର ମଧ୍ୟମ ଯେ ।
ଷଡ଼ଜ । ମୁଖରବତ ପଞ୍ଚମ ଯେ ।
ମଞ୍ଜୁ ଶଶିକଳା ଶଶିପଦା ଧ୍ରୁବପଦା ପଞ୍ଚାଳୀ ସଙ୍ଗମ ଯେ ॥ ୧୬
ମଥୁରା ବେଷ୍ଟନ କାଳ ଲକ୍ଷ୍ୟ ଧରେ ସାବଶ୍ୟ ଦୁର୍ବସ୍ତ୍ର ଖ୍ୟାତ ଯେ ।
ଗୋପୀବର କୃଷ୍ଣ ସ୍ଥିତ ଯେ ନାୟକ ନାୟକ ଉଚ୍ଛନ୍ନକୃତ ଯେ ।
ସମସ୍ତ । ଚତୁର ବଧୂ ବହୁତ ଯେ ।
ଲମ୍ବିକା ଅଙ୍ଗେ ତରଙ୍ଗ ବର୍ତ୍ତିସ୍ୱାକ ବନ୍ଧୁ ସବୃତ ସବତ ଯେ ॥ ୧୭

---

୧୬—ତାର ( ମର୍ଦ୍ଦଳାଦି ବାଦ୍ୟସ୍ୱର ) ମନ୍ଦର ( ମନ୍ଦ୍ର—ମୃଦଙ୍ଗାଦିର ଗମ୍ଭୀର ଧ୍ୱନିର ) ଘୋର ଗ୍ରାମ ସାରରେ ( ସ୍ୱରଗ୍ରାମର ପ୍ରାଧାନ୍ୟରେ ) ପୁଷ୍ଟି ଇନ୍ଦ୍ରପ୍ରସ୍ଥପରି ହୋଇଅଛି, ସେଠାରେ ଋଷଭ ( ବୃଷଭ-ଧର୍ମ—ଯୁଧିଷ୍ଠିର ) ନିଷାଦ ( ଶୃଗାଳ—ଦାରୁଣ—ଭୀମ ) ସେବିତ ( ଆଶ୍ରିତ ) ଅଟେ । ଗାନ୍ଧାରାଦି ସ୍ୱର ଯାହାଙ୍କର ଏପରି ଯେ ମଧ୍ୟମ ପାଣ୍ଡବ ( ଅର୍ଜ୍ଜୁନ ) ଷଡ଼ଜ ( କାର୍ତ୍ତିକେୟ—କୁମାର—ନକୁଳ ) ଏବଂ ମୁଖ ରବତ ( ମୁଖ ରବେନ୍ଦ୍ର—ମୁଖୀ—ସଗୁର୍ଦ୍ଧି—ପଞ୍ଚମ ପାଣ୍ଡବ ସହଦେବ ) ପ୍ରଗୁର ( ପ୍ରକାଶ ) ହୋଇ ଥାନ୍ତି ଏବଂ ଶଶିକଳା, ଶଶିପଦା, ଧ୍ରୁବପଦା ପ୍ରଭୃତି ସଖୀ ସଙ୍ଗମ ( ସହିତରେ ) ପାଞ୍ଚାଳୀ ( ଦ୍ରୌପଦୀ ) ମଞ୍ଜୁ ( ମନୋହର ) ହୋଇଥାନ୍ତି । ଏଠାରେ ନିଷାଦ, ଋଷଭ, ଗାନ୍ଧାର, ମଧ୍ୟମ, ଷଡ଼୍ଜ, ଧୈବତ ଏବଂ ପଞ୍ଚମସ୍ୱର ପ୍ରଗୁର ( ପ୍ରକାଶ ରୂପେ ) ସେବିତ ( ବ୍ୟବହୃତ ) ହେଉଅଛି ଏବଂ ମଞ୍ଜୁ ( ମନୋହର ) ଶଶିକଳା, ଶଶିପଦା, ଧ୍ରୁବପଦା, ଓ ପାଞ୍ଚାଳୀ ଆଦି ଛନ୍ଦର ସଙ୍ଗମ ହୋଇଅଛି ।

୧୭—ବେଷ୍ଟନ କାଳ ( ହସ୍ତିନାପୁର ସମୟ ) ମଥୁରା ଲକ୍ଷ୍ୟକୁ ଧରନ୍ତି, ସେଠାରେ ଗୋପୀବର ଶ୍ରୀକୃଷ୍ଣ ନାୟକରୂପେ ସ୍ଥିତ ହୋଇ ଖ୍ୟାତ ହୋଇଥିବା ( ସାବଶ୍ୟ ( ପାପୀ କଂସକୁ ) ଏବଂ ଦୁର୍ବହୁଦେଶୀୟ ଦୈତ୍ୟମାନଙ୍କୁ ଉଚ୍ଛନ୍ନକୃତ ( ଧ୍ୱଂସ ) କରିଥିଲେ ) ଏବଂ ନାୟିକା ମାନଙ୍କୁ ଉଚ୍ଛନ୍ନ ( ଚେକ ) କରିଥିଲେ । ଏଠାରେ ସାବଶ୍ୟ ଦୁର୍ବସ୍ତ୍ର ସର୍ବେଣୀ ଖ୍ୟାତ ହୋଇଛି, ଗୋପଲୀଳାରେ ଗୋପୀବର କୃଷ୍ଣ ନାୟକରୂପେ ସ୍ଥିତ ହୋଇଛନ୍ତି, ସେ ନାଟ ସାଧାରଣୀୟା ନାୟିକାମାନଙ୍କୁ ଉଚ୍ଛନ୍ନ ( ଆନନ୍ଦବିହ୍ୱଳ ) କରୁଛନ୍ତି । ସମସ୍ତ ( ସ୍ଥଳରେ ) ଚତୁର ବଧୂ ( ଗୃହପ୍ରକାର ନୃତ୍ୟଗୀତାଦି ) ବହୁତ ହୋଇଛି । ଲମ୍ବିକା ( ନୃତ୍ୟକାରୀ ) ଅଙ୍ଗରେ ତରଙ୍ଗ ( ଗୃହଲୀ ) ଏବଂ ବର୍ତ୍ତିସ୍ୱର ବନ୍ଧୁବାରୁ ସବୃତ ( ନବା ) ସର ହୋଇଛି ।

ରାଗଜନନ୍ତି ଦନାନ୍ତ କରି ଋତୁମଣ୍ଡରେ ଅତି ପ୍ରଧାନେ ଯେ ।
ବସନ୍ତ ବିଖ୍ୟାତ ସୋମ ପ୍ରମୋଦିତ ଉତ୍‌ଫୁଲ୍ଲ ହୋଇ ସୁମନେ ଯେ ।
କେଦାର । ପୂରିତ ରସରେ ଘନେ ଯେ ।
ଭୈରବ ଧଣ ପ୍ରକାଶ କଳହଂସ ମାନସ ଭେଦ ଜବନେ ଯେ ॥ ୨୮

ଅଗେ ପ୍ରସରିବା ଅପସରିବା କି ପୁଷ୍ପବଲ୍ଲୀ ଚଳେ ବାଟେ ଯେ ।
ଅଳକା ଅଳିଅଳି କି ପାନ ଲୋଭେ କମ୍ପେ ସ୍ୱେଦ-ମଧୁ ଜାତେ ଯେ ।
କରୀ କି । ସେ ହସ୍ତକୁ ଉତ୍ତୋଳିତେ ଯେ ।
ସହରିବାରେ ଧଇର୍ଯପଙ୍କଜକୁ ଉପାଡ଼ି ନେବାର ମତେ ଯେ ॥ ୨୯

---

୨୮—ରାଗଜନନ୍ତି (ରାଗମାନ ଜାତ ହେବାନ୍ତି) ଦନାନ୍ତ (ସନ୍ଧ୍ୟା) କରି ଘେନୁଥାଇ —ସନ୍ଧ୍ୟା ରାଗ ( ବକ୍ରମାକୁ ) ଜାତ କରେ । ପୁଣି ଋତୁ ମଣ୍ଡରେ (ଷଡ଼ଋତୁ ପରି ) ପ୍ରଧାନ ହୋଇଛି, ଷଡ଼ଋତୁ ବସନ୍ତକୁ ବିଖ୍ୟାତକରେ, ଗ୍ରୀଷ୍ମରେ ସୋମ (ଚନ୍ଦ୍ର ) ଦ୍ୱାରା ପ୍ରମୋଦିତ ( ଅନନ୍ଦିତ ) କରାଏ, ବର୍ଷାରେ ମାଳତୀ କି ଉତ୍‌ଫୁଲ୍ଲ କରାଏ । ଶରଦରେ କେଦାର ( କିଆରୀମାନଙ୍କୁ ) ରସରେ ( ଜଳରେ ) ଘନେ ( ନିବଡ଼ରୂପେ ) ପୂର୍ଣ୍ଣକରେ, ହେମନ୍ତରେ କୁହୁଡ଼ି ଦ୍ୱାରା ଧଣ ( ଧନମାନଙ୍କୁ ) ଭୈରବ ( ଭୟଙ୍କରରୂପେ ) ପ୍ରକାଶଇ ଏବଂ ଶୀତରେ କଳହଂସ ( ହଂସମାନଙ୍କୁ ) ଜବନେ ( ଶୀଘ୍ର ) ମାନସ ଭେଦୀ ( ମାନସ ସରୋବରର ତ୍ୟାଗୀ ) କରାଏ । ସଙ୍ଗୀତସ୍ଥଳରେ ବସନ୍ତରାଗ ବିଖ୍ୟାତ ହୋଇଛି, ସୋମରାଗ ପ୍ରମୋଦିତ କରୁଛି, କେଦାର ରାଗ ଘନେ ( ବାଦ୍ୟ ମଧ୍ୟମନ୍ଦ୍ୟ ସହିତ) ରସରେ ପୂରିତ ହୋଇ ସୁମନେ ( ବିଦ୍ୱଜ୍ଜନମାନଙ୍କୁ) ଉତ୍‌ଫୁଲ୍ଲ କରାଉଛି । ଭୈରବ ଧଣ ( ରାଗ ) ପ୍ରକାଶ ହେଉଛି ଏବଂ କଳହଂସ ରାଗମାନଙ୍କ ଜବନରେ ( ଶୀଘ୍ର ) ଭେଦ ( ଭେଦକରୁଛି ) ।

୨୯—ନାୟିକାମାନେ ଅଗେ ପ୍ରସରି ଅପସରିବା ( ଅଗକୁ ଯାଇ ପଛକୁ ଫେରୁଥିବାରୁ ) ପୁଷ୍ପବଲ୍ଲୀ ( ପୁଷ୍ପଲତା ) ବାଟେ ଚଳଇକି ? ସେମାନଙ୍କର ଅଳକା ( ଚୂର୍ଣ୍ଣ କୁନ୍ତଳ ) ଅଳିଅଳି ( ଭ୍ରମର ଶ୍ରେଣୀ ), ମୁଖଚନ୍ଦ୍ରରେ ଜାତ ସ୍ୱେଦ (ଝାଳ) ମଧୁ, ତାହାଲୋଭେ ସେ ଭ୍ରମର ଶ୍ରେଣୀ କମ୍ପେ କି ? ପୁଣି ସେ କରୀ (ହସ୍ତୀ) କି ? ହସ୍ତୀର ଥୋଡହସ୍ତପରି ହସ୍ତକୁ ଉତ୍ତୋଳିତ ( ଉଠାଇ ) ସହରିବାରେ ( ସଙ୍କୋଚ କରିବାରେ ) ଧୈର୍ଯପଙ୍କଜକୁ ଉପାଡ଼ି ନେଲା ପରି ବୋଧ ହେଉଛି ।

ଶତ୍ରୁଙ୍କେ ତର୍ଜ୍ଜନୀ ଦେଇ ଠାବନ୍ତି କି ଏ ଓଷ୍ଠ ମଧୁର ଠାବ ଯେ ।
ମୁକୁଳିତ କା ତ ସାକ୍ଷାତ କରନ୍ତି ମୃଗନେତ୍ରେ ଦେଇ ଗାର ଯେ ।
କଟାକ୍ଷେ । ଲାବଣୀଲକ୍ଷ୍ମୀ ସମ୍ଭବ ଯେ ।
ରଙ୍ଗ-ଭଙ୍ଗୀ ଅଙ୍ଗୀକାରସାଗର ଯେ ଦୃଙ୍ଗର ବିବେକ-ନାବ ଯେ । ୩୦
ପଦାମ୍ବୁଜ ବେଗ ବେଗ ପ୍ରଚଳନେ ବାଜନ୍ତି ମଞ୍ଜୁ ମଞ୍ଜୀର ଯେ ।
ଦ୍ୱିରଦମନ୍ଦୁର ମନ୍ଥନ କର କି ଦେଉଛନ୍ତି ଗାରତୂର ଯେ ।
ନର୍ତ୍ତକୀ । ଲମ୍ପ କର ମୁନିଙ୍କର ଯେ ।
ଲୁଟି ହୋଇଅଛି ମାନ ବଡ଼ପଣ କୁରୁରାଜାଠାରୁ ଯାଇ ଯେ । ୩୧
ବାଦ୍ୟ ନ ଥାଇ ବାଜଣିଗ୍ର ପ୍ରକାଶ ଦେବ ଦେବୀରେ ପୂଜନ୍ତି ଯେ ।
ପୁଣି ଦ୍ୱିଜରାଜ ଜନକ ଦେଖାଇ ଦ୍ୱିଜ ଶତ୍ରୁକ ତୁଳ ଯେ ।
ସଭର । ସୂତ୍ରଧାର କରେ ଶ୍ୟାତ ଯେ ।
ଶ୍ଳେଷ ଶ୍ଳୋକରେ ଅଶେଷ ଆନନ୍ଦରେ ଅନୁସ୍ୱରବାରେ ରତ ଯେ । ୩୨

---

୩୦—ଶତ୍ରୁଙ୍କେ (ଓଷ୍ଠରେ) ତର୍ଜ୍ଜନୀ (ଶପଥାଙ୍ଗୁଳି) ଦେଇ ଏ ଓଷ୍ଠ ମଧୁ (ସୁଧାର) ଠାବ ବୋଲି ଠାବନ୍ତି କି ? ଓଷ୍ଠରୁ ଜାତ ହେବା ମୁକୁଳିତ (ମନ୍ଦହାସ) ମୃଗ ନେତ୍ରେ (ଜାମକୁ) ଗାର ଦେଇ ଓଷ୍ଠରେ ଅମୃତ ଥିବା କଥାକୁ ସାକ୍ଷାତ କରେ । ସେମାନେ ରଙ୍ଗ ଭଙ୍ଗି ଅଙ୍ଗୀକାର ସାଗର (ନବରସ ସମ୍ଭୂତ ଭଙ୍ଗ ମାନଙ୍କୁ ଅଙ୍ଗୀକାର କରିବା ବିଷୟରେ ସାଗର ସ୍ୱରୂପା) ହୋଇଥିବାରୁ କଟାକ୍ଷରେ (ଅଙ୍ଗଭଙ୍ଗୀରେ) ଲାବଣ୍ୟଲକ୍ଷ୍ମୀ (ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କ) ସମ୍ଭବ (ଜାତ) କରୁଛନ୍ତି, ଦର୍ଶକର ବିବେକରୂପ ନାବକୁ ଭାଙ୍ଗୁଛନ୍ତି ।

୩୧—ମଞ୍ଜୁ (ମନୋହର) ମଞ୍ଜୀର (ନୂପୁର) ବେଗ ବେଗ ପଦାମ୍ବୁଜପ୍ରଚଳନ କରିବାରୁ ବାଜନ୍ତି, ସେ ବାଦ୍ୟ ଦ୍ୱିରଦ (ହସ୍ତିମାନଙ୍କର) ମନ୍ଦୁର (ମଦଜମନକୁ) ମନ୍ଥନ କର ଗାର ତୂର ବାଦ୍ୟ ଦେଉଛନ୍ତି କି ? ଏହିପରି ପ୍ରତୀତ ହେଉଛି । ନର୍ତ୍ତକୀ ମାନଙ୍କର ଲମ୍ଫ (ତାଳାଦରେ ମନୋଜ୍ଞବେଶ) ମୁନିମାନଙ୍କର ଲମ୍ଫ (ଧ୍ୟାନକୁ) ହରି (ନେଉଛି), ଯାହାଙ୍କର ମାନ ଓ ବଡ଼ପଣ କୁରୁରାଜା (ଦୁର୍ଯ୍ୟୋଧନ ଠାରୁ) ଲୁଟି ହୋଇଛି ।

୩୨—ବାଦ୍ୟ ନ ଥାଇ ସେ ନର୍ତ୍ତକୀମାନେ ଅଭିନୟ ଦ୍ୱାରା ବାଜଣାକୁ ପ୍ରକାଶ କରୁଛନ୍ତି, ପୁଣି ଦେବ ଦେବୀଙ୍କ ପୂଜା କରୁଛନ୍ତି, ତଥା ଦ୍ୱିଜରାଜ (ବ୍ରହ୍ମଗୁରୁ) ଦ୍ୱିଜ ଶତ୍ରୁକ ଓ ସଭର (ମନୀତ୍ରାଗ) ଜନକକୁ ଦେଖାଇଲା ପରି ଏମାନେ ଅଭିନୟ ଦ୍ୱାରା ଦ୍ୱିଜରାଜ (ଚନ୍ଦ୍ର) ଶତ୍ରୁକ ଏବଂ ସଭରକୁ ଦେଖାଉଛନ୍ତି । ସୂତ୍ରଧାର (ନାଟ୍ୟକର୍ତ୍ତା) ଯେଉଁ ଶ୍ଳେଷ ଶ୍ଳୋକ ଖ୍ୟାତ କରୁଛନ୍ତି ତାହା ଶୁଣି ଅଶେଷ ଲୋକ ଆନନ୍ଦକୁ ଅନୁସ୍ୱରବାରେ ରତ ହୋଇଛନ୍ତି ।

ଗନ୍ଧର୍ବ କିନ୍ନର ନାଗ ନରଙ୍କର ସଙ୍ଗୀତ ପରମଧନ ଯେ ।
ମହା ଉତ୍ସବ ଯାହାକୁ ବୋଲି ସେହି ଲକ୍ଷଣ ହୋଇ ବର୍ଦ୍ଧନ ଯେ ।
ଲୋକେ । ସେ ସର୍ବ ଲୋକ ରଞ୍ଜନ ଯେ ।
ଶୁଣି ନ ଶୁଣି ଦେଖିଲି ନ ଦେଖିଲି ପରି ନୃପତିନନ୍ଦନ ଯେ ॥ ୩୩
ଯେଣୁ ଚମ୍ପାପତି ଦୁହିତା ଯେ ଶ୍ରୁତି ନେତ୍ରପଥେ ନୃତ୍ୟକାରୀ ଯେ ।
ସୁଚରିତା ଶୋଭାନିଧି ଗୁଣନିଧି ନିରୂପ ସ୍ୱରୂପଧାରୀ ଯେ ।
ସେ ପୁଣି । ଆଶା ଦେଖାଇ ଅଦ୍ଭୁତ ଯେ ।
କିଙ୍କିଣି ବାଦ୍ୟରେ ହାର ନାସାମଣି ବେଣୀନାଟେ ଅନୁସରି ଯେ ॥ ୩୪
ସଙ୍ଗୀତ ସଙ୍ଗୀତ ସାହିତ୍ୟ ସହିତ ପୂର୍ଣ୍ଣ ନିତମ୍ବିନୀ ବୋଲି ଯେ ।
ଏଣୁ ଭୂତରୁ ବର୍ତ୍ତମାନ ଭବିଷ୍ୟ ପର୍ଯ୍ୟନ୍ତେ ମୋହନ ସ୍ଥଳୀ ଯେ ।
ନୃପଜ । ସଦାଶିବ ହେବ ଭାଳି ଯେ ।
ସୁଶୀଳ ସୁମୂର୍ତ୍ତି ଧାତା କରିଥିଲେ ଛଳି କଲେ କି ତା ବାଳୀ ଯେ ॥ ୩୫

---

୩୩—ଗନ୍ଧର୍ବ, କିନ୍ନର, ନାଗ ଓ ନରଙ୍କର ସେ ସଙ୍ଗୀତ ପରମ ଧନ ହୋଇଛି ଯାହାକୁ ମହା ଉତ୍ସବ ବୋଲନ୍ତି ସେହି ସମସ୍ତ ମହା ଉତ୍ସବ ଲକ୍ଷଣବର୍ଦ୍ଧିତ ହୋଇଛି, ଲୋକେ ( ତାହାଦେଖି ) ସେ ସର୍ବଲୋକ ରଞ୍ଜନ ( ଆନନ୍ଦିତ ) ହେଉଛନ୍ତି । ନୃପତିନନ୍ଦନ ( ରାଜପୁତ୍ର ) ତାହା ଶୁଣି ନ ଶୁଣିଲା ପରି ଦେଖି ନ ଦେଖିଲାପରି ହେଲେ ।

୩୪-୩୫—ଯେଣୁ ଚମ୍ପା ନଗରୀ ପତିଙ୍କର ଦୁହିତା ଶ୍ରୁତି ( କର୍ଣ୍ଣ ) ଓ ନେତ୍ରପଥରେ ସର୍ବଦା ନୃତ୍ୟ କାରିଣୀ ହୋଇଥିଲେ, ଯେତିକି ସୁଚରିତା, ଶୋଭାନିଧି ଏବଂ ଗୁଣନିଧି ଏହି ନିରୂପ ସ୍ୱରୂପ ଧାରିଣୀ—ପୁଣି ସେ ଅଦ୍ଭୁତ ଆଶା ଦେଖାଇଲେ କିଙ୍କିଣି ବାଦ୍ୟକୁ ହାର, ନାସାମଣି ଓ ବେଣୀର ନାଟକୁ ଅନୁସରଣ କରି ସଙ୍ଗୀତ ( ଉତ୍ତମରୂପେ ଗୀତ ହେଉଥିବା ) ସଙ୍ଗୀତ ସାହିତ୍ୟରେ ସହିତ ( ଯୁକ୍ତ ) ବୋଲି ସେ ପୂର୍ଣ୍ଣ ନିତମ୍ବିନୀ ଭୂତରୁ ( ଅତୀତରୁ ) ବର୍ତ୍ତମାନ ଓ ଭବିଷ୍ୟତ ପର୍ଯ୍ୟନ୍ତ ମୋହନ ସ୍ଥଳୀ ହେଲେ, ଅର୍ଥାତ୍ ମୋହିତ କରିଛି, କରୁଛି, କରିବ ଏହି ଆଶା ଦେଖାଇଲେ । ଏପରି ସୁନ୍ଦରୀର ସଙ୍ଗ ଲାଭହେଲେ ମୋର ସଦା ( ତ୍ରିକାଳରେ ) ଶିବ ( ମଙ୍ଗଳ ) ହେବ ବୋଲି ନୃପଜ ଭାଳିଲେ ଧାତା ତାଙ୍କୁ ସୁଶୀଳା ( ସଚ୍ଚରିତା ) ଏବଂ ସୁମୂର୍ତ୍ତି ( ସୁନ୍ଦରୀ ) କରିଥିଲେ କିନ୍ତୁ ବାଳୀ ଛଳିକରି ତାର ( ସଦାଶିବଙ୍କର ସୁଶୀଳମୂର୍ତ୍ତି—ଶିଳ୍ପଙ୍କର ସୁନ୍ଦର ପ୍ରସ୍ତର ମୂର୍ତ୍ତି ) ଭଳି କି ? ରାଜପୁତ୍ର ଏହା ଭାବି ସ୍ତମ୍ଭୀଭୂତ ହୋଇଥିଲେ ।

ସେ ବାର ନୃତ୍ୟକାରୀରେ କଳ୍ପଦ୍ରୁମ ଗୁଣୀଗଣେ ରତ୍ନାକର ଯେ ।
ସ୍ତୁତ୍ୟେ ଲେଖକର ପଦବୀ ମାଗନ୍ତେ ନରସିଂହ ପରକାର ଯେ ।
ଚକ୍ଷୁଣି । ଢ଼ ମନ୍ତ୍ରେ ବନମଧୁର ଯେ ।
ପୁଷ୍କରବାସୀ ଅଣୋନିର୍ମଳକାନ୍ତି କଳାନିଧି ସାକ୍ଷାତର ଯେ ॥ ୬୨

ରାମ ଲକ୍ଷ୍ମଣ କୀର୍ତ୍ତିକ ହାରି ପିଚ୍ଛପଦ ନାମ ପଛେ ଦେଲ ଯେ ।
ଭକ୍ତେ ସେ ରାମ ଲକ୍ଷ୍ମଣ ଅନୁଚର ଚନ୍ଦ୍ରଫଳୀ ପରି ଦେଖି ଯେ ।
ସ୍ମରକ । ରୂପରୁଦ୍ର ଶାଳବର ଯେ ।
ଭବସ୍ତ୍ରବନାପ୍ର ଅନନ୍ତମୂର୍ତ୍ତିର ଧାରଣ ରୁଧେ ବଗୁର ଯେ । ୬୩

---

୬୨—ସେ ବାର ନୃତ୍ୟକାରୀମାନଙ୍କ ଦେବା ବିଷୟରେ କଳ୍ପଦ୍ରୁମ ପରି, ଗୁଣିଗଣ-ମାନଙ୍କ ପକ୍ଷରେ ରତ୍ନାକର ( ସମୁଦ୍ର ) ପରି, ଯେପରି ନରସିଂହ ସ୍ତୁତ୍ୟ ( ପ୍ରହ୍ଲାଦଙ୍କୁ ) ଲେଖ କର ( ଦେବେନ୍ଦ୍ର ) ପଦବୀକି ଦେଇଥିଲେ, ସ୍ତୁତ୍ୟ-ମାନଙ୍କର ପ୍ରାର୍ଥନା ପ୍ରକାରରେ ସେହିପରି । ସେ ଚକ୍ଷୁଣି ଢ଼ ? ଚକ୍ଷୁଣ ବନମଧୁର ଜଳ ମଧ୍ୟସ୍ଥ ମଧୁରକୁ ଦେଖିଥାନ୍ତି, ଏ ସେଠାରୁ ପାଇ ଉପବନ ମଧୁରକୁ ମନ୍ତ୍ରିକ, ପୃଷ୍ଠି ସାକ୍ଷାତ କଳାନିଧି ( ଚନ୍ଦ୍ର ) ଢ଼ ? ଚନ୍ଦ୍ର ପୁଷ୍କର ବାସୀ ( ଆକାଶବାସୀ ) ଅଣ ( ତାରାମାନଙ୍କର ) ନିର୍ମଳକାନ୍ତି, ଏ ପୁଷ୍କର ( ପଦ୍ମ ) ସକ୍ତ ବାସନାଯୁକ୍ତ ଅଣ ନିର୍ମଳକାନ୍ତି ( ପୂର୍ଣ୍ଣକାନ୍ତି ) ଏବଂ କଳାନିଧି ( ସମ୍ପଦ ସୌନ୍ଦର୍ଯ୍ୟ ଓ ନାନା କଳାଦିରେ ଯୁକ୍ତ )

୬୩—ଯେଉଁ ପ୍ରଭୁଙ୍କର କୀର୍ତ୍ତିକୁ ରାମଲକ୍ଷ୍ମଣ ( ଚନ୍ଦ୍ର ) ନିର୍ମଳତାରେ ହାରି ଯାଇ ତାଙ୍କ ନାମ ପଛରେ ନିଜର ପିଛ ପଦ ( ଚନ୍ଦ୍ର ) କୁ ଦେଇଛନ୍ତି ଅର୍ଥାତ ଯାହାଙ୍କର ନାମ ରାମଚନ୍ଦ୍ର ସେ ରାମଙ୍କ ଏବଂ ଚନ୍ଦ୍ରଫଳୀ ( ମେଘପର ) ଦେଖି ଲକ୍ଷ୍ମଣଙ୍କ ଜନେ ଅନୁଚର ଭଜନ୍ତି । ତାଙ୍କ ଶାର-ଦର ନରେନ୍ଦ୍ରଙ୍କ ସ୍ମରକ । ରୁଧେ ବଗୁର ସେ ରାମ ଭବ ସ୍ତ୍ରବନାପ୍ର ( ଶିବଙ୍କର ସ୍ତୁତନୀୟ ) ଏବଂ ସେ ଲକ୍ଷ୍ମଣ ଅନନ୍ତ ମୂର୍ତ୍ତି ଧାରଣ ( ଶେଷ ଦେବ ମୂର୍ତ୍ତି ଧାରୀ ) ଅଟନ୍ତି ।

# ଦ୍ୱାତ୍ରିଂଶ ଛାନ୍ଦ

ରାଗ—ନଳିନୀଗୌଡ଼ା



ସ୍ଥିର ତୋଷ ଏ ଗୁଚ୍ଛେ । ସଚିବଶ୍ରେଷ୍ଠ ସନ୍ନିଧେ ।
ବିଦ୍ୟା ବିଗୁରେ ପଣ୍ଡିତ । ବିଦ୍ୟାନିଧି ଯଶୋଚନ୍ଦ୍ର ଯେ । ୧

ଜ୍ୟୋତିବନ୍ତେ ଥିଲେ ବସି । ଜ୍ୟୋତିଷ ଏକାଳେ ଭାଷି ।
ଜାତ ରୂପାଙ୍ଗୀ ନୃପଜ । ଜାତକ ଗୁଣିବା ଆଜ ଯେ ॥ ୨
ବିଧାନ ବାଣୀ ମନ୍ତ୍ରିକେ । ବିଧାତା ଗୁଣିଅଛି ଯେ ।
ବିଶ୍ୱ ତିଥି ବିଗୁରିବା । ବିଶ୍ୱବସୁ ଅବା ଦିବା ଯେ ॥ ୩
ଗଣକ ଉକ୍ତି ଏ ବିଧି । ଗଣି ବୋଇଲେ ବିଦ୍ୟାନିଧି ।
ପୁଷ୍ପବିଶିଖ-ନନ୍ଦନ । ପୁଷ୍ପକେତୁ ଜନ୍ମଦିନ ଯେ ॥ ୪
ତପାଳିରେ ଯେଣୁ ପ୍ରାପ୍ତ । ତପା ମାସରେ ବିଦୀପ୍ତ ।
କୃଷ୍ଣ ଯାହା ହୃଦେ ପଥୀ । କୃଷ୍ଣପଞ୍ଚମୀ ଯେ ତିଥି ଯେ ॥ ୫
ଶତକାର କର୍ମକର୍ତ୍ତା । ଶତା ନକ୍ଷତ୍ର ବିଦିତା ।
କନ୍ୟକାଦି ରମା ମୋହୁ । କନ୍ୟଚନ୍ଦ୍ର ଖ୍ୟାତ ହୋଇ ଯେ ॥ ୬

---

୧।୨—ଏ ଛାନ୍ଦ ଗୁଚ୍ଛେ ( ଗୁଚ୍ଛରେ ) ତୋଷକୁ ସ୍ଥିର । ସଚିବ ଶ୍ରେଷ୍ଠ ( ପ୍ରଧାନ ମନ୍ତ୍ରୀ ), ବିଦ୍ୟାରେ ଏବଂ ବିଗୁରରେ ପଣ୍ଡିତ, ଯଶୋଚନ୍ଦ୍ର ବିଦ୍ୟାନିଧିଙ୍କ ନିକଟରେ ଜ୍ୟୋତିବନ୍ତେ ( ତେଜସ୍ୱୀ ପୁରୁଷମାନେ ) ବସିଥିଲେ । ଏ କାଳରେ ଜ୍ୟୋତିଷ ଭାଷିଲେ—ଆଜ ଜାତରୂପାଙ୍ଗୀ ( ସ୍ୱର୍ଣ୍ଣାଙ୍ଗୀ ) ନୃପ-କୁମାର ଜାତକ ଗୁଣିବା ।

୩।୪—ମନ୍ତ୍ରିକ ( ମନ୍ତ୍ରୀପୁତ୍ର ) ଏହି ବାଣୀ ବିଧାନ କଲେ ଯେ ବିଧାତା ଗୁଣିଅଛି, ଆଉ ଗୁଣିବାର ଅବଶ୍ୟକ ନାହିଁ । ଗଣକର ଉକ୍ତି ଏ ବିଧିରେ ହେଲା ଯେ ବିଶ୍ୱ ତିଥି ( ସୁତହିବୁକଯୋଗ ) ବିଶ୍ୱବସୁ ( ଗ୍ରହ ) ଅବା ଦିବାରେ ପଡ଼ୁଛି ଏହା ବିଗୁରିବା ବିଦ୍ୟାନିଧି ବୋଇଲେ, ତେବେ ପୁଷ୍ପବିଶିଖନନ୍ଦନ ( କାମଜାତ ସୁନ୍ଦର ) ପୁଷ୍ପକେତୁର ଜନ୍ମଦିନ ଗଣି ।

୫—ଯେଣୁ ସେ ତପାଳୀରେ ( ତପସ୍ୟା ସମ୍ବନ୍ଧରେ ) ପ୍ରାପ୍ତ ତେଣୁ ତପାମାସ ( ମାଘମାସରେ ) ବିଦୀପ୍ତ ( ପ୍ରକାଶିତ ) ଯାହାଙ୍କର ହୃଦୟରେ କୃଷ୍ଣ ପଥିକ, ତାଙ୍କର ଜନ୍ମ କୃଷ୍ଣପଞ୍ଚମୀ ତିଥିରେ ।

୬—ସେ ଶତକାର ( ଆଶ୍ଚର୍ଯ୍ୟ ଜନକ ) କର୍ମ କରୁଥିବାରୁ ତାହାଙ୍କର ଶତା ନକ୍ଷତ୍ର ବିଦିତ ହୋଇଅଛି । କନ୍ୟକାଦି ( ବାଳିକା ପ୍ରଭୃତି ) ରମା ( ରମଣୀମାନଙ୍କୁ ) ମୋହୁବାରୁ ତାହାଙ୍କର କନ୍ୟଚନ୍ଦ୍ର ଖ୍ୟାତ ହୋଇଛି ।

ମିଥୁନରେ ସଦା ରଙ୍ଗ । ମିଥୁନ ଲଗ୍ନ ବଦନ ।
ସିଂହ ଯବନିସ୍ଥରେ ଯହିଁ । ସିଂହରେ ତୁଙ୍ଗାସ୍ପେ ରାହୁ ଯେ ॥ ୭
ପଞ୍ଚତ୍ୱ କରେ ଯେ ଅରି । ପଞ୍ଚମେ ଭୁଲେ ଶନିର ।
ଗୁରୁ ଗୁଣ ଖ୍ୟାତ କରେ । ଗୁରୁ ସପ୍ତମେ ଧନୁରେ ଯେ ॥ ୮
ବୁଧସାର ଅଷ୍ଟମରେ । ବୁଧ ସବିତା ମକରେ ।
ମଙ୍ଗଳପ୍ରଦ ଯେ ଭୃତ୍ୟେ । ମଙ୍ଗଳ ଶୁକ୍ର ଏକତ୍ରେ ॥ ୯
ରହନ୍ତି ଦଶମେ ମୀନେ । ରହିବ ମୌନ ମନ୍ତ୍ରନେ ।
ଗୁଣିବର ପୁରୋହିତ । ଗୁଣି ଶତ୍ରୁ ହୁଏତ ॥ ୧୦
ବ୍ରହ୍ମା ହରପଙ୍କୁ କହୁ । ବ୍ରହ୍ମାଣ୍ଡ ଯେ ଖଣ୍ଡ ତହିଁ ।
ଭୂପମା ସମାନେ ଛୀର । ଉପଯୋଗ କର ଧୀର ଯେ ॥ ୧୧
ଦେବିଶାଖ ମନ୍ତ୍ରନେ ବାଳା । ଦେବିଶାଖରେ ଜନ୍ମ ହେବ ।
ପଞ୍ଚମୀ ତିଥି ଏ ବେଳ । ପଦ୍ମଭ ଗାବଦାନୀ ଯେ ॥ ୧୨

---

୭—ତାହାଙ୍କର ଚିତ୍ତ ସଦା ମିଥୁନରେ (ମିଳନରେ) ଥିବାରୁ ମିଥୁନ ଲଗ୍ନ ବଦନ ହୋଇଛି । ଅର୍ଥାତ୍ ବୁଧର ଗୃହ ନ ଏ ଲଗ୍ନହେଲେ ଶୁଭଗ୍ରହମାନେ ଉପଯୁକ୍ତ ହେଲେହିଁ ଶୁଭଫଳ ପ୍ରଦାନ କରନ୍ତି । ଯହିଁ ସିଂହ ଯବନିସ୍ଥରେ ବଦନ ବୁଧଲଗ୍ନ ଠାରୁ ତୃତୀୟ ସିଂହରେ ରାହୁ ରହିଅଛନ୍ତି । ସିଂହରେ ରାହୁ ତୁଙ୍ଗୀ, ସେ ସ୍ଥାନ ଲଗ୍ନର ତୃତୀୟ ହେବାରୁ ଧୈର୍ଯ୍ୟ, ବିକ୍ରମ, ସତ୍ୟ, ଶ୍ଳାଘା, ବିଦ୍ୟା ପ୍ରଭୃତି ନାନା ବିଷୟରେ ଉତ୍କୃଷ୍ଟ ଫଳଦାୟକ ଅଟେ ।

୮—ଶନିର (ଶନି) ବୁଧ ଲଗ୍ନ ଠାରୁ ଷଷ୍ଠମାଧିପ ଓ ନବମାଧିପ ହେବାରୁ ସେହି ଲଗ୍ନର ପଞ୍ଚମସ୍ଥଳରେ ଯୋଗକାରକ ରହିଲେ ଅରି (ଶତ୍ରୁମାନଙ୍କର) ପଞ୍ଚତ୍ୱ (ବିନାଶ) କରେ । ଗୁରୁ (ବୃହସ୍ପତି) ଲଗ୍ନ ଠାରୁ ସପ୍ତମ କେନ୍ଦ୍ର-ଧନୁରେ ଥିବାରୁ ଗୁରୁ (ମହତ୍) ଗୁଣଖ୍ୟାତ କରଇ ।

୯।୧୦—ବୁଧ ଓ ସବିତା (ରବି) ଦୁହେଁ ଲଗ୍ନର ଅଷ୍ଟମ ମକରରେ ମିତ୍ର ଭାବରେ ଏକତ୍ର ଥିବାରୁ ବୁଧମାନଙ୍କ ବୁଧସାର (ପଣ୍ଡିତ ଶ୍ରେଷ୍ଠ) କରାଇଛନ୍ତି । ମଙ୍ଗଳ ଓ ଶୁକ୍ର ଏକତ୍ରରେ ଲଗ୍ନର ଦଶମ ମୀନରେ ଅଧିଷ୍ଠିତ ହୋଇ ରହିବାରୁ ମଙ୍ଗଳପ୍ରଦ ହୋଇଛନ୍ତି ଏହାଙ୍କର ମୌନ ହୋଇ ରହିବ, ଗୁଣିବର ପୁରୋହିତ ଗୁଣି (ଶତ୍ରୁ) ହୁଏତ କରାଇବ ।

୧୧—ବ୍ରହ୍ମାହରପଙ୍କୁ କହୁ ବ୍ରହ୍ମାଣ୍ଡରୂପ ଖଣ୍ଡ (ପାତ୍ର) ରେ ଛୀର (ଦୁଗ୍ଧ) ସମାନ ତହିଁ (ସେହିବ୍ରହ୍ମାଣ୍ଡଠାରେ) ଭୂପମାମାନଙ୍କୁ ଧୀରେ ଉପଯୋଗ (ଏକତ୍ର) କର ।

୧୨—ବାଳା ଦେବିଶାଖ (ମନ୍ତ୍ରନାମ—ଶୁଭ) ସନ୍ଧ୍ୟା ହୋଇ ଦେବିଶାଖମାନଙ୍କର ଜନ୍ମଗ୍ରହଣ କର । ପଞ୍ଚମୀତିଥିରେ ସେ ଜନ୍ମିଥିବାରୁ ପଦ୍ମଭର (ବାମର) ଗାବଦାନୀ ହେବ ।

ଅରଦ୍ରାଇ ସର୍ବଶତ୍ରୁ । ଅରଦ୍ରା ନକ୍ଷତ୍ର ଯୁକ୍ତ ।
ମୀନ ଅନୁକୂଳେ ଗୃହିଁ । ମୀନ ଲଗ୍ନେ ଉଦେ ହୋଇ ଯେ ॥ ୧୩
କାବ୍ୟକାରେ ଅଗୋଚର । କାବ୍ୟ ଲଗ୍ନରେ ସଞ୍ଚାର ।
ସୁରମୋହନୀ ଦ୍ୱିତୀୟେ । ସୁର ବୁଧ ମେଷୋଦୟେ ଯେ ॥ ୧୪
ଚତୁରୀ କୀରତି ସାଧୁ । ଚତୁର୍ଥେ ମିଥୁନେ ବନ୍ଧୁ ।
କର୍କଶ ସ୍ତୁଦାକ ଗୁରୁ । କର୍କଟେ ପଞ୍ଚମେ ଗୁରୁ ଯେ ॥ ୧୫
ତମ-ଛବି ବାସ ସ୍ନେହୀ । ତମ ସିଂହ ଷଷ୍ଠେ ରହି ।
ତୁଳପାକ କର ପଦ । ତୁଳରେ ଅଷ୍ଟମେ ମନ୍ଦ ॥ ୧୬
ଏକା ମଙ୍ଗଳ ପ୍ରଗ୍ରହେ । ଏକାଦଶେ ସେ ମକରେ ।
ଉତପନ ଦୋଷ ବୁଝି । ଉତ୍ତମ ଜାତକ ସୃଜି ଯେ ॥ ୧୭

---

୧୩—ସେ ତଥି ଆର୍ଦ୍ରା ନକ୍ଷତ୍ରରେ ଯୁକ୍ତ ହୋଇଥିବାରୁ ବାଳା ସମସ୍ତଙ୍କର ଶତ୍ରୁ ଆର୍ଦ୍ର କରିଦେଲା, ଅନୁକୂଳସମୟରେ ମୀନ [ମତ୍ସ୍ୟକୁ] ସମସ୍ତେ ଗୃହାନ୍ତି ଅର୍ଥାତ୍ ଯାତ୍ରାକାଳରେ ମୀନ ଦେଖିଲେ ଶୁଭହୁଏ । ଏ ବାଳା ମୀନଲଗ୍ନରେ ଜନ୍ମହେଲା ।

୧୪—ସୁରମୋହନୀ [ଦେବତାମାନଙ୍କର ମଧ୍ୟ ମନୋହାରିଣୀ ସୁନ୍ଦରୀର] ଲଗ୍ନରେ କାବ୍ୟ [ ଶୁକ୍ର ] ଉଚ୍ଚହୋଇ ସଞ୍ଚାର କରିବାର ଫଳ କାବ୍ୟ କାରେ [ କାବ୍ୟକର୍ତ୍ତାଙ୍କୁ ] ମଧ୍ୟ ଅଗୋଚର ଅଟେ ଅର୍ଥାତ୍ ଶୁକ୍ର ଲଗ୍ନରେ ଉଚ୍ଚ-ହୋଇ ରହିଲେ ବିଶେଷ ଫଳଦାୟକ ଅଟନ୍ତି । ଦ୍ୱିତୀୟେ ମେଷୋଦୟେ [ ଧନସ୍ଥାନମେଷରାଶିରେ ] ସୁର [ ସୂର୍ଯ୍ୟ ] ଓ ବୁଧ ଦୁହେଁ ଥିବାରୁ ରବି ବୁଧା ଯୋଗ ହେଲା ।

୧୫—ମୀନଲଗ୍ନର ଚତୁର୍ଥ ମିଥୁନରେ ବନ୍ଧୁ [ ଚନ୍ଦ୍ର ] କେନ୍ଦ୍ରବର୍ତ୍ତୀ ହୋଇ ରହିବାରୁ ଚତୁରୀ ସୁନ୍ଦରୀର ସାଧୁ [ ଉତ୍ତମ ] କୀର୍ତ୍ତି ବ୍ୟାପିଅଛି । ଗୁରୁ [ଲଗ୍ନ ଓ କର୍ମାଧିପତି ବୃହସ୍ପତି ] ପଞ୍ଚମ କର୍କଟେ ଥିବାରୁ ସୁନ୍ଦରୀ ଗୁରୁ [ ମନୋ-ହର ] ଓ କର୍କଶ ସ୍ତୁଦାକ [ ସ୍ତନ ] ପାଇଅଛି ।

୧୬—ତମଛବି ବାସ ସ୍ନେହୀ [ କୃଷ୍ଣବସ୍ତ୍ରପ୍ରେମୀ ସୁନ୍ଦରୀର ] ଷଷ୍ଠସ୍ଥାନ ସିଂହରେ ତମ [ ରାହୁ ] ତୁଙ୍ଗୀ ହୋଇ ରହିବାରୁ ଯୋଗ କାରକ । ଅଷ୍ଟମସ୍ଥାନ ତୁଳରେ ମନ୍ଦ [ ଶନି ] ଉଚ୍ଚ ହୋଇ ରହିବାରୁ ତୁଳପାକ [ ଉପମା ମଳୁକୁ ] ମନ୍ଦ କରୁଅଛି ।

୧୭—ଏକାଦଶ ମକରରେ ଏକା ମଙ୍ଗଳ ଉଚ୍ଚାବଳ ରହିବାରୁ ଯୋଗ କାରକ, ଉତ୍ପନ୍ନ ଜାତକ ଏହାପର ଉତ୍ତମରୂପେ ସୃଷ୍ଟିହେବାର ବୁଝି ସମସ୍ତେ ଦୋଷକୁ ଲୁଚିଲେ ।

ସମଦରେ ଲଗ୍ନଥିଲେ । ସମସ୍ତେ ଶଗୁନ ତଥି ।
ସ୍ମରଣ ତୂର୍ଣ୍ଣ ରଭସେ । ସୁମନେ ଦୈବଜ୍ଞ କହନ୍ତି ଯେ ॥ ୧୮
ମାଧବୀ ପ୍ରୀତିକରରେ । ମାଧବ ବସନ୍ତି ସ୍ଥିରେ ।
ମାଧବୀ ଭର ଉତ୍ସଙ୍ଗ । ମାଧବମାସ ମଙ୍ଗଳ ଯେ ॥ ୧୯
ନବବୟସୀ ତରୁଣ । ନବମୀରେ ଉତ୍ତରଫଣୀ ।
ଦଶଦଶା ନାହିଁ ଦ୍ୱେଷ । ଦଶମୀ ତିଥିରେ ଯୋଗ ଯେ ॥ ୨୦
ଧବପତ୍ନୀ ବୋଲାଇବେ । ଧବଳପକ୍ଷ ଏ ଭାବେ ।
ହସ୍ତାନନ୍ଦ ହେବେ ବାନ୍ଧ । ହସ୍ତାନକ୍ଷତ୍ର ପ୍ରସିଦ୍ଧ ଯେ ॥ ୨୧
ତୁଳ ଲଗ୍ନରେ ବହୁତ । ତୁଳ ହେବ ଅଖଣ୍ଡିତ ।
ସର୍ବଗ ପ୍ରବେଶ ହେବ । ସର୍ବସ୍ୱରେ ମୁହୂର୍ତ୍ତ ଯେ ॥ ୨୨
ମଣ୍ଡଳେଶ୍ୱର କହିଲେ । ମଣ୍ଡପ ରଚ ନଗ ଭାଳେ ।
ପାଟଳିପୁର ନରେଶେ । ପଟ୍ଟରେ ଦେଲେ ସନ୍ଦେଶେ ॥ ୨୩
ଲଗ୍ନ-ପତ୍ର ଅବେଦନ । ଲଗ୍ନ ପୁରୋହିତ କର ।
ସୁମନେ ମିଳେ ସତ୍ୱରେ । ସୁମନନାମା ନଗରେ ॥ ୨୪

---

୧୮—ତଥି ( ସେଠାରେ ) ସମସ୍ତେ ସମଦର ( ଅନନ୍ତ ସନ୍ତୋଷ ) ଲଗ୍ନଥିଲେ ଶଗୁନଥିବାରୁ ଦୈବଜ୍ଞ ( ଜ୍ୟୋତିଷ ) ସୁମନେ ( ଉତ୍ତମ ମନରେ ) ତୂର୍ଣ୍ଣ ସ୍ମରଣ କରି ରଭସେ ( ଶୀଘ୍ର ) କହନ୍ତି ।

୧୯—ମାଧବ ( ବିଷ୍ଣୁ ) ପ୍ରୀତିକରରେ ମାଧବୀ ( ତୁଳସୀଙ୍କୁ ) ଯେଉଁ ମାସରେ ସ୍ଥିର ବସନ୍ତି, ଯେଉଁମାସ ମାଧବୀ ( ବାସନ୍ତୀଫୁଲ ) ମାନଙ୍କ ଉତ୍ସଙ୍ଗରେ ସେହି ମାଧବମାସ ( ବୈଶାଖରେ ) ବିବାହ ମଙ୍ଗଳ ହେବ ।

୨୦—ଦଶମୀ ତିଥିରେ ଯୋଗ ( ଯୁକ୍ତ ) ହୋଇଥିବା ନବମୀରେ ତରୁଣ ( ଯୁବକ ) ଓ ନବବୟସୀ ( ତରୁଣୀ ) ର ଉତ୍ତରଫଣୀ ( ମଙ୍ଗଳକୃତ୍ୟ ) ହେଲେ ଦଶ ଦଶ ( ବିବାହାଦିଦଶ ଅବସ୍ଥା ) ଦ୍ୱେଷଯୁକ୍ତ ନାହିଁ ।

୨୧—ଧବ ( ସ୍ୱାମୀ ) ପତ୍ନୀ ( ସ୍ତ୍ରୀ ) ବୋଲାଇବେ ବୋଲି ଧବଳ ପକ୍ଷ ( ଶୁକ୍ଳ-ପକ୍ଷ ) ହେବ । ହସ୍ତାନକ୍ଷତ୍ରରେ ଅନନ୍ଦେ ହସ୍ତ ବାନ୍ଧିହେବ ଅର୍ଥାତ୍ ହାତଗଣ୍ଠି ପଡ଼ିବ ଏହା ପ୍ରସିଦ୍ଧି ଅଛି ।

୨୨—ତୁଳ ଲଗ୍ନରେ ବହୁତ ତୁଳ ( ତୁଳନା ) ଅଖଣ୍ଡିତ ( ପୂର୍ଣ୍ଣହେବ ) । ସର୍ବଗ ( ଗତି ) ପ୍ରବେଶରେ ସର୍ବସ୍ୱରେ ମୁହୂର୍ତ୍ତ ମାନ ହେବ ।

୨୩—ମଣ୍ଡଳେଶ୍ୱର ( ଶ୍ୟାମନଗରରାଜା ) କହିଲେ—ସେ ସମସ୍ତଙ୍କୁ ମଣ୍ଡପ ନିର୍ମାଣ କରାଅ, ଏବଂ ପଟ୍ଟରେ ( ରାଜ୍ୟମଧ୍ୟ ) ପାଟଳି ପୁର ନରେଶ ( ପାତ୍ରିସାଗ-ରଙ୍କ ) ସନ୍ଦେଶ ଦେଲେ ।

୨୪—ପୁରୋହିତଙ୍କ କର ଲଗ୍ନପତ୍ର ( ଚିଠିପତ୍ରକୁ ) ଅବେଦନ କରି ଉତ୍ତମ ମନରେ ସୁମନାନଗରରେ ( ପାଟଳିପୁରରେ ) ସତ୍ୱରେ ମିଳାଇଲେ ।

ସନ୍ଦେଶ ନୃପରେ କହି । ସନ୍ଦେହ ଛେଦିଲା ତହିଁ ।
ପରମ୍ପରା ବନ୍ଧୁ ହେଜ । ପରମସନ୍ତୋଷେ ମଜ୍ଜି ଯେ ॥ ୨୫
ମାଗଧ ସନ୍ୟ ସଜାଇ । ମାଙ୍ଗଲ୍ୟଙ୍କୁ ଉପୁଜାଇ ।
ଦୁର୍ଗମ ପଥେ ଗମିତ । ଦୁର୍ଗରେ ମାର୍ଗେ ଯେ ସ୍ଥିତ ॥ ୨୬
ବରଜାତ ରାଜାକୁଳେ । ବରଜାତ ହୋଇ ମିଳେ ।
ସିନ୍ଧୁରେ ମଗ୍ନ ସ୍ୱଧାନେ । ସିନ୍ଧୁ ଅବ୍ଦ ନଦୀମାନେ ଯେ ॥ ୨୭
ସନ୍ଦେଶେଁ ରମ୍ଭାଣ୍ଡଶ୍ୱର । ସ୍ୱଦେଶୁଁ ହେଲେ ବାହାର ।
ସରଣୀରେ ବେନ ରାଠ । ଶରଧାରେ ହେଲେ ଭେଟ ॥ ୨୮
ଭାରତବର୍ଷରେ ପୂର୍ଣ୍ଣି । ଭାରତ ହେବ କି ଗୁଣି ।
ରମ୍ୟକର ସ୍ଥଳୀ ଭାବ । ରମ୍ୟକରେ କାହିଁ ଠାବ । ୨୯
ହିରଣ୍ମୟ ଛଟେ ଶୋଭ । ହିରଣ୍ମୟ ହେବ ସ୍ଥଗ ।
କେତୁମାଳମାନ ଯେତେ । କେତୁମାଳ ପୂର୍ଣ୍ଣ କେତେ ॥ ୩୦
ଇଳାବୃତ ଭଳି ସନ୍ୟ । ଇଳାବୃତ କେତେ ଘେନ ।
ଉତ୍ତର କୁରୁରେ ନର । ଉତ୍ତର କୁରୁ କାତର ॥ ୩୧

---

୨୫—ତହିଁ ନୃପଙ୍କ ସନ୍ଦେଶ କହି ସନ୍ଦେହକୁ ଛେଦନ କଲା । ରାଜା ପରମ୍ପରା ବନ୍ଧୁଙ୍କୁ ହେଜ ପରମ ସନ୍ତୋଷରେ ମଜ୍ଜିଲେ ।

୨୬—ମାଗଧ [ ମଗଧାଧିପ ଦୀପ୍ତିସାରର ] ସୈନ୍ୟସଜାଇ ମାର୍ଗରେ ସ୍ଥିତ [ବାଟରେ ଥିବା ] ଅନ୍ୟ ରାଜାମାନଙ୍କର ଦୁର୍ଗରେ ମାଙ୍ଗଲ୍ୟକୁ ଉପୁଜାଇ ଦୁର୍ଗମପଥରେ ଗମନ କଲେ ।

୨୭—ବରଜାତ[ଶ୍ରେଷ୍ଠଜାତୀୟ] ରାଜାମାନେ ବରଜାତ ହୋଇ ସିନ୍ଧୁଅବ୍ଦ ନଦୀମାନେ ସିନ୍ଧୁରେ [ ସମୁଦ୍ରରେ ] ମଗ୍ନହେଲା ସ୍ୱଧାନରେ ସେଠାରେ ମିଳିଲେ ।

୨୮—ରମାନଗରୀର ଈଶ୍ୱର ସନ୍ଦେଶ ପାଇ ସ୍ୱଦେଶରୁ ବାହାରହେଲେ ଏବଂ ବେନ ରାଠ [ ଦୁଇରାଜା ] ସରଣୀରେ [ ବାଟରେ ] ଶ୍ରଦ୍ଧାରେ ଭେଟହେଲେ ।

୨୯—ଭାବ [ ଭାବନା କର ] ଭାରତବର୍ଷରେ ପୂର୍ଣ୍ଣି ଭାରତ [ ମହାଭାରତ ଯୁଦ୍ଧ ] ହେବ କି ? ରମ୍ୟକରେ [ ରମ୍ୟକବର୍ଷରେ ] ଏତେ ସୈନ୍ୟଠାବ କର ରହିବା ପାଇଁ ରମ୍ୟକର ସ୍ଥଳୀ [ ମନୋହର ସ୍ଥାନ ] କାହିଁ ?

୩୦—ଦୁଇ ରାଜାଏ ଏତେ ହିରଣ୍ମୟ ବର୍ଷ ଛଟେ [ସ୍ୱର୍ଣ୍ଣଛଟରେ] ଶୋଭିତ ହୋଇଛନ୍ତି ଯେ ତହିଁରେ ହିରଣ୍ମୟ ବର୍ଷ ସ୍ଥଗ [ଆଚ୍ଛାଦିତ] ହୋଇଯିବ। ଯେତେ କେତୁମାଳମାନ [ ପତାକାମାନ ] ଅଛନ୍ତି ତହିଁରେ କେତୁମାଳ ବର୍ଷ ପୂର୍ଣ୍ଣହେବା କେତେମାତ୍ର ।

୩୧—ଇଳା [ ପୃଥିବୀକୁ ] ଆବୃତ କରିବା ଭଳି ସୈନ୍ୟ ଥିବାରୁ ଇଳାବୃତ ବର୍ଷକୁ ପୂର୍ଣ୍ଣ କରିବା କେତେ ମାତ୍ର । ସୈନ୍ୟମାନଙ୍କର ଉତ୍ତର ପ୍ରତ୍ୟୁତ୍ତର ଗୋଳରେ ଉତ୍ତରରେ ଥିବା କୁରୁ ବର୍ଷର ଲୋକମାନେ କାତର ହେଲେ ।

ଭଦ୍ରାଶ୍ୱ ଖୁରଙ୍କ ସ୍ଥାନ । ଭଦ୍ରାଶ୍ୱେ ନୋହିବ ପୁନ ।
ହସ୍ତିବପ୍ର ଦାନୋଦକ । ହରିବର୍ଷ ପ୍ଳବପ୍ରଦ ॥ ୩୨
କିଂପୁରୁଷ ଧନୀ ଛନ୍ତି । କିଂପୁରୁଷ ଲକ୍ଷି ମତି ।
ଦ୍ୱୀପ ସପ୍ତ ବାଦ୍ୟେ ପୂରି । ଦ୍ୱିପ ଅଷ୍ଟ ଜମ୍ଭକାରୀ ଯେ ॥ ୩୩
ପରବଳ ହୋଇ କରି । ପରବେଶ ଚମ୍ପାପୁରୀ ।
ବାସରେ ନୃପତି ବନ୍ଧୁ । ବାସ ଉପହାର ପାଇ ଯେ ॥ ୩୪
ସମ୍ଭାର ରାଜା ପୁଚ୍ଛିଲେ । ସମ୍ଭାବ୍ୟ ନୋହେ ବୋଇଲେ ।
ଧୀସଚିବ-ସୁତ ତହିଁ । ଧୀଷଣା ବର୍ଣ୍ଣିବା ପାଇଁ ॥ ୩୫
ରସାର ସାର ଏ ଦେଶ । ରସାଳ ଅଧ ଗୋରସ ।
ପାଟରେ ଏତେ ପ୍ରବେଶ । ପାଟ ସିନ୍ଧୁ ହେବେ ଶେଷ ॥ ୩୬
ଘନସାର ମୃଗନାଭି । ଘନସାର ସଉରଭି ।
ଯାନ ଭେଟେ ଅଛନ୍ତି । ଜାହ୍ନବୀ ହୋଇବ ପୋତ ॥ ୩୭

---

୩୨—ଭଦ୍ରାଶ୍ୱ ( ଉତ୍ତମଘୋଡ଼ାଙ୍କର ) ଖୁରଙ୍କ ( ଖୁରକୁ ) ଭଦ୍ରାଶ୍ୱ ବର୍ଷରେ ସ୍ଥାନ ହେବ ନାହିଁ । ପୁଣି ହସ୍ତିବପ୍ର ( ହସ୍ତୀମାନଙ୍କର ) ଦାନୋଦକ ( ମଦଜଳ) ହରି ବର୍ଷର ପ୍ଳବପ୍ରଦ ( ପ୍ଳବଦ୍ୱାରା ) ହେବ ଅର୍ଥାତ୍ ବୁଡ଼ିଯିବ ।

୩୩—ସେଠାରେ କିଂପୁରୁଷ ( ଯକ୍ଷଙ୍କପରି ) ଧନୀମାନେ ଅଛନ୍ତି, ସେମାନେ କିଂପୁରୁଷ ବର୍ଷକୁ ଲକ୍ଷିବାକୁ ମତ ( ମନେ ) କରୁଛନ୍ତି । ବାଦ୍ୟରେ ସପ୍ତଦ୍ୱୀପ ପୂରି ଯାଉଛି ଏବଂ ସେହିବାଦ୍ୟ ଅଷ୍ଟଦ୍ୱିପ ( ଅଷ୍ଟଦିଗ୍‌ଗଜଙ୍କର ) ଜମ୍ଭକାରୀ ଅଟେ ।

୩୪—ନୃପତି ପ୍ରବଳ ହୋଇ କରି ଚମ୍ପାପୁରୀରେ ପ୍ରବେଶିଲେ ଏବଂ ବାସରେ ( ଗୃହରେ ) ବନ୍ଧୁ ବାସ ( ବସନ ) ମାନ ଉପହାର ପାଇଲେ ।

୩୫—ପାଟଳୀପୁରରାଜା ଚମ୍ପାପୁର ରାଜାଙ୍କର ସମ୍ଭାର ବୃତ୍ତାନ୍ତ ପଚାରିବାରୁ ନିଜଧୀ-ସଚିବସୁତ ( ମନ୍ତ୍ରୀପୁତ୍ର ) କହନ୍ତି—ତାହା ଧୀଷଣା ( ବୁଦ୍ଧିଦ୍ୱାରା ) ବର୍ଣ୍ଣିବାପାଇଁ ସମ୍ଭାବ୍ୟ ( ସମ୍ଭାବନାଯୋଗ୍ୟ ) ନୁହେ ।

୩୬—ଏ ଦେଶ ରସାର ( ପୃଥିବୀ ମଧ୍ୟରେ ) ସାର ଅଟେ । ରସାଳ ଅଧ ( [illegible] ) ଗୋରସ ( ଦୁଗ୍ଧ ) ଏତେ ପ୍ରବେଶ ହୋଇଛି ଯେ ପାଟରେ ( ମୋ ବିଚାରରେ ) ପାଟସିନ୍ଧୁ ଶେଷ ହେବେ ।

୩୭—ଘନସାର ( କର୍ପୂର ) ମୃଗନାଭି ( କସ୍ତୁରୀ ) ସୌରଭ ଘନସାର ( ସୁବାସ ଚନ୍ଦନ ) ମାନ ଯାନ ଭେଟରେ ଏତେ ଅଛନ୍ତି ଯେ ତଦ୍ଦ୍ୱାରା ଜାହ୍ନବୀ ( ଗଙ୍ଗା ) ପୋତ ହୋଇଯିବ ।

ଗନ୍ଧ ଅତର ପନୀର । ଗନ୍ଧମାଦନ ଜର୍ଜର ।
ସତ ହେବ ଢାଳିବାରେ । ସନ୍ତତ ବହନ୍ତି ଭରେ ଯେ ॥ ୩୮
ଦୀପକ ଚନ୍ଦନଦାରୁ । ଦୀପତରୁ ହୋଇ ଚାରୁ ।
ପରତେ ମଳୟଗିରି । ପରସ୍ରବଣ ଚାରୁଭରି ଯେ ॥ ୩୯
ଘଟ ଅଦ୍ଭୁ ପାତ୍ରମାନ । ଘଟଣା ଅନବଚ୍ଛିନ୍ନ ।
କରେ ଜମ୍ବୁଜମ୍ବାଳରେ । କରେ ତୋଷ କୁମ୍ଭକାରେ ॥ ୪୦
ସିନ୍ଧୁ ରତ୍ନାକର ବ୍ୟର୍ଥ । ସିନ୍ଧୁକେ ଏହାର ସାର୍ଥ ।
ରତ୍ନ ନିର୍ମିଣେ କଂସାର । ରତନରେ କଂସା କରି ଯେ ॥ ୪୧
ସୁନାରୀ ଭୂଷାନିର୍ମାଣି । ସୁନାର କମାର ଜାଣି ।
ପ୍ରବାଳବଣେ ନିର୍ମାଣ । ପ୍ରବାଳ ତୋରଣା ଗଣ ଯେ ॥ ୪୨

---

୩୮—ଗନ୍ଧ ଅତର ଓ ପନୀର ( ସୁବାସ ଜଳ ) ଭରରେ ସନ୍ତତ ( ସର୍ବଦା ) ବହନ୍ତି । ତାହା ଢାଳିବାରେ ଗନ୍ଧମାଦନ ପର୍ବତ ଜର୍ଜର ହେବ ଏହା ସତ ଅଟେ ।

୩୯—ଦୀପକ ( ପ୍ରକାଶିତ ) ଚାରୁ ( ମନୋହର ) ଚନ୍ଦନ ଦାରୁ ଦୀପତରୁ [ ଦୀପ-ଗଛ ) ହୋଇ ପ୍ରସ୍ରବଣ ( ଝରଣା ) ଚାରୁଭରିରୁ ମଳୟ ଗିରିପରି ପ୍ରତେ ହେଉଛି ଅର୍ଥାତ୍ ମଳୟ ଗିରିରେ ଝରଣା ଥାଏ ଏଠାରେ ତେଲ ଧାର ଅଛି ।

୪୦—ଘଟ ପ୍ରଭୃତି ପାତ୍ରମାନ ଅନବଚ୍ଛିନ୍ନ ( ସର୍ବଦା ) ଜମ୍ବୁ ଜମ୍ବାଳରେ ( ସୁବର୍ଣ୍ଣ ପଙ୍କରେ ) କରେ ( ହସ୍ତଦ୍ୱାରା ) ଘଟଣା ( ଗଢ଼ା ) ହୋଇ କୁମ୍ଭକାର ମାନଙ୍କୁ ତୋଷ କରୁଛି ।

୪୧—ସିନ୍ଧୁ ( ସମୁଦ୍ରର ) ରତ୍ନାକର ନାମ ବ୍ୟର୍ଥ ( ବିଫଳ ) ଏହାର ( ରତ୍ନାକର ଏହି ନାମର ) ସିନ୍ଧୁକରେ ରତ୍ନ ପୂର୍ଣ୍ଣଥିବାରୁ ସାର୍ଥ ( ସାଫଲ୍ୟ ) ହୋଇଛି । କଂସାରି ( ଥଟାରି ) ମାନେ କଂସାଙ୍କର ସବୁ ରତ୍ନରେ ନିର୍ମାଣ କରିବା ଅଭ୍ୟାସରେ ତୋଷ ହୋଇଛନ୍ତି ।

୪୨—ସୁନାରୀ ( ଉତ୍ତମ ସ୍ତ୍ରୀ ମାନଙ୍କର ) ଭୂଷା ( ଅଳଙ୍କାରମାନ ) ନିର୍ମାଣ କରୁଥିବା ସୁନାରି ବଣିଆମାନେ ବଡ଼ ବଡ଼ ସୁବର୍ଣ୍ଣଖଣ୍ଡ ବ୍ୟବହାର କରୁଥିବାରୁ କମାର ପରି ଜଣା ଯାଉଛନ୍ତି । ଯେଉଁ ତୋରଣ ଗଣ ( ବହିର୍ଦ୍ୱାର ) ସବୁ ପ୍ରବାଳ ବଣେ ( ନବ ପଲ୍ଲବରେ ) ନିର୍ମାଣ କରି ହୁଏ ତାହା ଏଠାରେ ପ୍ରବାଳ ( ପୋହଳାରେ ) ନିର୍ମିତ ।

କରନ୍ତି ସ୍ତମ୍ଭମଣ୍ଡପ । କରୀବର ଶ୍ୱେତଦ୍ୱୀପ ।
ଭଗୀରଥୀ ଅଣୁ ଦନ୍ତେ । ଭୁଞ୍ଜିବ ମେରୁ ପର୍ବତେ ଯେ ॥ ୪୩
ଘଟଣ ଦନ୍ତେ ଅନ୍ତର । ଘଟକର୍ଣ୍ଣ ହୁର କର ।
ଅକ୍ଷି ଦେଖାଇବା ପାଇଁ । ଅକ୍ଷି ତାହା ସଜାଡ଼ଇ ଯେ ॥ ୪୪
ଶ୍ରେଣୀ ବାଡ଼ ସ୍ତମ୍ଭ ସେହୁ । ଶ୍ରେଣୀଭୂତେ କବା ଶୋହ ।
ଅନ ଜମ୍ବୁ ଶାଖା ନୋହ । ଅନତେ ଛନ୍ତି ଯୋଡ଼ାଇ ଯେ ॥ ୪୫
ଜରମଣ୍ଡିତ ରଙ୍ଗେ । ଜର ନୀଳ ପୀତ ରଙ୍ଗେ ।
ବାସକର ନାହିଁ ଆନ । ବାସଟି ଏହ ସ୍ଥାନ ଯେ ॥ ୪୬
ମୁକ୍ତାର ଝଲର । ମୁକୁଳ ସ୍ଫୁଟ ସ୍ତବକ ।
ନୀଳମଣିରେ ନିର୍ମିତ । ନୀଳ ଉତ୍ପଳ ଲମ୍ବିତ ଯେ ॥ ୪୭
ପଦ୍ମରାଗରେ ରଚିତ । ପଦ୍ମ ତହିଁ ରାଜ ରାଜ ।
କୁସୁମ ହେମ ରସ ଶି । କୁସୁମର ଭଜ ପୁଣି ଯେ ॥ ୪୮

---

୪୩।୪୪-କରୀବର ( ହସ୍ତୀ ଶ୍ରେଷ୍ଠ ) ଶ୍ୱେତଦ୍ୱୀପ ( ଐରାବତ ହସ୍ତୀ ) ଭଗୀରଥୀ ( ଗଙ୍ଗାକୁ ) ଅଣିବା ବେଳେ ଦନ୍ତେ ( ଗୋଟିଏଦନ୍ତ ) ମେରୁ ପର୍ବତରେ ବାଜି ଭାଙ୍ଗିଥିଲା, ଘଟଣ ( ସୁନ୍ଦର ) ଅନ୍ତର ଗୋଟିଏ ଦନ୍ତ ଘଟକର୍ଣ୍ଣ ( କୁମ୍ଭକର୍ଣ୍ଣ ) ହୁର କରିଥିଲା ( ଉପାଡ଼ି ନେଇଥିଲା ) ତାହା ( ସେହି ଦୁଇ ଦନ୍ତକୁ ) ଅଟି ଅକ୍ଷି ( ଅଣ୍ଡ ) ଦେଖାଇବାକୁ ସଜାଡ଼ି ସ୍ତମ୍ଭମଣ୍ଡପ ନିର୍ମାଣ କରନ୍ତି ।

୪୫—ସେହି ହସ୍ତୀ ଦନ୍ତର ଶ୍ରେଣୀ ( ମଣ୍ଡପର ଶ୍ରେଣୀ ) ଓ ବାଡ଼ ସ୍ତମ୍ଭମାନ ଶ୍ରେଣୀଭୂତେ ( ଧାଡ଼ି ଧାଡ଼ି ) ହୋଇ କବା ଶୋହ ( କି ସୁନ୍ଦର ଶୋଭା ପାଉଛି ), ଅନ ଜମ୍ବୁ ଶାଖା ନୋହେ ଯହିଁରୁ ଜମ୍ବୁ ନଦୀରେ ସୁବର୍ଣ୍ଣ ହେଉଛି ସେହି ଜାମୁ ଶାଖାରେ ତାକୁ ଯୋଡ଼ାଇଛନ୍ତି ।

୪୬—କେବଳ ନୀଳ ପୀତ ( ହଳଦିଆ ) ରଙ୍ଗର ଜରରେ ରଙ୍ଗେ ( ସୁନ୍ଦର ରୂପେ ) ଜର ମଣ୍ଡିତ ( ଜଡ଼ିତ ) ହୋଇଛି । ଅନ ବାସ ( ବସ୍ତ୍ରରେ ) ଭରନାହିଁ ଏହି ସ୍ଥାନରେ ବାସ ଗୃହ ନିର୍ମିତ ହୋଇଛି ।

୪୭—ମୁକୁଳ ସ୍ଫୁଟ ସ୍ତବକ ( କଢ଼ ଫୁଟିବା ପରି ) ମୁକ୍ତାର ଝେଲର ( ଝରିଆଲି ) ଏବଂ ନୀଳମଣିରେ ନିର୍ମିତ ନୀଳୋତ୍ପଳ ( ନୀଳକଇଁ ) ତହିଁରେ ଲମ୍ବିତ ହୋଇଛି ।

୪୮—ପଦ୍ମରାଗ ମଣି ନିର୍ମିତ ପଦ୍ମସବୁ ତହିଁରେ ରଜ ରାଜ ହୋଇ ରଚିତ ହୋଇଛି । ବଖାଣି କୃତ ( ବଖାଣ ଦଣ୍ଡ ) ହେମ ( ସୁବର୍ଣ୍ଣର, କୁସୁମର ( ଦାମକେତକୀ ) ପୁଷ୍ପ କରନ୍ତି ।

ତାର ଉଜ୍ଜଳ ବିତାନ । ତାରଗ୍ରହର ଚଳନ ।
ବିଧିରେ କରନ୍ତି ଜାଣି । ବିଧି କି ସେହୁ ବିଜାଣି ଯେ ॥ ୪୯
କଳଧୌତ ପିତୁଳା । କଳବଶେ ସ୍ତମ୍ଭେ ମେଳା ।
ବାଛନ୍ତି ଚାଳନ୍ତି କର । ବାଛଣି ପୁଚ୍ଛ ଚାମର ଯେ ॥ ୫୦
ବରଣ ତହିଁ କି ଫଳ । ବର ରତ୍ନମାନ ଜଳ ।
ରାମ ଛଟା ଅଭିଷେକ । ରାମ ମୋହେ ସର୍ବ ଦୃକ ଯେ ॥ ୫୧
ବର୍ଣ୍ଣିକ ବୈଚିତ୍ରେ ରମ୍ୟ । ବର୍ଣ୍ଣନକରେ ଅଗମ୍ୟ ।
ସାରିକା ଶୁକ ଗାୟଣି । ସାର ପ୍ରେମ ଗୀତ ଶୁଣି ଯେ ॥ ୫୨
ବଜ୍ରଧର ପୁରେ କାହିଁ । ବଜ୍ର ମଣ୍ଡପ ଯେ ବହି ।
ଚନ୍ଦ୍ରଲେପପୁର ଦିଶି । ଚନ୍ଦ୍ର କି ପଡ଼ନ୍ତି ଖସି ଯେ ॥ ୫୩
ତାର ଛଟା ଏକଲବେ । ତାର ସପ୍ତବିଂଶ ଭାବେ ।
ମଣିକି ଚଉକ ରଞ୍ଜି । ମଣି ନାନାବର୍ଣ୍ଣେ ସଜ ଯେ ॥ ୫୪

---

୪୯—ସେହୁ ବିଜାଣି ( କାରିଗର ) ବିଧି ( ବିଧାତା ) କି ? ବିଧାତା ଆକାଶରେ ତାର (ନକ୍ଷତ୍ର) ଏବଂ ଗ୍ରହର ଚଳନ କରିଥିବା ବିଧିରେ ବିତାନ (ଚାନ୍ଦୁଆକୁ) ତାର ଉଜ୍ଜଳ ( ମୁକ୍ତାଦ୍ୱାରା ଦୀପ୍ତିମନ୍ତ ) ଜାଣି କରିଛନ୍ତି ।

୫୦—କଳ ଧୌତ ( ସୁବର୍ଣ୍ଣ ) ପିତୁଳା କଳବଶରେ ସ୍ତମ୍ଭରେ ମେଳା ( ଲଗ୍ନା ) ହୋଇଛନ୍ତି, ସେମାନେ ମୟୂର ପୁଚ୍ଛ ବାଛଣି ଏବଂ ଚାମରକୁ କରେଧରି ବାଛୁଛନ୍ତି ଏବଂ ଚାଳୁଛନ୍ତି ।

୫୧—ବର ( ଉତ୍କୃଷ୍ଟ ) ରତ୍ନମାନଙ୍କରେ ଜଳ ( ଦୀପ୍ତିମନ୍ତ ) ହୋଇ ତହିଁ ଥିବା ବରଣ ( ପ୍ରାଚୀର ମାନ ) କି ଫଳକ ଧରିଛି, କେଉଁଠାରେ ରାମ ଛଟା, କେଉଁଠାରେ ରାମଙ୍କର ଅଭିଷେକ ଲେଖାହୋଇ ସମସ୍ତଙ୍କର ଦୃକ ( ଚକ୍ଷୁକୁ ) ରାମ ( ପେଶୀପ୍ରତାରେ ) ମୋହିତ କରୁଛି ।

୫୨—ସେ ସବୁ ଯେପରି ବର୍ଣ୍ଣିକ ( ରଙ୍ଗ ) ବୈଚିତ୍ରରେ ( ଭଙ୍ଗୀରେ ) ରମ୍ୟ ( ମନୋହର ) ହୋଇଛି ତାହା ବର୍ଣ୍ଣକରେ ( କବିମାନଙ୍କ ଦ୍ୱାରା ) ବର୍ଣ୍ଣନାକରିବାକୁ ଅଗମ୍ୟ । ତହିଁ ଥିବା ସାରିକା ଓ ଶୁକର ଗାୟଣି (ଗାନ) ଉଚ୍ଚାରିତ ଶୁଣିଲେ ପ୍ରେମ ସାର ଦେଉଛି ।

୫୩—କେଉଁ ବଜ୍ରମଣ୍ଡପ ( ହୀରକଖଚିତ ମଣ୍ଡପକୁ ) ବହୁଛି . ସେପରି ମଣ୍ଡପ ବଜ୍ରଧର ପୁରରେ ( ଇନ୍ଦ୍ରପୁରରେ ) କାହିଁ ? ଚନ୍ଦ୍ରଲେପ ( କର୍ପୂରଲେପିତ ) ପୁର ଅଭାବରୁ ଚନ୍ଦ୍ର ଖସି ପଡ଼ୁଛି କି ସେହିପରି ଦିଶୁଛି ।

୫୪—ସପ୍ତବିଂଶ ତାର ( ୨୭ ନକ୍ଷତ୍ର ) ଭାବରେ ମଣିର ଚଉକ ( ବନ୍ଧେଇ ) ରଞ୍ଜିଛି । ମଣି ( ଚୁନି ) ତାର ଛଟା ( ଦୀପ୍ତି ) ଏକଲବେ ( ଏକାଠିରେ ) ନାନା ବର୍ଣ୍ଣରେ ସଜ୍ଜିତ ହୋଇଛି ।

ପ୍ରାଚୀ କି ମୋହିନୀ ଇନ୍ଦୁ ସୁଧାପୂର୍ଣ୍ଣସ୍ଥଳୀ ।
ତମ କପଟେ ଗ୍ରାସନ୍ତେ କି ଚକ୍ର କଲା ଭଲା ଯେ । ୪
ଯେନ ଯେବେ ସେ ଛେଦିତ ସେ ଯୋଗେ ନୋହିଲା ।
ଖଣ୍ଡରୂପେ ତେଣୁପରେ ତାହିଁକି ପଡ଼ିଲା ଯେ । ୫
ଏ କାଳେ ମନ୍ତ୍ରୀଏ ନୃପ ସନମତି ପାଇ ।
ନଗରଦ୍ୱାରକୁ ବେଗେ ସାଗର କରାଇ ଯେ । ୬
ଶଙ୍ଖ ମଧୁର ଧ୍ୱନିରେ ହୋଇଛି ପ୍ରଧାନ ।
ଶତଧ ବାଦ୍ୟ ଶବଦ ସ୍ୱକୀୟ ଗର୍ଜନ ଯେ । ୭
ତହିଁ ଲଗୁଡ଼ ପ୍ରହାର ଫେନକ୍ରୀଡ଼ା ତୁଲ ।
ତମୋନୁଦ ଝୁଣ୍ଡ କି ବଡ଼ବାନଳ ଜଳା ଯେ । ୮
ନାଗିଣୀ ବହିବା ସୂର୍ପ ଦ୍ୱାରକା ପରରେ ।
ଖଳିତ ଲହରୀ ପୀତାମ୍ବର ପଟତରେ ଯେ । ୯

---

୪—ପ୍ରାଚୀ ( ପୂର୍ବଦିଗ ) ମୋହିନୀ କନ୍ୟା, ଇନ୍ଦୁ ( ଚନ୍ଦ୍ର ) ସୁଧା ପୂର୍ଣ୍ଣଥାଳିକି ? ତମ ( ରାହୁ ) କପଟରେ ଅମୃତ ଗ୍ରାସ କରିବାରୁ ମୋହିନୀ ରୂପଧାରୀ ବିଷ୍ଣୁ ଅମୃତ ଥାଳିକି ଚକ୍ରରେ ତାକୁ ଯେପରି ଛେଦନ କରିଥିଲେ ସେହି ତମ ( ଅନ୍ଧକାର ) କପଟରେ ଜଗତକୁ ଗ୍ରାସ କରିବାରୁ ପୂର୍ବଦିଗ ଚନ୍ଦ୍ରକୁ ଚକ୍ରକରି ତାକୁ ଛେଦନ କଲା କି ? ଏମନ୍ତ ଲାଗୁଥାଇ ।

୫—ଯେନ ( ଶତ୍ରୁର ଜର ) ଯେବେ ସେ ( ଅନ୍ଧକାର ) ସେ ( ଚନ୍ଦ୍ର ) ଯୋଗେ ଛେଦିତ ନୋହିଲା ତେବେ ଶତ୍ରୁ ଖଣ୍ଡିତ ହେଲାପରି ଅନ୍ଧକାର ଖଣ୍ଡରୂପେ ( ଖଣ୍ଡ ଖଣ୍ଡ ହୋଇ ) ତାରିମାନଙ୍କ ଛଳରେ ତାହିଁକି ପଡ଼ିଲା ?

୬—ଏ ସମୟରେ ମନ୍ତ୍ରୀମାନେ ରାଜାଜ୍ଞା ପାଇ ଶୀଘ୍ର ନଗର ଦ୍ୱାରକୁ ସାଗର ( ସମୁଦ୍ର ) କରାଇ ଦେଲେ ।

୭—ସେ ସାଗର ଶଙ୍ଖ ଏବଂ ମଧୁର ( ମନୋହର ) ଧ୍ୱନିରେ ( ନଦୀମାନଙ୍କର ମିଳନରେ ) ପ୍ରଧାନ ହୋଇ ଥିବାପରି ନଗରଦ୍ୱାର ମଧୁର ( ମହୁରୀ ) ଏବଂ ଶଙ୍ଖ ଧ୍ୱନିରେ ( ଶବଦରେ ) ପ୍ରଧାନ ହୋଇଛି । ଶତଧ ବାଦ୍ୟମାନଙ୍କର ଶବ୍ଦ ସମୁଦ୍ରର ସ୍ୱକୀୟ ଗର୍ଜନ ପରି ଅଟେ ।

୮—ତହିଁ ( ବାଦ୍ୟମାନଙ୍କରେ ) ଲଗୁଡ଼ ପ୍ରହାର ( ବାଡ଼ିଖେଳ ) ସମୁଦ୍ରରେ ଫେନକ୍ରୀଡ଼ା ( ପାଣିମାନଙ୍କର ଖେଳ ) ଏବଂ ଝୁଣ୍ଡ ହେବା ତମୋନୁଦ ( ପ୍ରଜ୍ୱଳିତ ମଶାଲ ସବୁ ) ସମୁଦ୍ରରେ ଜଳିବା ବଡ଼ବାନଳ କି ?

୯—ନାଗିଣୀ ( ଦଣ୍ଡାରୁଣୀ ) ବହିବା ସୂର୍ପ ( କୁଳ ) ଦ୍ୱାରକା ପର ହୋଇଛି; ଦ୍ୱାରକା ଲହରୀ ( ତରଙ୍ଗ ) ପୀତ ମୂଳ ( ଶ୍ରୀକୃଷ୍ଣ ) ଓ ପଟିବର ( ଚନ୍ଦ୍ର-ତରେ ) ଖଳିତ ( ଦୋଳିତ ) ହୋଉଥାଏ, କୁଳ ଲହରୀ ( ନକ୍ଷତ୍ର )

ଯେ ଯାହା ସ୍ଥାନକୁ ଯାଇ ଗୀତେ ବରଦାସୀ ।
ଚାହିଁଲେ ଜେମାର ଶୋଭା ପ୍ରସନ୍ନେ ପ୍ରଶଂସି ଯେ ॥ ୧୫
ଅଳକା ଲେଖା ମୋହନମନ୍ତ୍ରଶ୍ରୁତିରମ୍ୟ ।
ଓଁ କାର ତ ବେଣୀପାଶେ ସେ ଲୋମ ବିଲୋମ ଯେ ॥ ୧୬
ନମ ସୁରସାଳସୀ ଶୀଳସାର ସୁମନ ।
ଜପନ୍ତି କବି ଏମନ୍ତ ନ ପାଇ ସମାନ ଯେ ॥ ୧୭
ଅନେକ ଦବ୍ୟଦୃଷ୍ଟିକି ଲଭି ଇନ୍ଦ୍ର ହୋଇ ।
ଘନରସ ବୃଷ୍ଟି କରି ଏରୂପେ ବଞ୍ଚାଇ ଯେ ॥ ୧୮
ବାଳାମୁଖ ସ୍ଥଳ ଚନ୍ଦ୍ର ସୁଧାନିଧି ଯେହୁ ।
କ୍ରମେ ସାନ ବଡ଼ ଅଛି ତାର ସ୍ଥଳ ନାହିଁ ଯେ ॥ ୧୯
ସେ ଦୃଶି ଶିଳା ଦବାଇ ଲପନ ଦର୍ଶନେ ।
ନ ଦ୍ରବିଲ ହୋଇ କାହିଁ ଚଉଦଭୁବନେ ଯେ ॥ ୨୦
ଧୈର୍ଯ୍ୟ ମନ୍ଦ କରି ଯେ ବୋଲଇ ମନ୍ଦହାସ ।
ହରଦ୍ୱିଷ ଚନ୍ଦ୍ରହାସ ଝଲକ ତା ଦାସ ଯେ ॥ ୨୧

---

୧୫—ତହିଁ ଉତ୍ତାରୁ ଦାସୀମାନେ ଯେ ଯାହା ସ୍ଥାନକୁ ଯାଉଥିଲେ ସାର ପରେ ଦାସୀମାନେ ଜେମାର ଶୋଭାକୁ ପ୍ରଶଂସା କରି ପ୍ରସନ୍ନ ଭାବରେ ଚାହିଁଲେ ।

୧୬—ଜେମାର ଅଳକା ( ଚୂର୍ଣ୍ଣ କୁନ୍ତଳ ) ଲେଖା ହୋଇ ଥିବା ମୋହନ ମନ୍ତ୍ର, ତାହାର ବେଣୀପାଶେ ଶ୍ରୁତି ( କର୍ଣ୍ଣ ) ଓଁ କାର ପରି ରମ୍ୟ ହୋଇଅଛି, ଏଥିରୁ ବୋଧ ହୁଏ ସେ ମନ୍ତ୍ର ଲୋମ ବିଲୋମ ଅର୍ଥାତ୍ ଓଲଟାଇ ପଢ଼ିଲେ ଏକ ପ୍ରକାର ।

୧୭—ଏଣୁ କବିମାନେ ସମାନ ଉପମା ନ ପାଇ ନମଃ ସୁରସାଳସୀ (ରସବତୀଙ୍କୁ) ଶୀଳସାର ( ଚରିତ୍ରବତୀ ) ସୁମନ (ପଣ୍ଡିତା ) ଏହିପରି ଜପନ୍ତି ।

୧୮—ଇନ୍ଦ୍ର ଅନେକ ଦର୍ଶ ଦୃଷ୍ଟିକି ( ସହସ୍ର ଚକ୍ଷୁକୁ ) ଲଭିଛନ୍ତି ଏବଂ ଘନରସ ( ଜଳକୁ ) ବୃଷ୍ଟି କରନ୍ତି । ଦାସୀମାନେ ଅନେକ ଦବ୍ୟ ଦୃଷ୍ଟିକ ( ଉପମା-ଦେବା ଲୋକଙ୍କୁ ) ଲଭିବାରୁ ଇନ୍ଦ୍ର ହୋଇ ଏରୂପେ ଘନରସ ବୃଷ୍ଟି କରି ( ନିବିଡ଼ ରସ ବଚନମାନଙ୍କ ପ୍ରୟୋଗ କରି ) ମନ ବଞ୍ଚାଇଲେ ।

୧୯—ଯେଉଁ ଚନ୍ଦ୍ର ସୁଧାନିଧି ( ଅମୃତ ଭଣ୍ଡାର ) ସେ ବାଳା ମୁଖର ସ୍ଥଳ, ସ୍ଥଳ ସମସ୍ତ କଳାଯୁକ୍ତରେ ସାନ ବଡ଼ ହୁଏ, ସ୍ଥଳର ଅନ୍ୟ ସ୍ଥଳ ନାହିଁ; ଅତଏବ ଚନ୍ଦ୍ର କ୍ରମେ ସାନ ବଡ଼ ହେଉଛି, ତାହାର ସ୍ଥଳ ମଧ୍ୟ ନାହିଁ ।

୨୦—ସେ ଚନ୍ଦ୍ର ଦୃଶି ଶିଳା ( ଚନ୍ଦ୍ରକାନ୍ତ ମଣିକି ) ଦ୍ରବାଇ ଦିଏ, କିନ୍ତୁ ଏ ଲପନ ( ମୁଖ ) ଦର୍ଶନେ ନ ଦ୍ରବିଲା ଲୋକ କେବଳ ଚଉଦ ଭୁବନରେ ନାହିଁ ।

୨୧—ମୁଖର ଯେଉଁ ହାସ ଧୈର୍ଯ୍ୟକୁ ମନ୍ଦ ( ହୀନ ) କରି ଦେବାରୁ ମନ୍ଦହାସ ବୋଲାଏ, ହର ଦ୍ୱିଷ ( କନ୍ଦର୍ପଙ୍କ ) ଚନ୍ଦ୍ରହାସ (ଖଡ୍ଗର) ଝଲକ ତାହାର

ଅବା ଏହୁ କାର୍ତ୍ତି-ଗଙ୍ଗା ଉତ୍ପନ୍ନ ହେବାରେ ।
ଯୁବା ସଙ୍ଗ ଲଭେ ରମା ତହିଁ ଝାସିବାରେ ଯେ ॥ ୨୮
କେନାକୁଳ ଦାସୀ ଜଳ୍ପ କୁମାର କୁମାରୀ ।
ଶୁଣି ଦମ ଦମ ରୁରୁ ରୋମାଞ୍ଚକୁ ଧରି ଯେ ॥ ୨୯
ପ୍ରେମଜଳେ ମଜ୍ଜନ ମଦନ ତାପ ହତ ।
ମଧୁରରସ ଭୋଗକୁ ଅନୁକୂଳ କୃତ ଯେ ॥ ୩୦
କୋକିଳ ପ୍ରାକୃତ ନାମ ସ୍ନାନ ବିରଚନ ।
ଦଧି ଗୁଡ଼ ଅନ୍ନ ଅଶନରେ ତୋଷଚିତ୍ତ ଯେ ॥ ୩୧
ଲବଣି ରୂପସୀ ମୁଖେ ଲବଣୀ କୋମଳା ।
ହେଲେ ବନ୍ଧୁ ବନ୍ଧୁଙ୍କ ଯେ କୃପା ଏତେ ଥିଲା ଯେ ॥ ୩୨
ଯୁବାଗଣେ ସୁର ଶର ପ୍ରହାରିବା ବେଳେ ।
ଶିବ ଶିବ ଅଭିଧ୍ୱନି କରି କୃପା କଲେ ଯେ ॥ ୩୩
ତୁମ୍ଭେ ସୁଲକ୍ଷ୍ମୀ ସେ କର୍ମବନ୍ତ ମଧ୍ୟେ ସାର ।
କାମିନା କଳ୍ପ ସଫଳ ହୁଅଇ ତାହାର ଯେ ॥ ୩୪

---

୨୮—ଅଥବା ଏହି କାର୍ତ୍ତିରୂପ ଗଙ୍ଗା ଉତ୍ପନ୍ନହେବାରୁ ରମା ତହିଁରେ ଝାସିବାରୁ ସେହି ଫଳରୁ ଯୁବା ( ପୁଷ୍ପକେତୁର ) ସଙ୍ଗ ଲଭିଲ ।

୨୯—କୁମାର କୁମାରୀ ଉଭୟ କୁଳଦାସୀଙ୍କର ଏହିପରି ଜଳ୍ପ ଶୁଣି ରୁରୁ ( ସ୍ତବ ) ଦମ ଦମ ଏବଂ ରୋମାଞ୍ଚକୁ ଧଇଲେ ।

୩୦—ଏରୂପେ ପ୍ରେମଜଳରେ ମଜ୍ଜନହେବାରୁ କାମତାପହତ ହେଲେ, ସ୍ନାନାନ୍ତେ ଭୋଜନ ବ୍ୟବସ୍ଥା କଲାପରି ମଧୁର ରସ ଭୋଗକୁ ଅନୁକୂଳ କଲେ ।

୩୧—କୋକିଳ ପ୍ରାକୃତନାମ ସ୍ନାନ ( କୋଇଲି ) ରୁଡ଼ ବିରଚନକଲେ ଏବଂ ଦଧି, ଗୁଡ଼ ଅନ୍ନ ଅଶନରେ ( ଭୋଜନରେ ) ଚିତ୍ତକୁ ତୋଷକଲେ । ବିବାହ ପୂର୍ବ ଦିନ କୋଇଲି ରୁଡ଼ ଓ ଦହି ଗୁଡ଼ ଭାତଖାଇବା ବିଧି ଅଛି ।

୩୨—ଲବଣ କୋମଳାଙ୍ଗୀ ସୁନ୍ଦରୀ ଲବଣି ରୂପସୀଙ୍କୁ ଭରି ହେଲେ ଯେ ବନ୍ଧୁ ମୋଠାରେ ଏତେ କୃପା କରନ୍ତୁ ।

୩୩—ଯୁବା ଯେବେ ସୁର ( କାମ ) ଶର ପ୍ରହାରିବାବେଳେ ଶିବ ଶିବ ବୋଲି ଅଭିଧ୍ୱନି କରିବା ବଳରୁ ବୋଧହୁଏ ସେ ଶିବ ମୋତେ କୃପା କଲେ ।

୩୪—ହେ ତୁମ୍ଭେ ସୁଲକ୍ଷ୍ମୀ ଅନେକ କର୍ମବନ୍ତଙ୍କ ମଧ୍ୟରେ ସାର ( ଶ୍ରେଷ୍ଠ ) କାରଣ ଯାହାର କାମନା ସଫଳ ହୁଏ ସେ କର୍ମବନ୍ତ ।

